କବିତା ସମଗ୍ର : ବ୍ରହ୍ମୋତ୍ରୀ ମହାନ୍ତି

ଲେଖିକା : **ବ୍ରହ୍ମୋତ୍ରୀ ମହାନ୍ତି**
ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ,
ଭୁବନେଶ୍ୱର-୧୨,ଫୋନ୍ : ୯୪୩୭୫୦୦୭୬୭
ପ୍ରଚ୍ଛଦ : ଅଶୋକ ମହାନ୍ତି
ମୁଦ୍ରଣ : ତୁତୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୦୬
ଦ୍ୱିତୀୟ ପ୍ରକାଶ : ୨୦୧୦
ମୂଲ୍ୟ : ୪୦୦/-

**kabita samagra : bramhotri mohanty,**
by bramhotri mohanty,
2nd edition published by
paschima publications,
bhubneswar, orissa

# ଅନୁରାଗିଣୀ

(ବ୍ରହ୍ମୋତ୍ରୀ ମହାନ୍ତିଙ୍କ କବି ମାନସ)

ବ୍ରହ୍ମୋତ୍ରୀ ଦେବୀଙ୍କ କବିତା ବିଷୟରେ କିଛି ଲେଖିବାର ସାହସ ସଂଗ୍ରହ କରିବାକୁ କ'ଣ କମ୍ ସମୟ ଲାଗିଲା ! ତାଙ୍କର ପ୍ରଥମ କେତୋଟି କବିତାରୁ ମୋର ହୃଦ୍‌ବୋଧ ହୋଇଥିଲା ଯେ, ତାଙ୍କର କବିତ୍ୱ ଅସାମାନ୍ୟ, ଆବେଗର ସୁଅରେ ଭାସିଗଲା ବେଳେ ବିଚାରବୁଦ୍ଧିର ହାତଧରି ସେ ବାରମ୍ବାର କୂଳକୁ ଉଠିଆସନ୍ତି । ଲଳିତ ଉଚ୍ଚାରଣ ଓ ବିଶ୍ଳେଷଣ ଉଭୟଙ୍କୁ ସମାନ ମାନ୍ୟତା ଦେବାରେ ତାଙ୍କର ପାରଙ୍ଗମତା ଅନନ୍ୟ । ତାଙ୍କର ପରବର୍ତ୍ତୀ କବିତାରେ ଭାବଜଗତର ଯେଉଁ ଦୃଶ୍ୟ ଦିଶିଲା, ମୁଁ ତା'ଠାରୁ ଖୁବ୍ ଦୂରରେ ବୋଲି ବୁଝିଯାଇଥିଲି । ଟିକିଏ ପାଖରେ ଥିଲେ ସିନା ସେ ଜଗତର କଥା କହୁଥିବା କବିତା ବିଷୟରେ କିଛି କହିଥାନ୍ତି !

ତେବେ, ଆଧାତ୍ମିକ ଭାବପ୍ରଧାନ ପରବର୍ତ୍ତୀ ପର୍ଯ୍ୟାୟର କବିତାରେ ବି ଆବେଗ ଉପରେ ଅଙ୍କୁଶ, ଭିନ୍ନ ଦୃଷ୍ଟିକୋଣରୁ ଦେଖିବା, ଅପ୍ରତ୍ୟାଶିତ ଅଭିବ୍ୟକ୍ତି ପୂର୍ବପରି, ଛନ୍ଦ ଲଳିତ ଉଚ୍ଚାରଣ ବି ପୂର୍ବପରି । ଅପରିବର୍ତ୍ତିତ କବିସ୍ୱଭାବ ଯୋଗୁଁ ସେ କହିପାରନ୍ତି,

ବିବାହପୂର୍ବରୁ,
ସମସ୍ତେ 'ସ୍ୱପ୍ନ'କୁ ଆଦରିଥାନ୍ତି,
ପରିଣୟ ପରେ 'ସ୍ୱପ୍ନ' କହେ,
'ତମେମାନେ ଥାଅ,
ମୁଁ ଯାଉଛି ।' (ଚିରନ୍ତନ, ୯୫)

ବା

ମୁଁ ଯାହାଙ୍କ ପ୍ରେମ କରିଥିଲି
ପାଇପାରିଲିନି ତାଙ୍କୁ,
ମାତ୍ର ଯାହାଙ୍କୁ ନେଇ ସଂସାର କରୁଛି
ମନେହୁଏ, ବିବାହ ଆଗରୁ ତାଙ୍କୁ ବି
ପ୍ରେମ କରାଯାଇପାରିଥାନ୍ତା । (ସେତୁବନ୍ଧ, ୧୩)

ଆଉ ଲଳିତ ଉଚ୍ଚାରଣ ? ପ୍ରଥମ କବିତା ବହି (ଅବତରଣ, ୧୯୭୨)ର

ଶ୍ରାବଣ ଆକାଶରେ ବଜ୍ର ଗରଜନ,
ସମୀର ସଂଗୀତ ରୁଦ୍ର ସନସନ,

ବାଦଲ ଝରଝର,
ଚପଳା ଚଞ୍ଚଳ,
ପିଆସୀ ନୟନ ମୋ ଆକୁଳେ ଛନଛନ,
ଶ୍ରାବଣ ଆକାଶରେ ବଜ୍ର ଗରଜନ -

ପରି ସ୍ୱର ଶୁଭୁନାହିଁ କି ତିରିଶ ବର୍ଷ ପରେ, ନିରୀକ୍ଷଣରେ, ଏପରି ପଙ୍‌କ୍ତିରେ -

ତମେ କେତେବେଳେ ଆସିବ ସଖା ହେ !
କେଉଁ ରୂପେ ମୁଁ ତା' ଜାଣେନା,
ନିର୍ଦ୍ଦୟ ହୋଇ ଆସ ଅବା ଆସ କରୁଣାର ଗୀତି ଗାଇ,
ନ ଆସିଲେ ମନ ମାନେନା
କିମ୍ବା
ତମେ ଯଦି ହାତ ନ ଧରିବ ମୋର
ଲେଖିବି କିପରି କୁହ ?
ତମ ଦେହେ ଲୋଟି ରହିଚି ଲତା ମୁଁ
ତମେ ମୋର ମହୀରୁହ ।

ପୂର୍ବବର୍ତ୍ତୀ କବିତାର ସ୍ୱର ପରବର୍ତ୍ତୀ କବିତାରେ ବି ଶୁଭେ କାରଣ କବିର ଚେତନାରେ ପ୍ରାଧାନ୍ୟ ପାଇଥିବା ବିଷୟ ସବୁର ତାଲିକା ଯେତେ ବଦଳୁ ନା କାହିଁକି, କବିତାରେ ସେ ଯାହା କହିବାକୁ ଚାହୁଁଛି ତାହା ଉପରକୁ ଯେତେ ଅଲଗା ଲାଗୁନା କାହିଁକି, ତାର ନିଜକୁ ବ୍ୟକ୍ତ କରିବା ଭଙ୍ଗୀ ବିଶେଷ ବଦଳେ ନାହିଁ, ସେ ଯେପରି କବିତା ଲେଖୁଥିଲା ମୋଟାମୋଟି ଭାବେ ସେପରି ହିଁ ଲେଖିଚାଲିଥାଏ । ତା'ର ଚିରବୃତ୍ତିରେ ଥରେ ଯାହା କିଛିର ତାତ୍ପର୍ଯ୍ୟ ସ୍ୱୀକୃତ ହୋଇଯାଏ, କବିତା ଲେଖୁଥିବା ଯାଏଁ ସେଥିରୁ ସେ ମୁକୁଳି ପାରେନାହିଁ । ବ୍ରହ୍ମୋତ୍ରୀ ଦେବୀ ସମୟକ୍ରମେ ବିଦ୍ୟାନୁଭୂତିରେ ପରିପୂର୍ଣ୍ଣ ଓ ଉଲ୍ଲସିତ ହୋଇଛନ୍ତି, ସଂସାରୀ ଜୀବନରେ ମାନ୍ୟତା ଦିଆଯାଉଥିବା ସବୁକିଛିର ଅସାରତା ବୁଝିଛନ୍ତି ଓ ବୁଝେଇଛନ୍ତି, କିନ୍ତୁ କ'ଣ ମଣିଷର ଦୁଃଖକୁ ହେୟଜ୍ଞାନ କରିପାରିଛନ୍ତି, ଦୁଃଖୀ ପ୍ରତି କରୁଣାର ବାସ୍ତବ ମୂଲ୍ୟ ନାହିଁ ବୋଲି ଭାବି ପାରିଛନ୍ତି, ନା ପ୍ରେମକୁ, ସହାନୁଭୂତିକୁ ତାଙ୍କର ଅଭିପ୍ରେତ ଉପଲବ୍ଧିର ଅନ୍ତରାୟ ବିବେଚନା କରି ପ୍ରତ୍ୟାଖ୍ୟାନ କରିପାରିଛନ୍ତି ? କବିଚିତ୍ତରେ ସତ୍ୟ ବୋଲି ଯାହା ଥରେ ପ୍ରତିଷ୍ଠିତ ହୋଇଯାଏ, କେଉଁ ଦିବ୍ୟଭାବ ତାକୁ ଅସତ୍ୟ କରିଦେଇ ପାରିବ ? ତାଙ୍କର 'ନିର୍ଜନ ମୁହୂର୍ତ୍ତ'ର ଗୀତମାନେ

ଯଦି ତାଙ୍କର କବିତା ହୋଇଯାଆନ୍ତେ,

ସହ୍ୟ କରିପାରନ୍ତେ କି ସ୍ୱାମୀ ମୋର ?

ସନ୍ତାନମାନେ ମୋ କେବେ ଦିଅନ୍ତି କି ଜନନୀ ସମ୍ମାନ ?

ଆତ୍ମୀୟସ୍ୱଜନ ଏବଂ ପ୍ରିୟଜନ ଯେତେ ମୋର

ଛି', ଛି' କହି କରନ୍ତେ ଭ୍ରୂକୁଟୀ

x x x x x

ଅଥଚ ସେ ଆବେଗମାନେ କେତେ ସତ୍ୟ, କେତେ ଭାବମୟ ।

(ସେତୁବନ୍ଧ, ୬)

ଛୋଟପିଲାଟିଏ ଛାତରୁ ବା ଗଛରୁ ପଡ଼ି ମରିଯିବା, ବୃଦ୍ଧ ଜଣେ କଷ୍ଟେମଷ୍ଟେ ପାହାଚ ଚଢୁଥିବା, ସ୍ତ୍ରୀ ଠେଲୁଥିବା ଗାଡ଼ିରେ ବସିଥିବା କୋଢ଼ି, ଘରତିଆରିରେ ନିଜକୁ ଭୁଲିଯାଇଥିବା ଘରଣୀଙ୍କର ଗୃହପ୍ରତିଷ୍ଠା ଦିନ ଦେହାନ୍ତ, ପକ୍ଷାଘାତଗ୍ରସ୍ତ ସ୍ୱାମୀଙ୍କର ସେବା କରୁଥିବା ପତ୍ନୀ, ପ୍ରିୟଜନମାନଙ୍କ ବିୟୋଗ, ଆଜନ୍ମ ବିକୃତ ପିଲାଟିର ଜୀବନ ଓ ମୃତ୍ୟୁ, ଜରା ଓ ମୃତ୍ୟୁ ଇତ୍ୟାଦି କେବଳ ମାୟା ବୋଲି ବିଚାର କରି ସେଥିରୁ ଦୂରେଇ ଯିବା କବିଚିତ୍ତର ସ୍ୱଭାବ ନୁହେଁ । ଆଧ୍ୟାତ୍ମିକ ଉପଲବ୍ଧିର ଶାସ୍ତ୍ରୀୟ ତତ୍ତ୍ୱ ଅନୁସାରେ ସଂସାରର ସବୁକିଛି ପ୍ରତି ଅନୁରାଗ ତୁଟାଇଦେବା ପରେ ହିଁ ପରମ, ଚିରନ୍ତନ ସତ୍ୟର ଅବବୋଧ ପାଇଁ ଯୋଗ୍ୟତା ଆସେ, କିନ୍ତୁ ଅନୁରାଗର, ବିକଳ ହେବାର, ନାଆଁ ଜଣାନଥିବା କାହାର ଦୁଃଖରେ ଭିତରେ ଭିତରେ ଦୋହଲିଯିବାର, ବର୍ଷବର୍ଷ ଧରି ନିଜର ଭଲପାଇବାର ଦିଗଟିଏ ହଠାତ୍ ଦେଖି ଚକିତ ହୋଇପଡ଼ିବାର ଅଭ୍ୟାସ କବିର ଏତେ ଅସ୍ଥିମଜ୍ଜାଗତ ହୋଇସାରିଥାଏ ଯେ ଏ ସବୁ ଥିବା ବାଟ ଛାଡ଼ଦେଲେ ତାକୁ ଅନ୍ୟବାଟ ଦିଶେ ନାହିଁ ।

ତେବେ ଏ ବାଟରେ ଗଲାବେଳେ ତାକୁ ବେଳେବେଳ ଖୁବ୍ ଉଜ୍ଜ୍ୱଳ ଅନୁରାଗଟିଏ ଦିଶିବା ଅସମ୍ଭବ ନୁହେଁ । ସେ ଅନୁରାଗକୁ କଣ କୁହାଯାଇପାରେ, ପ୍ରେମ ? ଭକ୍ତି ? ସେଥିରେ ଯେ ପ୍ରତିଷ୍ଠିତ ସେ ଏକାଧାରେ ପରମ ସତ୍ୟ ଓ ପରମ ପ୍ରେମିକ, ସେଥିରେ ଶୃଙ୍ଗାର ଭାବ ଓ ଆଧ୍ୟାତ୍ମିକ ଭାବ ଏପରି ସମ୍ମିଶ୍ରିତ ଯେ ଗୋଟିଏ ଭାବରୁ ଆର ଭାବକୁ ଅଲଗା କରିହୁଏନାହିଁ । ରାଧାଙ୍କର ଓ ଗୋପୀମାନଙ୍କର କୃଷ୍ଣ ପ୍ରୀତି ଏ ପ୍ରକାରର, ସେଥିରେ ତତ୍ତ୍ୱ ନଥାଏ, ଥାଏ ପ୍ରିୟତମଙ୍କ ସାନ୍ନିଧ ପାଇଁ ଅଧୈର୍ଯ୍ୟତା । ପ୍ରିୟତମ ସର୍ବକାଳୀନ, ତାଙ୍କର ଲୀଳା ଚିରନ୍ତନ, ଲୀଳାଭୂମି ଚିରକାଳ ଅପରିବର୍ତ୍ତିତ ('ପ୍ରତିକ୍ଷେତ୍ର ବୃନ୍ଦାବନ, ଆମେ ସବୁ ନିତ୍ୟ ଗୋପୀ, ପ୍ରତିକ୍ଷଣେ ରାସ ମହୋତ୍ସବ'– ସ୍ତବକ, ୫୦)

ଏ ଚେତନାରେ ଆପ୍ଲୁତ ବ୍ରହ୍ମୋତ୍ରୀ ଦେବୀଙ୍କର କବିତାରେ ପ୍ରେମର ଉଦ୍ଦାମତା ବ୍ୟକ୍ତ ହୋଇଛି (ସ୍ତବକ- ୧ ୨ ୫ ଦ୍ରଷ୍ଟବ୍ୟ), ନିଜର ଜଞ୍ଜାଳଗ୍ରସ୍ତ ଜୀବନ ଓ ଅସାର ଆସକ୍ତି ପ୍ରତି ଧିକ୍କାର ଅଛି, ପ୍ରିୟତମଙ୍କ କରୁଣା ଉପରେ ଆସ୍ଥା ଅଛି । ତତ୍ତ୍ୱମାର୍ଗ ଅନ୍ଧକେ ସରିଯାଏ, ସେ ମାର୍ଗରେ ଗଲେ ଇପ୍ସିତ ଉପଲବ୍ଧି ହରାଇବାକୁ ପଡ଼େ, ଏହା ସେ ଅନେକ ଜାଗାରେ କହିଛନ୍ତି । ପ୍ରେମ ଭକ୍ତି ଉପରେ ଆଧାରିତ କବିତାରେ ବ୍ରହ୍ମୋତ୍ରୀ ଦେବୀଙ୍କ ସ୍ଥାନ ସ୍ୱତନ୍ତ୍ର କାରଣ ତାଙ୍କ କବିତାରେ ଆବେଗର ପ୍ରଗାଢ଼ତା ସହିତ ନିରପେକ୍ଷ, କଠୋର ଆତ୍ମବିଶ୍ଳେଷଣ ଅଛି, ଲୀଳାଭୂମିକୁ ଆସିବା ବାଟରେ ଚେତନାଗତ ଅନ୍ତରାୟର ବିବରଣୀ ଅଛି, ନିଜର ପ୍ରେମାନୁଭୂତି ସହିତ ଅଛି ପ୍ରେମିକଙ୍କର ସସ୍ନେହ ମହାନୁଭବତାର ସ୍ତୁତି ଚାରଣ।

ସବୁଠୁଁ ଆଶ୍ଚର୍ଯ୍ୟ ଲାଗେ ତମେ ମୋର ସବୁ ଭୁଲ୍ ବୁଝାମଣା ସତ୍ତ୍ୱେ
ପ୍ରୟାସ କରିନ କେବେ ଟାଣିନେବା ଲାଗି ମୋତେ ସମୀପେ ତମର
ମୋ ଇଚ୍ଛାର ବିରୁଦ୍ଧରେ, ତୁଳନା ବା କାହିଁ ତମ ଧୈର୍ଯ୍ୟ ଆଉ ତମ ଅପେକ୍ଷାର,
ଚାହିଁଥାଅ ପଥ ମୋର ଅପଲକ ନେତ୍ରେ,
ତମ ପାଶେ ଫେରିବାର ଆପଣା ଇଚ୍ଛାରେ ।

x x x x x

କୈଫିୟତ ନମାଗି ମୋ ଭୁଲ ଯଦି କହିଯାଅ ଚୁପ୍‌ଚାପ୍ ଆଖିର ଲୁହରେ,
"ଜାଣିଥିଲି ନିଶ୍ଚୟ ଆସିବୁ ଫେରି ମୋ ନିକଟେ,
ମୋତେ ଛାଡ଼ି ରହି କେବେ ପାରିବୁନି ଦୂରେ ।" (ସ୍ତବକ-୯୩)

କବିତାର ପରମ୍ପରାରେ ଏପରି କବିତା ବ୍ୟତିକ୍ରମ କାରଣ ଏଥିରେ ପ୍ରାୟ ସମତୁଲ ତାତ୍ପର୍ଯ୍ୟସମ୍ପନ୍ନ ଏକାଧିକ ସ୍ୱର ଶୁଭେ ।

କୃଷ୍ଣ ଯେତେବେଳେ ଜଗନ୍ନାଥ ହୋଇଯାଆନ୍ତି, ସେତେବେଳେ ସେ ବି ଭକ୍ତ-ପ୍ରେମିକର ଅନ୍ତରଙ୍ଗ, କରୁଣାର୍ଦ୍ର ବୁଝାମଣାରେ ତାକୁ ଧନ୍ୟ କରିଦଅନ୍ତି ।

ବସ୍‌ରୁ ଓହ୍ଲାଇ ଦେଖେ ତୁମେ ମୋର ଅପେକ୍ଷାରେ
ହୋଇଅଛ ଠିଆ,

x x x x x

ତୁମକୁ ତ ଦେଖିଦେଇ ଆଶ୍ଚର୍ଯ୍ୟ ମୁଁ
ସ୍ତବ୍ଧ ହୋଇଗଲି,
ତୁମେ ବୋଧେ ବୁଝିଗଲ ପ୍ରତିକ୍ରିୟା ମୋ ମନର,

ହସିଦେଇ କହିଲ ତ ତେଣୁ,
'କେତେ ବ୍ୟାକୁଳତା ନେଇ ତୁ ଆସିଛୁ ମୋ ନିକଟେ
ଏକଥା ମୁଁ ଜାଣିବା ପରେ ବି
କିପରି ବା ସ୍ଥିର ରହି ପାରିଥାନ୍ତି", ଲୁହରେ ମୁଁ ଅନ୍ଧ ହୋଇଗଲି ।
(ଦୟିତ - ୩)

ପ୍ରେମିକ-ଭକ୍ତଙ୍କର ଉଦ୍ଦାମତା ପୂର୍ବଭଳି-
ଝୁଲିଝୁଲି ଚାଲିଥିବ ତମେ, ନାଚୁଥିବି ତୁମରି ସାମ୍ନାରେ
ଦେବଦାସୀ ଭଳି, ନଥାଉ ପଛକେ ମୋର ପାଦରେ ନୂପୁର,
କଟୀରେ କିଙ୍କିଣୀ, ଜଣାନଥାଉ ପଛକେ
ଭଙ୍ଗୀ ନାଚିବାର,
ନାଚୁଥିବି ଘଣ୍ଟ ଓ ମର୍ଦ୍ଦନର ଧ୍ୱନି ସାଥେ ଉନ୍ମାଦିନୀ ଭଳି,
ଦି'ନୟନୁ ଅଫୁରନ୍ତ ଅଶ୍ରୁର ପ୍ରବାହ ।
(ଦୟିତ - ୪)

ଜଗନ୍ନାଥ ଭକ୍ତିରେ ଅନୁପ୍ରାଣିତ କବିତାରେ ଆମର ସାହିତ୍ୟ ଓ ସଂଗୀତ ସମୃଦ୍ଧ । ସେ ପରମ୍ପରାର ଲଳିତତମ ସ୍ୱର ଏପରି ନୁହେଁ କି ?

ଅସଂପୂର୍ଣ୍ଣ ଭୁଜ ତବ, ଅଥଚ ମୁଁ ଲୋଡ଼େ ପ୍ରଭୋ !
ତୁମ ଠାରୁ ପୂର୍ଣ୍ଣ ଆଲିଙ୍ଗନ,
ତୁମର ଚରଣ ନାହିଁ, ମାତ୍ର ମୁଁ ତୁମରି ପଦେ
ମଥା ରଖିବାକୁ ଚାହେଁ ସମଗ୍ର ଜୀବନ । (ଦୟିତ-୬)

କ'ଣ କହିହେବ ଏପରି ଜଣେ ସିଦ୍ଧ କବିଙ୍କ ବିଷୟରେ ଯାହାଙ୍କର ପାଦେ ଆତ୍ମ-ସଚେତନତାରେ ତ ଆର ପାଦ ଆତ୍ମ- ଅତିକ୍ରମଣରେ, ଯେ ସଂସାରକୁ ପ୍ରତ୍ୟାଖ୍ୟାନ କଲାବେଳେ ବି ସଂସାରର ଦୁଃଖୀ ଲୋକଙ୍କ ମୁହଁ ଭୁଲିପାରନ୍ତି ନାହିଁ, ଯେ ନିଜକୁ ସମର୍ପଣ କଲାବେଳେ ଈଶ୍ୱରଙ୍କୁ ନିଜ ବଷୟରେ ସବୁ ତଥ୍ୟ ଅକୁଣ୍ଠିତ ଭାବେ ଦିଅନ୍ତି, ଯାହାଙ୍କ ଯେତିକି ଶକ୍ତିମାନ ତା'ଠାରୁ ବେଶୀ ଅନୁକମ୍ପାଶୀଳ, ଯାହାଙ୍କ ଭାଷା ଏକାଧାରେ ମପାଚୁପା ଓ ଅର୍ଥ ସଂଚାରରେ ଅଦ୍ଭୁତଭାବେ ସମର୍ଥ ? ଯାହା କହିଲେ ବି ପ୍ରାୟ କିଛି କହିହେଲା ନାହିଁ ବୋଲି ମନେ ହେବ, ମନେ ହେବ ଯେ କିଛି ନକହି ରହି ଯାଇଥିଲେ ଏ ଅବସାଦ ଭୋଗିବାକୁ ପଡ଼ିନଥାନ୍ତା । ଅଧିକା କହି ଅଧିକା ଅବସାଦ ଭୋଗିବି କାହିଁକି ?

**ରମାକାନ୍ତ ରଥ**

## ନିଜକଥା

ଏ ବହି ପ୍ରକାଶ କରିବାରେ ମୋର ତିଳେ ମାତ୍ର ଆଗ୍ରହ ନଥିଲା, କାରଣ ଯିଏ ସବୁଠୁ ବେଶି ଖୁସି ହୋଇଥାନ୍ତେ, ସେ ନାହାନ୍ତି । ଯୁଗଳ ବାବୁଙ୍କ ପ୍ରଚେଷ୍ଟାରେ ଏ ବହି ପ୍ରକାଶ ପାଇଛି । ମୁଁ କିନ୍ତୁ ଆନନ୍ଦ ପାଇ ପାରୁନି । ଅନେକେ ମତେ ପ୍ରଶ୍ନ କରନ୍ତି ସାହିତ୍ୟର ଅନ୍ୟାନ୍ୟ ବିଭାଗ ଥାଉ ଥାଉ ଆପଣ କବିତାକୁ କାହିଁକି ମାଧ୍ୟମ କଲେ ? କବିତା ଆପେ ଆପେ ଆସେ, ଚେଷ୍ଟା କରି କେହି କିଛି ଲେଖେନି । କବିତା ଆବେଗ ପ୍ରସୂତ ବୁଦ୍ଧି ବା ଜ୍ଞାନର ନୁହେଁ । ନବୁଝିପାରିବା ପରି ଅବୋଧ କବିତା ମୁଁ ଲେଖିନି ।

ବ୍ରହ୍ମୋତ୍ରୀ ମହାନ୍ତି

## ସୂଚୀ

## ଢେଉ

ତୁମ ଦତ୍ତ ମୋ କବରୀ ଫୁଲ
ଗତ ରାତ୍ରେ ଥିଲା ମୋର ମାଣିକର ମୂଲ
ଆଜି ପ୍ରାତେ ସେ ତ ଉପେକ୍ଷିତ
ସୁଷମା ସ୍ତିମିତ ।

ତୁମର ଆଗ୍ରହ ଆଉ କାମନା ମୋ ଚରିତାର୍ଥ କରି
ଏଇ ଫୁଲ ଅନ୍ଧକାରେ ପ୍ରଣୟର ସୂର୍ଯ୍ୟସମ ଉଠିଥିଲା ଜଳି
ଯେ ଆଲୋକ ସ୍ନାନ କରି ମନେ ହେଲା
ଆମେ ମିଳନର ଏକ ନୂଆ ସଂଜ୍ଞା ଆବିଷ୍କାର କଲେ,
ପ୍ରତିକ୍ଷଣ ସାନ୍ନିଧ ଓ ସମ୍ପର୍କର ତଳେ
ଅନୁଭୂତି ଏକ ନୁହେଁ, ମନନେଇ ଭିନ୍ନ ଭିନ୍ନ ଅନୁଭୂତି ମିଳେ ।

ଆମର ସେ ମନକୁ ଯେ ରଙ୍ଗେ ରସେ ସ୍ନିଗ୍ଧକରି
ରଜନୀକୁ ନବ ଛନ୍ଦେ କଲା ତରଙ୍ଗିତ
ତା'ର ଏଇ ବିପର୍ଯ୍ୟୟେ ସ୍ୱାଭାବିକ ହେଉ ପଛେ
ମୁହୂର୍ତ୍ତକ ଲାଗି ଆମେ ହେବାନି ବ୍ୟଥିତ ?

ମୁଁ ଭାବୁଛି, ତୁମେ ମଧ ଭାବ,
ମୁଁ କହୁନି ସ୍ପନ୍ଦନ ଏ ଅନିର୍ବଚନୀୟ କେବେ
ଫୁଲଟିରେ ଜୀବନ୍ୟାସ ଦେବ,
ମାତ୍ର ଆମ ମନୁଷ୍ୟତ୍ୱ ମୂଲ୍ୟ ଏଇ ଆଲୋଡ଼ନ ତଳେ,

ତେଣୁ ଫୁଲଟିରେ
ସ୍ଥିତି ତା' ହଜିବା ଆଗୁଁ
ଧୋଇ ଦେବା ଆମେ ଆମ
କେତେ ବିନ୍ଦୁ ଉଷ୍ଣ ଅଶ୍ରୁନୀରେ । ◻◻

# ସୂର୍ଯ୍ୟ ଓ ଉତ୍ପଳ

ଉତ୍ପଳ ହସି ଦିନେ ସୂର୍ଯ୍ୟରେ କହିଲା,
"ଖର ତୁମ ଚୁମ୍ବନ ପରଶ,
ଅନୁରାଧା ସଖା ଚାରୁ ଚନ୍ଦ୍ରମା ପରାୟେ
ସ୍ନିଗ୍ଧ ଜୋଛନାରାଶି ବରଷ ।

ଶୁଭ୍ର ନୟନେ ଭରି ତନ୍ଦ୍ରାର ଅଳସ
ଶୀତ ଭୁଜବଲ୍ଲରୀ ବେଢ଼ାଇ
ଶାନ୍ତ ପ୍ରଣୟରାଗେ କାନ୍ତ ତନୁର ଲୋଭେ
ବୁକୁପରେ ନିଅ ସୁଖେ ଜଡ଼ାଇ ।"

ପଦ୍ମର ପରିହାସେ ଉତ୍ତରେ ତପନ,
"ଅନ୍ୟାୟ ଅନୁରୋଧ ତୁମର,
ଅନ୍ଧ ପରାୟେ ଅନୁସରି ଆନ ଧର୍ମେ
ଧର୍ମ କି ଭୁଲିଯିବି ନିଜର ?

ପ୍ରଣୟିନୀ ପ୍ରୀତି ପାଇଁ ପୌରୁଷ ଭୁଲେ ଯେ
ଧିକ୍ ସେଇ ପୁରୁଷର ଜୀବନ,
କାନ୍ତା ପଣତ ତଳେ ଆତ୍ମଗୋପନ କରି
ଅନ୍ୟାୟ ବରି ଲୋଡ଼େ ମରଣ ।

ତନୁ ସମାରୋହେ ଯଦି ଲୋଡ଼ ଶୀତ ପରଶ
ଚନ୍ଦ୍ର ପୟରେ ଦିଅ ପ୍ରଣତି,
ଚଣ୍ଡ ରମଣପ୍ରିୟା ଦଣ୍ଡେ ପାରିବ ଜୀଇଁ
ଚନ୍ଦ୍ରର ଲଭି ମୃଦୁ ପୀରତି ?

ସତୀନାରୀ ପରପ୍ରୀତି ଦରଶନେ କେବେ କି
ପୁଲକିତେ ବିଚଳିତ ମାନସେ
ପତି-ରତି ହୀନମଣି ଆନ ପ୍ରୀତି ଲୋଡ଼ଇ
ସ୍ୱପ୍ନରେ ସନ୍ତରି ବିଳସେ ?

ଚନ୍ଦ୍ରମା ପ୍ରଣୟିନୀ କୁମୁଦିନୀ କେବେ ତ
ଚାହିଁ ନାହିଁ ମୋତେ ଦିନେ ଭରମେ,
ଆଗମନ ଜାଣି ମୋର ପ୍ରଭାତର ଗଗନେ
ମୁଦଇ ନୟନ ବେନି ସରମେ ।

ତୁମେ ଲୋଡ଼ ପରପ୍ରୀତି ଧିକ୍ ମୋର ଜୀବନ
ଶତ ଧିକ୍ ମୋର ଭଲ ପାଇବା
ପ୍ରେମେ ପ୍ରତାରଣା ହାୟ, ପରିଣତି ତାହାର
ବିଫଳ ପ୍ରଣୟ ଗୀତି ଗାଇବା ।"

"ପରିହାସେ କହୁଥିଲି ରାଗିଗଲ ସତେନା"
ଓହଳାଇ ମୁହଁ କହେ କମଳ,
"ଅନ୍ୟାୟ ପରିହାସ ପରିହାସ ନୁହେଁ ତା'
ଅକ୍ଷମେ ଉପହାସ କେବଳ ।"

ସୂର୍ଯ୍ୟର ଉତ୍ତରେ ଗରବିଣୀ କମଳ
ଅଭିମାନେ କଲା ନତ ନୟନ,
ବିଦାୟର ଗୀତି ଗାଇ ସନ୍ଧ୍ୟାର ସାଗରେ
ଡୁବିଗଲା ଅଭିମାନେ ତପନ । ◻◻

## ପୁନର୍ଜନ୍ମ

ଉଠ କବି ଉଠ କବି
ଅଭିମାନେ ପଡ଼ିଛି କି ଶୋଇ
ଧରଣୀର ଧୂଳି ପରେ
ଧୂସରିତ ଶୁଭ୍ର ପରିଧାନ,
ସ୍ନେହଶୂନ୍ୟ ଶୀର୍ଣ୍ଣ ତନୁ
ଅବହେଳେ ପଡ଼ିଛି କି ଲୋଟି,
ବିପ୍ଳବର ଅଭ୍ୟୁଦୟ
ସମାଜର କ୍ରୁର ଅପମାନ ।

ଦରଦୀ କେହି କି ଥରେ
ବୁଝିଲାନି ମରମର ବ୍ୟଥା,
କେହି କି ଶୁଣିଲା ନାହିଁ
ନବୀନର କରୁଣ କାହାଣୀ,
ସେଥିଲାଗି ଅଭିମାନ,
ସେଥିଲାଗି ଏତେ ହାହାକାର,
ଶାନ୍ତ ନେତ୍ରେ ସେ ଲାଗି କି
କବିତାର ସକରୁଣ ବାଣୀ ?

କାନ୍ଦନି କାନ୍ଦନି କବି
ନ ବୁହାଅ ବୃଥା ଅଶ୍ରୁଧାର,
ତୁମେ ସ୍ରଷ୍ଟା, ସତ୍ୟଦ୍ରଷ୍ଟା,
ମାଳଞ୍ଚର ନବୀନ ଅଙ୍କୁର,
କାଲି ପରି ପ୍ରସରିବ
ତୁମେ ଯେବେ ଶାଖା ପ୍ରଶାଖାରେ
ଶୁଭିବ ତୁମରି ଡ଼ାଳେ
ପତ୍ରମାଳେ ବିହଙ୍ଗର ସୁର ।

କେତେ ନିରାଶ୍ରୟ ଆସି
ତୁମ କୋଳେ ଲଭିବେ ଆଶ୍ରୟ,
ତୁମ ଛାୟା ତଳେ ହସି
ବିକଶିବ ସ୍ୱର୍ଣ୍ଣର କରବୀ,
ଆଗାମୀ ଯୁଗର ସୂର୍ଯ୍ୟ
ଦିଗ୍‌ବଳୟ ପରେ ଚାହିଁ ଚାହିଁ
ସଙ୍କେତ ମିନତି କରେ
ଧ୍ୱନିବାକୁ ରାଗିଣୀ ଭୈରବୀ ।

'ବର୍ତ୍ତମାନ ଅନାଦରେ'
ଅଭିଶପ୍ତ ମଣୁଛ ଜୀବନ,
ତୁଚ୍ଛ କି ମଣୁଛ କବି
ତୁମର ଏ ଅଭିନବ ସୃଷ୍ଟି,
ଅନାଗତ ଶତାବ୍ଦୀର
ଶୁଭେନି କି ସ୍ୱାଗତ ଆହ୍ୱାନ,
କି ଲାଗି କରୁଛ ବୃଥା
ସଙ୍କୁଚିତ ସୀମାହୀନ ଦୃଷ୍ଟି ?

ଅସୀମ, ଅନନ୍ତ, ଶୁଦ୍ଧ,
ଅନବଦ୍ୟ, ତୁମ ଭାବଧାରା,
ପବିତ୍ର ଆଲୋକେ ଯଦି
ଯାଏ କା'ର ନୟନ ଝଲସି
ସେ ତ ନୁହେଁ ତୁମ ଭ୍ରମ
ସେ ତ ତବ ପରମ ଗୌରବ,
ଅଭିମାନ ତେଜି ଜାଗ,
ବିଶ୍ୱ ବୁକେ କୁସୁମ ବରଷି ।

ନବୀନ ସ୍ରଷ୍ଟାର ଖ୍ୟାତି
ପୁରାତନ ସୃଷ୍ଟିର ଉପରେ,
ଜନମ ତୁମର କବି
ସ୍ୱାଗତ ମୁଁ କରେ ଆଉ ଥରେ । □□

## ରୂପସୃଷ୍ଟି

ଆଖି ପରେ ମୋର ଆବରଣ ଦିଅ କାହିଁକି
ଖୋଲିବାକୁ ଦିଅ ନୟନ,
ହସ ପରେ ମୋର ଅବରୋଧ ରଚି ନାହିଁକି
ବନ୍ଧୁର କରି ଅୟନ ?

ଝରଝର ଝରି ପଡୁଥିଲା ଯେଉଁ ଝରଣା
ସୃଷ୍ଟିର ଗାଇ କାହାଣୀ
ବହିଯିବା ପଥେ ତା'ର ବିରଚିଲ ଛଳନା
ମରୁ-ଶଯ୍ୟାର ଚାହାଣି ।

ତରୁ-ମର୍ମରେ ଫୁଟୁଥିଲା ଯେଉଁ କୁସୁମ
ଆଦି ହାସ୍ୟର ସରାଗେ
ତା' ତନୁରେ ଦେଲ ଧ୍ୱଂସର ତୂଳି ବୁଲାଇ
ଶୀତ ମୃତ୍ୟୁର ପରାଗେ ।

ଧାରା ଶ୍ରାବଣର ଅସରାରେ ଝାଡ଼ି କରକା
ପଦ୍ମର ବନ ଗହନେ
ଅଗ୍ନିର ମହାଉତ୍ସବ ହସି ରଚିଲ
ଜାଗ୍ରତ ମିଛ ଶୟନେ ।

ସୃଷ୍ଟିରେ ଯାହା ରମଣୀୟ, ରୂପ, ସୁଷମା
ଅଭିଶପ୍ତ କି ସରବେ ?
ପୁଞ୍ଜିତ ଯେତେ ଦୁଃଖ, ଅଶ୍ରୁ, ବେଦନା
ସଞ୍ଚିତ ରୂପ ବିଭବେ ।

ପ୍ରଶ୍ନେ ମୋ' ହସି ଉତ୍ତର ଦିଏ ଦେବତା,
"ରୂପ ସୃଷ୍ଟିର ସପନେ
ଦେଖିଥିଲି ନୀଳ ଆକାଶରେ କଳା ବଉଦ
ଚାହେଁ ବିଦ୍ୟୁତ୍ ନୟନେ ।

ଧ୍ୱଂସର ମହାପ୍ରଳୟ ହେରି ସୂଚନା
ଗର୍ବିତ ରୂପ ବିଳାସେ
ସୁନ୍ଦର ଲାଗି ରଚିଲି ଦୁଃଖ ଯାତନା
ବିକଶିତ ଯେହ୍ନୁ ବିନାଶେ ।

ନିର୍ଝର, ତରୁ କୁସୁମ, ପଦ୍ମ ରୂପସୀ
ରୂପ ଅହମିକା କବଳେ ।
ସତ୍ୟର ପଥ ଭୁଲି ଚିର ପାଇଁ ବୁଡ଼ିଲେ
ଅପମୃତ୍ୟୁର ଅତଳେ ।

ତୋ' ନୟନ ପରେ ଆବରଣ ତେଣୁ ରଚିଛି
ହାସ୍ୟରେ ଦେଇ ଯାତନା
ମସୃଣ ପଥେ ପ୍ରତିବନ୍ଧକ ବିରଚି
ମଙ୍ଗଳ କରେ କାମନା ।

ସୁନ୍ଦର ରହୁ ଚିରସୁନ୍ଦର ଅମଳ
ଅକଳଙ୍କର ଗରବେ
ଏ ମୋ ସୃଷ୍ଟିରେ ଏତିକି ମୋହର ବାସନା
ସତ୍ୟର ରୂପ ବିଭବେ" ।□□

## ମୁସାଫିର

ନବାଗତା ଭ୍ରମୁଥିଲେ ସ୍ୱଚ୍ଛନ୍ଦରେ ନଗରୀର ମଧ୍ୟେ ପରିଚୟହୀନା
ନିର୍ଲିପ୍ତ ମୁଁ ବେଶ୍ ଥିଲି ତେବେ,
ସ୍ୱପ୍ନଭରା ସୌନ୍ଦର୍ଯ୍ୟ ମୁଁ ଉପଲବ୍ଧି କରୁଥିଲି ଖୁବ୍,
ଚଞ୍ଚଳ ସେ କୋଳାହଳ ତଳେ
ଲଭୁଥିଲି ଜୀଇଁ ରହିବାର ଯୋଗ୍ୟ ଉପାଦାନ
ପ୍ରାଣପୂର୍ତ୍ତି ଥିଲା ତହିଁ ।

ମାତ୍ର ଠିକ୍ ଆତ୍ମୀୟତା ପରେ
ସହସା ତମସା ଆସି କ୍ଷୁବ୍ଧ କଲା ମୋତେ,
ମାନ, ଅଭିମାନ ଆଉ ଅପମାନ ସଂଶୟ ଦୋଳାରେ
ଆନ୍ଦୋଳିତ ହେଲା ମନ,
ଆକୁଞ୍ଚନ-ପ୍ରସାରଣେ ଝରିଗଲା ଶାନ୍ତି,
ହଜିଗଲା ତୃପ୍ତି
ତୁଟିଗଲା ନୟନର ଦୀପ୍ତି ।

ଅବାକ୍ ନୟନେ ଚାହିଁ ଦେଖିଲି ବିସ୍ମୟେ
ନଗରୀର କୃତ୍ରିମ ସୁଷମା
ଅନ୍ତହୀନ ସଭ୍ୟତାର ଚୂଡ଼ାନ୍ତ ପ୍ରକାଶ
ଇନ୍ଦ୍ରଜାଲ ଭାଜି ଭାଜି ପଡ଼େ,
ବନ୍ଦିନୀ ମୁଁ ଆସକ୍ତିର ଇସ୍ପାତ ନିଗଡ଼େ ।

ସ୍ୱାଧୀନତା ଅପସୃତ,
ବ୍ୟକ୍ତିତ୍ୱ ଲଭିଛି ମୃତ୍ୟୁ ହଜିଛି ଅମୃତ,
ମୁମୂର୍ଷୁ ସଙ୍ଗୀତେ
ସ୍ପଷ୍ଟ ଅଭିମତ ହାୟ ନୀରବେ ଢୁଳାଏ
ବିସ୍ମରି ବିସ୍ମୃତି ତା'ର,
ଏ ତ ଆତ୍ମହତ୍ୟା ।
ଲୋଡ଼ା ନାହିଁ ଲୋଡ଼ା ନାହିଁ ମୋର ପରିଚୟ ତୀବ୍ର ଆତ୍ମୀୟତା,
ଲୋଡ଼େନା ଆସକ୍ତି-ଭିଜା ଆନନ୍ଦର ଚରମ ମତ୍ତତା,
ପରିଣତି ଯା'ର
ଫୁଲି ଉଠି ମୃତ୍ୟୁ ଲଭିବାର,
ଚାହେଁନା ଅଜସ୍ର ଛନ୍ଦର ସୃଷ୍ଟି,
ମୁଁ ଚାହେଁ ନଗରୀ ପଥେ ନିରଙ୍କୁଶ ଭ୍ରମଣ ଟିକିଏ
ବିସ୍ମୟାନନ୍ଦର ନେଇ ଅନାସକ୍ତ ଦ୍ୱିଧାହୀନ ଦୃଷ୍ଟି ।  □□

## ଶ୍ରାବଣ ଆକାଶରେ ବଜ୍ର ଗରଜନ

ଶ୍ରାବଣ ଆକାଶରେ ବଜ୍ର ଗରଜନ,
ସମୀର ସଙ୍ଗୀତ ରୁଦ୍ର ସନସନ,
ବାଦଲ ଝର ଝର,
ଚପଳା, ଚଞ୍ଚଳ,
ପିଆସୀ ନୟନ ମୋ' ଆକୁଳେ ଛନଛନ,
ଶ୍ରାବଣ ଆକାଶରେ ବଜ୍ର ଗରଜନ ।

ମୁଗ୍ଧ ଅସରାର ଲୁବ୍ଧ ପରଶରେ
ଶିହରି ଉଠେ ତନୁ ଚପଳା ଚମକରେ,
ଆମ୍ର ତରୁଶାଖେ
ପ୍ରେୟସୀ ପାଖେ ପାଖେ,
କାନ୍ତ ବିହଙ୍ଗଟି କମ୍ପେ ଥରଥରେ
ମୁଗ୍ଧ ଅସରାର ଲୁବ୍ଧ ପରଶରେ ।

ଆଜି ଏ ଅନ୍ଧାରେ ଆକାଶେ ଚାହିଁ ଚାହିଁ
ତୁମରି ଆଗମନୀ କବିତା ଗାଇ ଗାଇ
ବ୍ୟାକୁଳ ଅନ୍ତରେ
ବିରହ ଛନ୍ଦରେ
ତଥାପି ତୁମର ଗୋ ଦେଖା ମୁଁ ପାଇ ନାହିଁ,
ଆଜି ଏ ଅନ୍ଧାରେ ଆକାଶେ ଚାହିଁ ଚାହିଁ ।
ତମସାଘେରା ପୁରେ ତନ୍ଦ୍ରେ ଏକାକିନୀ
ତନ୍ଦ୍ରାହୀନ ଆଖି ତୃଷିତା ବିରହିଣୀ,
ରାତ୍ରି ଆସେ ସରି
ବର୍ଷା ସମ ଝରି,
ବାଦଲ ଦରଶନ ପାଏନା ଚାତକିନୀ,
ତମସା-ଘେରା ପୁରେ ତନ୍ଦ୍ରେ ଏକାକିନୀ ।

ଏସନ ଯାମିନୀରେ ତୁମରି ଆଗମନ
ବିଜନ ପୁରେ ପ୍ରୀତି-କୁସୁମ ବରଷଣ
ମିଥ୍ୟା ହେଲା ଶେଷେ,
ମଧୁର ପରିବେଶେ
ଶୁଭିଲାନି କି ପୁରେ ନୂପୁର ନିକ୍ୱଣ,
ମିଳନ ରାତ୍ରିରେ ବିରହ ଗୁଞ୍ଜନ ।

ଦେଖା ନ ଦେବା ଯଦି ଥିଲା ଗୋ ଅଭିଳାଷ
କି ଲାଗି ମୁରଲୀରେ ତୋଳିଲ ପରିହାସ,
"ଯିବି ଗୋ ଯିବି କାଲି

ପ୍ରଣୟ-ଦୀପ ଜାଳି
ଥିବ ମୋ' ପଥ ଚାହିଁ ପ୍ରୀତିର ଉଚ୍ଛ୍ୱାସ,
ସରାଗେ ମନେ ପୋଷି ମିଳନ ବିଶ୍ୱାସ ।"

ଶ୍ରାବଣ ଯାମିନୀ ଏ ଆସୁଛି ସରି ସରି,
ଏତିକି ବେଳେ ଶୁଭେ ପବନେ ଥରି ଥରି
ମୁରଲୀ ବାଜେ କା'ର
ମୁଗ୍‌ଧେ ବାରବାର,
ଚପଳା ଲିଭିଆସେ ବାଦଲେ ଜଳି ଜଳି,
ଶ୍ରାବଣ ଯାମିନୀ ଏ ଆସୁଛି ସରି ସରି ।

ଏ ଶେଷ ରଜନୀରେ କି ଖେଳ ଖେଳିଲ ହେ,
ଆସି ତ ଆସିଲନି ଶ୍ରାବଣ ସମାରୋହେ,
ମୁରଲୀ ତାନ ଖାଲି
ଚିତ୍ତ ପରେ ଢାଳି
ଚଳିଲ ପୁଣି ଆନ ପ୍ରୀତିର ଅବଗାହେ,
ଆସି ତ ଆସିଲିନି ଶ୍ରାବଣ ସମାରୋହେ ।
ଏଇ ଯେ ଦୂରେ ଥାଇ ହୃଦୟ ଦିଆନିଆ
ଛୁଉଁ ନ ଛୁଉଁ ପୁଣି ଦୂରେଇ ହେବା ଠିଆ,
ନିକଟେ ଥରେ ଆସି
ଦୂରକୁ ଯିବା ଭାସି
କାମନାହୀନ କି ଏ ପ୍ରଣୟ ପରକୀୟା,
ସୁଦୂର ସଂଗୀତେ ହୃଦୟ ଦିଆନିଆ । ◻◻

## ଚଲାପଥ

ଖୋଲି ଉଡ଼ି ବୁଲେ ଧୂଳିର କବରୀ ସରଣୀର,
କାନେ କାନେ ଶୁଭେ କଣ୍ଠ ମଧୁର ଧରଣୀର,
ଝରି ଝରି ପଡ଼େ କୁସୁମର ଝର,
ତରୁ ପଲ୍ଲବ କରେ ମର୍ମର,

ସୁରଧୂନୀ ଯାଏ ବହି କଳକଳ,
ପ୍ରିୟ ସଙ୍ଗିନୀ ଅବନୀର,
ଖୋଲି ଉଡ଼ିଯାଏ ଧୂଳିର କବରୀ ସରଣୀର ।

ଏକାକିନୀ ଆଜି ପଥେ ଚାଲିବାରେ ଗଉରବ
ମୁଗ୍‌ଧେ ପରଶେ ବାରେ ବାରେ ପଥ ସଉରଭ,
ଇଙ୍ଗିତେ କହେ ଅତୀତ କାହାଣୀ,
ବର୍ତ୍ତମାନର ମଧୁର ଚାହାଣି,
ଭବିତବ୍ୟର ନବନୀତ ବାଣୀ,
ସୀମାହୀନ ଯା'ର ବଇଭବ,
ଏକାକିନୀ ଆଜି ପଥ ଚାଲିବାରେ ଗଉରବ ।

ଚଲାପଥ ପରେ କେତେ ହସ, କେତେ ଅଭିମାନ,
କମ୍ପନ ବୁକେ ଉଭଳ, ମାନ, ଅପମାନ,
କେତେ ସୁନ୍ଦର, କେତେ ଲୋଭନୀୟ,
ସ୍ନିଗ୍ଧ ସୁଷମା, କେତେ ରମଣୀୟ,
ଶୃଙ୍ଖଳ ମୁଖ କେତେ ନମନୀୟ,
ପ୍ରଙ୍କାର ପଥେ ଅଭିଯାନ,
ପ୍ରଣତିର ଶେଷେ ସେଇ ମାନ ପୁଣି ଅଭିମାନ ।

ମୋତେ ପଛେ ରଖି କିଏ ସେ ଯାଉଛି ଆଗେଇରେ,
ନୂତନ ସୂର୍ଯ୍ୟ ଦଳ ପଛେ ପୁଣି ଜାଗଇରେ,
ସମ୍ମୁଖ ଗୀତି ପବନେ ମିଳାଏ,
ପଶ୍ଚାତ୍ ଗୀତି ସମ୍ମୁଖେ ଧାଏଁ,
ପ୍ରତିଯୋଗିତାରେ କିଏ କା'ରେ ଚାହେଁ-
କରୁଣା କେ କା'ର ମାଗଇରେ,
ମୋତେ ପଛେ ରଖି ପଶ୍ଚାତ୍ ଯାଏ ଆଗେଇରେ ।

ପରବତ ତଳେ, ତଟିନୀରେ ତଟେ ମିଳିବାର-
ଆତ୍ମୀୟ ଜନେ, ଦୁର୍ବାର ଆଶା ଚୂର୍‌ମାର ।

ଶଇଳ ଚରଣେ ଭଗ୍ନ କୁଟୀର,
ନିର୍ଜନ ଘୋର ତଟିନୀର ତୀର,
ହାହାକାରେ ଝରେ ନୟନର ନୀର,
ଛାଇ ମୋର ଦେଖେ ଥରିବାର,
ବ୍ୟର୍ଥ ମୋ' ଆଶା-ବର୍ତ୍ତିକା ହାୟ ଜଳିବାର ।

ରିକ୍ତ ଜୀବନେ ବତାସେ ମୃତ୍ୟୁ ଆସେନିରେ,
ଲୁପ୍ତ ଭରସା ଅଶ୍ରୁ ସଲିଳେ ଭାସେନିରେ,
ଅନ୍ଧାର କୋଳେ ବିଜୁଳି ଚମକେ,
ଆଶା ସଞ୍ଚାରେ ନୟନ ପଲକେ,
ଦୁର୍ଦ୍ଦିନ ଝଡ଼ ଅଶନି ଚମକେ,
ବୁକୁ ଉଚ୍ଛ୍ୱାସ ନାଶେନିରେ,
ରିକ୍ତ ଜୀବନେ ବତାସେ ମୃତ୍ୟୁ ଆସେନିରେ ।

କାହା ଲାଗି ତେବେ ମିଥ୍ୟା ଏ ମାନ ଅଭିମାନ ?
କାହା ଲାଗି ଏତେ ସଙ୍ଗୀତ, ଏତେ କଳତାନ ?
କାହା ଲାଗି ମରୁକୁସୁମ ରଚନା,
ପ୍ରୀତି ଆୟୋଜନ, ପୂଜା ଅର୍ଚ୍ଚନା
ପ୍ରତିଦାନେ ଖାଲି ଛଳ, ବଞ୍ଚନା,
ଆକର୍ଷଣର ଅପମାନ,
କାହା ଲାଗି ତେବେ ମିଥ୍ୟା ଏ ମାନ, ଅଭିମାନ ।

ଧୂଳିର କୁଟୀର ବିରଚିଛି ଆଜି ଧରଣୀରେ,
ନିର୍ଜନ ପଥେ ଲହରୀ ତୋଳେ ମୁଁ ମୁରଲୀରେ,
ଲୋଡ଼ା ନାହିଁ ମୋର ପଥଚଲା ସାଥୀ,
ଲୋଡ଼େ ନା ଭିକ୍ଷା ଦୀନ ହାତ ପାତି,
ନଇଁ ଆସୁ ପଛେ ଅନ୍ଧାର ରାତି
ନିଃସ୍ୱ ଜୀବନ-ସରଣୀରେ,
ଧୂଳିର କୁଟୀର ବିରଚିଲି ତେଣୁ ଧରଣୀରେ । ◻◻

## ଅମୃତ

ଅସମୟେ ଯେଉଁ ପୁଷ୍ପ ବୃନ୍ତୁ ପଡ଼େ ଝଡ଼ି
ଅଫୁଟନ୍ତ ତୁମେ ତା'ରେ କି ଦେବ ସାନ୍ତ୍ୱନା ?
ଜୀବନର ନଦୀ ହଜେ ମୃତ୍ୟୁର ସାଗରେ
ଚରିତାର୍ଥ ନ କରି ତା' ଅଜସ୍ର କାମନା ।

କି ଭାଷାରେ ତୁମେ ତା'ରେ ଦେବ ଆଶ୍ୱାସନା
ଜାଣେ ନା, କିନ୍ତୁ ମୁଁ ତା'ରେ କି କହିବି ଜାଣ ?
ନ ଫୁଟି ବିତରି ଗନ୍ଧ ଅସମୟେ ଝରି
ମରଣରେ ରଖିଗଲା ଜୀବନର ଟାଣ ।

ବିକଶି ସୌରଭ ଭରି ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ
ପୁଷ୍ପର ବନାନୀ ତୋଳି ଛନ୍ଦ ମୁହୂର୍ତ୍ତର
କୋଟି ଚିତ୍ତ ତଳେ ଲିଭେ ବିସ୍ମୃତି ଗରଭେ,
ପରିପୂର୍ଣ୍ଣ ଜୀବନରେ ମୃତ୍ୟୁର ଉତ୍ତର ।

ଶୈଶବ ସେ ହଜି ଆଜି ଲଭିଛି ଆସ୍ଥାନ
କୋଟି ସ୍ମୃତି ସଭାତଳେ, କେତେ ଆଶ୍ୱାସନା,
ଅନାଗତ ସୌରଭେ ତା' ଅନନ୍ତ ବିଶ୍ୱାସ,
ମରଣେ ତା' ନାହିଁ ତେଣୁ ମୃତ୍ୟୁର ଯାତନା ।

ଅସମୟେ ଝରି ସେ ତ ମୃତ୍ୟୁଠାରୁ ବଡ଼,
ବ୍ୟାପ୍ତ ଚରାଚରେ ଭାଙ୍ଗି ଜୀବନ ନିଗଡ଼ । ◻◻

## ହେ ନୂତନ

ତୁମ ବନ୍ଦନା ଗାଏ ହେ ନୂତନ,
ତୁମ ବନ୍ଦନା ଗାଏ,
ଶାଦ୍ୱଳ ନବ ଦୂର୍ବାଦଳର ଶ୍ୟାମଳିମା ତୁମ

ଅଙ୍ଗେ ଅଙ୍ଗେ
ଉତ୍ସବେ ଅବଗାହେ,
ତୁମ ବନ୍ଦନା ଗାଏ ହେ ନୂତନ, ତୁମ ବନ୍ଦନା ଗାଏ ।

ପୁରାତନ ଯେତେ ଜରା, କଳଙ୍କ ଅତୀତରେ ଗଲା ଲୁଚି,
ଶତାବ୍ଦୀ ଆଜି ହରାଇଛି ତା'ର ଆସ୍ୱାଦ ଅଭିରୁଚି,
ସେ ଖାଲି ଚାହୁଁଛି ସମ୍ମୁଖ ଗାନ ବିସ୍ମୟଭରା ସୁରେ
ନିକଟର ଯେତେ ଉତ୍ସାହ ସେତ ଉଦ୍‌ବେଗହୀନ ଦୃଷ୍ଟି ତାହାର
ଦୂରେ ବହୁଦୂରେ ରହସ୍ୟମୟ ପୁରେ ।

ପ୍ରତି ପ୍ରଭାତରେ ପ୍ରତି ଅରୁଣିମା
ଦୂର ଆକାଶର ନିତ୍ୟ ନୀଳିମା
ଛୁଇଁ ଛୁଇଁ ତୁମ ତନୁର ତନିମା
ପ୍ରାଣେ ପ୍ରାଣେ ମୋର ଗୋପନେ ଗୋପନେ
ତୁମ ଆଗମନୀ ରହସ୍ୟ ବୀଣା ବାଏ,
ତୁମ ବନ୍ଦନା ଗାଏ ହେ ନୂତନ, ତୁମ ବନ୍ଦନା ଗାଏ ।

ଆବରଣ ତବ ଉନ୍ମୋଚନ କି କରିବା ନୂତନ ଆଜି ?
କୌତୂହଳରେ କମ୍ପିତ ବୁକୁ କୌତୁକ ରୂପରାଜି,
ଶଙ୍କା ଉପୁଜେ ଶ୍ୟାମଳିମା ତବ ନିଃଶେଷ ହେବ ସତେ ?
ଉତ୍କଣ୍ଠାର ଆବେଦନ ଶତ ନିଷ୍ଫଳ ମରୁପଥେ,
କିଏ କହେ ମୋରେ, "ନାହିଁ ଆରେ ନାହିଁ,
ନୂତନର ସୁରେ ଅବସାଦ କାହିଁ ?
ନିତି ପ୍ରଭାତରେ ନବୀନ ସୂର୍ଯ୍ୟ କରେ ଅବଗାହି
ରାତ୍ରି ଜଡ଼ତା ଯାଏ,"
ଉତ୍ତର ଲଭି ପ୍ରାଣ ପୂର୍ତ୍ତିରେ
ତୁମ ବନ୍ଦନା ଗାଏ ହେ ନୂତନ, ତୁମ ବନ୍ଦନା ଗାଏ ।

ଊର୍ଦ୍ଧ୍ୱେ, ନିମ୍ନେ, ଦିଗ ଦିଗନ୍ତେ ତୁମରି ସ୍ନିଗ୍ଧ ଛବି,
ସୁପ୍ତରେ କରେ ପ୍ରୀତି ଉନ୍ମାଦ ଅକବିରେ କରେ କବି,

ଶିଳ୍ପୀର ତୂଳୀ ରସ ଉଲ୍ଲାସେ ଚଞ୍ଚଳ ହୋଇ ଉଠେ,
ବିଜ୍ଞାନ ଜଡ଼ ଗବେଷଣାଗାରେ ତୁମ ଦର୍ଶନେ ଅଧରେ ଅଧରେ
ଅବାକ୍ ତଥ୍ୟ ଫୁଟେ ।

ତପ୍ତ ମରୁର ବୁକେ ଝରିପଡ଼େ ନବ ମାଳଞ୍ଚ ହାସ,
ଘଞ୍ଚ ବନାନୀ ମୁକ୍ତିରେ ନାଚେ ମହାନଗରୀର ରାସ,
ଅଭେଦ୍ୟ ଗିରି ବୁକୁ ଚିରିହୋଇ ଖୋଲିଯାଏ ରାଜପଥ,
ଚନ୍ଦ୍ରଲୋକକୁ ଉଡ଼ି ଉଡ଼ି ଯାଏ ଧରା ପୁଷ୍ପକ ରଥ,
ଆଜି
ଆବିଷ୍କାର ଓ ଉଦ୍‌ଭାବନର ବିପୁଳ ଉନ୍ନୟନ,
ବିଦ୍ୟୁତ୍ ଗତି ଦୁନିଆ ତୁମକୁ କେତେ କେତେ ରୂପେ
କରେନା ବିଶ୍ଳେଷଣ ।

ନବ ନବ ରୂପେ, ପ୍ରତି ମୁହୂର୍ତ୍ତେ, ଧରା ଅଙ୍ଗନେ
ଭାବେ ଉନ୍ମାଦ ତୃଷିତ ମାନବ ନିତ୍ୟ ତୁମରେ ଚାହେଁ,
ତେଣୁ,
ହେ ମୋ ପ୍ରିୟତମ, ଚିର ଶାଦ୍‌ବଳ, ଚିର ସୁନ୍ଦର
ତୁମ ବନ୍ଦନା ଗାଏ
ହେ ନୂତନ,
ତୁମ ବନ୍ଦନା ଗାଏ । □□

## ଗୁରୁ ଓ ଶିଷ୍ୟ

ଗୁରୁଗିରୀ କରି କରି ଅର୍ଜିଛି ମୁଁ ଯେଉଁ ସର୍ବନାଶ
ଶିଷ୍ୟରେ ତା' ବିସର୍ଜିବି ନତ କରି ଦର୍ପିତ ମୋ ଶିର,
ନୟନରୁ ପୋଛି ଦେଇ ଔଦ୍ଧତ୍ୟର ପ୍ରଦୀପ୍ତ ଚାହାଣି
ଝରାଇ କୋମଳତାର ନିଷ୍କପଟ କରୁଣାର ନୀର,

ପ୍ରତ୍ୟେକକୁ ଦେଖିଅଛି ଛୋଟ କରି, ନିଜ ଅହମିକା
ନିଜରେ କରିଛି ଧ୍ୱଂସ, ଆନ ଶିରୀ ଲାଗିଅଛି ବିଷ,

ଶାଣିତ ତର୍କରେ ଅନ୍ୟ ଗୁଣର ମୁଁ ଲୋଡ଼ିଛି ମରଣ,
ଈର୍ଷାନଳେ ଜଳି ଜଳି ଜୀବନ୍ମୃତ ରହେ ଅହର୍ନିଶ ।

ହାୟରେ ଗୁରୁର ଗର୍ବ, ଧିକ୍ ସେହି ପ୍ରଣତି ସମ୍ମାନ,
ଧିକ୍ ସେ ଶ୍ରବଣ ଯେହୁ ଶୁଣେ ନିତି ନିଜର ବନ୍ଦନା,
ଅନ୍ତରେ ବେଲୁନ୍ ଫୁଲେ ଫାଟିଯିବା ପରିଣତି ଯା'ର,
ନକଲ ଉଲ୍ଲାସ, ବୁକେ ନିଃସ୍ୱ ହେବା ଅସଲ ଯାତନା ।

ଏତେ ବଡ଼ ଫାଙ୍କି ହାୟ ଜୀବନରେ ଅଛି ଆଉ କିଛି ?
ଖାଲି, "ଶିଖ, ଗାଇବି ମୁଁ ଉପଦେଶ ତୁମେ ଶୁଣିଯାଅ,
ସମାଲୋଚନାରେ କିଛି ସଂଶୋଧନ ନ ଆଣି ନୀରବେ
ମୁଁ ଯାହା ଦେଉଛି ନେଇ ସେହି ତୈଳେ ପ୍ରଦୀପ ଜଳାଅ ।"

ଶିଷ୍ୟର ପ୍ରଦୀପ ଜଳେ, ଗୁରୁ ରହେ ଘନ ଅନ୍ଧକାରେ,
ଆତ୍ମମ୍ଭରିତାର ଜ୍ୱାଳା, ସାଧନାର କ୍ରମ ଅବନତି,
ମୃତ୍ୟୁର ଦଂଶନ ତୀବ୍ର ଜାଗ୍ରତରେ ସୁଷୁପ୍ତିର ଦଶା,
ଗୁରୁର ଅହଂ ସୃଷ୍ଟି ଲିଭେ କ୍ରମେ ଲଭି ଅଧୋଗତି ।

ମୁଁ ଆଜି ନଇଁଛି ତେଣୁ, ଶୂନ୍ୟ ହୃଦ, ମୁଖେ ଆସ୍ଫାଳନ,
ନୂତନ ପାଦୁକା କ୍ଳେଶ ଅବ୍ୟକ୍ତ ମୋ, ଅଭିନୟ କରେ,
ସ୍ୱଚ୍ଛନ୍ଦେ ବିଚରିବାର, ଛଳନାର ଚୂଡ଼ାନ୍ତ ପ୍ରକାଶ,
ପରିପୂର୍ଣ୍ଣତାର ଫଲ୍‌ଗୁ ପୁଣ୍ୟତୋୟା ଶିଷ୍ୟର ଅନ୍ତରେ ।

ଗୁରୁର ଦର୍ପିତ ଦାତା ମୃତ୍ୟୁ ଲଭୁ, ଶିଷ୍ୟର ଗ୍ରହୀତା,
ଅନ୍ତରେ ମୋ ଜନ୍ମ ନେଉ ବିନୟର ନମ୍ର ରଚୟିତା । ▫▫

## ମା'

ବୈଶାଖୁ ଝରି ଶ୍ରାବଣ ବରଷା ଶରତେ ନ ହେଲା ଶେଷ,
ଆକାଶ ଏବେ ବି ପାଲଟିଲା ନାହିଁ ଘନ ଅନ୍ଧାର ବେଶ,

ଧରଣୀରେ ପାଣି ହାବୁକା ମାରୁଛି ଚିବୁକ ତା' ଲୁହେ ଓଦା,
ମହାମାରୀ ଯାଏ ପ୍ରସରି, ବିତରେ ବନ୍ୟା ମୃତ୍ୟୁ ସୁଧା,
ଶରତ ଶସ୍ୟ ବିଲେ ମାରେ ହାଇ ଅବଗାହି ଆଖି ଜଳେ,
ଏତିକି ବେଳେ ମା ସିଂହବାହିନୀ ଆସିଲୁ ଏ ଧରା ପରେ ।

ଆସିବା ବେଳେ ତୁ ପଥ ପାଖେ ମାତ ଦେଖୁଛୁଟି ଖୋଲି ଆଖି
ମୃତ୍ୟୁ କେସନେ ମଣିଷ ଜୀବନେ ଉତ୍ସବେ ଯାଏ ଡ଼ାକି,
ଶାରଦୀୟ ଉଷା ମାନବରେ କରି ନିଷ୍ଠୁର ଉପହାସ ।
ଗୋଧୂଳିରେ କରେ ଇଙ୍ଗିତ ରଚିବାକୁ ରକ୍ତର ରାସ,
ମଣିଷ ତ ହାୟ ଦେଖି ପାରୁନାହିଁ ମଣିଷର ସୁଖ ଶିରୀ,
ନିର୍ବିକାରେ ସେ ପିଇଯାଏ ଲହୁ ମଣିଷର ବୁକୁ ଚିରି,
ଭାଇ ଭାଇ ଡ଼ାକ ଶ୍ରବଣେ ବିନ୍ଧେ ଲୌହ ଶଳାକା ସମ,
ମଣିଷର ଲାଗି ମଣିଷ ହୋଇଛି ନିଷ୍ଠୁର ନିର୍ମମ,
ସେନେହ, ସୋହାଗ, ଶରଧା, ପୀରତି ସକଳ ହୋଇଛି ମିଛ,
ମଣିଷ ତ ଆଜି ମଣିଷ ଦାନବ, ହୀନ, ବର୍ବର, ନୀଚ ।

ଶକ୍ତିଦାୟିନୀ, ଭକ୍ତିଦାୟିନୀ, ମୁକ୍ତିଦାୟିନୀ ମା,
ଉତ୍ସବେ ଆଜି ଦଶଭୁଜ ଟୋଳି ଚିତ୍କାରି ଥରେ ଗା,
"ଜାଗରେ, ଜାଗରେ ନିଦ୍ରିତ ଆରେ ଦୁଃସ୍ଥ ଯେତେ ଯେ ଅଛ,
ଚିତ୍ତ ପୁଲକେ ଅବଲୋକ ମୋର ରଣ-ରଙ୍ଗିନୀ ବେଶ,
ବନ୍ୟା ମୁଁ ଝଡ଼, ବରଷା ପ୍ରଳୟ, ମୃତ୍ୟୁ ମୁଁ ମହାମାରୀ,
ଅନ୍ନହୀନର ଅଗ୍ନିକ୍ଷୁଧା ମୁଁ, ଘାତକର ତରବାରୀ,

କଣ୍ଠେ କଣ୍ଠେ ସାନ୍ତ୍ୱନା ମୁଁ ଯେ, ଭର୍ତ୍ସନା ଭ୍ରୂକୁଟୀର,
ଅନୁରାଗ ମୁହିଁ ବିରାଗ, ପୁଣ୍ୟ ସତ୍ୟ, ମିଥ୍ୟା ଗୀର,
ବିବେକ, ମନର ଜନମଦାତ୍ରୀ ଅନ୍ତରେ ଥାଏ ଲୁଚି,
ସ୍ୱରୂପ ମୋ ହେରିବାରେ ଦେଖୁନାହିଁ କାହାରି ତ ଅଭିରୁଚି,
ସୂକ୍ଷ୍ମରେ ଯେଣୁ ଅନ୍ଧ ସରବେ ସ୍ଥୁଳେ ମୋର ପରକାଶ,
ନିଜ ପ୍ରକୃତି କର ଦରଶନ ମୁଁ ତୋର ଚିତ୍ତାକାଶ ।

ଘନ ଅନ୍ଧାରେ ଆବୃତ ଆଉ ରଖ ନାହିଁ ନିଜ ମନ,
ସତ୍ୟରେ ରଚି ବିଳାସ କର ତୁ ମିଥ୍ୟାରେ ବର୍ଜନ,
ଉଦୟାକାଶର ସୂର୍ଯ୍ୟର ତେଜେ ଉଜ୍ଜ୍ୱଳ ହୁଅ ଆଜି,
ଜଡ଼ତା, ମୂଢ଼ତା, ମିଥ୍ୟା ମମତା, ଅଜ୍ଞାନ ପଡୁ ଭାଜି,
ଜ୍ଞାନାଲୋକ ପରକାଶେ ପ୍ରକୃତି ବିକୃତି ଯାଉ ଭୁଲି,
ଶିରେ ନେବ ତୋଳି ଚରଣୁ ମୋହର ଶାନ୍ତି ସ୍ୱର୍ଣ୍ଣଧୂଳି,
ଶାନ୍ତିଦାୟିନୀ, ବିତରୁଛି ମୁହିଁ ବିଶ୍ୱରେ ବରାଭୟ,
ବିଶ୍ୱରେ ହେବ ମାନବିକତାର ପରମ ଅଭ୍ୟୁଦୟ ।" □□

## ମୁଁ ଚାହେଁ

ମୁଁ ମୋର ଜୀବନର ପ୍ରତି ମୁହୂର୍ତ୍ତକୁ ଅମୃତମୟ କରିବାକୁ ଚାହେଁ,
ମୁଁ ପ୍ରତିକ୍ଷଣର ନିରଳସ ଉତ୍ସବରେ ଅଜସ୍ର କର୍ମର ବ୍ୟାପ୍ତିରେ
ନିଜକୁ ନିମଜ୍ଜିତ ରଖିବାକୁ ଚାହେଁ ।
କର୍ମହୀନତାର ମୃତ୍ୟୁ ଗର୍ଭରୁ ନିଜକୁ ବଞ୍ଚାଇ
ଅବସାଦର ଅସହ୍ୟ ଯନ୍ତ୍ରଣାରୁ ନିଜକୁ ରକ୍ଷାକରି
ପ୍ରାଣପୁଷ୍ପକୁ ଚିର ପ୍ରସ୍ଫୁଟିତ ରଖି ତା'ର ସୌରଭରେ
ମୁଁ ନିତ୍ୟ ବିମୋହିତ ହେବାକୁ ଚାହେଁ ।

ମୁଁ ଜାଣେ, ଧରିତ୍ରୀର ଇନ୍ଦ୍ରଧନୁର ଇନ୍ଦ୍ରଜାଲରେ
କ୍ଷୟିଷ୍ଣୁ ତୃପ୍ତି ଅଛି,
ମୁଁ ଜାଣେ, ଏ ବସୁଧାର ବନ୍ଧୁତ୍ୱର ଅନ୍ତର୍ନିହିତ
ସତ୍ୟ ହେଉଛି ବିଦ୍ୱେଷ,
ବସ୍ତୁର ମୂହୁର୍ମୁହୁଃ ଦର୍ଶନ ଓ ସ୍ପର୍ଶରେ ବର୍ଦ୍ଧିଷ୍ଣୁ ତୃଷାର
ଉନ୍ମତ୍ତତା ଅଛି,
କିନ୍ତୁ ତା'ର ପରିସମାପ୍ତି କାହିଁ ?

ସଙ୍ଗହୀନ ଜୀବନର ଅନ୍ତରାଳରେ ଅଛି ପ୍ରଶାନ୍ତି,
ମହାଶୂନ୍ୟତାର ଗର୍ଭରେ ରହିଛି ପରିପୂର୍ଣ୍ଣତା,
ଗତିଶୀଳତା ମଧ୍ୟରେ ସ୍ଥୈର୍ଯ୍ୟର ପ୍ରାଚୁର୍ଯ୍ୟ,

ଅଧୀରତାର ଉଲ୍ଲୋଳରେ ଧୈର୍ଯ୍ୟର ପ୍ରସ୍ତୁତି
ନୀରନ୍ଧ୍ର ତମସା ଭେଦକରି ଉଦୟାଚଳର ସୂର୍ଯ୍ୟକୁ ସ୍ପର୍ଶକରେ ।

ତେଣୁ,
ନିଜ ଗର୍ଭରେ ନିଜର ସମାଧି ରଚି
ନିର୍ଲିପ୍ତତାର ଆନନ୍ଦର ପ୍ରାଣ ପ୍ରାଚୁର୍ଯ୍ୟରେ
ବେଗବାନ ଜୀବନର ପ୍ରତି ମୁହୂର୍ତ୍ତକୁ ମୁଁ ସଂଗୀତମୟ କରିବାକୁ ଚାହେଁ । □□

## କଟାକ୍ଷ

ଆଜି ଯାଏ ଥିଲି ଲୁଚି ଆବରଣ ତଳେ,
ଇଚ୍ଛା ଜାଗିଲା ଅବଗୁଣ୍ଠନ ତଳୁ ମୁଁ ଚାହିଁଲି ଥରେ ।
ସହସା କି ହେଲା ସୂର୍ଯ୍ୟ ଚମକି
ଆସିଲା ନିକଟେ ମୋର
ସବୁ ବନ୍ଧନ ବେଷ୍ଟନୀ ହାଣି
ହୋଇ ଉଜ୍ଜ୍ୱଳତର ।
ଧରଣୀ ଚକିତେ ଶିହରି ଉଠିଲା,
ନୀଳ ପର୍ବତମାଳା
ସ୍ୱାଗତ ଗୀତିକା ଗାଇ ବନ୍ଦିଲେ
ଶୁଭ୍ର ତଟିନୀ ଧାରା ।
ଆକାଶ ଉର୍ଦ୍ଧ୍ୱୁ ଖସିଲା ନିମ୍ନେ
ରଞ୍ଜିତ କରି ତନୁ
ଗୋଧୂଳି, ସନ୍ଧ୍ୟା ଚଞ୍ଚଳ ହେଲେ,
ଉଜ୍ଜ୍ୱଳ ଉପବନୁ
ଉଷା ସଙ୍ଗତେ ଗନ୍ଧ କୁସୁମେ
ବନ୍ଦନା ଗାଇ ଗାଇ
ଅଭିନନ୍ଦନ ଜଣାଇଲେ ରୂପ-
ସାଗରେ ମୋ' ଅବଗାହି ।

ଚଇତାଳି ବାଆ ଚନ୍ଦ୍ରରେ ମିଳି
ଜ୍ୟୋତ୍ସ୍ନାର ଉପହାରେ
ଅଞ୍ଜଳି ଭରି ଉଭା ହେଲା ମୋର
ସ୍ୱର୍ଣ୍ଣ ସୁଷମା ଧାରେ ।
ଶ୍ରାବଣର ମେଘ ଡ଼ମ୍ବରୁ ବାଇ
ବଜ୍ରର ଘନ ଘନ
ବିଦ୍ୟୁତ୍ ତାଳେ- ତାଳେ ବିରଚିଲା
ତାଣ୍ଡବ ଅନୁପମ ।
ଘନ ତମିସ୍ରା ଅଭିସାର ରଚି
କାନ୍ତ ଗୀତିକା ଗାଇ
କଳ୍ପନା ସୁରେ କୁଞ୍ଜ ଦୁଆରେ
ମୁଗ୍‌ଧେ ରହିଲା ଚାହିଁ,
ପାରାବାର ତୋଳି ଉର୍ମିର ବାହୁ
ଗମ୍ଭୀର ଗରଜନେ
ପାଦତଳେ ମୋର ଜଣାଇଲା ପ୍ରୀତି-
ପ୍ରଣତି ମତ୍ତ ମନେ,
ଦିଗ୍‌ବଳୟର ତୃଷିତ ନୟନ
ନିକଟେ ଦେଲା ମୋ' ଧରା,
ସଙ୍ଗୀତମୟୀ ଶୁଭ୍ର ତାରକା
ସ୍ୱପ୍ନେ ଆତ୍ମହରା ।
ଉର୍ଦ୍ଧ୍ୱେ, ନିମ୍ନେ ଦିଗ ଦିଗନ୍ତେ
ବିସ୍ମୟ, ବିହ୍ୱଳତା
ଅବଲୋକି କ୍ଷଣେ ସ୍ତବ୍‌ଧ ହେଲା ମୋ
ନୟନ ନୃତ୍ୟରତା,
ସ୍ୱାଗତ ଗୀତିକା ବନ୍ଦନା ଗାନ
ଅଭିନନ୍ଦନ ବାଣୀ,
ମୁଗ୍‌ଧ କରର କ୍ଷୁବ୍‌ଧ ପ୍ରସାର
ଲୁବ୍‌ଧ ନୟନ ଠାଣି,
ଲକ୍ଷ ମିଳିତ କଣ୍ଠୁ ଉଚ୍ଛୁଳେ
ଜୟଜୟକାର ରବ,
ମନେହେଲା ଏ ତ ଉଲ୍ଲାସ ନାମେ
ପ୍ରଳୟ ସେ ଅଭିନବ ।

ଶଙ୍କିତ ବୁକେ ସୃଷ୍ଟିରେ ଶୁଣି
ଧ୍ୱଂସ ରୁଦ୍ରବାଣୀ
ଆତ୍ମଗୋପନ କଲି ପୁନରପି
ଅବଗୁଣ୍ଠନ ଟାଣି । □□

## ମୀମାଂସା

ଆକାଶ ଉର୍ଦ୍ଧ୍ୱ ଚିହ୍ନାରି ଡ଼ାକେ ଆ,
ଧରଣୀ ନିମ୍ନ ଚିହ୍ନାରେ ଆରେ ଥା,
ଆକାଶ କୁହାଟେ, "ପୀୟୁଷ ମୁଁ ଦେବି ତୋତେ,
ସ୍ୱର୍ଗେ ଆଣିବି ପୁଷ୍ପକ ଚାରୁ ରଥେ ।"

ଧରଣୀ ଶୁଣାଏ ପ୍ରଲୋଭନହୀନ ବାଣୀ,
"ମରଣ ଗରଳ ପିଆଇବି ତୋତେ ଆଣି,
ମୃତ୍ତିକା ଶେଯ ତୋ ପାଇଁ ଦେବିରେ ପାରି
ଲକ୍ଷ କାମନା ସ୍ୱର୍ଣ୍ଣ ପ୍ରଦୀପ ଜାଳି ।"

ଦ୍ୱନ୍ଦ୍ୱେ ଦୋଳି ମୁଁ ଉର୍ଦ୍ଧ୍ୱକୁ ଥରେ ନିମ୍ନକୁ ଥରେ ଚାହେଁ
ତୃଣ ପରେ ପଡ଼ି ଝରି
ଅମୃତ ସୁରେ ମୃତ୍ୟୁକୁ ନେଲି ବରି ।□□

## ଟାଣ ସ୍ମୃତି

ଅତୀତର କେତେ ମୁହଁ ସମୟର କୁହୁଡ଼ିରେ ପଡ଼ିଆସେ ଫିକା
କୁହେଳିର ଅନ୍ତରାଳୁ ଚାରୋଟି ଚାହାଣି ମୋତେ ଏବେ ବି ତ ସ୍ପଷ୍ଟ ଦେଖାଯାଏ,
ଜଣେ ଭଲ ପାଇଥିଲା, ଅନ୍ୟ ଜଣେ କରିଥିଲା ଘୃଣା,
ବିପରୀତ-ସ୍ମୃତି ବେନି ମନ ତଳେ ତେଣୁ ମୋର ଅଲିଭା ରହିଛି ।

ସୂର୍ଯ୍ୟର ଆଦର ତେଣେ ତିମିରର 'ଛି ଛି'ର ଫୁତ୍କାର,
ଆସକ୍ତିର ବୁକେ ମଥା ରଖି ବିରକ୍ତିକୁ ସ୍ମରୁଥିଲି ତେଣୁ,

ମୋତେ ବି ସେ ସ୍ମରୁଥିବ ଭ୍ରୂକୁଟୀ ଓ ବିଦ୍ରୂପ ବାଣୀରେ,
ମୋତେ ସେ କି ଭୁଲିପାରେ ? ମୁଁ ତା'ରେ ତ ଭୁଲି ପାରେ ନାହିଁ ।

ପୁଞ୍ଜୀଭୂତ ବିତୃଷ୍ଣାର ପ୍ରଳୟରେ ବିସ୍ମୃତି ହଜିଛି,
ଆଦର ଅପେକ୍ଷା ତେଣୁ ଆଘାତ ହିଁ ବେଶୀ ମନେପଡ଼େ । ▫▫

## ଯୋଗ ବିଯୋଗ

ତୁମର ଅବର୍ତ୍ତମାନେ ମୋତେ କିମ୍ବା କିଛି ହେଲେ ଭଲ ଲାଗୁନାହିଁ,
ଅନେକ ସ୍ଥିତିର ସତ୍ତ୍ୱେ କିଛି ନ ଥିବାର ତୀବ୍ର ଦୁଃସହ ଶୂନ୍ୟତା
ଦଗ୍ଧ କରେ ପ୍ରତି ମୁହୂର୍ତ୍ତରେ, ଅଥଚ ସବୁ କିଛି ଅନୁପସ୍ଥିତିରେ
କେବଳ ତୁମର ସ୍ଥିତି ସବୁକିଛି ପୂର୍ଣ୍ଣତାକୁ ଆଣେ ।

ଦୁହେଁ ଯେବେ ପାଖାପାଖି ମନାନ୍ତର, ମତାନ୍ତର, ବେଶ୍ ସଂଖ୍ୟାତୀତ,
ମୁହଁଫୁଲା, ରାଗରୁଷା, ପରସ୍ପର ଅଭିମାନ ଭାଙ୍ଗିବା ପ୍ରୟାସ
ଇତ୍ୟାଦି ଇତ୍ୟାଦି ସତ୍ତ୍ୱେ ପରସ୍ପର ସାନ୍ନିଧ ସାନ୍ତ୍ୱନା
ବହୁ ବ୍ୟର୍ଥତାକୁ କରେ ନିରର୍ଥକ ସାମଞ୍ଜସ୍ୟ ଅସାମଞ୍ଜସ୍ୟରେ ।

ସବୁଠାରୁ ମଜା ହେଲା ଏତେ ମନସ୍ତତ୍ତ୍ୱ ଆମେ ଜାଣିବା ସତ୍ତ୍ୱେ ବି
ସେମିତି ଅବୋଧ ରହୁ, ସବୁ ବୁଝି ଅବୁଝା ଯେମିତି । ▫▫

## ତୁମେ ଥିବ ଆଉ ମୁଁ ଥିବି

ତୁମେ ଥିବ ଆଉ ମୁଁ ଥିବି ଆମେ ଦୁହେଁ ଥିବା ଏହି ଧରଣୀରେ,
ତୁମ ଇଙ୍ଗିତେ ଗାଉଥିବି ପ୍ରିୟ ! ପ୍ରୀତି ସଙ୍ଗୀତ ରଜନୀରେ ।
ନୀଳ ଆକାଶରେ ଭାସୁଥିବି
ପୁଣି ମେଘ ଅଙ୍ଗନେ ନାଚୁଥିବି
ହାସେ ଜ୍ୟୋସ୍ନା ସୁରଭି ଢାଳୁଥିବି ସୁଧା ଅମଳ କମଳ ସରଣୀରେ,
ତୁମେ ଥିବ ଆଉ ମୁଁ ଥିବି ଆମେ ଦୁହେଁ ଥିବା ଏହି ଧରଣୀରେ,
ତୁମ ଇଙ୍ଗିତେ ଗାଉଥିବ ପ୍ରିୟ ! ପ୍ରୀତି ସଙ୍ଗୀତ ରଜନୀରେ ।

ରୂପ ମଦିରାରେ ହୋଇ ମତ୍ତ ଧୂପ ଅଗୁରେ ଭରିବା କବିତା,
ହୃଦ ବକୁଳର ବନେ ଉଠିବ ଯେବେ ନବ ସୃଷ୍ଟିର ସବିତା

ଆମ ଅନ୍ତ ତଳ ଥରିବ
କୋଟି ପୀରତି-ପ୍ରଦୀପ ଜଳିବ

ମଦେ ଅଳସ ନୟନ ଭରିବ ଛନ୍ଦେ ଛୁଟିବ ଶୋଣିତ ଧମନୀରେ,
ତୁମେ ଥିବ ଆଉ ମୁଁ ଥିବି ଆମେ ଦୁହେଁ ଥିବା ଏହି ଧରଣୀରେ,
ତୁମ ଇଙ୍ଗିରେ ଗାଉଥିବି ପ୍ରିୟ ! ପ୍ରୀତି ସଙ୍ଗୀତ ରଜନୀରେ ।

ନବ ଦୂର୍ବାଦଳର ତଳ୍ପେ ରଚି ବାସର-ରଜନୀ ଶଯ୍ୟା
ଶତ ଅନାଗତ ଗୀତି ଗାଇବା ତେଜି ଶଙ୍କା-ଜଡ଼ିତ ଲଜ୍ଜା,

ମାନ, ଅପମାନ କରି ତୁଚ୍ଛ
ନେବା ଆହରି ଗୋଲାପ ଗୁଚ୍ଛ,

ନୀପେ କେକୀ ସମ ତୋଳି ପୁଚ୍ଛ ନୃତ୍ୟ କରିବ ଅତନୁ ଅବନୀରେ,
ତୁମେ ଥିବ ଆଉ ମୁଁ ଥିବି ଆମେ ଦୁହେଁ ଥିବା ଏହି ଧରଣୀରେ,
ତୁମ ଇଙ୍ଗିତେ ଗାଉଥିବି ପ୍ରିୟ ! ପ୍ରୀତି ସଙ୍ଗୀତ ରଜନୀରେ ।

ଆମ ମିଳନରେ ବହି ଈର୍ଷା ଦିନେ ଆସିବ ରୁଦ୍ର ମରଣ
ଏକ ଅନ୍ତରେ ଭରି ଦେବାକୁ ଆନ ବିରହର ଗୁରୁ ଲଗନ,

ତେବେ କି କରିବା ଆମେ ଜାଣ ଗୋ ?
ଦେଇ ମୃତ୍ୟୁରେ ଅପମାନ ଗୋ

ଗାଇ ଅନ୍ତିମ ସୁରେ ଗାନ ଗୋ ଯୁଗ୍ମେ ଭାସିବା ମିଳନ ତରଣୀରେ,
ତୁମେ ଥିବ ଆଉ ମୁଁ ଥିବି ଦୁହେଁ ଥିବା ଏହି ଧରଣୀରେ,
ପ୍ରୀତି-ସଙ୍ଗୀତ ଗାଉଥିବି ନିତି ରତି-ରଞ୍ଜିତା ରଜନୀରେ । ▫▫

## ଶିଉଳି

ଯାଉ ଯାଉ ପଡ଼ିଗଲି ଅଗଣାରେ ବହୁତ ଶିଉଳି,
ପଡ଼ିଗଲି କ'ଣ ହେଲା ? ଏଥିଲାଗି ଲାଗୁ କିଆଁ ଏତେ ?
ପଡ଼ିବାଟା ସ୍ୱାଭାବିକ, ଉଠିବାରେ ଗୌରବ ରହିଛି,
କେତେ ଜଣ ହସୁଛନ୍ତି ଯେପରି ଏ ଶିଉଳିରେ ସେମାନଙ୍କ ଗୋଡ଼
ଖସିନାହିଁ କେବେ ।

ଏ ଶିଉଳି ଯେତେ ସଫା କଲେ ପୁନର୍ବାର ଆସ୍ତରଣ ଜମେ,
ଜମିବା ତ ଧର୍ମ ତା'ର ସଫା କଲେ ସେ କିପରି ଯିବ ?
ଅବଶ୍ୟ ଟିକିଏ ଜଗି ଚାଲିଥିଲେ ଏଡ଼େ କଚଡ଼ାଟେ
କଦାପି ଖାଇ ନ ଥା'ନ୍ତ, ହାତଗୋଡ଼ ଖୁବ୍ ଛିଡ଼ିଗଲା ।

ଅକ୍ଷତ ଦେହରେ କ୍ଷତ ପରିମାଣ ବେଶୀ କିଛି ନୁହେଁ,
କ୍ଷତ ଶୀଘ୍ର ଶୁଖିଯିବ, ଦରଜଟା କମିଯିବ କାଲି,
କିନ୍ତୁ ସେ ଦାଗଟା ବେଶ୍ କିଛି ଦିନ ଅଲିଭା ରହିବ,
କାଳକ୍ରମେ ଚମ ସଙ୍ଗେ ଏକାକାର ହୋଇଯାଇ ପାରେ ।

ଏ ଆଘାତ ପରେ ଆଶା ତୁମେ ଏବେ ହୁସିଆର ହୋଇ
ଏ ପଟୁ ସେ ପଟେ ଯିବ, ଖୁବ୍ ଧୀରେ ପାଦ ଚିପି ଚିପି,
ଅବଶ୍ୟ ତା' ସତ୍ତ୍ୱେ ଯଦି ପଡ଼ିଯାଅ ମୁଁ ତେବେ କହିବି
ତୁମେ ଠିକ୍ ଚାଲି ନାହଁ, ସତର୍କିତ ଚାଲିବାଟା ଖାଲି ଅଭିନୟ ।

ଶିଉଳି, ପଡ଼ିବା ଏବଂ ସତର୍କତା ଏ ତିନୋଟି ଶବ୍ଦ
ପରସ୍ପର ସଙ୍ଗେ ଗୁନ୍ଥା, ତେଣୁ ତୁମେ ତିନିଙ୍କି ମିଶାଇ
ଅର୍ଥ ଯଦି କର ତେବେ ଉପକାର କିଛି ହୋଇପାରେ,
ନଚେତ୍ ପରାସ ଥାଇ ବାରମ୍ବାର ପଡୁଥିବ ନିଶ୍ଚେ । ▫▫

## ସେ ଓ ମୁଁ

ଝଡ଼ର ରାତ୍ରି ଯାତ୍ରୀ କେ ତୁମେ ଆସିଛ ?
କଣ୍ଠେ ଗୋ ତବ ମେଘମହ୍ଲାର ରାଗିଣୀ,
ନୟନେ ତୀବ୍ର କୌତୂହଳର ଲାସ୍ୟ,
ଅଧରରେ ସୁଧା ମଧୁହାସ୍ୟର ଦାମିନୀ ।

କଳ କଲ୍ଲୋଳେ କଣ୍ଠୁ ମଦିରା ଝରାଇ
ବିସ୍ମୟେ ମୋର ପରିଚୟ ଲୋଡ଼ କିଏ ଗୋ ?
କୃଷ୍ଣ କବରୀ କଜ୍ଜଳ ମେଘେ ଅନାଇ
ସଜଳ ନୟନେ ଉତ୍ତର ତା'ର ଦିଏ ଗୋ,

"ଯୁଗ ଯୁଗ ଧରି ଆତ୍ମୀୟତା ଯା' ରଚିଲ
ନିତି ନବରାଗେ ଉଷା ସନ୍ଧ୍ୟାର ସାଗରେ
ବିସ୍ମୃତି ନଈଧାରେ ଶେଷେ ତା' କି ଭୁଲିଲ
ଆପଣାର କରି ଲୋଡ଼ିଥିଲ ଯା'ରେ ଆଦରେ ।

ତୁମ ଇଙ୍ଗିତେ ଚରଣ ନୂପୁର ଥରାଇ
କୋଟି କଣ୍ଠୁ ମୁଁ ଝରାଇଲି ସୁର ସୁଷମା
ବିଶ୍ୱର ବୁକୁ ରସ ହିଲ୍ଲୋଳେ ଭସାଇ
କଳ୍ପଲେ ଦେଲି ଘନ ନୀଳିମାର ସୂଚନା ।

ଉଦ୍ଧତ ମୋର ଯୌବନେ ଚାଳିଚରଣ
ମନ୍ଥନ କଲ ନୀଳ ଆକାଶର ସାଗର,
ଭେଦି ବିକଶିଲେ ଚନ୍ଦ୍ର, ତାରକା, ତପନ
ରୂପ ସୃଷ୍ଟିରେ ଶତ ସୁଷମାର ଆକର ।

ଅମା ଅନ୍ଧାରେ ମୁଗ୍ଧ ମୁଁ ଚାରୁ ଜୋଛନା,
ତପ୍ତ ମରୁରେ ସ୍ନିଗ୍ଧ ଶୀତଳ କାନନ,
ମୋତେ ନେଇ ତୁମ ଅମୃତର ଏ ରଚନା,
କାନ୍ତ ମୋ' ଲାଗି ଭୈରବ ତବ ମରଣ ।

ତୁମ ଦୃଷ୍ଟିରେ ସ୍ୱପ୍ନର ଦେଲି ଅବିର,
କଣ୍ଠରେ ଦେଲି ରୂପ ସୃଷ୍ଟିର ରାଗିଣୀ,
ମନତଳେ ଦେଲି ପ୍ରୀତି କଳ୍ପନା କବିର,
ଚିତ୍ତେ ତଥାପି ଦରଦ ମୋ ଲାଗି ଜାଗିନି ।

ଝଡ଼ ଯାମିନୀରେ ମେଘମଲ୍ଲାର ତୋଳୁଛ,
ସବୁ ଜାଣି ପୁଣି ପରିଚୟ ମୋର ଲୋଡୁଛ,
ବେନି ନୟନରୁ ମଦ୍ୟର ନିଶା ଝରାଇ
ସନ୍ଦେହ ଦୋଳା ଆସନେ କି ଲାଗି ଦୋଳୁଛ ?"

ଉତ୍ତର ଶେଷେ ଚକିତେ ଦେଖିଲି ଅନାଇ
ମୁଗ୍ଧ ଦୃଷ୍ଟି, ପାନ୍ଥ ସଜଳ ନୟନ,
ବିସ୍ମୃତି କୋଳେ ସ୍ମୃତି ବର୍ତ୍ତିକା ଜଳାଇ
ପ୍ରୀତି ପଶ୍ନରେ ପରିଚୟ କରେ ଚୟନ ।

କମ୍ପିତ ଗଳେ ପ୍ରଶ୍ନ କଲେ ସେ, "ତୁମେ କି
ଆଦି ସୃଷ୍ଟିରେ ରୂପ ବୃଷ୍ଟିର କାମନା ?
କୃଷ୍ଣ ବାଦଲେ ଚଳ ବିଦ୍ୟୁତ୍ ଖେଳା କି ?
ପୁଷ୍ପେ ସୁରଭି ରାତି ଉଚ୍ଛ୍ୱାସ ବାସନା ?

ପୂର୍ବାଚଳର ଉଷା ତୁମେ ମଧୁ ପ୍ରଭାତ ?
ପଶ୍ଚିମର କି ସନ୍ଧ୍ୟା ଶ୍ରାନ୍ତ ଗୋଧୂଳି ?
ଦକ୍ଷିଣର କି ତୁମେ ସୁରଭିତ ମଳୟ ?
ଉତ୍ତରୁ ଉଠ ମେଘ ଇଙ୍ଗିତେ ଉଚ୍ଛୁଳି ?"

ପ୍ରଶ୍ନରେ ଘନ ପରିଚୟର ମୋ ସୂଚନା,
ଉତ୍ତର ଗଲା ହଜି ନତ କଲି ନୟନ,
ମୌନ ଭାଷାରେ ସମ୍ମତି ଦେଲି ଜଣାଇ,
ପ୍ରଭାତର ଆଗୁଁ ଉଷା ଗୈରିକ ଅୟନ ।

ତା'ପରେ କି ହେଲା ଜାଣି ନ ପାରିଲି ଜାଣି ମୁଁ
ଅଙ୍ଗେ ଅଙ୍ଗେ ଲଭି ଶିହରଣ ମଧୁର
ଅଚେତନେ ହେଲି ଏକାକାର ଏକ ତନୁରେ
ନିମିଷକେ ଭୁଲି ସକଳ ସଂଜ୍ଞା ବଧୂର ।

ବାହାରେ ବତାସ ଉଚ୍ଛ୍ୱାସମୟୀ ଯାମିନୀ
ଅନ୍ତର ତଳେ ମେଘମହ୍ଲାର ରାଗିଣୀ । □□

## ଜଗନ୍ନାଥ ରଥ

ବୈକୁଣ୍ଠ ଆସନ ତେଜି କୁହ କେଉଁ ଲୋଭେ ଜଗନ୍ନାଥ
ପତିତପାବନ ବେଶେ ଅବତୀର୍ଣ୍ଣ ଏ ଧରଣୀ ପରେ,
ଦ୍ୱିଧାହୀନ, ଶଙ୍କାହୀନ ବିଶ୍ୱାସର କେତେ ଆୟୋଜନ
ଦେଖୁଛଟି ଯୋଗେଶ୍ୱର ବିଶ୍ୱଚକ୍ଷୁ ମେଲି ତବ ଥରେ ?

ହେ ପଙ୍ଗୁ, ହେ ମହାବାହୁ, କେଉଁ ଶୋଭା ବଢ଼ାଉଛ କୁହ
ନିଷ୍କର୍ମା ପରାୟେ ବସି ସୁଚିକ୍‌କଣ ପାଷାଣ ଆସନେ,
କ୍ଷୟଶୀଳ ଧରଣୀର ମୃତ୍ତିକାରେ ଦିଅ କି ସମ୍ମାନ ?
ଦେଇଥିଲ ଦିନେ ଯଥା ମଞ୍ଜୁ କୁଞ୍ଜେ ମୁରଲୀ ବାଦନେ ।

ତୁମ ଲାଗି ବିରଚିଛି ଏ ମଣିଷ ଶତ ମହୋତ୍ସବ
ପରାଣର ଉଦ୍ଦୀପନେ ଜୀବନର ଅମୃତ ନୃତ୍ୟରେ,
ଶୂନ୍ୟ କର ପ୍ରସାରିଣ ଆଶୀର୍ବାଦ ଲୋଡ଼ିଛି ତୁମର
ରଚିବାକୁ ସ୍ୱର୍ଗଲୋକ ଅଭିଶପ୍ତ ଏ ମର ମର୍ତ୍ତ୍ୟରେ ।

ନିରାକାର ତୁମକୁ ସେ କରିଅଛି ସାକାର ସୁନ୍ଦର,
ବ୍ରହ୍ମର ସ୍ୱରୂପ ସୂକ୍ଷ୍ମ ପ୍ରକାଶିଛି ତୁମ ସ୍ଥୂଳ ଦେହେ,
କ୍ଷୁଧା, ତୃଷ୍ଣା, ହାସ୍ୟ, ଅଶ୍ରୁ, ଦୁର୍ବଳତା ତୁମଠି ପ୍ରକାଶି
କରିଛି ତୁମକୁ ସାଥୀ ଆପଣାର ଏହି ମର୍ତ୍ତ୍ୟ ଗେହେ ।

ତୁମକୁ ସେ କେନ୍ଦ୍ରକରି କରେ ଯେତେ ଉତ୍ସବ ରଚନା
ସେ ସବୁ କେବଳ ତା'ର ଅନ୍ତରର ଶୁଦ୍ଧ ପ୍ରତିକ୍ରିୟା,
କାଷ୍ଠର ମୂର୍ତ୍ତିରେ ତେଣୁ ତୁମର ଏ ପ୍ରାଣର ସ୍ପନ୍ଦନ,
ଦାରୁର ବିଗ୍ରହ ତଳେ ସୁରଭିତ ମଣିଷର ହିଆ ।

ଆଜି ଏଇ ବଡ଼ଦାଣ୍ଡେ ଗଡ଼ିଚାଲେ ତୁମର ସେ ରଥ
ଘଣ୍ଟ, ଘଣ୍ଟା, ବାଦ୍ୟତାନେ ଲହରାଇ କେତନ ଆକାଶେ,
କି ମହାସତ୍ୟର ସେହୁ ନ ଦେଉଛି ଅପୂର୍ବ ସୂଚନା
ତନୁରଥେ ଆତ୍ମାଭୂମା ବିରାଜଇ ବିଭୂତି ବିଳାସେ ।

ଜୀବନ ଉତ୍ସବ ଲୋଡ଼େ ନିରାନନ୍ଦେ ବଞ୍ଚିବି କେସନେ ?
କିନ୍ତୁ ସେ ଉତ୍ସବ ହେଉ ଜ୍ୟୋତିର୍ମୟ ମହାସତ୍ୟ ଶଂଶୀ,
ଭୋଗ ବିଳାସର ବକ୍ଷେ ସଂଯମର ପବିତ୍ର ପ୍ରବାହ,
ଭୋଗାସକ୍ତ ଚିତ୍ତ ସରେ ଖେଳାଏ ସେ ସତ୍ୟ ସ୍ୱର୍ଣ୍ଣ ହଂସୀ ।

ପାଷାଣ ମନ୍ଦିରେ ନର ସ୍ଥାପି ତବ କାଷ୍ଠର ପ୍ରତିମା
ଭେଦାଭେଦ ବିସ୍ମରିଛି ନିରାକାର ସାକାରର ସୀମା ।

ବହୁଯୁଗ ତଳେ ଦିନେ ମଣିଷର ଉର୍ବର ମସ୍ତିଷ୍କ
ଶାନ୍ତ ଚିତ୍ତେ କରିଥିଲା ଏହି ମହାସତ୍ୟର କଳ୍ପନା,
ରୋଗକ୍ଲିଷ୍ଟ, ଜରାଜୀର୍ଣ୍ଣ ମଣିଷର ପୀଡ଼ିତ ଜୀବନ
ସୁଶ୍ୟାମଳ ହେବ ଭୁଲି ମରଣର ସକଳ ଯାତନା ।

ଚାହିଁ ଦେଖ ଜଗନ୍ନାଥ ସେ ଜାତିର ଆଜି ବଂଶଧର
ଅଙ୍ଗୁଳି ନିର୍ଦ୍ଦେଶି ତବ ପ୍ରତିମାରେ କରେ ଉପହାସ,
ପୁଞ୍ଜିପତି ଦଲାଲର ତୁମେ ଏକ ବିରାଟ ପ୍ରତୀକ,
ଦେଶ ଅନ୍ନ ଧ୍ୱଂସକର, କ୍ଷୁଧାତୁର ଗୃହେ ଉପବାସ ।

ତୁମ ଏ ମନ୍ଦିର ଦିଏ ଶୋଷଣର ଶୋଣିତ ସୂଚନା,
ବିଗ୍ରହ ତୁମର ଖାଲି ପାଗଳର ଅଦ୍ଭୁତ କଳ୍ପନା,
ତୁମ ଲାଗି ସୃଷ୍ଟ ଯେତେ ମଧୁମୟ ସ୍ନିଗ୍ଧ ମହୋତ୍ସବ
ଜଣକୁ ତୋଷିବା ଲାଗି ଗଣ ସଙ୍ଗେ କ୍ରୂର ପ୍ରତାରଣା ।

ଆଜି ଏ ଜାତିର ଏହି ପରିପୁଷ୍ଟ ଚିନ୍ତାଧାରା ଦେଖି
କି ଉତ୍ତର ଦେବ କୁହ ଜଗନ୍ନାଥ ପତିତପାବନ,
ଆଣବିକ ଯୁଗେ ଏହି ମାନବର ଶାଣିତ ତର୍କରେ
ରଖି କି ପାରିବ ଦୃଢ଼ ପ୍ରତିଷ୍ଠିତ ନିଜର ଆସନ ?

ରଥପରୁ ବସି କହେ ଜଗନ୍ନାଥ, "ମଣିଷର ଲାଗି
ସ୍ୱର୍ଗର ଅମୃତ ତେଜି ଧରଣୀର ଲୋଡ଼ିଛି ଗରଳ,

ଯୁଗ ଯୁଗ ଧରି ମୁହିଁ ନିର୍ବିକାରେ ଆସୁଅଛି ଦେଖି
ଅହମିକାମତ୍ତ ଏହି ମାନବର ଭାବ ଉତ୍ତରଳ ।

କେତେ ଝଡ଼, ଝଞ୍ଜା ବହି ଗଲାଣି ଏ ଧରଣୀର ପରେ
ତଥାପି ରହିଛି ସ୍ଥିର ଅବିଚଳ ନିଜ ସିଂହାସନେ,
ଆଣବିକ ଯୁଗେ ମୁଁ କି ପରମାଣୁ ବିସ୍ଫୋରଣ ଭୟେ
ଆଶ୍ରୟ ଘେନିବି ଯୁଗ ସଭ୍ୟତାର କୃତ୍ରିମ ତୋରଣେ ?

ମାନବ ଲୋଡ଼ିବ ମୋତେ ଯୁଗେ ଯୁଗେ, ଅହମିକା ତା'ର
ମୂହୁର୍ମୁହୁଃ ଶିର ଟୋଳି ନତଶିର ହେବ ବାରମ୍ବାର,
ରଥ ମୋ ଚଳିବ ନିତି ଊର୍ଦ୍ଧ୍ୱଶିରେ ଏ ସରଣୀ ପରେ
ପଥ ପାର୍ଶ୍ୱେ ଶୁଣି ଶୁଣି ଦୁଃଖ ଗୀତି ମାନବ ଆମ୍ଭର ।
ରାଜା ମୁଁ ରହିବି ରାଜା, ପଥ ମୋର ଚିର କୁସୁମିତ,
ଆଶ୍ରୟ ନ ଲୋଡ଼ି ପଦେ କରିବ କେ ପଥ କଣ୍ଟକିତ ?" □□

## ବିହଙ୍ଗ ଗାଏ ବନ୍ଦୀ ଜୀବନ ଗୀତ

ପିଞ୍ଜର ଗେହେ ମୁକ୍ତ ଆକାଶେ ଚାହିଁ
ବିହଙ୍ଗ ଗାଏ ବନ୍ଦୀଜୀବନ ଗୀତ,
ରିକ୍ତ ପ୍ରାଣର ତିକ୍ତ ତା' ଅନୁଭୂତି
ମାନବରେ କେବେ କରେନି ତ ବିଚଳିତ ।

ଅନ୍ଧାର କୋଳୁ ଉଷା ଉଠୁଥିଲା ଜାଗି
ଗୈରିକ ରାଗେ ରଞ୍ଜି ପରାଚୀ ତନୁ,
ପଲ୍ଲବେ ରଚି ଶିଶିର ମୁକ୍ତାମାଳା,
ଉଡ଼ି ଉଡ଼ି ଆସୁଥିଲେ ବିହଙ୍ଗେ ବନୁ ।

କଣ୍ଠରେ ଥିଲା ଉଷା ସଙ୍ଗୀତ ରାଗ,
ପକ୍ଷରେ ଥିଲା ମୁକ୍ତି ଆନ୍ଦୋଳନ,
ନୟନରେ ହସୁଥିଲା ଉଜ୍ଜ୍ୱଳ ଆଶା,
ବକ୍ଷେ ଜୀବନ ନବୀନ ଉଦ୍ଦୀପନ ।

କରୁଣ ନୟନେ ଚାହିଁ ପିଞ୍ଜର ପକ୍ଷୀ
ସ୍ମରୁଥିଲା ନିଜ ବିଗତ ଜୀବନ କଥା,
ଦିନେ ଏହିପରି ମୁକ୍ତ ଆକାଶ ତଳେ
ସେ ବି ରଚିଥିଲା ପ୍ରଣୟେ ଆତ୍ମୀୟତା ।

ଚଞ୍ଚୁରେ ଛୁଇଁ ଚଞ୍ଚୁ ଚୁମ୍ବନରେ
କେତେ ପ୍ରିୟା ବୁକୁ ଉତ୍ତଳ ଥିଲା କରି,
କେତେ ସୁନ୍ଦରୀ ମସୃଣ ନୟନରେ
ପ୍ରଣୟ ମଦ୍ୟ ନିଶା ଦେଇଥିଲା ଭରି ।

ସଙ୍ଗତେ ଧରି ଉଡ଼ିଥିଲା ଆକାଶରେ,
ତଟିନୀର ତୀରେ କରିଥିଲା ଜଳପାନ,
ତରୁ ଶାଖେ ଶାଖେ ରମଣ ବି ଥିଲା ରଚି
ଶୁଣି ନିର୍ଝର ସଙ୍ଗୀତ କଳତାନ ।

ଶ୍ରାବଣର ମେଘେ ବଜ୍ରର ଗରଜନେ
କେତେ ଶଙ୍କିତା, ଚମକିତା ପ୍ରଣୟିନୀ
ଉଷ୍ମ ତା' ବୁକେ ଆଶ୍ରୟ ଥିଲେ ଲଭି
ଅମୃତ କରି ଦୁର୍ଯୋଗ ନିଶିଥିନୀ ।

ଏ ମଧୁଲଗନେ ମନେ ପଡ଼ି ସେହି କଥା
ଛଳ ଛଳ ହୋଇ ଆସେ ବିହଙ୍ଗ ଆଖି,
କେଉଁ ସୁଦୂରରେ କେତେ ପ୍ରଣୟିନୀ ତା'ର
ଖୋଜୁଥିବେ ତା'ରେ ହାହାକାରେ ଡ଼ାକି ଡ଼ାକି ।

ଶୂନ୍ୟ ଆକାଶେ ଅଭାବ ତା' ଅନୁଭବି
ବିରହର ଗାନେ ଅଶ୍ରୁଳ ମୂର୍ଚ୍ଛନା,
ସଜଳ କଣ୍ଠେ କମ୍ପନ ରଚି ସୁରେ
କରୁଥିବେ ସିନା ଉଷାର ବନ୍ଦାପନା ।

ସହସା ତାହାର କଳ୍ପନା ଗଲା ଭାଜି
ଶୁଣି ପରିଚିତ କଣ୍ଠର ବୀଣା ତା'ର,
ବାତାୟନ ପାଶେ ପିଞ୍ଜର ପାଖ ଦେଇ
କଳତାନେ ଉଡ଼ିଗଲେ ବିହଙ୍ଗମାଳ ।

ଚକିତ ନୟନେ ଦେଖିଲା ସେ ଯାହା ଚାହିଁ
ବିଶ୍ୱାସ ହାୟ କରିବ କେସନେ କୁହ
ଯେଉଁ ସୁନ୍ଦରୀ ପ୍ରଣୟିନୀ କୁଳ ଲାଗି
ନୟନୁ ତାହାର ଝରୁଛି ବିରହ ଲୁହ,

ପରିଚିତା କେତେ ଅନ୍ତରତମା ତା'ର
ଚମକ ଲଗାଇ ବନ୍ଦୀର ବୁକୁତଳେ
ନବ ପ୍ରଣୟୀର ସଙ୍ଗତେ ଗୀତି ଗାଇ
ଉଡ଼ି ଉଡ଼ିଗଲେ ତାହାରି ସମ୍ମୁଖରେ ।

ସ୍ତବ୍ଧେ ହେରିଲା ଦୁର୍ଭାଗା ଚାହିଁ ଚାହିଁ
ପ୍ରଣୟର ନାମେ ଛଳନାର ଅଭିନୟ,
ରୂପସୀ ପ୍ରେୟସୀ ବୁକେ ଅଗ୍ନିର ଶିଖା,
ରୂପ ପସରାରୁ ଗରଳ ଅଭ୍ୟୁଦୟ ।

ଯେତେବେଳେ ତା'ର କଳ୍ପନା ଗଲା ଭାଜି
ସମ୍ମୁଖେ ଚାହିଁ ଦେଖିଲା ଶୂନ୍ୟାକାଶ,
ବିହଙ୍ଗୀକୁଳ ସୁଦୂରେ ଗଲେଣି ଲିଭି
ଉଷାର ଗଗନେ ପ୍ରଭାତର ମଧୁହାସ ।

ଦୀର୍ଘଶ୍ୱାସ ତେଜି ବିହଙ୍ଗ ଭାଳେ
ସ୍ୱଜାତିରେ ଯଦି ପୀରତିରେ ପ୍ରତାରଣା
ମାନବ ଜାତିର ସ୍ୱାର୍ଥପରତାକୁ ମୁଁ
ନିରର୍ଥକ ବା କି ଲାଗି କରିବି ଘୃଣା ?

ନିଷ୍ଠୁର ପଛେ ହେଉ ସେ ମାନବ ଜାତି
ସେନେହ ତାହାର ନିତ୍ୟ ବନ୍ଦନୀୟ,
ସ୍ୱଜାତି ମଧୁର ପୀରତି ଗରଳ ଭରା
ହୃଦୟବିହୀନ ଆକୁତି ଲୋଭନୀୟ ।

ମୁକ୍ତ ଆକାଶେ ଶୂନ୍ୟ ହୃଦୟ ନେଇ
ସରସ ଜୀବନେ ବଞ୍ଚି ପାରେ କି କେହି ?
ମାନବର ପ୍ରୀତି ମିଛ ନୁହେଁ ମିଛ ନୁହେଁ
ବନ୍ଦୀରେ ଯାହା ଅକାତରେ ପାରେ ଦେଇ ।

ବନ୍ଧନେ ସତେ ମୁକ୍ତିର ଏତେ ମଧୁ,
ଅଶ୍ରୁରେ ପୁଣି ସୀମାହୀନ ଏତେ ହାସ,
ପରାଧୀନତାରେ ଅମୃତ ଯଦି ଏତେ
ପିଞ୍ଜରାକାରା ହେଉ ମୋର ନୀଳାକାଶ । ◻◻

(କବି ଶ୍ରୀ ବିନୋଦ ଚନ୍ଦ୍ର ନାୟକଙ୍କର 'ରୁପାଥାଳୀ ସୁନାଗିନା' କବିତା ପାଠ କରିବା ପରେ ।)

# ଅନନ୍ତ ଯୌବନ

ତୁମେ ଯେବେ ଯାଇଥାଅ ପାଶେ ମୋର ନିଦ୍ରା ଅକାତରେ
ମୁଁ ତେବେ ବିନିଦ୍ର ହୋଇ ଜ୍ୟୋତ୍ସ୍ନାସ୍ନାତ ତୁମରି ଲପନେ
ଚାହିଁଥାଏ ମୁଗ୍ଧ ନେତ୍ରେ, ପ୍ରତିଅଙ୍ଗେ ଶିହରଣ ଲଭେ
ଇଚ୍ଛାହୁଏ ଉନ୍ମାଦ କରନ୍ତି ସଖା ତୁମକୁ ମୁଁ ଉଚ୍ଛ୍ୱସିତ ଅଜସ୍ର ଚୁମ୍ବନେ ।

କେଡ଼େ ସତେ ଭଲ ଲାଗେ, ତୃଷାତୁରା ପିଇ ପିଇ ଯାଏ
ନିଦ୍ରିତ ରୂପର ରସ, ନିଦ୍ରାତୁର ନିଶ୍ଚଳ ଶରୀର
ମାୟାମୁଗ୍ଧ କରେ ମୋତେ, ତୁମରି ସେ ମୁଦ୍ରିତ ନୟନେ
ମୁଁ ଦେଖେ ସ୍ୱରୂପ ମୋର, ମାନସୀ ପ୍ରେୟସୀ ତୁମ ସ୍ୱପ୍ନ ଧରଣୀର ।

ଅକସ୍ମାତ ବିଷଣ୍ଣ ହୋଇ ମୁଁ ଉଠେ, ମନେହୁଏ ତୁମର ଏ ଦେହ,
ତୁମର ମସୃଣ ମୁଖ, ତୁମର ଏ ପ୍ରୀତିସିକ୍ତ ନୟନ, ଅଧର,
ଦୁରନ୍ତ ଏ ଯୌବନର ସବୁ ଯେହ୍ନେ ଜରାରେ ଆକ୍ରାନ୍ତ,
ତୁମେ ନୁହଁ ପ୍ରିୟତମ ଉପସ୍ଥିତା ରୂପସୀ ବଧୂର ।

ଶଙ୍କାରେ ଶିହରି ହଠାତ୍ ଚମକି ମୁଁ ଦେଖେ
ମୁଁ ମଧ ସ୍ଥବିରା ହୁଏ କ୍ଷୟର ଗହନେ,
ପକ୍ୱକେଶ, ଶ୍ଲଥ ଚର୍ମ, ହଜିଯାଏ ନୟନର ବିଦ୍ୟୁତ୍ ଚାହାଣି,
ହଜୁଛି ଅଧର ଶୋଭା, ତୁଟିଯାଏ ତନୁକାନ୍ତି ନବନୀତ ସୁକୁମାର ଦୀପ୍ତି,
ଜରାର ଟଙ୍କାରେ ହାୟ ଧୀରେ ଧୀରେ ଲୁପ୍ତ ହୁଏ
ଯୌବନର ଶୀତ୍କାର କାହାଣୀ ।

ନିବିଡ଼ ଆଶ୍ଳେଷେ ଯେଉଁ ସ୍ୱର୍ଗ ସୁଖ ଅନୁଭବେ ଆଜି,
ତୁମରି ଅଧର ସ୍ପର୍ଶେ ଯେଉଁ ତୃପ୍ତି ଲଭୁଛି ଏ ପ୍ରାଣେ,
ଯେ ଆତ୍ମବିସ୍ମୃତି ଘଟେ ଏକାକାରେ ଦୁଇଟି ତନୁର
ସେ ସବୁ କି ବ୍ୟର୍ଥ ହେବ ଯୌବନର ଦିବା ଅବସାନେ ?

ସବୁଜର ଧ୍ୱଂସ ଅଛି ? କ୍ଷୟ ଅଛି ଆମର ଏ ରୂପ ଲାବଣ୍ୟର ?
ଆମେ କି ହଜିବା ଦିନେ ବାର୍ଦ୍ଧକ୍ୟର ଘନ ଅନ୍ଧକାରେ
ହରାଇ ମାଧବୀ ଗୀତି ? ଅସମ୍ଭବ ଅସମ୍ଭବ ଏହା,
ଅନନ୍ତ ଯୌବନେ ଆମେ ଦୋଳୁଥିବା ପୁଷ୍ପର ଦୋଳାରେ
ତାରୁଣ୍ୟର ବୀଣାର ଝଙ୍କାରେ ।

ଏହିପରି ରାତ୍ରୀ ଥିବ, ଏହିପରି ହସୁଥିବ ଆକାଶରେ ଚନ୍ଦ୍ର,
ଏହିପରି ବହୁଥିବ ସୁରଭିତ ମୃଦୁଳ ମଳୟ,
ଏହିପରି ଚାହିଁଥିବେ ଧରଣୀ ଆକାଶ ମିଳି ମିଳନର ଛନ୍ଦେ
ପରସ୍ପର ସଙ୍ଗମର ଚିହ୍ନ ରଖି ଦୂର ଦିଗ୍‌ବଳୟ ।

ନିଦ୍ରିତ ହେ ପ୍ରିୟ ମୋର ଜାଗିଉଠ, ଜାଗ ତୁମେ ଥରେ,
ବୁକୁରେ ଜଡ଼ାଇ ଧରି ବିନିଦ୍ରିତା, ଆକୁଳିତା ରାଣୀକୁ ତୁମର
ବୁଝାଇ ବୁଝାଇ ତା'ରେ ଶାନ୍ତ କର ସଂଶୟର ତିମିର ଗହନେ,
"ଅକ୍ଷୟ, ଅବ୍ୟୟ, ନିତ୍ୟ, ଅସମାପ୍ତ ସଂଗୀତ, ଏ ଅଫୁରନ୍ତ ସ୍ନିଗ୍‌ଧ
ଯୌବନର ।" ◘◘

## ସ୍ମୃତି ପୂଜା

ତୁମ ନାମେ ଆମେ ସବୁ କେତେ ଗପ, କବିତା ଲେଖୁଛୁ,
ତୁମର ବିଭିନ୍ନ ଗୁଣ ଚମତ୍କାର ବିଶ୍ଳେଷଣ କରି
ବିଶ୍ୱ-ଦରବାରେ ତୁମ ଆସନର ପ୍ରତିଷ୍ଠା ନିମିତ୍ତ
ଅଜସ୍ର ପ୍ରୟାସ କରୁ, ସେ ତ କିନ୍ତୁ ଆପଣାକୁ ପ୍ରତିଷ୍ଠା କରିବା ।

ତୁମେ କ'ଣ ଲଭିନାହଁ ସେ ସମ୍ମାନ ଚିରଦିନ କରିଛ ଯା' ଘୃଣା,
ଯଶ ଓ ପ୍ରଶଂସା କ'ଣ ପାଇନାହଁ ? ପାଇ ଯାହା ଦୂରେଇ ଦେଇଛ,
ତୁମର ଅବର୍ତ୍ତମାନ ଆମ ଏଇ ଅଥର୍ବଙ୍କୁ ବେଶ୍ ଗୋଟେ
ସୁବିଧା ଓ ସୁଯୋଗ ଦେଇଛି
ତୁମକୁ ସ୍ମରିବା ନାମେ ଆପଣାର ବଡ଼ାଇ କରିବା ।

ତୁମ ଆଖି ଲୁହ, ଆଉ ତୁମର ସେ ପ୍ରାଣର ସ୍ପନ୍ଦନ,
ତୁମର ସେ ଦେଶପ୍ରୀତି, ସତ୍ୟ ଲାଗି ଆକୁଳ ଆଗ୍ରହ,
ତୁମର ସେ ସରଳତା, ବଦାନ୍ୟତା, ନିସ୍ୱାର୍ଥପରତା
ଆମେ ମଧେ ଆଜି କାହିଁ ? ଆମେ ସବୁ ବେଲୁନ୍ ଫୁଙ୍କୁଛୁ ।

ତ୍ରିରଙ୍ଗା ପତାକା ତଳେ ଆମେ କେତେ ମିଛ କହୁ, ପ୍ରତାରଣା କରୁ,
ପ୍ରତିଷ୍ଠା ଆଶାୟୀ ଆମେ ନିର୍ବିକାରେ ପ୍ରତିଦ୍ୱନ୍ଦ୍ୱୀ ରକ୍ତପାନ କରି
ସ୍ୱାର୍ଥ ପାଇଁ ପ୍ରତିବେଶୀ ଆତ୍ମୀୟରେ ଅକାତରେ ମୃତ୍ୟୁ ବିତରଣେ
ଛଳନାର ଅନ୍ତରାଳେ ସମସ୍ତଙ୍କଠାରୁ ଆମେ ବେଶୀ କାନ୍ଦିପାରୁ ।

ଏମିତି ଗୁଡ଼ାଏ ଆମେ ତୁମ ଲାଗି ଶ୍ରାଦ୍ଧ ଆଉ ତର୍ପଣ କରୁଛୁ,
ବଡ଼ ବଡ଼ କଥା କହି ଆମେ ଯାହା ତା' ଲୁଚାଇ ରଖି
ତୁମରି ସ୍ମରଣେ ଆଜି ଆଖିବୁଜି କାନ୍ଦିବୁ ଟିକିଏ,
ସମସ୍ତେ କାନ୍ଦିବେ ଯଦି କେ କାହାକୁ ସାନ୍ତ୍ୱନା ବା ଦେବ ?

ଏମିତି କାନ୍ଦିବା ଠାରୁ ନ କାନ୍ଦିବା ବରଂ ଶ୍ରେୟସ୍କର,
ଏମିତି ତର୍ପଣ ଆଜି ବନ୍ଦ ରଖି (ଛଳନା ଯା' ପ୍ରକୃତି ସ୍ୱରୂପ)
ଆସ ଆସ 'ଗୋପବନ୍ଧୁ' ସ୍ମୃତିଟାକୁ ଭୁଲିବାକୁ ପ୍ରୟାସ କରିବା,
ମୁଁ ଭାବୁଛି ସେ ଚେଷ୍ଟାରେ ଗୋପବନ୍ଧୁ ସ୍ମୃତି ପୂଜା, କିଛି ହୋଇପାରେ । □□

(ଗୋପବଂଧୁଙ୍କର ତ୍ରୟସ୍ତିଂଶତ୍ ବାର୍ଷିକ ଶ୍ରାଦ୍ଧ ଦିବସ ଉପଲକ୍ଷେ ।)

## ସଂଶୟ

ବାତାୟନ ଅନ୍ତରାଳେ ଛପି ଛପି ଦେଖୁଥିଲି ନାରୀ ଓ ପୁରୁଷ
ଯୌନ ମିଳନର କିଛି ପୂର୍ବାଭାସ ? ଯା' ଦେଖୁଛି ତା' କେବେ କି ଭୁଲ ?
ପଥପ୍ରାନ୍ତେ ତରୁତଳେ ଅନ୍ଧକାର ଛାୟା ମୂର୍ତ୍ତିବେନି,
ଅର୍ଦ୍ଧରାତ୍ରୀ, ନାରୀକୋଳେ ମଥାରଖି ପୁରୁଷ ଶାୟିତ ।

ବୁକେ ମୋର ଅଜସ୍ର ସ୍ପନ୍ଦନ, ଅଙ୍ଗେ ଅଙ୍ଗେ ବିଦ୍ୟୁତ୍ ଚମକ,
ଉତ୍କଣ୍ଠା, ଉଦ୍‌ବେଗ, ଘୃଣା, ବିତୃଷ୍ଣାର ପୂର୍ଣ୍ଣ ସମାହାର,

ଏ ଧରିତ୍ରୀ ଧ୍ୱଂସ ହେବ ଭ୍ରଷ୍ଟତା ଓ ବ୍ୟଭିଚାର ତଳେ,
ଉଦ୍‌ବେଗେ ରହିଲି କିଛି ଶୁଣିବାକୁ କଥୋପକଥନ ।

ହଠାତ୍ ନାରୀର କଣ୍ଠ "ବାପଧନ, କି ହେଲାରେ ତୋର ?"
ଚମକି ଉଠିଲି, ପୁଣି ନର କହେ, "ମୃତ୍ୟୁର ଆହ୍ୱାନ
କେହି କି ପାରିଛି ଏଡ଼ି ? ପୋଛ ମାତା ପୋଛ ଅଶ୍ରୁରାଶି,
ଭିକ୍ଷୁକ ଜୀବନ ହାୟ, ତୈଳହୀନ ପ୍ରଦୀପର ଠିକ୍ ପରିଣତି ।"

ସ୍ତବ୍ଧେ ମୁଁ ରହିଲି ଚାହିଁ ଛାଇତଳେ ମଣିଷ ମନକୁ,
ଏ ମନ ମୋହରି ମନ, ଏହିପରି ଅଜସ୍ର ମନର
ବିକୃତ, କୁତ୍ସିତ ରୂପ ମୋ' ସମ୍ମୁଖେ ଉଠିଲା ଉଦ୍‌ଭାସି
ସଂଶୟ ତିମିର ଘେରା, ଏ ମଣିଷ ପୂଜାପାଏ ଧିକ୍ ସେ ମନକୁ ।

ଚକିତେ ଶୁଣିଲି ପ୍ରାତେ କିଏ ଜଣେ ବୃଦ୍ଧା ଭିକାରୁଣୀ
ପୁତ୍ର ତା' ହରାଇ ହାୟ, ପଥପ୍ରାନ୍ତ ତରୁତଳେ ବିକଳେ ବାହୁନେ । ◻◻

## ଏକ ଉଜ୍ଜ୍ୱଳ ସ୍ମୃତି

ମିଃ ସାନ୍ୟାଲ, ତୁମେ ମୋତେ ଥିଲ ଚାହିଁ
ବ୍ୟଥିତ ନୟନେ, ଯେବେ ଦେଲି ମୁଁ ଫେରାଇ
ପ୍ରେମଭିକ୍ଷା ବିଷେଭରା ପ୍ରୀତି ଉପହାର,
"ଏ ସବୁ ତୁମର ଖାଲି ରୂପ ଅହଙ୍କାର"
କହିଲ କର୍କଶ କଣ୍ଠେ "ବନ୍ଧୁତ୍ୱର ମାନ
ନ ରଖି ବନ୍ଧୁରେ ଦେଲ କ୍ରୂର ଅପମାନ ।"
"ସାଗର ଲଙ୍ଘନେ ସୀମା, ଚନ୍ଦ୍ର ଆକାଶରେ
ଆପଣା ସୀମାର ମଧ୍ୟେ ଯାତାୟତ କରେ,
ସୂର୍ଯ୍ୟ ତା ପରିଧି ମଧ୍ୟେ ବିସ୍ତାରେ ଆଲୋକ
ପ୍ରଭାର ପ୍ରବାହେ ମୁଗ୍ଧ ଦ୍ୟୁଲୋକ, ଭୂଲୋକ,
ସୀମାରେ ସୁନ୍ଦର ସର୍ବେ, ସୀମା ଅତିକ୍ରମେ
ଅମୃତ ଗରଳ ହୁଏ ପ୍ରଳୟ ସୃଜନେ ।
ବନ୍ଧୁତ୍ୱର ସୀମା ଲଙ୍ଘି ତୁମେ ସେହିପରି

ବିଶୁଦ୍ଧ ସ୍ନେହରେ ଦେଇ ଚିର ଜଳାଞ୍ଜଳି
ଅନ୍ୟାୟ ପ୍ରଣୟ ଭିକ୍ଷା କର ବାରମ୍ବାର
ବନ୍ଧୁତ୍ୱର ପବିତ୍ରତା କରି ଅସ୍ୱୀକାର ।
ବନ୍ଧୁପତ୍ନୀ ମୁହିଁ ତା'ରେ ନ ଦେଇ ସମ୍ମାନ
ବନ୍ଧୁରେ ଦେଇଛ ଆଜି ତୀବ୍ର ଅପମାନ,
କୁତ୍ସିତ କାମନାଭରା ପ୍ରୀତି ଉପହାରେ
ତେଣୁ ମୁଁ ଫେରାଇ ଦିଏ" ଅଶ୍ରୁ ମୋ ଭାଷାରେ ।

ଉତ୍ତରେ ମୋ କ୍ଷିପ୍ତ ହୋଇ କ୍ରୋଧେ ଜର୍ଜରିତ
ପ୍ରୀତି ଉପହାର କରି କର କବଳିତ
ସରୋଷେ ହୋଇଲ ଠିଆ ତେଜି କାଷ୍ଠାସନ,
"ଏଇ ତୁମ ବ୍ୟବହାର, ଏଇ ତୁମ ମନ ?
ଆଧୁନିକ ଶିକ୍ଷା, ଦୀକ୍ଷା ତୁମ ମନ ପରେ
ବିସ୍ତାରିନି ପ୍ରଭାବ କି ତା'ର କେବେ ଥରେ ?
ହୃଦୟ ତଳର ପ୍ରୀତି ଅନନ୍ତ ଅସୀମ,
ସହସ୍ର ତଟିନୀ ଯେହ୍ନେ ସାଗରରେ ଲୀନ
ଅଜସ୍ର ପ୍ରଣୟ ଧାରା ଚିତ୍ତ ପାରାବାରେ
ମିଶିଯାଇ ଚରିତାର୍ଥ କରେ ଆପଣାରେ ।
ଏହି ମହାସତ୍ୟ ଆଜି କରି ଆବିଷ୍କାର
ମୁକ୍ତ କରିଦିଅ ଚିତ୍ତ ପ୍ରଣୟର ଦ୍ୱାର ।
ଆଜି ମୁଁ ଯାଉଛି ଆଶା ରଖିଗଲି ମନେ
ଅମୂଲ୍ୟ ମୋ ଉପଦେଶ ତୁମ ହୃଦକୋଣେ
ପ୍ରକାଶିବ ପ୍ରତିକ୍ରିୟା, ପରିଣତି ତା'ର
ଆକାଂକ୍ଷିତ ପ୍ରଣୟ ମୋ କରିବ ସ୍ୱୀକାର ।"
କଥା ଶେଷେ ଝଡ଼ ବେଗେ ତେଜି ମୋ ପ୍ରକୋଷ୍ଠ
ଚଳମାନ ଜନସ୍ରୋତେ ହେଲ ଅନ୍ତର୍ହିତ ।
ତହିଁଆର ଦିନ ମୁହିଁ ତୁମ ପଥ ଚାହିଁ
ବସିଥିଲି କିନ୍ତୁ ତବ ଦରଶନ କାହିଁ ?

ଦୀର୍ଘଦିନ ପରେ ଦିନେ କଲି ଆବିଷ୍କାର
ବନାରସ ପତ୍ରୁ ତବ ଶୁଦ୍ଧ ନମସ୍କାର

ଶ୍ରଦ୍ଧାଭରେ ପଠାଇଛ ବନ୍ଧୁପତ୍ନୀ ଲାଗି,
ଲେଖିଛ, "କି ଲାଭ ଦୀର୍ଘ ନିଶିଥିନୀ ଜାଗି
ଦିବସରେ ହେଲେ ନିଦ୍ରାଗତ, ସେହିପରି
ବାହ୍ୟ ଆଡ଼ମ୍ବର ଚିତ୍ତ ସମର୍ପଣ କରି
ପାଶ୍ଚାତ୍ୟ ଶିକ୍ଷାର ଗର୍ଭୁ ଲଭିଛି କେବଳ
ଅନାତ୍ମୀୟ ସଭ୍ୟତାର ତୀବ୍ର ହଳାହଳ ।
ପଶ୍ଚିମୁ ଫେରିଲି ନେଇ ସୁଦୀର୍ଘ ଉପାଧି
ସଙ୍ଗତେ ଆଣିଲି ମଧ ସେଠାକାର ବ୍ୟାଧି
'ନାରୀଜାତି ମଧ୍ୟେ ଖାଲି ପ୍ରଣୟିନୀ ରୂପ'
ବୁକୁରେ ମଦନ ପୀଡ଼ା ଚାହାଣି ଲୋଲୁପ,
ପ୍ରତାରିତ ହସ ଆଉ ଭଣ୍ଡ ଭଦ୍ର ଚାଲି
ଛିନ୍ନ ବସ୍ତ୍ର ପରେ ଖାଲି ତାଳି ପରେ ତାଳି ।
ଛଳନା ଓ ପ୍ରତାରଣା ମିଥ୍ୟା, ଅଭିନୟ
ତୁମର ସତୀତ୍ୱ ପାଶେ ଲଭି ପରାଜୟ
ନତ ନେତ୍ର ଆଜି, ବନ୍ଧୁ ତୁମରି ଆଘାତ
ନୟନ ଦେଇଛି ଖୋଲି ମୋର ଅକସ୍ମାତ ।
ତୁମେ ମୋ ଜନନୀ ସତୀ, ହିନ୍ଦୁର ଗୌରବ
ମୁଁ ଆଜି ପବିତ୍ର ଲଭି ତୁମରି ସୌରଭ ।

ଜଗଦ୍‌ଗୁରୁ ସଦାନନ୍ଦ ସ୍ୱାମୀଙ୍କ କୁଟୀରେ
ଲେଖୁଛି ତୁମକୁ ପତ୍ର, ସନ୍ଧ୍ୟା ଧୀରେ ଧୀରେ
ଆସୁଅଛି ନଇଁ ଦୂର ବନ ଅନ୍ତରାଳେ,
ପୂର୍ଣ୍ଣିମାର ଚନ୍ଦ୍ର ସ୍ନିଗ୍ଧ ଜ୍ୟୋତ୍ସ୍ନା ସୁଧା ଢାଳେ,
ଗଙ୍ଗାର ପ୍ରଶସ୍ତ ବକ୍ଷ ଚନ୍ଦ୍ରିକା ଉତ୍ସବେ
ମୁଗ୍ଧ ତରଙ୍ଗିତ ସ୍ୱର୍ଗ ସୁଷମା ବିଭବେ ।

ତୁମରି ଆଘାତ ବନ୍ଧୁ ତୁମ ଅପମାନ
ବିତରିଛି ମୋତେ ଆଜି ସତ୍ୟର ସନ୍ଧାନ ।

ଜଗଦ୍‌ଗୁରୁ ଶ୍ରୀଚରଣେ ସତ୍ୟ ଦୀକ୍ଷା ନେଇ
ଆଲୋକ ପାଇଛି ଘନ ଅନ୍ଧକାର ଫେଇ,

ମନର କଲୁଷରାଶି ସତ୍ୟର ପାବକେ
ଭସ୍ମସାତ୍, ଚିତ୍ତ ଦୀପ୍ତ ପୁଣ୍ୟର ଆଲୋକେ ।

ସେ ଦିନ ପ୍ରଣୟ ସଂଜ୍ଞା ଦେଇଥିଲି ଯାହା
କଳୁଷିତ ହୃଦୟର ମିଥ୍ୟା ଉକ୍ତି ତାହା ।
ବିଶୁଦ୍ଧ ହୃଦୟେ ଏକ ପ୍ରଣୟର ସ୍ଥାନ,
ନାରୀଜାତି ଜନନୀ ଓ ଭଗିନୀ ସମାନ ।
ଜନନୀ, ତନୟା ଆଉ ଭଗ୍ନୀର ଏ ଦେଶ
ପାପପ୍ରଣୟର ଆତ୍ମଘାତୀ ଛଦ୍ମବେଶ
ମୁହୂର୍ତ୍ତେ ତିଷ୍ଠି ନ ପାରେ ଏ ଧରଣୀପରେ
ଶ୍ରେଷ୍ଠ ମୋ ପ୍ରଣତି ତେଣୁ ତୁମରି ପୟରେ ।"

ସମ୍ବୋଧି ଲେଖିଛ ପୁଣି, "ପୁଣ୍ୟମୟୀ ସତୀ,
ଜଗତ ପ୍ରକୃତି କୃଷ୍ଣ ଏକମାତ୍ର ପତି ।
ରମଣୀ, ରମଣ ନାହିଁ ଭେଦାଭେଦ ଯହିଁ
ପବିତ୍ରିତ ପ୍ରଣୟର ପ୍ରବାହିଣୀ ବହି
ଉର୍ବରା କରଇ ଚିତ୍ତତଳ ସୁଶ୍ୟାମଳ,
ଅନନ୍ତ ସୌନ୍ଦର୍ଯ୍ୟ ତହିଁ ଚିର ସମୁଜ୍ଜ୍ୱଳ ।"

ପତ୍ରପାଠ ଶେଷେ ନେତ୍ରୁ ରୁଦ୍ଧ ଅଶ୍ରୁରାଶି
ସହସା ପଡ଼ିଲା ଝରି, ଅଶ୍ରୁଜଳେ ଭାସି
ହେରିଲି କଳ୍ପନା ନେତ୍ରେ ତୁମ ପୁଣ୍ୟ ଛବି
ପ୍ରଭାତର ଦିଗ୍‌ବଳୟେ ଯଥା ରକ୍ତ ରବି ।
ଦେଖିଲି ଯୋଗସ୍ଥ ତୁମେ ମୁଦ୍ରିତ ନୟନେ
ସ୍ନିଗ୍ଧ ତରୁ ଛାୟାତଳେ ପୂତ ମୃଗାସନେ,
ଯୋଗର ପ୍ରଭାବେ କ୍ଷରେ ସତ୍ୟ ତେଜୋରାଶି,
ଧ୍ୟାନମଗ୍ନ ତନୁ ତବ ଉଠିଛି ଉଦ୍‌ଭାସି ।
ପ୍ରଶାନ୍ତ ଲଲାଟ ପୁଣ୍ୟ ତେଜେ ସମୁଜ୍ଜ୍ୱଳ,
ସତ୍ୟର ପ୍ରତୀକ ଶାନ୍ତ ନୟନ ଯୁଗଳ ।
ଅନ୍ଧକାର ଅନ୍ତରାଳେ ଆଲୋକ ପ୍ରକାଶ,

ମେଘମୁକ୍ତ ସ୍ନିଗ୍ଧ ଜ୍ୟୋତ୍ସ୍ନାସ୍ନାତ ଚିତ୍ତାକାଶ ।
ସେଇ ପୁଣ୍ୟ ଛବି ଆଜି ମୋ ହୃଦୟ ତଳେ
ଦୁର୍ନିବାର ସତ୍ୟଦୀପ ଶିଖାସମ ଜଳେ,
କାନେ କାନେ ଶୁଣାଏ ସେ ଅନନ୍ତର ବାଣୀ
ଅଶାନ୍ତ ହୃଦୟେ ପୁଣ୍ୟ ପ୍ରଶାନ୍ତ କାହାଣୀ ।
ହେ ବନ୍ଧୁ, ହେ ସତ୍ୟନିଷ୍ଠ, ଘେନ ମୋର ନତି
ସତ୍ୟର ଚରଣେ ଲୁବ୍‌ଧ ମିଥ୍ୟାର ପ୍ରଣତି ।

## ନା

ମୁଁ ଚାହେଁନା କାନ୍ଦିବାକୁ, ନିର୍ଝରର ଶେଷେ ଯେଣୁ ଲୁପ୍ତ ହେବ
ପ୍ରାଣର ଆବେଗ, ◻◻
ମୁଁ ଲୋଡ଼େନା ମିଳନରେ, ପ୍ରୟୋଜନ ଉତ୍କଣ୍ଠିତ ପ୍ରତିଟି ମୁହୂର୍ତ୍ତ
ଅନନ୍ତ ଉଦ୍‌ବେଗ ।

ମୁଁ ଚାହେଁନା ଯାତ୍ରା ମୋର ଶେଷ ହେଉ, ଇଚ୍ଛେନା ମୁଁ ସଂଗୀତର
ହେଉ ଅବସାନ,
କାମନା ମୁଁ କରେ ନାହିଁ କ୍ଷୁଧା ମୋର ଶାନ୍ତ ହେଉ ପୂର୍ଣ୍ଣତାର
ଲଭି ଆସ୍ୱାଦନ ।

ପରିଣତି ମୃତ୍ୟୁ ଲଭୁ, ଅସମାପ୍ତ, ଅନ୍ତହୀନ, ଅବ୍ୟକ୍ତର
କୌତୂହଳ ସାଥେ
ଚିତ୍ତ ମୋର କ୍ରୀଡ଼ା କରୁ ଅସମ୍ପୂର୍ଣ୍ଣ ସଂଶୟର ପ୍ରଶ୍ନବାଚୀ
ଅନ୍ଧକାର ରାତେ । ◻◻

## ସମାଧାନ

ଏ ସବୁ ପ୍ରାଚୁର୍ଯ୍ୟ ତଳେ ମୁଁ ଦେଖୁଛି ଆପଣାର ତୃପ୍ତିର ମୃତ୍ୟୁକୁ,
ଏ ମରଣ ସ୍ୱାଭାବିକ, ତଥାପି ଏ ଚାହିଦାର ପୂର୍ଣ୍ଣଚ୍ଛେଦ କାହିଁ ?
ସ୍ୱଳ୍ପର ଉଚ୍ଛ୍ୱାସୁ ଜାଗେ ଅତିରିକ୍ତ ପ୍ରାପ୍ତିର ପ୍ରୟାସ,

ଦୂରଦୃଷ୍ଟି ଅଭାବରୁ ହଜିବାର ଦୁଃଖର ଦହନ ।
ପ୍ରାଚୁର୍ଯ୍ୟରେ ଦୁଃଖ ଅଛି ? ଆଶୀର୍ବାଦ ଅଭିଶାପ ନୁହେଁ,
ସେ ସବୁ ଆଖିର ଭୁଲ ଅଜୀର୍ଣ୍ଣର ଅଶ୍ୱସ୍ତିର ତଳେ
ଅତୃପ୍ତି ଜମାଟ ବାନ୍ଧେ, ଗ୍ରହଣର ଶକ୍ତିର ଅଭାବ
ପ୍ରାପ୍ତିକୁ ବିକୃତ ଦେଖେ, ନିଜ ଭୁଲ୍ ଭୁଲି ହୋଇଯାଏ ।

ପ୍ରାଚୁର୍ଯ୍ୟ ମର୍ଯ୍ୟାଦା ଲଭୁ ଗ୍ରହଣର ଶକ୍ତିର ସୀମାରେ,
ଭ୍ରାନ୍ତିହୀନ ଭାବନାରେ ଉଭୟର ସମନ୍ୱୟ ଘଟୁ । □□

## ଭିକ୍ଷା

ମୋତେ ନେବ ?
ମୋତେ ଗୃହବଧୂ କରି ନେବ ?
ମୋର ସୀମନ୍ତେ ନାଲି ସିନ୍ଦୂରରେଖା ଦେବ ?
ମୁଁ ଯେ ବାରବଧୂ ମୋତେ କୁଳବଧୂର କି ଗଉରବ ଥରେ ଦେବ ?

ମୋତେ ଉପହାସେ ଘୃଣା ଫୁତ୍କାରେ ଦିଅ ଠେଲି,
ସାଧୁ ସମାଜ କୁହାଟେ ବାର-ଅଙ୍ଗନା ବୋଲି,
ମୁଁ ଯେ କୁତ୍ସିତା ତେଣୁ ନିଷ୍ଠୁରେ ମୋତେ ଦୂରେ ଅପସାରି ଦେଇ
ହାୟ, ଅମୃତମୟୀ ନିଜ ଜନନୀକୁ,
ଅନ୍ତରତମା ଜଣେ ଭଗ୍ନୀକୁ
ନିର୍ଦ୍ଦୟେ ଯାଅ ଭୁଲି ।

ତୁମେ କେବେ ପଚାରିଛ ସାନ୍ତ୍ୱନା ଦେଇ ଗାଇବାକୁ ମନ କଥା,
ତୁମେ କେବେ କି ଦେଖିଛ ନୟନେ ମୋହର ଅଶ୍ରୁ ସଜଳ ବ୍ୟଥା,
ତୁମେ ଚାହିଁଛ କି କେବେ ଜାଣିବାକୁ କିଆଁ କଳଙ୍କିତା ମୁଁ ହେଲି,
ତୁମେ ଲୋଡ଼ିଛ କି କେବେ ଶୁଣିବାକୁ ଥରେ ପଥ ଛାଡ଼ି ନାରୀ
ଅପଥେ କି ଲାଗି ଗଲି ?

ନିଜେ ଭୁଲ୍ କରି ନିଜ ଭୁଲ୍ କଥା ଶୁଣିବାକୁ ଲାଗେ ଡ଼ର ?
ଆଜି ସମାଜେ ଯାହାର ଥାନ ଉଚ୍ଚରେ ମାନ ଉଜ୍ଜ୍ୱଳତର,

ଭୟେ ଧର୍ମ ଯାହାର ଚରଣ ବନ୍ଦେ, ସମ୍ମାନ ଦିଏ ଢ଼ାଳି,
ହାୟ, ସେହିପରି ଜଣେ କେହି ଉନ୍ନତ,
ପୂଜ୍ୟ ମହତ,
ପ୍ରୀତି ଅଭିନୟେ
ଦେହର ଭୋକରେ
କ୍ଷୁଧା ମେଣ୍ଟାଇ ମୋତେ ଦେଇଗଲା ଜାଳି,
ମୋର ନାରୀ ସମ୍ମାନ ପରେ ଚିର ଲାଗି ବୋଳି ଦେଇଗଲା କାଳି ।

ମୁଁ ତ ଚାହିଁଥିଲି ପତ୍ନୀ ହେବାକୁ ସହଧର୍ମିଣୀ ରୂପେ,
ମୁଁ ତ ଚାହିଁଥିଲି ପୁର ମଣ୍ଡିବି ପ୍ରୀତି ଅର୍ଚ୍ଚନା ଧୂପେ,
ମୁଁ ତ ଲୋଡ଼ିଥିଲି ଗୃହିଣୀର ଗୁରୁ ଗୌରବ ଲଭି
ସତୀ, ସାଧ୍ୱୀର ସମ୍ମାନ ନେବି ଶିରେ
ଶତ ସନ୍ତାନ ଗାନ୍ଧାରୀ ହେବି ଶ୍ୟାମଳ ଧରଣୀ ତୀରେ,
ହାୟ, ଏ କି ହେଲା, ଏ କି ହେଲା,
ପୁଷ୍ପିତ ଚାରୁ ଯୌବନ ମମ ଅଭିଶପ୍ତ କେ କଲା ?

ପ୍ରଶ୍ନ ମୁଁ ଯଦି କରେ ଏଥିଲାଗି ଦାୟୀ କିଏ, ଦାୟୀ କିଏ ?
ବିବ୍ରତ ସୁରେ ତୁମେ ତ କହିବ,
ତୁମର ଏ ସାଧୁ ସମାଜ କହିବ,
ଉତ୍ତରେ ଖାଲି "କିଏ" ?
ଦୋଷୀ କିଏ ଅବା କିଏ ନିର୍ଦ୍ଦୋଷ ସେଥିଲାଗି ଆଉ
ବିଚାର ଲୋଡ଼ୁନି ମୁହିଁ,
ତୃଷାତୁରା ଖାଲି ଚାହୁଁଛି ମୁଁ ନାରୀ ସମ୍ମାନ ଫେରି ପାଇବାକୁ ଥରେ
ସମାଜର ବୁକୁ ଛୁଇଁ ।
ମୋତେ ନିଅ,
ମୋତେ ଗୃହବଧୂ କରି ନିଅ,
ମୋ ସୀମନ୍ତେ ନାଲି ସିନ୍ଦୂରରେଖା ଦିଅ,
ପଙ୍କ କଳ୍ମଷ ସବୁ ପୋଛି ଦେଇ ମୋତେ କୁଳ ରମଣୀର
ଗଉରବ ଥରେ ଦିଅ । ◻◻

# ସ୍ୱୀକାର

ପ୍ରଭାତର ରକ୍ତ ରବି ଯାମିନୀର ଶୀତଳ ଚନ୍ଦ୍ରମା
ପରସ୍ପରେ କେହି କେବେ ପାରିବେନି କରି ଅସ୍ୱୀକାର,
ଅନ୍ଧକାର ଆକାଶରେ ମୁକ୍ତାସମ ତାରକାର ଦ୍ୟୁତି
ଦିବସର ସୂର୍ଯ୍ୟାଲୋକେ ନୀରବରେ କରିଛି ସ୍ୱୀକାର ।

ହାସ୍ୟ ପ୍ରତ୍ୟାଖ୍ୟାନ କରି ଅଶ୍ରୁ କେବେ ପାରିବ କି ବଞ୍ଚି ?
ଜୀବନ ପାରିବ କେବେ ମରଣକୁ ଅସ୍ୱୀକାର କରି,
ପ୍ରାବୃଟ ଜୀବନ ଲଭେ ନିଦାଘର ବିଶୁଷ୍କ ଅନ୍ତରେ,
ତଟିନୀ ପାରେ କି କେବେ ରୁକ୍ଷ ଶୈଳ ସ୍ଥିତିକୁ ବିସ୍ମରି ?

ପ୍ରତିଷ୍ଠା ଲଭେ କି ସତ୍ୟ ଶିବ ଆଉ ସୁନ୍ଦରକୁ ଭୁଲି ?
ଅଦ୍ୱୈତ ଅସ୍ତିତ୍ୱ ହଜେ ସ୍ନିଗ୍ଧ ଦ୍ୱୈତ ଅନୁପସ୍ଥିତିରେ,
ରାମାୟଣ ହଜିଯାଏ କୈକେୟୀର କ୍ରୂର ସୃଷ୍ଟି ବିନା,
ରାମର ମହତ୍ୱ ଫୁଟେ ରାବଣର ଧ୍ୱଂସର ଗୀତିରେ ।

ସାମ୍ୟବାଦ ପ୍ରତିଭାତ ପୁଞ୍ଜିବାଦ ପ୍ରତିଯୋଗିତାରେ,
ଅମୃତର ଆବିର୍ଭାବ ଗରଳର ଦାରୁଣ ମନ୍ଥନେ,
କ୍ଳିଷ୍ଟମନ ଜଳି ଜଳି ଆବିଷ୍କାର କରଇ ବିବେକ,
ମୁକ୍ତିର ପ୍ରଦୀପ ଜଳେ ବନ୍ଧନର ତମସା ଗହନେ ।

ପ୍ରତି ଅଣୁ, ପରମାଣୁ ପରସ୍ପରେ କରିବେ ସ୍ୱୀକାର,
ଏକର ସ୍ଥିତିରେ ଅନ୍ୟ ଉପସ୍ଥିତି ଆସଇ ବିଚାରେ,
ଏତେ ବଡ଼ ସତ୍ୟ ଯେବେ ବିଶ୍ୱମୟ ରହିଛି ଜଡ଼ିତ,
ଅସ୍ତିତ୍ୱ କିପରି ମୋର ଅସ୍ୱୀକାର କର ନିର୍ବିକାରେ ।

ସଙ୍ଗୀତ ପାରେ କି କେବେ ରାଗିଣୀକୁ ଅସ୍ୱୀକାର କରି
ତୁମରି ଅନ୍ତରେ ମୁଁ ଗୋ ଲିଭି ମଧ୍ୟ ଜଳେ ସେହିପରି । ◻◻

# ନବାଙ୍କନ

ସାହସ ସଞ୍ଚୟ କରି ଆସ ଆସ ବନ୍ଧୁ
ନିଭୃତ ଏ କକ୍ଷେ ମୋର, ନିଃଶଙ୍କ ହୃଦୟେ,
ସ୍ତିମିତ ପ୍ରଦୀପ ଶିଖା ପବନ ହିଲ୍ଲୋଳେ
ଇଙ୍ଗିତେ ଆହ୍ୱାନ କରେ ଚନ୍ଦ୍ରର ଉଦୟେ ।

ଶେଫାଳୀର ଗନ୍ଧ ଆସେ, ରଜନୀଗନ୍ଧାର
ସୁରଭି ଚଞ୍ଚଳ କରେ ପ୍ରମତ୍ତ କାମନା,
ସୃଷ୍ଟିର ସଙ୍ଗୀତ ଗାଇ ଆସ ଆସ ବନ୍ଧୁ
ଚିତ୍ତ ଅନ୍ତରାଳେ ଶତ ଅମୃତ ଯାଚନା ।

ଉର୍ଦ୍ଧ୍ୱେ ନୀଳାକାଶେ ଲକ୍ଷ ତାରକାର ମେଳା,
ନିମେ ଶ୍ୟାମ ଧରିତ୍ରୀର ଅଜସ୍ର ଉତ୍ସବ,
ସୃଜନର ଶେଷ ନାହିଁ, ଅନନ୍ତ ପ୍ରବାହେ
ଅକ୍ଷୁଣ୍ଣ ରଖିଛି ବିଶ୍ୱ ସୃଷ୍ଟିର ଗୌରବ ।

ଦୁର୍ନିବାର ଜୀଇଁବାର ଆକୁଳ ପିପାସା,
ଉଚ୍ଚେ ଶିର ଟେକିବାର ଦୁରନ୍ତ ବାସନା,
ଅତୃପ୍ତିରେ ତୃପ୍ତିଆଣେ, ନୟନରେ ଦୀପ୍ତି,
ଜୀବନ ମୁହୂର୍ତ୍ତେ ଭୁଲେ ପଥର ଯାତନା ।

ସ୍ୱାଗତ ମୁଁ ତେଣୁ କରେ ହେ ସଖା ସୁନ୍ଦର,
ଆସିବାକୁ କକ୍ଷେ ମୋର ଅନ୍ଧ ଅନ୍ଧକାରେ,
ଗାଇବାକୁ ଅନାଗତ ଅମୃତ ସଙ୍ଗୀତ,
ତୋଳିବାକୁ 'ନବସୃଷ୍ଟି' ବୀଣାର ଝଙ୍କାରେ ।

ବୁକେ ବୁକୁ ରଖି ରଚି ରଚି ଅଭିଯାନ
ବିଶ୍ୱର ସୃଷ୍ଟିରେ କିଛି କରିଯିବା ଦାନ । □□

## ପରାଜୟ

ତୁମକୁ ମୁଁ ଘୃଣା କରେ ? ଘୃଣା ଠିକ୍ କହି ତ ପାରୁନି,
ଈର୍ଷା କରେ ଅବଲୋକି ତୁମ କଳା ସୃଷ୍ଟିର କୌଶଳ,
ମନେ ମନେ ଜଳି ଜଳି ଅଗ୍ନ୍ୟୁତ୍ପାତେ ଲାର୍ଭାସ୍ରୋତ ସମ
ତୁମର ଅମୃତ ପରେ ଉଦ୍‌ଗାରେ ମୁଁ କୁତ୍ସାର ଗରଳ ।

ଯୁକ୍ତିର ପ୍ରଭାବେ ତବ ସୃଷ୍ଟିପରେ କଳଙ୍କ ମୁଁ ଲେପେ,
ଅନ୍ୟର ମାନସେ ମୁହିଁ ତୁମ ଲାଗି ସୃଜେ ଖାଲି ଛି, ଛି,
ଏପରି କି ଈର୍ଷାରେ ମୁଁ ଦଗ୍‌ଧ ହୋଇ ତୁମ ମୁହଁ ପରେ
ତୁମର ସୃଷ୍ଟିକୁ ନିନ୍ଦି ମନେହୁଏ ତପ୍ତ ହୃଦେ ସାନ୍ତ୍ୱନା ଲଭିଛି ।

ତୁମେ ଟିକେ ହସିଦିଅ ଯେପରିକି କିଛି ତ ହୋଇନି,
ବିଷାକ୍ତ ମୋ ତୀର ତବ ବୁକେ ବାଜି ଫେରି ଆସେ ହାୟ
ଅପମାନେ ଜର୍ଜରିତ, ତୁମେ ମୋର ହାତେ ହାତ ରଖି
ଶାନ୍ତ କଣ୍ଠେ କୁହ, "ତେବେ ବର୍ତ୍ତମାନ ଘେନୁଛି ବିଦାୟ" ।

ସେ ମେଲାଣି ଗୀତି ନୁହେଁ ମୋ କୁତ୍ସାର ଲେଉଟା ଆଘାତ,
କ୍ଷତର ଜ୍ୱାଳାରେ ଜଳି ମଧୁମୟ ସୃଷ୍ଟିରେ ତୁମର
ହୀନ ପ୍ରତିପାଦିତ ମୋ କରିବାର ଅପଚେଷ୍ଟା ଯେତେ
ସବୁ ହାୟ ବ୍ୟର୍ଥ ହୁଏ, ମୋ ଆଖିରେ ଲୁହ ନିରୁତ୍ତର ।

ତୁମରି ଭିତରେ ମୁଁ ଯେ ହଜିଯାଏ, ହଜିଯାଏ ତୁମରି ସୃଷ୍ଟିରେ,
ଈର୍ଷା ମୋର ରିକ୍ତ ହୁଏ, ଆର୍ଦ୍ର ହୁଏ ବନ୍ଧୁ ତବ ଅମୀୟ ବୃଷ୍ଟିରେ । □□

## ଅବୋଧ୍ୟ

ଗୀତ ମୁଁ ଗାଉଛି ଛନ୍ଦେ ତୁମେ ତାହା ପାରୁନାହଁ ବୁଝି,
ବିଦ୍ରୁପର ହାସ୍ୟେ କୁହ ବକ୍ତବ୍ୟେ ମୋ ଅର୍ଥ ନାହିଁ କିଛି
ଶବ୍ଦର ବିଳାସ ମାତ୍ର, ମର୍ମହୀନ, ଆତ୍ମପ୍ରବଞ୍ଚନା,
କିନ୍ତୁ ମୁଁ କହୁଛି ବନ୍ଧୁ ଶୁକ୍ତି ଗର୍ଭେ ମୁକ୍ତା ବିଳସୁଛି ।

ମୋର ଏ ସଙ୍କେତ ଆଉ ପ୍ରାଣପୂର୍ଣ୍ଣ ଇଙ୍ଗିତର ପଛେ
ଜୀବନର ମୂଲ୍ୟ ଅଛି, ମୂଲ୍ୟ ଅଛି ସ୍ନିଗ୍ଧ ବିକାଶର,
ତୁମେ ତା ମଣୁଛ ମିଥ୍ୟା ଛଳନା ଓ ଅଭିନୟ ବୋଲି
ପ୍ରୟାସ ନ କରି ହାୟ ହେରିବାକୁ ପଥ ସାଧନାର ।

ଦୂରେ ରହି ତାଚ୍ଛଲ୍ୟର ହସ ହସି ବିଦ୍ରୂପ କରିବା
ଉଚିତ୍ କେବେ କି ବନ୍ଧୁ, ଆସ ବାରେ କୁଟୀର ଅଙ୍ଗନେ,
ଅମୃତ ପ୍ରଦୀପାଲୋକେ ଅବଲୋକ ମୋର ଏ ପ୍ରକାଶ
ନ ଜଳି ଅଯଥା ରୋଷେ, ମର୍ମଦାହେ, ଈର୍ଷାର ଗହନେ ।

ସାଥେ ମୋର ନୃତ୍ୟ କର ନୃତ୍ୟ କର ଚରଣର ତାଳେ,
କଣ୍ଠେ ମୋ ମିଶାଅ କଣ୍ଠ, ସୂର୍ଯ୍ୟ ଜାଗୁ ଦୂରେ ଚକ୍ରବାଳେ । ▫▫

## ଗତି ଓ ପ୍ରଗତି

ହଠାତ୍ ମୁଁ ରହିଗଲି ପଶ୍ଚାତୁ ମୋ' ଡ଼ାକିଦେଲ ଯେଣୁ,
ବୁଝିଥାନ୍ତି ଯଦି ତାହା ଅର୍ଥଶୂନ୍ୟ, ନିଷ୍ଫଳ ଆହ୍ୱାନ
ଅଶ୍ୱର ଲଗାମ କଷି ଅର୍ଦ୍ଧପଥେ ବିପୁଳ ଆବେଗେ
ରୋକି ମୁଁ ନ ଥାନ୍ତି କେବେ ଊର୍ଦ୍ଧ୍ୱଶ୍ୱାସ ଗତି ବେଗବାନ ।

ସମ୍ମୁଖେ କି ଦେଖୁ ନାହଁ ଅସ୍ତଯାଏ ଜୀବନ ତପନ
ବୁଣି ବୁଣି ଚତୁର୍ଦ୍ଦିଗେ ସ୍ୱର୍ଣ୍ଣରେଣୁ ବର୍ଣ୍ଣ ମହୋତ୍ସବେ,
ଉଦ୍ଦାମ, ଅନନ୍ତ ଆଶା ତନ୍ଦ୍ରାତୁର ଦୁଃଖେ ତୋଳେ ହାଇ,
ଶିରେ ଶୀର୍ଣ୍ଣ କରାଘାତେ ଆତ୍ମା ଡୁବେ ବ୍ୟଥାର ବିଭବେ ।

ଉର୍ଣ୍ଣନାଭରୂପୀ ଶୋଷି ମୁହୁର୍ମୁହୁଃ ତନୁର ଶୋଣିତ
ନିଦାରୁଣ ନିଷ୍ପେଷଣେ ପ୍ରବଞ୍ଚକ ଅଟ୍ଟହାସ୍ୟ ତୋଳି
ମୃତ୍ୟୁ ଦେବତାର ପଦେ ଅର୍ପିଥିଲ ଯୋଗ୍ୟ ଉପହାର
ସାରା ଜୀବନରେ ଶତ ସାଧନା ମୋର ଦେଇ ଜଳାଞ୍ଜଳି ।

ତୁମଠୁ ମୁଁ ମୁକ୍ତି ନେଲି ଅକସ୍ମାତ ଦିନେ ମଧ୍ୟାହ୍ନରେ
ଛିନ୍ନ କରି ଚରଣର କ୍ରୁର, ରୁକ୍ଷ, ନିଷ୍ଠୁର ଶୃଙ୍ଖଳ,
ଗତିରେ ବିଦ୍ୟୁତ୍ ସୃଜି ଯାତ୍ରୀ ହେଲି ଭୂଲୋକେ, ଦ୍ୟୁଲୋକେ,
ସୀମାହୀନ ଆନନ୍ଦର ଶିହରଣେ ଅନ୍ତର ଉଜ୍ଜ୍ୱଳ ।

କବରୀ କେତନ ଖୋଲି ନୀଳାମ୍ବରେ ସୁରଭି ବିତରି
ଦୁକୂଳ ମର୍ମରେ କଲି ଯୌବନର ଯାତ୍ରୀ ନିମନ୍ତ୍ରଣ,
ଅଳିକୁଳ ଗୁଞ୍ଜନରେ ହାଣି ହାଣି ତୀର୍ଯ୍ୟକ ଚାହାଣି
ରୂପର ଦର୍ପରେ କଲି ଲାଳାୟିତ ବନ୍ଦନା ଗ୍ରହଣ ।

ଲୀଳାପଦ୍ମ କରେ ଭାସି ନଭସ୍ଥଳେ ତଳ ଭ୍ରୂରୁ ଲାସ୍ୟେ,
ଅଶ୍ୱପୃଷ୍ଠେ ଛୁଟି ଦ୍ରୁତେ କାମନାର ପଥେ ଧରିତ୍ରୀର
ଅକ୍ଳାନ୍ତ ମୁଁ, ମନ୍ଦାକିନୀ ସ୍ରୋତସ୍ୱତୀ ସମ ବେଗବତୀ,
ଅଶ୍ୱ ଖୁରାଘାତେ ଉଡ଼େ ଶାନ୍ତ ଧୂଳି କ୍ଳାନ୍ତ ଧରଣୀର ।

ମୁଁ ଯେବେ ଏସନ ମୁଗ୍ଧ ଅଗ୍ରଗାମୀ, ଡ଼ାକିଲି ପଶ୍ଚାତୁ,
ଶୁଣିବା ମାନସେ କିଛି ସ୍ଥିର କଲି ଗତି ତୁରଗର,
ମୃତ ଶତାବ୍ଦୀର ସେହି ଜରାଜୀର୍ଣ୍ଣ, ଶ୍ଳଥ ଅନୁରୋଧ
କୁସଂସ୍କାର ଆବର୍ଜନା, ଶୋଷଣର ପୁରାତନ ଗୀର ।

ସେହି ପଛେ ଫେରିଚାଲ, ପୋଲାଙ୍ଗର ନିଷ୍ପ୍ରଭ ପ୍ରଦୀପେ,
କମ୍ପିତ କଜ୍ଜ୍ୱଳ ଶିଖା ଜଳେ ବସି ପଢ଼ିବାର ରୀତି,
ପୁରାତନ ବେଷ୍ଟନୀରେ ବନ୍ଦୀ ରହି ସମ୍ମୁଖେ ଭୁଲିବା,
ଦୀର୍ଘଦିନ ବ୍ୟବଧାନେ ବଦଳିନି ସ୍ଥବିରର ନୀତି ।

ଅନ୍ଧକାର ଆବରଣେ ନିଜତ୍ୱ ମୁଁ ବିସର୍ଜିବି ସତେ ?
ସମୟର ଗତି ଚକ୍ରେ ଗଢ଼ି ଗଢ଼ି ମୁଁ ଯିବି ଆଗେଇ,
ଆଣବିକ ଉଦ୍‌ଯାନେ ବା ରକେଟ୍‌ରେ ରଚିବି ପ୍ରଗତି
ଅନାଗତ ଶତାବ୍ଦୀର ବିଜ୍ଞାନର ଉଦ୍ଭାବନ ନେଇ ।

ନକ୍ଷତ୍ରର ତୀବ୍ର ଗତି, ଇଚ୍ଛା ଯଦି ସଙ୍ଗ ନିଅ ମୋର,
ନତୁବା ପଶ୍ଚାତେ ରୁହ, ପ୍ରଗତିର ନିଷ୍ଠୁର ଉତ୍ତର । □□

## ସ୍ୱପ୍ନାୟନ

ନିଦ୍ରା ମୋର ଭାଙ୍ଗ ନାହିଁ ଶୋଇବାକୁ ଦିଅ ମହୋଲ୍ଲାସେ,
ଦେଖିବାକୁ ଦିଅ ମୁଗ୍‌ଧେ ମଧୁମୟ ସବୁଜ ସ୍ୱପନ,
ଅନନ୍ତ କାମନା ସତ୍ତ୍ୱେ ଜୀବନେ ଯା' ପାରିନି ମୁଁ ପାଇ
ସ୍ୱପ୍ନଲୋକେ କରିବାକୁ ଦିଅ ସେହି ସୁଧା ଆସ୍ୱାଦନ ।
ଜୀବନରେ ମୁକ୍ତି ନାହିଁ, ସପନରେ ମୁକ୍ତି ମିଳୁ ମୋତେ,
ନିଦ୍ରା ମୋର ଦୀର୍ଘ ହେଉ ଦୀର୍ଘ ହେଉ ସ୍ୱପ୍ନର ଦ୍ରାଘିମା,
ଉଷ୍ଣ ନିଃଶ୍ୱାସର ସ୍ପର୍ଶ ଅନୁଭବି କପୋଳେ, କପାଳେ,
ପ୍ରୀତିର ଶୀହାରେ ହେଉ ଚରିତାର୍ଥ ତନୁର ତନିମା ।

ନୀଳ ନୟନେ ମୋ' ଯାଉ ଭରି ନିଶା ଆତ୍ମବିସ୍ମୃତିର,
ଅପାଙ୍ଗ ନର୍ତ୍ତନେ ଫୁଟୁ ଅନଙ୍ଗର ଚଞ୍ଚଳ କମ୍ପନ,
ସୁଧାପ୍ଲୁତ, ଅବଦାତ, ଜ୍ୟୋତ୍ସ୍ନାସ୍ନାତ ସ୍ୱପ୍ନର ସ୍ୱର୍ଲୋକେ
ଚନ୍ଦନ ଚର୍ଚ୍ଚିତ ହେଉ ଜାଗ୍ରତର ବିଦଗ୍‌ଧ ଯୌବନ ।

ନିଦ୍ରା ମୋର ଭାଙ୍ଗ ନାହିଁ ଶୁଣିବାକୁ ଦିଅ ଅନିବାର
ସ୍ୱପ୍ନର ଅମର ଗୀତି ଅନାହତ ବୀଣାର ଝଙ୍କାର । □□

## ଦାନ

କ୍ରୋଧର ଉତାପେ ଆମେ ଯେତେ କଥା ପରସ୍ପରେ କହୁ
ମିଳନର ମହୋତ୍ସବ ପରେ କିନ୍ତୁ ସବୁ ଭୁଲିଥାଉ ।
ବିରକ୍ତି ଉଦୟ ଆଗୁଁ ସ୍ଥିର ଚିତ୍ତେ ଚିନ୍ତା ଯଦି ପାରୁଥା'ନ୍ତୁ କରି
ଏ ନିଶ୍ଚିତ ପରିଣତି, ଆମେ କ'ଣ କେବେ ବୃଥା ମନତଳେ
ରଚନ୍ତୁ ପ୍ରଳୟ ?

ମାତ୍ର ଏ ବିଚାର ବୁଦ୍ଧି ଜନ୍ମ ଯଦି ଲଭୁଥା'ନ୍ତା ପ୍ରତ୍ୟେକ ବିବ୍ରତ ମାନସେ
ତେବେ ମାନ, ଅଭିମାନ ଅମୃତର ଆସ୍ୱାଦନୁ ଏ ମଣିଷ ଚିରଲାଗି
ବଞ୍ଚିତ ହୁଅନ୍ତା,
ତେଣୁ ଏ ଅକ୍ଷମତାରେ ନୀରବେ ମୁଁ ସ୍ୱାଗତ ଜଣାଏ । ▫▫

## ସଂଶୀତି

ତୁମକୁ ସନ୍ଦେହ କରେ ଏ ଯେପରି ଭୟାନକ ଭୁଲ,
ନିଃସଂଶୟ ମନ ନେଇ ନିରୁଦ୍‌ବେଗ ପ୍ରଣୟ ରଚନା
ମୋ' ପକ୍ଷେ ତା' ଅସମ୍ଭବ, ପ୍ରୀତି ମୋର ଚିର ଶଙ୍କାକୁଳ,
ସେ ଶଙ୍କାର ଆବର୍ତ୍ତରେ ମୁଁ ତୁମକୁ ନିତି ନିତି ନୂଆକରି ପାଏ ।

ସନ୍ଦେହର ବିଶ୍ଳେଷଣ ପ୍ରୀତି ମୋର ଚିର ଶାଦ୍‌ବଳିତ,
ମୁଁ ତେଣୁ ସଂଶୟୀ ରାଧା ତୁମକୁ ହରାଇବାର ଆତଙ୍କେ ଆତୁରା,
ପ୍ରୀତି ମୋର ଜଡ଼ ନୁହେଁ, ନିଶ୍ଚିନ୍ତରେ ନିଃଶ୍ୱାସ ମାରିବା
ପ୍ରଣୟର ଧର୍ମ କେବେ ? ପ୍ରତିକ୍ଷଣେ ମନ ପାପ ଛୁଏଁ ।

ମୁଁ ଭୀଷଣ ସ୍ୱାର୍ଥପର, ଯଦି ତୁମେ ରୁଷ୍ଟ ହେଉଥାଅ
ସେ ତେବେ ତୁମର ଭୁଲ, ସଂଶୟ ମୋ' ତୁମର ଗୌରବ,
ସଂକୀର୍ଣ୍ଣ ମୋ' ଦୃଷ୍ଟିକୋଣ, ପକ୍ଷୀ ଆଖି ମୋ ଆଖିରେ ଖାଲି,
ସଂଶୟୁ ମୁକ୍ତିର ଅର୍ଥ ଏକନିଷ୍ଠ ପ୍ରଣୟର ଜୀବନ୍ତ ସମାଧି । ▫▫

## ସମାଧି

ଚିରଦିନ ତୁମେ ମୋର ଅଭିମାନେ ଅପମାନ ଦେଇ
ବାସ୍ତବ ଦୃଷ୍ଟିରେ ଖାଲି ଅନ୍ଧ ସମ ବିଚାର କରିଛ,
ପ୍ରକାଶ ତା' କେତେଦୂର ଉଚିତ ବା ନ୍ୟାୟାନୁମୋଦିତ
ନୀତି ବିଶ୍ଳେଷଣେ ନିଜ ଜ୍ଞାନଗର୍ଭ ଯୁକ୍ତି ହିଁ ବାଢ଼ିଛ ।

ମୁଁ ପଚାରେ ନାରୀମନ ମାନ କ'ଣ ନିକିତିରେ ମାପ କରି ହୁଏ ?
ଜ୍ଞାନ ଦେଇ ବୁଝାଯାଏ ସେ ମନର ମାନର ମହତ୍ତ୍ୱ ?

କାରଣ ନ ଥାଇ ଯା'ର ଧର୍ମ ହେଲା ହଠାତ୍ ଫୁଟିବା
ନ୍ୟାୟ ଓ ନୀତିକୁ ଭୁଲି ଝଡ଼ ସମ ପ୍ରଳୟ ରଚିବା ।
(ସେ ପ୍ରଳୟ ପୟୋଧିରେ କେବେ ଦିନେ ବୁଡ଼ ବି ଦେଇଛ ?)
ତୁମର ତର୍କରେ ତେଣୁ ମୁଁ କ୍ରମଶଃ ପାଷାଣ ପାଲଟେ,
ମୋ' ମନର ପୁଞ୍ଜିଭୂତ ଏତେ ମାନ, ଅଭିମାନ, ଆକୁଳ ଆବେଗ
ନୀରବେ ବାହୁନେ ଆଜି, ମୋର ଏହି ନିଷ୍କ୍ରିୟତା କିନ୍ତୁ
ତୁମକୁ କରିଛି ସୁଖୀ, ମୁଁ କୁଆଡ଼େ ଚମତ୍କାର ବଦଳି ଗଲିଣି । □□

## ଅବୁଝା

ପ୍ରତିଦିନ କର୍ମଶେଷେ ସଂଧ୍ୟାପରେ ତୁମେ ଯେବେ ଘରକୁ ଲେଉଟ
ମୁଁ ପ୍ରାୟ ପଚାରିଥାଏ "ଆଜି କିଆଁ ଡେ଼ରିହେଲା ଏତେ ?"
ବିସ୍ମୟେ ଅବାକ୍ ତୁମେ, ଆଖି ପଛେ ପ୍ରଚ୍ଛନ୍ନ ବିରକ୍ତି
ଅଯଥା ଏ ଦୋଷାରୋପ, ଉକ୍ତି ମୋର ମିଥ୍ୟା ବୋଲି ପ୍ରମାଣ ବି କର ।
ତୁମେ ତ ଫେରୁଛ ଘରେ ସମୟରେ ଡେ଼ରି ନାହିଁ ତଥାପି କାହିଁକି
ନିତି ମୋ' ଏମିତି ପ୍ରଶ୍ନ ସବୁ ବୁଝି ଅବୁଝା ଯେମିତି
ଏ ମନ ମାନେ କି ସତେ ? ସମସ୍ତ ଦିନର ଦୀର୍ଘ ପ୍ରତୀକ୍ଷାର ପରେ
ପ୍ରିୟଜନ ଲେଉଟିବା ଅକାରଣ ଏହିପରି ଡେ଼ରି ମନେହୁଏ ।

ପୁରୁଷ ବୁଝେନି ଏଇ ନାରୀମନ, ହୃଦୟର ଉଦ୍‌ବେଳ ଆକାଂକ୍ଷା
ପ୍ରତୀକ୍ଷାର ବ୍ୟାକୁଳତା, ଅଯଥାରେ ଉପହାସ କରେ,
ବାହାରେ ପ୍ରମତ୍ତ ଯେହୁ କୋଳାହଳ ଉତ୍ସବର ଅଜସ୍ର ସାନ୍ନିଧ୍ୟେ
ଶୂନ୍ୟତାର ଦୁଃଖଦାହ କେଉଁପରି ଦୁର୍ବିଷହ ସେ କାହୁଁ ବୁଝିବ ?

ଶ୍ୟାମ ତ ନିଷ୍ଠୁର ଚିର ତା' ଆଖିରେ ନିରର୍ଥକ ଶ୍ରୀମତୀର ଆକୁଳ ପ୍ରତୀକ୍ଷା,
ତୁମର ବିରକ୍ତି ସତ୍ତ୍ୱେ କହିରଖେ ଚିରଦିନ ମୁଁ ଏମିତି ଅବୁଝା ରହିବି । □□

## ଗତି

ବାର୍ଦ୍ଧକ୍ୟ ଆସିବ ଦିନେ ସେ ଆସିବା ଖୁବ୍ ସ୍ୱାଭାବିକ,
ବସନ୍ତର ବୟସରେ ଠିଆ ହୋଇ ଏ ନିର୍ମମ ସତ୍ୟ ଯେତେ
ଆବୃତ୍ତି କଲେ ବି
ବିଶ୍ୱାସ କି କେବେହୁଏ ନିଜର ତାରୁଣ୍ୟ ହାୟ ହଜିଯିବ ବୋଲି
ଶିଥିଳ ଜରାର ସ୍ପର୍ଶେ, ସବୁ କିନ୍ତୁ ହଜିଯାଏ ଦିନେ ।
ଯେ ଦିନ ଦେଖିଲି ମୁହିଁ ମୋ' କେଶର ପ୍ରଥମ ଶୁଭ୍ରତା
ସେ ଦୁଃଖ କି ଅଛି ଆଉ, ସେତ ଆଜି ଅଭ୍ୟାସର କଥା । ▭▭

## ଅଶାନ୍ତ

ବର୍ତ୍ତମାନ ମୋତେ କିମ୍ବା କିଛି ହେଲେ ଲାଗୁ ନାହିଁ ଭଲ,
ଭଲ ତ ଲାଗୁନି ଏହି ଉପନ୍ୟାସ ଶ୍ରେଷ୍ଠ ଲେଖକର
ବଳିଷ୍ଠ ବିଷୟବସ୍ତୁ, ମନସ୍ତତ୍ତ୍ୱ, ଚରିତ୍ର ଚିତ୍ରଣ
ଉନ୍ନତକୋଟୀର, ତା'ରେ ଫିଙ୍ଗିଦେଇ ପଢ଼ିଲି ମୁଁ ଆଣି
ରସସିକ୍ତ କାବ୍ୟଗ୍ରନ୍ଥ, ପ୍ରଥମରୁ ପଢ଼ିଲି ପଂକ୍ତିଏ,
ତା'ପରେ ମୁଁ ଓଲଟାଇଲି ଧୈର୍ଯ୍ୟହୀନା ପୃଷ୍ଠାପରେ ପୃଷ୍ଠା
ମନରେ ଆସେନା ଶାନ୍ତି, ତିକ୍ତମନେ ରସକାବ୍ୟ ଫିଙ୍ଗିଦେଇ ଦୂରେ
ଉଠିଗଲି ପିଆନୋର ପାଶେ, ସୂତ୍ରହୀନ ଖିଆଲର ବଶେ
ଅଙ୍ଗୁଳି ଚାଳି ମୁଁ କଲି ସୃଷ୍ଟି କେତେ ଛନ୍ଦହୀନ ସ୍ୱର
ତଥାପି ମୋ' ତୃପ୍ତି କାହିଁ, ତିକ୍ତମନେ ଆସିଲି ମୁଁ ଉଠି
ବାତାୟନ ପଥେ ଚାହିଁ ସନ୍ଧ୍ୟାକାଶେ ଖୋଜିଲି ପିଆସୀ
ଶାନ୍ତିହୀନ ଶାନ୍ତିଟିକେ, ସୂର୍ଯ୍ୟ ବୁଡେ ଶୈଳ ଅନ୍ତରାଳେ
ଆକାଶେ ବର୍ଣ୍ଣର ଲୀଳା, ମାତ୍ର ମୋର ବିବର୍ଣ୍ଣ ମନରେ
ରଙ୍ଗର ଉତ୍ସବ କାହିଁ ? ମନତଳେ ଅବ୍ୟକ୍ତ ମୋ' ରୁଦ୍ଧ ହାହାକାର ।

ଅବସାଦ ଅନୁଭବି ଶୋଇଲି ମୁଁ ତଳ୍ପପରେ ଆସି,
ପୂର୍ବଦିନ ଦେଖା ଏକ ଚଳଚିତ୍ର ସଙ୍ଗୀତର ସ୍ୱର

ଗୁଣୁ ଗୁଣୁ କଲି ମୁଁ ଆବୃତ୍ତି, ସେ ଆବୃତ୍ତି ମୁହୂର୍ତ୍ତ କେତେକ,
କଣ୍ଠେ ମୋର କ୍ଳାନ୍ତି ପୁଣି, ଚିତ୍କାରିଲି, "ରୋଜି, ରୋଜି, ରୋଜି,"
ତରୁଣୀ ଆୟାର ଦ୍ରୁତ ଆବିର୍ଭାବ ଦୃଷ୍ଟିତଳେ ଆଦେଶର ଉତ୍ସୁକ ଅପେକ୍ଷା
କଫିର ନିର୍ଦ୍ଦେଶ ଏବଂ ଅବିଳମ୍ବେ ବାଷ୍ପଭରା ପାନୀୟ ପ୍ରସ୍ତୁତି,
କିନ୍ତୁ ହାୟ ତା' କି ସ୍ୱାଦହୀନ, ଓଠରେ ମୋ ସୀମାହୀନ ମନର ଅଶ୍ୱସ୍ତି ।
ପୁନଶ୍ଚ ମୋ' ପ୍ରୟୋଜନ, "କମ୍ ହିଅର, 'ପପି' 'ପପି' 'ପପି',"
ଶ୍ୱାନର ମଧୁର ଲମ୍ଫ କୋଳେ ତା'ର ଲମ୍ବ ଲୋମ ଦେଲି ମୁଁ ଆଉଁଶି,
ପୁନଶ୍ଚ ବିକ୍ଷିପ୍ତ ମନ, କୋଳୁ ତା'ରେ ଫିଙ୍ଗିଦେଲି ଡ଼େଇଁଗଲା ଚାଲି,
"ନଟି, ନଟି, ଓ ଗଡ୍," ମନତଳେ ଜଳୁଛି ଫାର୍ଣ୍ଣୁସ ।

ହାୟ କି ଅଶାନ୍ତି ହାୟ ! ଲକ୍ଷପତି ପିତାର ଦୁହିତା
ଐଶ୍ୱର୍ଯ୍ୟେ ମୁଁ ଗରବିଣୀ, ଉଚ୍ଚଶିକ୍ଷା ଆଲୋକେ ଉଜ୍ଜ୍ୱଳ,
ତନୁ ମନେ ଆଧୁନିକ ସଭ୍ୟତାର ମୋହମୟ ମଧୁର ପ୍ରଲେପ,
ଅଭିଜାତ ସଂପ୍ରଦାୟେ ଖ୍ୟାତି ମୋର ଅନିର୍ବଚନୀୟ,
ଆକର୍ଷଣ ଆମନ୍ତ୍ରଣେ ଚୌଦିଗେ ମୋ ପୁଚ୍ଛ ଟେକି ଶତ କେକୀ ନୃତ୍ୟ,
ଓଠ ତଟେ ସୀମାହୀନ ପ୍ରଶଂସା ମୋ' ଆଖିତଳେ ଅଜସ୍ର କାକୁତି
ତଥାପି ମୋ ତୃପ୍ତି କାହିଁ ? ମନତଳେ ଅସଂପୂର୍ଣ୍ଣତାର
କି ଅବ୍ୟକ୍ତ ଜ୍ୱାଳା ହାୟ ! ଏ ମୁହୂର୍ତ୍ତ କି କଦର୍ଯ୍ୟ ସତେ !
ସମୟ କଟେନା ତୀବ୍ର କଶାଘାତେ ଜର୍ଜ୍ଜରିତା ଶୂନ୍ୟ ମନତଳ,
କି ଅଭାବେ ପ୍ରାଣତଳେ ଜଳୁଛି ଏ ରିକ୍ତ ଦାବାନଳ ।

କି ସଂଜ୍ଞା ସେ ଅଭାବର ? ମନତଳେ ମନର ଅଭାବ ?
ଅଥବା ପ୍ରାଚୁର୍ଯ୍ୟ ମଧ୍ୟେ କର୍ମହୀନ ଜୀବନର ଜ୍ୱାଳା ।
ନିଜର ଅଭାବ ନିଜେ ବୁଝେ ନାହିଁ ଜଳେ ପଳେ ପଳେ
ତୈଳଶୂନ୍ୟ ପ୍ରଦୀପର ଶିଖା ଯଥା ଜଳି ଜଳି ଯାଏ ।
ମୁକୁର ସମ୍ମୁଖେ ଯାଇ ଲୀଳାୟିତ ବିଚିତ୍ର ଭଙ୍ଗୀରେ
ଭାଙ୍ଗିଲି ଅଳସ, ହାୟ ବୁକୁତଳେ ବେଦନା ବାହୁନେ,
ମୁଁ ଏବେ କରିବି କିସ ? କିଛି ମୋତେ ଭଲ ଲାଗୁ ନାହିଁ,
ହାୟ, କିଛି ଭଲ ଲାଗୁ ନାହିଁ । ▭

# ଆବାହନ

ବସୁନ୍ଧରା ପରେ ତୁମେ ଜାଗ ସତ୍ୟ, ଜାଗ ଜ୍ୟୋତିର୍ମୟ
ଦିଗ ଦିଗନ୍ତରେ କରି ବିଚ୍ଛୁରିତ ଅନନ୍ତ ଅଭୟ,
ଅନ୍ତରେ ଅନ୍ତରେ ଦେଇ ମନୁଷ୍ୟତ୍ୱ ପୀୟୂଷ ପରଶ
ବିଶ୍ୱରେ କରାଅ ପାନ ଦେବତ୍ୱର ସ୍ନିଗ୍ଧ ସୋମରସ ।

ଉଜ୍ଜ୍ୱଳ ଏ ନକ୍ଷତ୍ରର ତେଜ କ୍ରମେ ଯାଉଅଛି ହଜି,
ଚନ୍ଦ୍ରମା ନିଷ୍ପ୍ରଭ ହୁଏ ଚନ୍ଦ୍ରିକା ତା' ତନୁରୁ ବରଜି,
ତପନ ଆଲୋକ ଦାନେ ବରଷଇ ମୃତ୍ୟୁ ଅଗ୍ନିବାଣ,
ଅମ୍ବୁଦ ପ୍ଲାବନ ସୃଜି ଉର୍ଦ୍ଧ୍ୱେ ତୋଳେ ମରଣ ନିଶାଣ ।

ଚତୁର୍ଦ୍ଦିଗେ ଅନାଚାର, ବ୍ୟଭିଚାର, ମୃତ୍ୟୁ ବିଭୀଷିକା,
ପ୍ରତାରଣା ଛଳନାର ଅଭିନୟ ଅହମିକା ଶିଖା,
ରାଜନୀତି, କୂଟନୀତି, ଅନୀତିର ଦାରୁଣ ପ୍ରଳୟ
ସୃଜିଛି ଏ ସ୍ୱର୍ଗପୁରେ ଲୋମହର୍ଷୀ ବ୍ୟଥାର ନିଳୟ ।

ମଣିଷର ଦୁଃଖେ ଆଉ ଝରୁ ନାହିଁ ମଣିଷର ଲୁହ,
ସ୍ୱାର୍ଥର ବିଜୟ ଗୀତି ଗାଇ ଛୁଟେ ମଣିଷର ସୁଅ,
ନିମ୍ନ ଉଠେ ଉର୍ଦ୍ଧ୍ୱେ, ଦୁଃସ୍ଥ ଅକ୍ଷମର କରୁଣ ଚିତ୍କାର,
ରଥଚକ୍ର ଗଡ଼ିଚାଲେ ଅକୁଣ୍ଠିତେ ଚିର ନିର୍ବିକାର ।

ଏହି ତ ମଣିଷ ରୀତି ଆଣବିକ ବିଂଶ ଶତାବ୍ଦୀର,
ପ୍ରକୃତି ବି ପାଶୋରିଛି ଅନାଚାରେ ନିଜ ସତ୍ୟାଚାର,
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଆଜି ଭରିଅଛି ଘୃଣ୍ୟ ଆବିଳତା,
ଶ୍ରଦ୍ଧା ଶୂନ୍ୟ, ସ୍ନେହ ଶୂନ୍ୟ, ଚିତ୍ତ ଶୂନ୍ୟ, ଶୂନ୍ୟ ଆତ୍ମୀୟତା ।

ଜାଗ ସତ୍ୟ, ଜାଗ ପୁଣ୍ୟ, ହେ ସୁନ୍ଦର, ହେ ମଙ୍ଗଳମୟ,
ଦେଖୁଛଟି ପାପାଚାରେ ସୃଷ୍ଟିତବ ହେଉଛି ବିଲୟ,
ଧ୍ୱଂସର ତାଣ୍ଡବଲୀଳା, ପ୍ରଳୟର ଆର୍ତ୍ତ ହାହାକାରେ ।
ତୁମରି ସୃଷ୍ଟିର ସତ୍ୟ ଲୀନ ହେବ ମୃତ୍ୟୁ ଅନ୍ଧକାରେ ।

ରକ୍ଷାର କବଚ ପିନ୍ଧି ହାତେ ଧରି ଅମୃତ ନିଶାଣ
ଆରମ୍ଭ ହେ ବୀର ତବ ବିଜୟର ଦୃପ୍ତ ଅଭିଯାନ,
ବିଶ୍ୱବୁକେ ଜଳୁ ତୁମ ଇଙ୍ଗିତରେ ପୁଣ୍ୟ ହୋମାନଳ,
ମାନବ, ପ୍ରକୃତି ରୂପ ହେଉ ସେହି ଆଲୋକେ ଉଜ୍ଜ୍ୱଳ । □

## ପ୍ରାପ୍ତି

ଖୋଜିଛି ତୁମକୁ ବନ୍ଧୁ ସୀମାହୀନ ସାଗରର କୂଳେ,
ଖୋଜିଛି ତୁମକୁ ପୁଣି ବିକଶିତ ସୁରଭିତ ଫୁଲେ,
ଅଶ୍ରୁ ଆଉ ହାସ୍ୟ ତଳେ ତୁମକୁ ମୁଁ ଖୋଜି ପାଇ ନାହିଁ ।
ଅଭିମାନ ଅହଙ୍କାର ଦମ୍ଭ ତଳେ ଦୃଷ୍ଟି ମୋ' ହଜାଇ ।
ଭୂଧରର ନୀଳିମାରେ, ସାୟାହ୍ନର ମଧୁର ଉତ୍ସବେ,
ଚନ୍ଦ୍ରିକାର ସମାରୋହେ, ପ୍ରଭାତର ପବିତ୍ର ଗୌରବେ
ତୁମକୁ ମୁଁ ଲଭିନାହିଁ, ଦ୍ୱୈତଭାବ କୀର୍ତ୍ତନ ଆସରେ
ତୁମେତ ଆସିନ କେବେ, ଅଦ୍ୱୈତର ବେଦାନ୍ତ ତର୍କରେ
ଅଦୃଶ୍ୟ ରହିଛ ଚିର, ବିଜନରେ କ୍ରୂର ଯୋଗାସନେ
ଆବିର୍ଭୂତ ହୋଇନାହଁ କେବେ, ଭାବମୁଗ୍ଧ କଳ୍ପନା ନୟନେ
ହେରିନି ସ୍ୱରୂପ ତବ, ଅକସ୍ମାତ ଲଭିଲି ତୁମରେ
ଆତ୍ମ-ଉପଲବ୍ଧି ତଳେ ନିଜକୁ ମୁଁ ସମ୍ବୋଧି ନିଜରେ ।

•

ଅବଲୋକି ଚତୁର୍ଦ୍ଦିଗେ ଅନ୍ତହୀନ ଆଲୋକର ବୀଚି
ଚିତ୍କାରି ଉଠିଲି "ବନ୍ଧୁ, ବନ୍ଧୁତ୍ୱ ମୋ ମିଳିଛି ମିଳିଛି ।" □

## ବ୍ରହ୍ମାସ୍ମି

ସୂର୍ଯ୍ୟାଲୋକେ ନୁହେଁ ମୁଁ ତ ପୂର୍ଣ୍ଣ ଆଲୋକିତ,
ଜ୍ୟୋତ୍ସ୍ନାସ୍ପର୍ଶେ ନୁହେଁ ବି ମୁଁ ପୂର୍ଣ୍ଣ ପୁଲକିତ,
ଝରଣାର କଳତାନ, ଶ୍ରାବଣ ନିର୍ଝର,
ଚରିତାର୍ଥ କରେନା ମୋ' ତୃଷା ଶ୍ରବଣର ।
ତାମସୀ ରାତ୍ରିର ଭାଷା, ତାରକାର ଦ୍ୟୁତି,

ଇନ୍ଦ୍ରଧନୁ ଶୋଭା ସ୍ନିଗ୍ଧ ସପ୍ତବର୍ଣ୍ଣ ଜ୍ୟୋତି
ଅନ୍ତହୀନ ବିଭୂତିର ଆଂଶିକ ପ୍ରକାଶ,
ଅନ୍ତରେ ସୃଜେନା ତେଣୁ ଅନନ୍ତ ଉଲ୍ଲାସ ।

ମୁଁ ଚାହେଁ ବିଶ୍ୱର ସର୍ବ ସୁରଭି, ସଙ୍ଗୀତ,
ସୁଷମା, ତମସା, ଜ୍ୟୋତି ହୋଇ ସମ୍ମିଳିତ
ବନ୍ଦନା ଗାଆନ୍ତୁ ମୋର, ନିଗମ ଓଁକାର
ସପ୍ତସୁରେ ଝଙ୍କାରିତ ହେଉ ବାରମ୍ବାର । ▭

## ପରିଚୟ

ଏହି ସୂର୍ଯ୍ୟାଲୋକ, ଏହି ଜ୍ୟୋତ୍ସ୍ନାର ଉତ୍ସବ
ଉଷା, ସନ୍ଧ୍ୟା, ଗୋଧୂଳିର ସ୍ନିଗ୍ଧ ଶିହରଣ,
ନବ ନବ ଋତୁ ସ୍ପର୍ଶେ ବିହ୍ୱଳ ଆତ୍ମାର
ପ୍ରତିକ୍ଷଣେ ଅତୀନ୍ଦ୍ରିୟ ମଧୁ ଆସ୍ୱାଦନ ।

ତାରାମେଳେ, ଚନ୍ଦ୍ରାଲୋକେ, ସୂର୍ଯ୍ୟର ଅଙ୍ଗନେ,
ନୀଳାକାଶ ବକ୍ଷେ, ପୁଣି ଶ୍ୟାମ ଧରାପରେ,
ତୁଙ୍ଗ ଶୈଳଶିରେ, ନୀଳ ପାରାବାର ବକ୍ଷେ
ସଞ୍ଚରି ପ୍ରସରି ଯିବି ଅନ୍ତରେ ଅନ୍ତରେ ।

ମହାପ୍ରକାଶର ବୁକେ ମୋହରି ବିକାଶ,
ନିତ୍ୟ ଶୁଦ୍ଧ, ବୁଦ୍ଧ, ମହାସତ୍ୟର ବିଳାସ । ▭

## ପ୍ରାର୍ଥନା

ତୁମେ ମୋତେ ଭଲପାଅ ସେଥିଲାଗି କରିବି ମୁଁ ତୁମରେ କି
ନିଜ ଆଜ୍ଞାବହ ?
ନିଜର ପ୍ରତିଟି ଇଚ୍ଛା ଚରିତାର୍ଥ କରିବାକୁ ପ୍ରତିକ୍ଷଣେ କରୁଥିବି ଅଳି
ଶିଶୁସମ ? ଏତେ ଟିକେ କ୍ଷୟ, କ୍ଷତି ସହିବାକୁ ଚିର ପରାଂମୁଖ,
ନିଃସ୍ୱାର୍ଥ ପ୍ରଣୟ ଲୋଡ଼େ ପ୍ରେମାସ୍ପଦ ଇଚ୍ଛା ସଦା ଚରିତାର୍ଥ ହେଉ ।

ତୁମ ଅଯାଚିତ ଦାନେ ଅହଙ୍କାର ବଶବର୍ତ୍ତୀ ହୋଇ
ନିଜକୁ ମଣିବି ବଡ଼ ଆତ୍ମସମର୍ପଣ ଭୁଲି ଆତ୍ମମରିତାରେ ?
ଏ ଭୁଲ୍‌ର ବିସ୍ମୃତିରେ ଗୋପୀଗଣ ନିଃସ୍ୱ ରାସେ କୃଷ୍ଣ ଅନ୍ତର୍ଦ୍ଧାନେ,
ଶ୍ରୀମତୀ ବି ଉପେକ୍ଷିତା ସୁହୂର୍ତ୍ତର ଅହମିକା 'ଶ୍ୟାମ ସ୍କନ୍ଧେ ମହାର୍ଘ
ମୋ ସ୍ଥିତି ।'

ତୁମର ଐଶ୍ୱର୍ଯ୍ୟ ଲାଭେ ମୁଁ ଯେପରି ଅନ୍ଧ ନାହିଁ ହୁଏ
ଏତିକି ପ୍ରାର୍ଥନା ଖାଲି, ତୁମେ ରୁହ ଅନିର୍ବାଣ ମୋ ଆଖିର ଲୁହେ ।

## ମାଗୁଣି

ସମସ୍ତ ମୋ' ଶୂନ୍ୟତାକୁ ଅନୁଭବେ ପ୍ରଭୁ ତୁମେ ପରିପୂର୍ଣ୍ଣ କର,
ସମସ୍ୟା-ତିମିରେ ତୁମେ ଦୀପ୍ତ କରି ସମାଧାନ ସୂର୍ଯ୍ୟ
ମୋତେ କର ହତବାକ୍, ତଥାପି ମୋ' ମନର ସଂଶୟ
ତୁମର ନେତୃତ୍ୱ ପରେ ମୋତେ କରେ ପଳେ ପଳେ କ୍ଷୟ ।

ତୁମ ସ୍ଥିତି, ବ୍ୟାପ୍ତି ନେଇ ଅନଭିଜ୍ଞ ଯେଉଁମାନେ ନିଶ୍ଚିନ୍ତ ସେମାନେ,
ସେମାନଙ୍କ ପ୍ରତିକ୍ରିୟା ଏ ମାଟିକୁ କେନ୍ଦ୍ରକରି ଲାଭକ୍ଷତି, ହସ କାନ୍ଦ,
ଯେତେ ଯାହା ସବୁ ଏ ମାଟିର,
ନିଷ୍କ୍ରିୟତା ସେମାନଙ୍କ ତୁମଲାଗି ମନେହୁଏ ତେଣୁ ସତେ ଅଭିନନ୍ଦନୀୟ,
ତୁମକୁ ମୁଁ ଭଲ ପାଇ ଜୀବନ୍ମୃତ ସେ ଯାତନା ଆଖି ଖୋଲି
ଦେଖି ଥରେ ପ୍ରିୟ ।

ତୁମ ପରିଚୟ ପାଇ ପ୍ରୀତି ଦେଇ ମନେହେଲା ନିଷ୍କୃତି ଲଭିଲି
ଏତେ ଦିନେ ଅନ୍ଧକାରୁ, ମାତ୍ର ତେବେ ଚିହ୍ନି ଠିକ୍ ନଥିଲି ନିଜକୁ
କେତେ ମୁଁ ଦୁର୍ବଳ ସତେ, ଭୀରୁ କେବେ ଭଲ ପାଇ ପାରେ ?
ନିଃସଂଶୟ ଆତ୍ମୋତ୍ସର୍ଗ ବିନା କାହିଁ ପ୍ରାପ୍ତି ପ୍ରୀତି ସୁଖ ?
ପ୍ରୀତି ଏତେ ଦେଲ ଯଦି ଅକାତରେ ଦିଅ ତେବେ ମନେ ମୋର
ତୁମ ଲାଗି ଅଖଣ୍ଡ ବିଶ୍ୱାସ,
ସ୍ଥିତି ତବ ଅନୁଭବୁ ପ୍ରତିକ୍ଷଣେ ପ୍ରତି ପଲକରେ
ମୋ ପ୍ରାଣର ପ୍ରତିଟି ନିଃଶ୍ୱାସ ।

# ମୁକୁର

କୋଟି ପ୍ରତିବିମ୍ବର ଛବି ବୁକେ ଖେଳାଇ
ସ୍ୱଚ୍ଛ ସେ ଜଳ ଜଳ କେତେ କାଳୁ ଚାହିଁଛି,
ସଞ୍ଚିତ କଥା କେତେ କାହାଣୀ ନ କହିବ
ସେ ତ ଏକ ଇତିହାସ ନିର୍ବାକ୍ ଭାଷାର,
ଛାଇ ଆସି ଛାଇ ଯାଏ ସେମିତି ସେ ରହିଛି ।

ମୁଁ ଦେଖିଛି ତା' ବୁକୁରେ ମୋ' ଶିଶୁର ଛାଇକି
ବାଳିକାର ବିମ୍ବ ମୋ ଢ଼ଳ ଢ଼ଳ ଚାହାଣି,
କୈଶୋରେ ଛାଇ ମୋର ବାର ବାର ନିରେଖି
ଫେରାଇ ପାରିନି ଆଖି ମନ ମୋର ଲାଖିଛି ।

ସ୍ନିଗ୍ଧ ମୋ ଯଉବନ ହସିଛି ଏ ମୁକୁରେ
ପରିଣୟ ପରେ ଯେବେ ଦୂରେ ଯାଇ ଫେରିଛି,
ଏକାକିନୀ ନୁହେଁ ହସ ଏକାଧିକ ଛାଇର,
ଅବାକ୍ ନୟନେ ପଢ଼େ କୁହୁକର କବିତା ।

ଯଉବନ ଝରିଯିବ ସେ ଛାଇ ବି ଦେଖିବି,
ଜରାର ଜାଦୁରେ ମେଞ୍ଚ ତନୁର ତନିମା
ସେଦିନ ଥରିବ ଏଇ ମୁକୁରର ବୁକୁରେ,
ଦେହରେ ଫରକ ଯେତେ ଛାଇରେ ଫରକ ।

ବିମ୍ବ ସେ ନୁହେଁ ମୋର ଛାଇ ମୋର କାହିଁରେ ?
ବିମ୍ବର ବିମ୍ବ ସେ ଛବିଟାର ଛାଇ ସେ,
ସେ ଛାଇର ଛାଇରେ ମୁଁ ଭୁଲି ସତେ ରହିବି ?
ପରିଚୟ ଛପିଯିବ ତିମିରର ଉହାଡ଼େ ?

ଛାଇ ପରେ ଛାଇ ନାଚେ ଚିହ୍ନ ତ ରୁହେନା,
ମୁକୁରର ଧର୍ମରେ ନିଜକୁ ମୁଁ ଜାଳିବି

ପ୍ରତି ପ୍ରତିବିମ୍ବର ଦାଗ ଦେଇ ଲିଭାଇ,
ସବୁ ଅଛି, ସବୁ ନାହିଁ, ରହିଛି ମୁଁ ରହିବି । ▭

## ମୁହୂର୍ତ୍ତ

ମୋ ଅମୃତ ସୃଷ୍ଟିଲାଗି ମୋତେ ଆଜି ଦେଉଛ ସମ୍ମାନ
ପ୍ରାପ୍ୟ କି ତା' ସତେ ମୋର ? ଅଥବା ଏ ପଞ୍ଜର ଦେହର,
ନଚେତ୍ ଆତ୍ମାର କିମ୍ବା ଅତୀନ୍ଦ୍ରିୟ କଳ୍ପନା ଶକ୍ତିର,
ତୁମେ ନିଜେ ବୁଝି ନାହଁ କି ଲାଗି ଏ ପ୍ରଶଂସାର ଗାନ ।

ଆଜି ଏ ବିରାଟ ସଭା ଜନତାର ସାନ୍ଦ୍ରସମାବେଶ
ସ୍ରଷ୍ଟାର ଦର୍ଶନ ଆଶେ, ପ୍ରଦାନିବ ମାନପତ୍ର ସତେ,
କରତାଳି ସାଥେ ଲକ୍ଷ କଣ୍ଠେ ଜୟ ଜୟକାର ରବ,
ପ୍ରାରମ୍ଭିକ ସଙ୍ଗୀତ ଓ ସଭାଭଙ୍ଗ ବିଦାୟ ସଙ୍ଗୀତେ ।

ସୃଜନର ପରିଚୟ ସ୍ରଷ୍ଟାଙ୍କୁ ଏ ମାଲ୍ୟଦିଆ ତଳେ
ନ ଫୁଟି ଲୁଚି ହିଁ ରହେ, ହାୟ, ତା'ରେ ଚିହ୍ନି ହୁଏ ନାହିଁ,
ସତ୍ୟ ପରିଚୟ ତା'ର ଲୁଚି ରହେ ସେହି ମୁହୂର୍ତ୍ତରେ
ଯାହାକି ହୋଇଚି ଗତ, ଅତୀତେ ତା' ପଦଚିହ୍ନ କାହିଁ ?

ନିଶ୍ଚିହ୍ନ ସେ ମୁହୂର୍ତ୍ତର ସ୍ୱାଗତ କି କେହି କେବେ କର ?
ଅଯଥା ଗାଉଛ ସିନା ବନ୍ଦନା ଏ ଅଳୀକ ଦେହର । ▭

## ସୂର୍ଯ୍ୟ

ଅକସ୍ମାତ୍ କେବେ ଯଦି ଝୁଣ୍ଟିପଡ଼େ ପଥେ ଯାଉ ଯାଉ
ନିଜ ଦୋଷେ ମୁଁ କାହିଁକି ଅଯଥାରେ ଦୋଷିବି ଅନ୍ୟରେ
"ବିରକ୍ତ ହେଉଛି କେହି ଅନ୍ତରାଳେ ନିକ୍ଷେ ମୋ ଉପରେ ।"

ଜୀବନର ଯାତ୍ରାପଥେ କେହି ଯଦି ଡ଼ାକେ ମୋ' ପଶ୍ଚାତୁ
'ଅନୁକୂଳ ବିଘ୍ନ ହେଲା' ଚିନ୍ତାରେ ଏ ନିରର୍ଥକ ଆଣି ଦୁର୍ବଳତା

ଗତି ମୋ କରିବି ସ୍ତବ୍ଧ ବିଚାରର ପଥୁ ଭ୍ରଷ୍ଟ ହୋଇ
ଆତ୍ମବିଶ୍ୱାସରେ ଆଣି ଅପ୍ରତ୍ୟୟ, ମୂଢ଼ର ଜଡ଼ତା ?

ଅନ୍ୟର ବିଚାରେ କିମ୍ବା ଆପଣାକୁ ତଉଲିବି, "ଠିକ୍ କି କରୁଛି ?"
କି ଲାଗି ବା ପ୍ରସାରିବି ପାଣି ମୋର ଆନ ପାଖେ ପ୍ରଦୀପ ପାଇଁକି ?
ନିଜ ଦୃଷ୍ଟିଦ୍ୱାର କରି ଅବରୁଦ୍ଧ, ଆନର ଆଖିରେ
ସୃଷ୍ଟିର ବୈଚିତ୍ର୍ୟ, ସତ୍ୟ ଅନ୍ଧ ସମ ଦେଖିବି କାହିଁକି ?

ସଂସ୍କାରେ ମୁଁ ତମିସ୍ରାରେ ଦୂରକରି ଆତ୍ମପ୍ରତ୍ୟୟରେ
ପ୍ରତିଟି ପ୍ରଶ୍ନର ଦେବି ସଦୁତ୍ତର ଆପଣା ଓଠରେ । ☐☐

## ଶାଶ୍ୱତ

ବାହାରେ ଅପେକ୍ଷା କରି ସେ ଆସିଲେ ଯାଇ ତୁମେ ଯିବ ?
ଅନ୍ୟର ହାସ୍ୟରୁ ତୁମେ ଆହରଣ କରିବ ଉଲ୍ଲାସ ?
ନିଜତ୍ୱ ହରାଇ ହାୟ ଦାସତ୍ୱର ମନୋବୃତ୍ତି ଧରି
ସମଗ୍ର ଜୀବନେ କେହ୍ନେ ବିରଚିବ ସମର ବିଳାସ ?

ଜୀବନର ଚଲାପଥେ ଦ୍ରୁତପଦେ ଆଗେଇ ନ ଚାଲି
ପଛକୁ ଚାହୁଁଛ ଫେରି ମିଛେ ଲୋଡ଼ ପଥଚଲା ସାଥୀ,
ହାତେ ତୁମ ରଖିବ କେ ହାତ ସ୍ୱାର୍ଥପର ମନୋବୃତ୍ତି ତେଜି,
ନିଜର ଜୀବନ ରଥେ ମଣୁନ କି ନିଜରେ ସାରଥି ।
ପ୍ରତୀକ୍ଷାର ଦୁଃଖ ତେଜି ଆପଣାରେ ନିହି ଆପଣାକୁ
ସୁଦୂରର କୌତୂହଳ ପରିହରି ଅନ୍ତରର ତଳେ
ଅମୃତ ଆହରି ନିଅ, ଅସ୍ମିତାର ସମାଧି ଗହନେ
ଅଶ୍ରୁଶୂନ୍ୟ, ହାସ୍ୟହୀନ ନିର୍ବିକଳ୍ପ ଦୀପାଲୋକ ଜଳେ ।

ପାଣି କର ସଙ୍କୁଚିତ, ନେତ୍ର କରି ବାହ୍ୟ ଦୃଷ୍ଟିହୀନ,
ପଙ୍ଗୁକରି ଆପଣାରେ ନିଜେ ନିଜରେ ବିଲୀନ । ☐☐

## ମରୀଚିକା

କୁତ୍ସିତ ପ୍ରକୃତି ଚିତ୍ତ ବିକୃତିର ତଳେ
ଲକ୍ଷ ଆଶା, ଆକାଂକ୍ଷାର ରକ୍ତ ଶତଦଳ
ଏ ଶତାବ୍ଦୀ ସଭ୍ୟତାର ଘୃଣ୍ୟ ଦ୍ୱାହି ଦେଇ
ବିକଶି ମଳୟ କରେ ଚପଳ, ଚଞ୍ଚଳ ।

ରକ୍ତରେ ଜୀବନ ଲୋଡ଼ି, ମୃତ୍ୟୁର ଗହନେ
ସ୍ୱପ୍ନର ସାଗରେ ବୁଡ଼ି ବଞ୍ଚିବାର ରୀତି
ଅସଂଯତ ଯୌବନର ନିରୁକ୍ତ ବେଦନ,
ଆର୍ତ୍ତ ହାହାକାରେ ଝରେ ଜୀବନର ସ୍ଥିତି ।

ନୀରନ୍ଧ୍ର ବନାନୀ ପଥେ କମ୍ପିତ ଚରଣ
ଛନ୍ଦହୀନ ଗତି କରେ, ଅନ୍ୟାୟ ମାଗୁଣି
ବନ୍ଧନ ବିରଚି ଭୁଲେ ମୁକ୍ତିର ଆସ୍ୱାଦ,
ନାଗେଶ୍ୱରୀ ସୁରେ ସ୍ଥିର ଦୁରନ୍ତ ନାଗୁଣୀ ।

କଳୁଷିତ, ପର୍ଯ୍ୟୁଷିତ ଅଜସ୍ର କାମନା
ଅମୃତ ବିସ୍ମରି ଲୋଡ଼େ ଅନନ୍ତ ଯାତନା । □□

## ଅନିର୍ବଚନୀୟ

କଳ୍ପନାରେ କିଛି ଲୋଡ଼ି ଅକସ୍ମାତ୍ ଲଭିଲି ମୁଁ ତା'ରେ
ହରାଇ ବସିଲି ପୁଣି ବିସ୍ମୃତିର ଘନ ଅନ୍ଧକାରେ,
ବିଶ୍ୱାସ କରିବ କିଏ ? ବେଦନାରେ ଦେବ କେ ସାନ୍ତ୍ୱନା ?
ସେତ ନୁହେଁ ଏ ବିଶ୍ୱର ସୁଖ ଅବା ନଶ୍ୱର ଯାତନା ।

ପ୍ରାଣର ଆବେଗେ ଯେବେ ପ୍ରକାଶିଲି ବିଶ୍ୱର ସମ୍ମୁଖେ
ବେଦନାର ତପ୍ତ ବାଣୀ କ୍ଳାନ୍ତସୁରେ ପ୍ରତ୍ୟେକର ମୁଖେ
ହେରିଲି ବିସ୍ମୟ ଚିହ୍ନ, ପ୍ରଶ୍ନବାଣ "ହଜିଛି ସେ କିସ ?
ଏ ଧରାର ସ୍ୱର୍ଗ ସେ କି ? ଅଥବା ସେ ମନର ମଣିଷ,

ଇନ୍ଦ୍ରଧନୁ, ଇନ୍ଦ୍ରପୁରୀ, ସ୍ୱପ୍ନମୟ ସ୍ୱର୍ଣ୍ଣର ଅଳକା,
କୁବେରର ରତ୍ନାଗାର, ନୀଳଚନ୍ଦ୍ର ତନ୍ଦ୍ରା ଉପତ୍ୟକା,
ସ୍ୱରୂପ କି ଅବା ତା'ର ? ଧୂପ ଗନ୍ଧ, ଅଗୁରୁ ସୁରଭି,
ସୁବର୍ଣ୍ଣ କମଳ ଅବା, ସପ୍ତସୁରେ ଝଙ୍କୃତ ପୂରବୀ ।"

ଉତ୍ତରେ କହିଲି ଖାଲି, "ପରିଚୟ ଜାଣେନା ମୁଁ ତା'ର
ଅକସ୍ମାତ୍ ଆସି ସେ ତ ଖୋଜିନେଲା ପଥ ଫେରିବାର,
ଉପସ୍ଥିତି ତା'ର ମୋତେ ଦେଇଥିଲା ଅନନ୍ତ ଉଲ୍ଲାସ,
ପରିଚୟହୀନ ସେ ତ ହଜିଗଲା, ଫେରିବ ବିଶ୍ୱାସ ।"

ଅଟ୍ଟହାସ୍ୟେ ଉପହାସ ବିଦ୍ରୂପରେ ହେଲି ଜର୍ଜରିତ
"ରୂପରସଗନ୍ଧହୀନ ଅସ୍ପର୍ଶ୍ୟରେ ମନ ମର୍ମରିତ,
ସତ୍ତାହୀନ ଅବସ୍ତୁର ଆବିର୍ଭାବ ପୁଣି ଅନ୍ତର୍ଦ୍ଧାନ"
ଅନୁଭବ ବ୍ୟକ୍ତ କରି ଲଭିଲି ମୁଁ ତିକ୍ତ ଅପମାନ ।

ମୃତ୍ତିକାର ନୁହେଁ ତାହା, ନୁହେଁ ବି ତା' ଏ ମହାଶୂନ୍ୟର,
ଅତିନ୍ଦ୍ରିୟେ ତନ୍ଦ୍ରାତୁର, ନୁହେଁ ତାହା ପାପ ବା ପୁଣ୍ୟର,
ସେ କି ତେବେ ତୁଚ୍ଛ ହେୟ ? ମୁଁ ମଣେ ତା' ଅନିର୍ବଚନୀୟ,
ସ୍ପର୍ଶହୀନ ଆସ୍ୱାଦନ, ଜୀବନ ଓ ମରଣରୁ ପ୍ରିୟ ।
ମୁହୂର୍ତ୍ତକ ଲାଗି ଆସି ସମ୍ମୋହିଛି ସେ କି ସୁଦୂରର ?
ସାନ୍ନିଧ ତାହାର କାମ୍ୟ ସେ ତ ମୋର ସମଗ୍ର ପ୍ରାଣର,
ଦ୍ୱିଧାହୀନ ଆନନ୍ଦର ବାଧାହୀନ ମିଳନର ପାଇଁ
ବିରହେ ଜଳି ମୁଁ ତା'ରେ ନିର୍ନିମେଷେ ରହିଥିବି ଚାହିଁ । ▭▭

## ସହରର ସକାଳ

ସହରେ ସକାଳ ହୁଏ ପ୍ରାଣହୀନ ସୂର୍ଯ୍ୟର ହସରେ,
ସେ ସକାଳ ଜନ୍ମ ଲଭେ ବିଷଦଗ୍ଧ, ପ୍ରେତାୟିତ, ରାତ୍ରିର ଜଠରୁ
ମୁମୂର୍ଷୁ, ମମତାହୀନ, ସ୍ୱପ୍ନ କାହିଁ ? ସଙ୍ଗୀତ ବି କାହିଁ ?
କଠୋର ବାସ୍ତବତାର ସେ ତ ଏକ ତପ୍ତ ଦୀର୍ଘଶ୍ୱାସ ।

ମନ୍ମଥ ଗଣିକାପୁରେ ନିଦ୍ରାହୀନ ନୟନର ଜ୍ୟୋତି,
ବିଚିତ୍ର ବିଳାସ କେତେ, ରାତ୍ରି ସରେ, ସୀମାହୀନ ସମ୍ଭୋଗର କ୍ରୀଡ଼ା
ଅସମ୍ଭବ ଅତ୍ୟାଚାର, ଭାଜିବନି ଏଇନେ ପହଡ଼,
ରେଡ଼ିଓରୁ ଚଳଚିତ୍ର ସଙ୍ଗୀତର ସୁର ଶୁଣାଯାଏ ।

ସାହି ଓ ଛକରେ ମେଳା ବେକାରଙ୍କ ଅଦ୍ଭୁତ ଆଳାପ
ଅର୍ଥହୀନ, ମର୍ମହୀନ, ସକାଳଟା ଖାଲି ଫାଙ୍କା ଯାଏ,
ତା' ଦୋକାନେ ଭିଡ଼ ଜମେ, ଭିଡ଼ ଜମେ ବସ୍‌ଷ୍ଟାଣ୍ଡ ପାଖେ,
ପହିଲି ପ୍ରଭାତ ଖରା ପଥ ପରେ ଲୁଚୁକାଳି ଖେଳେ ।

ପାଣିର ପାଇପ୍ ପାଖେ କଳକଣ୍ଠେ କଳହ ଗୁଞ୍ଜନ,
ସ୍ତୂପାକାରେ ଜମି ରହେ ପାଣିପାତ୍ର ଘଣ୍ଟାପରେ ଘଣ୍ଟା,
'ମଧୁମତୀ' ପୋଷ୍ଟରରେ ଗତରାତ୍ରି ଶିଶିର ସିକ୍ତତା,
ନିର୍ବାକ୍ ନୟନ କେତେ, ଅନାୟାସେ ମେଣ୍ଟିଯାଏ ରୂପର ପିପାସା ।

ରାତ୍ରିର ମରଣ ଯାଇ ଧୀରେ ଧୀରେ ଜୀବନ ଫେରୁଛି
ସହରର ବୁକୁପରେ, ଦିକ୍‌ଦାର ଯାତ୍ରୀଙ୍କ ସଭ୍ୟତା
କ୍ରମଶଃ ଚାଞ୍ଚଲ୍ୟ ଆଣେ, ଯାନ ଛୁଟେ ଭୂକମ୍ପ ସଙ୍ଗୀତେ,
ଜୀବନ ଫେରିବା ନାମେ ମରଣର ମଉଛା ବସୁଛି ।

ସବୁକିଛି କ୍ଳେଦମୟ, ରାସ୍ତା, ଘାଟ ମଣିଷ ନିଜେ ବି,
ରାତିର ଅନ୍ଧାରେ ଯାହା ଲୁଚିଥିଲା ସକାଳ ଆଲୋକେ
ସେ ସବୁ କଦର୍ଯ୍ୟ ଦିଶେ, ସ୍ଥାୟିତ୍ୱ ତା' ବେଶୀ କାଳ ନୁହେଁ,
ଝାଡୁଦାର ଆସେ ହେଇ, ମଣିଷ ବି ନିଜକୁ ଓଳାଏ ।

କିଛି ତ ହେବନି ସଫା, ସବୁ ପୁଣି ଫେର୍ ଜମିଯିବ,
ପୁନଶ୍ଚ ତା' ସଫା ହୋଇ ପୁନର୍ବାର ଜମୁଥିବ ଆସି
ଜମିବା ଯେମିତି ସତ୍ୟ, ଓଳାଇବା ଅଭିନୟ ଖାଲି,
ନଚେତ୍ ଏ ପ୍ରାଣହୀନ ସହରର ଜୀବନଟା କିପରି ବଞ୍ଚିବ ?

ମୁହଁ ପରେ ସ୍ପଷ୍ଟଛାପ ଅବସାଦ, କ୍ଳାନ୍ତି ଓ ଜଡ଼ତା
ରାତ୍ରିର ବିଶ୍ରାମ ନାହିଁ, ସ୍ୱପ୍ନ ଖାଲି ଆକାଶୀ କଳ୍ପନା,
ଆଖିତଳେ କଳାଦାଗ, ମୀମାଂସା ବା ସମାଧାନ କାହିଁ ?
ପ୍ରତିଯୋଗୀ ମାନସର ଅବିଶ୍ରାନ୍ତ ପରିଶ୍ରାନ୍ତ ଗତି ।

ସକାଳର ପକ୍ଷୀ ଗୀତ ଗାଇ ଆପଣାକୁ ଅପମାନ କରେ,
ପାହାନ୍ତି ହାଓ୍ୱାରେ କାହିଁ ମୁକ୍ତି ? ଖାଲି ବନ୍ଧନର କରୁଣ ଇଙ୍ଗିତ,
ସକାଳ ଆଲୁଅ ପୁଣି ଅରଣ୍ୟରେ ପଥ ଖୋଲି ଦିଏ,
କୁଟିଳ ନୟନ, ଓଷ୍ଠେ ଦନ୍ତପାଡ଼ା, ମୁଷ୍ଟିବଦ୍ଧ ହସ୍ତ ।

ମନର ମହକ ମୃତ, ଦେହଟାର ମହୁଲ ନିଶାରେ
ଘୋଡ଼ାର ଦଉଡ଼ ଖାଲି, ତୁମ ସଙ୍ଗେ ପରିଚୟ ନାହିଁ,
ଆତ୍ମୀୟତା ଦୂରକଥା, ଚିହ୍ନିବି ତ ଚିହ୍ନିନାହିଁ ହୁଏ,
'କାଲି ତାକୁ ଦେଖିଥିଲି କେଉଁଠାରେ ଠିକ୍ ମୋର ମନେ ତ ପଡୁନି ।'

ଏମିତି ହସରେ ଆସେ ପୁନର୍ବାର ଗୋଟାଏ ସକାଳ
ବୈଶିଷ୍ଟ୍ୟ, ବୈଭବହୀନ-ଯେଉଁଠାରେ ସମୟର ବିଭକ୍ତିରେ ବିଚିତ୍ରତା ନାହିଁ
ସ୍ୱାତନ୍ତ୍ର୍ୟ ହରାଇ ସିଏ ଏକାକାର ସମୟ ସ୍ରୋତରେ,
ତେଣୁ ଖୁବ୍ ହାଇ ଉଠେ, ଇଚ୍ଛାହୁଏ ଘୋଡ଼ି ହୋଇ
ଚୁପ୍‌ଚାପ୍ ଶୋଇ ରହିବାକୁ । ◻◻

## ନମସ୍କାରାନ୍ତେ

"ନମସ୍କାର, କ'ଣ ଏବେ ଦେଖା ନାହିଁ, ଭଲ ତ ଅଛନ୍ତି ?"
ପ୍ରଶ୍ନତଳେ ତୁମେ ଯଦି ଖୋଜିବୁଲ କିଛି ଆତ୍ମୀୟତା,
କିଛି ବୁକୁର ସ୍ପନ୍ଦନ, ତେବେ ଜୀବନର ଚଲାପଥ ପରେ
ମୁହୂର୍ତ୍ତ ମଣିବ ଯୁଗ, ଆକାଂକ୍ଷାର ଅସମାପ୍ତ ବ୍ୟଥା ।

ସେ ଖାଲି ଗୋଟାଏ ଚାଲ୍, ଭଦ୍ରାମିର ଟିକିଏ କଟାକ୍ଷ,
ଅନାତ୍ମୀୟ ସୌଜନ୍ୟର ସେ ତ ଏକ ବିଦ୍ୟୁତ୍ ଝଲକ,

ନିଜ ବ୍ୟଥା ନିଜ ଭଲ ନେଇ ଏତେ ବ୍ୟସ୍ତ ଆପଣା ଭିତରେ
ସମୟ ବା ତା'ର କାହିଁ ମୁହୂର୍ତ୍ତେ ସେ ଠିଆ ହେବ
ବ୍ୟଥାତୁର ମମତାର ଛକେ ।

ତୁମେ ସତେ ଝରିଯିବ ଏଇ ମିଥ୍ୟା ପରାଜୟ ତଳେ,
ପାରିବନି ଜୟ ଗାଇ ପ୍ରତିନମସ୍କାରେ କିଛି ନିସ୍ପୃହ ଉତ୍ତରେ । □□

## ଗୋଟିଏ କ୍ରୋଧର ଏପାଖ ଓ ସେପାଖ

ରାଗିବାର କଥା ନୁହେଁ ସେ ହଠାତ୍ ରାଗିଲେ କାହିଁକି ?
କାରଣ ନ ବୁଝି ମିଛେ ଅଭିମାନେ ଜର୍ଜରିତ ହେଲ,
ମନର ଉତ୍ତାପ ନିଜ ନିକଟରେ ସାଇତି ନ ପାରି
ସାମନ୍ୟ ସାନ୍ତ୍ୱନା ଆଶେ ଅନ୍ୟ ପାଖେ ବ୍ୟକ୍ତ କରିଦେଇ
ଆପଣାକୁ ସୁସ୍ଥ ମନେକଲ,
ମନର ସୁସ୍ଥତା ସତେ ସମ୍ଭବ କି ପଥ ହୁଡ଼ି ଏ ରାସ୍ତାରେ ଗଲେ ।

ତା'ପରେ,
ସେ କାଲି ଆସିବେ ଯେବେ ତୁମ ପାଖେ ନିଜ ଭୁଲ୍ ବୁଝି
ଭୁଲ୍ ଯେଣୁ ଇଚ୍ଛାକୃତ ନୁହେଁ, ତେବେ ତୁମେ ନିଜ ଭ୍ରମ ଲାଗି
କୈଫିୟତ କି ଦେବ କୁହ ନିଜ ପାଖେ, ବିବେକ ପାଖରେ,
ତାଙ୍କର ସମସ୍ତ ଭୁଲ୍ ଅବା ଭୁଲ୍ ଯେତେ ସବୁ ତୁମର ହୋଇଚି ? □□

## ମଲାଜହ୍ନ

ଉଷାର ପାହାନ୍ତି ହସ, ମଲାଜହ୍ନ ମୁହଁ ତା' ଶୁଖାଏ,
ବିଦାୟର ବେଳ ହେଲା, ତାରା ସବୁ ନିଶ୍ଚିହ୍ନ ହେଲେଣି,
ଯେଉଁମାନେ ବନ୍ଧୁ ବୋଲି ହାତେ ତା'ର ହାତ ରଖିଥିଲେ
ସେ ବନ୍ଧୁତ୍ୱ କାହିଁ ଏବେ ? ନିଃସହାୟ ନିଃସଙ୍ଗ ସେ ଏକା ।

ସୂର୍ଯ୍ୟର ସ୍ୱାଗତ ଲାଗି ଚତୁର୍ଦ୍ଦିଗେ ଉତ୍ସବର ଢେଉ,
ସ୍ଥିତି ତା'ର କେହି ହାୟ ଉପଲବ୍ଧି ପାରନ୍ତିନି କରି,

ରାତ୍ରିର ଜ୍ୟୋତ୍ସ୍ନାର ସ୍ୱାଦ ଏତେ ଶୀଘ୍ର ପାଶୋରି କି ଗଲେ ?
ଅତୀତର ସ୍ମୃତି କ'ଣ ବର୍ତ୍ତମାନେ ମୂଲ୍ୟ ପାଏ ନାହିଁ ?

ଅସ୍ତାଚଳେ ଲୁଚୁ ଲୁଚୁ ମ୍ରିୟମାଣ ଚନ୍ଦ୍ର ଭାବୁଥିଲା
ଏ ବିଶ୍ୱର ପ୍ରୀତି କ'ଣ ସ୍ୱାର୍ଥହୀନ ଅକଳୁଷ ନୁହେଁ ?
ବୃହତ୍ତର ସ୍ନେହ ସ୍ପର୍ଶେ କ୍ଷୁଦ୍ରତର ସମ୍ବନ୍ଧର ସ୍ମୃତି
ସତେ କ'ଣ ନିଃସଙ୍କୋଚେ ବିସ୍ମୃତିରେ ଫିଙ୍ଗିଦେଇ ହୁଏ ?
କ୍ଷୋଭେ ସେ ଶପଥ ନେଲା ରଜନୀର ରଜତ ଉତ୍ସବେ
ବଞ୍ଚିତ କରିବ ଏହି ଅବାଞ୍ଛିତ ସୃଷ୍ଟିର ଦଳକୁ
ଅମୃତର ଆସ୍ୱାଦନୁ, କିନ୍ତୁ ସେ ତ ଭାବିଲାନି ଥରେ
ମହତ୍ତ୍ୱ ତା' ବଞ୍ଚିଅଛି ସେମାନଙ୍କ ସ୍ମୃତିର ଉପରେ ।

ସାମୟିକ ମନାନ୍ତର, ମତାନ୍ତର ଚିତ୍ତର ସମ୍ପର୍କ କେବେ ଛିନ୍ନ କରିପାରେ ?
କ୍ଷଣିକ କ୍ଷୋଭରେ ସୃଷ୍ଟ ଅଭିମାନ ପାର୍ଥକ୍ୟ ଯା' ଆଣେ
ସେତ ମାତ୍ର ମୁହୂର୍ତ୍ତର, ଦୃଶ୍ୟହୀନ ମମତା ଶୃଙ୍ଖଳ
ଦିବସର ବ୍ୟବଧାନେ ରଜନୀରେ ଲୁପ୍ତ କରିଦିଏ ।

ଅସ୍ତମିତ ଶଶୀ ଥରେ ସ୍ମରିଲାନି ତା' ସ୍ମୃତିର କଥା,
ଅଯଥା ଈର୍ଷାରେ ଜଳି ସ୍ରଷ୍ଟାରେ ସେ ଅପମାନ କଲା,
ସୂର୍ଯ୍ୟ ବୋଧେ ହସୁଥିବେ ଅନ୍ତରାଳେ ଅଭିମାନୀ ଶଶୀରେ ଅନାଇ,
ଅବିବେକୀ ଅକସ୍ମାତ୍ ଭ୍ରମଯୁକ୍ତ ମୀମାଂସାରେ ଉପନୀତ ହୁଏ ।

ସୃଷ୍ଟିର ସ୍ଥିତିର ଲାଗି କର୍ତ୍ତବ୍ୟ ବିଭକ୍ତି ବିନ୍ୟାସ,
ନିଜତ୍ୱ ଆରୋପ ବୃଥା, ଅହମିକା ଅସୌଜନ୍ୟେ ଅପମୃତ୍ୟୁ ଆଣେ । ▭

## ତଥାପି

ଏତିକିରେ ଶେଷ ନୁହେଁ, ଜାଣିବାର ଯଥେଷ୍ଟ ରହିଛି,
ତିମିରର ଅନ୍ତରାଳେ ଅଜସ୍ରର ଉଦ୍‌ବିଗ୍ନ ପ୍ରତୀକ୍ଷା

ଆଲୋକ ଚାହାନ୍ତି, ଖାଲି ହାତ ଧରି ଟାଣିଦେଲେ ସେମାନେ ଆସିବେ,
ଏପରି ଅସ୍ତିତ୍ୱ ଅଛି ଏ କଥା ବା ବିଚାରୁଛି କିଏ ?

ଯେଉଁମାନେ ବିଶ୍ୱାସନ୍ତି ସେମାନଙ୍କୁ ମୋର ନମସ୍କାର,
ସୂକ୍ଷ୍ମ ଆଉ ସ୍ଥୂଳ ମଧ୍ୟେ ବସ୍ତୁ ଅବା ଅବସ୍ତୁର ପ୍ରାଣେ
ଅନାୟାସ ଦର୍ଶନକୁ ଅଜ୍ଞାନର ସମାପ୍ତି ନ ଭାବି
ଅତଳ ସାଗର ଗର୍ଭେ ରତ୍ନ ଲୋଡ଼ି ସେମାନେ ବୁଡ଼ନ୍ତି ।

ଏହି ହାସ୍ୟ, ଏହି ଲାସ୍ୟ, ଏହି ସୂର୍ଯ୍ୟ, ଏହି ଚନ୍ଦ୍ର ତାରା,
ଏ ଧରିତ୍ରୀ, ଏ ଆକାଶ, ଏହି ମେଘ, ବିଦ୍ୟୁତ୍ ଚମକ,
ଏହି ପ୍ରଜ୍ଞା, ଏହି ଚିନ୍ତା, ଏହି ଇଚ୍ଛା, ଏହି କ୍ଷୁଧା, ତୃଷା
ସୀମାହୀନ ବୈଚିତ୍ର୍ୟର ସିନ୍ଧୁ ମଧ୍ୟେ ବିନ୍ଦୁସମ କେତୋଟି ସ୍ଫୁରଣ ।

ଏ ସତ୍ୟର ଉପଲବ୍ଧି ତିମିରରେ ଆଲୋକକୁ ଦିଏ,
କୌତୂହଳ ବିସ୍ମୃତିକି ଆଶୀର୍ବାଦେ ଉତ୍ସାହିତ କରି
ସେମାନେ ଜଳନ୍ତି ଆଉ ଜଳି ଜଳି ଆଗେଇ ଚାଲନ୍ତି,
ଆଲୋକର ପୁଞ୍ଜୁଝରି ଅଗ୍ନିକଣା ଦର୍ଶକକୁ ଚମତ୍କୃତ କରେ ।
ସେମାନଙ୍କୁ ଦେଖିଛ କି ମେଞ୍ଚ ହୋଇ କୋଠରିରେ ବସିଥିବାବେଳେ
ଆତ୍ମବିସ୍ମୃତିରେ ସ୍ନିଗ୍ଧ ଉଦ୍‌ଭାସିତ ପ୍ରଦୀପ୍ତ ଶିଖାକୁ ?

## ମହାନଗରୀର ରାତ୍ରୀ

ବିବର୍ଣ୍ଣ ସନ୍ଧ୍ୟାର ପରେ ରାତ୍ରି ଆସେ ଧୀର ପଦକ୍ଷେପେ
ନଗରୀର ବୁକୁପରେ ସତର୍କିତ ଆତତାୟୀ ସମ
ବକ୍ଷତଳେ ତୀକ୍ଷ୍ଣ ଗୁପ୍ତି, କଳୁଷିତ ସ୍ୱରୂପ ଲୁଚାଇ
ଅଜସ୍ର ଆଲୋକୋତ୍ସବେ ଚମତ୍କାର ଭଦ୍ରାମିର ଅଭିନୟ ରଚେ ।

ରାଜପଥେ ଯାନ ଶୋଭାଯାତ୍ରା, ପଥପାର୍ଶ୍ୱେ ବିପଣୀର ମେଳା,
ଜନତାର ତୀବ୍ର କୋଳାହଳ, ଉଚ୍ଛ୍ୱସିତ ବ୍ୟସ୍ତତାର ଛବି,

ସାରି ସାରି ତୁଙ୍ଗ ହର୍ମ୍ମ୍ୟମାଳା ଆଭିଜାତ୍ୟ ପ୍ରୀତିର ପ୍ରତୀକ,
ସଭ୍ୟତାର ସରୀସୃପ ଛପି ଛପି ଆଶୁ ମୃତ୍ୟୁ ଗରଳ ଫୁତ୍କାରେ ।

ତଥାପି ଏ ଭୁଜଙ୍ଗର ଚୁମ୍ବନରେ ଅମୃତ ରହିଛି,
ସେ ଅମୃତ ନଗରୀର ବୁକୁପରେ ମାଳଞ୍ଚ ଦୋଳାଏ,
ଶିରା ପ୍ରଶିରାରେ ତା'ର ପ୍ରସରିଛି ନିଶାର ପ୍ରବାହ,
କୃତ୍ରିମ ଏ ସଭ୍ୟତାର ବ୍ୟବଧାନେ ବିରହେ ସେ ବଞ୍ଚିବ କିପରି ?

ଆକାଶରେ ଚନ୍ଦ୍ର ହସି ଆପଣାକୁ ଅସମ୍ମାନ କରେ
କେତେ ସେ ନିର୍ଲଜ ସତେ, କିଏ ଲୋଡ଼େ ଉପସ୍ଥିତି ତା'ର ?
ଘରେ ଘରେ ଚନ୍ଦ୍ରିକାର ଢେଉ, ଅର୍ଦ୍ଧରାତ୍ରେ ନଗରୀର ଜ୍ୟୋତ୍ସ୍ନାୟିତ ପଥେ
ଲଭିବାକୁ ପଡ଼ିପାରେ ତା'ରେ ଅସମ୍ଭବ କୁତ୍ସିତ କଟାକ୍ଷ ।

ରାତ୍ରି ବଢ଼େ, ପଥ କ୍ରମେ ଶାନ୍ତ ହୁଏ, ଶୀର୍ଷେ ହୁଏ ବିପଣୀ ବୀଥିକା
କ୍ଲାନ୍ତ ଯାନ ହାଇମାରେ, ପ୍ରେକ୍ଷାଳୟେ କୋଳାହଳ ସ୍ତବ୍ଧ ହୋଇ ଆସେ,
ନିର୍ବାପିତ ଆଲୋକର ଛାଇତଳେ ହାହୁତାଶ କେତୋଟି ନିଃଶ୍ୱାସ,
ରେସ୍ତୋଁରାର କଣ୍ଠସ୍ୱର ଧୀରେ ଧୀରେ ଅବରୁଦ୍ଧ ହୁଏ ।
ମଣିଷ ନାଚୁଛି ହେଇ, ଚମତ୍କାର କ୍ରୀଡ଼ନକ ନୃତ୍ୟ
ଯୁଗଳ ଚରଣେ ଛନ୍ଦ, ନୟନରେ ଅକପଟ ପ୍ରଣୟର ଅକୁହା କାହାଣୀ,
କମରେ କରର ବେଢ଼ି, ଯନ୍ତ୍ର ସଙ୍ଗୀତରେ ପ୍ରୀତି ମଦିର ମୂର୍ଚ୍ଛନା,
ସ୍ୱପ୍ନାଚ୍ଛନ୍ନ ରଖିବାରେ ଦୀର୍ଘକାଳ ମୂହୁର୍ମୁହୁଃ ନୟନ ରଙ୍ଗାଏ ।

ଦିବସର ମୃତ୍ୟୁପରେ ନବ ନବ ପ୍ରାଣ ସଂଚରୁଛି,
ଜୀବନ ସ୍ୱାଗତ ସତେ ଜଣାଏ କି ଶ୍ରାନ୍ତ ମଣିଷରେ ?
ସଂକୀର୍ଣ୍ଣ ଗଳିରେ କେତେ କାତରତା ରୂପର ଭିକ୍ଷାଣୀ,
ଅଜ୍ଞାନର ଆତ୍ମହତ୍ୟା, ଚମତ୍କାର ପ୍ରାଣର ପ୍ରତୀତି ।

ବିରହିଣୀ ନାରୀ ହାୟ ବାତାୟନେ ଅଶ୍ରୁଳ ପ୍ରତୀକ୍ଷା,
ରୂପାଜୀବା ପଦେ ବନ୍ଧା ସୁରାପାୟୀ, ପ୍ରାଣର ଦୟିତ,
ଯୌବନର ଅଭିସାର ଉଚ୍ଛ୍ୱସିତ ଅଜସ୍ର କାମନା
ବ୍ୟର୍ଥ ଯାଏ ନିରର୍ଥକ ପାତିବ୍ରତ୍ୟ ଦୁରନ୍ତ ତପସ୍ୟା ।

ଆଜି ଏଇ ରଜନୀର କାୟାହୀନ ଶୂନ୍ୟ ଛାତିପରେ
କେତେ ଯେ ରହସ୍ୟ ଲୁଚେ, ପ୍ରତାରଣା କେତେ ପ୍ରବଞ୍ଚନା,
ଅସାର୍ଥକ ଉତ୍ତେଜନା, ବ୍ୟଭିଚାର, ଅତ୍ୟାଚାର, ଅପହୃତା କରୁଣ ଚିତ୍କାର,
ପ୍ରଣୟର ପ୍ରତିହିଂସା, ଅର୍ଥଲିପ୍ସା ଶୋଣିତ ପାରଣା ।

ଦିବସର କେତେ ସତ୍ୟ ଏ ଅନ୍ଧାରେ ମିଥ୍ୟା ବୋଲି ହୁଏ ପ୍ରମାଣିତ,
କେତେ ଭଦ୍ର, କେତେ ସ୍ୱଚ୍ଛ ଅକସ୍ମାତ ପାଲଟନ୍ତି ରୂପ,
ରାଜନୀତି, କୁଟନୀତି, ଅର୍ଥନୀତି ବିତର୍କର ଆଗ୍ନେୟ ସ୍ଫୁଲିଙ୍ଗ,
ଗୋପନ ବିଚାରେ କେତେ ଧ୍ୱଂସ ଲାଗି ପ୍ରସ୍ତାବନା ଆସେ ।

ଜନହୀନ ପଥପରେ ରାତ୍ରିଚର ପ୍ରହରୀର ମନ୍ଥର ଚରଣ,
ଶୀତର ବୁଭୁକ୍ଷୁ ନିଶି କ୍ରମେ କ୍ରମେ ଗାଢ଼ ହୋଇ ଆସେ,
ରାତ୍ରିର ବିହଙ୍ଗ ଏକ ଅକସ୍ମାତ ଉଡ଼ିଗଲା ଆତଙ୍କିତ କରୁଣ ଚିତ୍କାରେ,
ଉର୍ଦ୍ଧ୍ୱ ଅବଲୋକି ଅବା ନିର୍ଲ୍ଲଜ ଏ ନଗରୀର ଅଭିଶପ୍ତ ଅତି ନଗ୍ନରୂପ ।

ଆକାଶେ ତାରକା ମେଳା, ପରସ୍ପର କୌତୂହଳୀ ବିସ୍ମୟ ଜିଜ୍ଞାସା,
ଏ ରାତ୍ରିର ରହସ୍ୟର କୂଟ ପ୍ରଶ୍ନ ତଥାପି ବି ଅନୁତ୍ତର ରୁହେଁ । ▭▭

## ପିତୃ ପ୍ରୟାଣେ

ଯେତେ ମୁଁ କାନ୍ଦେନା ପଛେ ବାପା ତୁମେ ଫେରିବନି ଆଉ,
ଲେଉଟିବା କଥା ଥିଲେ ଫେରିଆସି ଅନେକ ଆଗରୁ
ଲୁହ ପୋଛି ଦିଅନ୍ତଣି, ପୋଛିଛ ଯେପରି ତୁମେ ଅସଂଖ୍ୟ ମୁହୂର୍ତ୍ତେ
ଅତୀତେ ଅଜସ୍ର ଅଶ୍ରୁ ଏ ଆଖିରୁ ସ୍ନେହମୟ ପରମ ପରଶେ ।
ସେ ପରଶ ଏବେ କିନ୍ତୁ ଶୂନ୍ୟ ହେଲା, ଶୂନ୍ୟ ହେଲା ସ୍ନେହସିକ୍ତ କଥା,
ଶୂନ୍ୟ ହେଲା ସାନ୍ନିଧ୍ୟର ଯେତେ ସୁଖ, ଅନନ୍ତ ମମତା
ବାତ୍ସଲ୍ୟ ଅମିୟେ ସ୍ନିଗ୍ଧ, ଲେଲିହାନ ଚିତାର ଅନଳେ
ସବୁ ସତେ ଶେଷ ହୁଏ ରାତ୍ରିର ଏ ଅନ୍ତିମ ପ୍ରହରେ ?

କେତେ ଥର ନ ଆସିଛି ଏ ଶ୍ମଶାନେ 'ସ୍ୱର୍ଗଦ୍ୱାର' ସମ୍ମୁଖେ ଉଦଧି
ତୁମ ସାଥେ ଭ୍ରମଣର ଛଳେ, କେତେ ଚିତା ନ ଦେଖିଛି ଜାଳିବାର
ନିର୍ଜୀବ ଦେହକୁ,
ନୟନେ ଆତଙ୍କ ମୋର ଅବଲୋକି କହିଛ ବୁଝାଇ,
"ମିଥ୍ୟାରେ ସତ୍ୟର ଭ୍ରମ ତେଣୁ ଦୁଃଖ ଯାତନା ଅଜସ୍ର ।"

ଅଧରେ ତୁମର ସୁଧା ତତ୍ତ୍ୱକଥା, ଆଲୋକର କଥା
ଜୀବନର ପ୍ରତିକ୍ଷଣେ, ଶୈଶବରୁ ଆମର ଜୀବନ
ନିୟନ୍ତ୍ରିତ ତୁମରି ନିର୍ଦ୍ଦେଶେ, ଶ୍ମଶାନରୁ ସତ୍ୟରେ ନିଖାରି
ବୁଝାଇଛ, "ମିଛ ଭୟ ପ୍ରତିବନ୍ଧ ଗତି ପଥେ ଅତିମାନସର ।
ମୃତ କିଏ ? ରୁଗ୍ଣ କିଏ ? ସ୍ଥବିର ବା କିଏ ?
ଅବସାଦଗ୍ରସ୍ତ କିଏ ? ପଙ୍ଗୁ କିଏ ? ନିଶ୍ଚେଷ୍ଟ ବା ନିରାନନ୍ଦ କିଏ ?
ସବୁ ଭୁଲ୍ ବିଚାରର, ଦୁଃଖ କାହିଁ, ମୃତ୍ୟୁ କାହିଁ, ସ୍ଥବିରତା କାହିଁ ?
ନିରର୍ଥକ ବିପର୍ଯ୍ୟୟ ଯେଣୁ 'ମନ ମହୋତ୍ସବ ଗୋଲକ ଐଶ୍ୱର୍ଯ୍ୟେ ଦୀପ୍ତ'
ଅମୃତ ଏ ଅନୁଭବ ନାହିଁ ।"

'ଆକାଶ ହୁଁ ବଡ଼ ପିତା' ଏ ସତ୍ୟର ଚରମ ପ୍ରକାଶ
ତୁମଠି ଦେଖିଛି ବାପା, ପିତା ଖାଲି ଜନ୍ମଦାତା ନୁହେଁ
ଜ୍ୟୋତିର ବି ମନ୍ତ୍ରଦାତା, "ଧନାର୍ଜନ, ଗ୍ରନ୍ଥଗତ ବିଦ୍ୟାର୍ଜନ କେବଳ ତ
ଜୀବନର ଆଭିମୁଖ୍ୟ ନୁହେଁ,
ଆତ୍ମନିରୀକ୍ଷଣ ବିନା କେବେହେଲେ ଆପଣାର ବିସ୍ତୃତି ସମ୍ଭବ ?"

ତୁମର ଦର୍ଶନ ମୋର ଆଖିତଳେ, "ପିତା, ମାତା, ଭ୍ରାତୃ,
ଭଗ୍ନୀ, ଜ୍ଞାତି, ପରିଜନ,
ବନ୍ଧୁ, ପ୍ରତିବେଶୀ ଯେତେ କେହି କେବେ କ୍ଷଣିକ ପାଇଁକି
'ତତ୍ତ୍ୱାମୃତ' କଥା କୁହେ ? ଯେତେ କିଛି ଆଲୋଚନା ତିମିର ତୁଷାର,
ପ୍ରତିକୂଳ ପରିସ୍ଥିତି, ଆପଣା ଶକ୍ତିରେ ତେଣୁ ଠିଆହେବା ବ୍ୟତିରେକେ
ଅନ୍ୟ ଗତି ନାହିଁ ?
ଏଠାକୁ ଆସିବା ଆଉ ଚାଲିଯିବା ମଧ୍ୟେ ସଂକ୍ଷିପ୍ତ ଏ ସ୍ଥିତି
ବୃଥା ଯାଏ, ଆହରଣ ଦୁଇହାତେ ଗେଣ୍ଡା ଶାମୁକାର,

ମନତଳେ ଶୂନ୍ୟତାର ହାହାକାର, ତଥାପି ନିବୃତ୍ତି
କ୍ଳେଶକର, ନିରର୍ଥକ ସଂଚୟର ନିର୍ଲଜ ଆବୃତ୍ତି ।"

ତୁମେ ଖାଲି ପିତା ନୁହଁ, ଅନ୍ଧକାର ମାର୍ଗେ ଆମ ଅନ୍ଧର ଲଉଡ଼ି,
ତୁମରି ଇଙ୍ଗିତେ ଆଜି ପୀୟୂଷର ପଥେ ଆମେ କିଛି ଅଗ୍ରସର,
ସ୍ୱଚ୍ଛ ଯେତେ ହେଉ ପଛେ ସେ ନିର୍ମାଲ୍ୟ କଣିକାଏ ଲାଭ
ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡୁ ଅଣୁ ମାତ୍ର ରେଣୁ ପ୍ରାପ୍ତି ଅନନ୍ତ ବିଭବ ।

ତୁମେ ଆଜି ନାହଁ ବାପା, କିଏ ଆଉ ବ୍ରାହ୍ମ ମୁହୂର୍ତ୍ତରେ
ତଳ୍ପ ତେଜି ସ୍ନାନ ଶେଷେ ବ୍ୟଗ୍ର ଚିତ୍ତେ ଚଞ୍ଚଳ ପଦରେ
ମନ୍ଦିରେ ବା ଯିବ, ପ୍ରାଣେ ଜଗନ୍ନାଥ ସାନ୍ନିଧ୍ୟର ପ୍ରବଳ ଆକାଂକ୍ଷା
ଦରଶନ ମଙ୍ଗଳ ଆଳତି, ବେନି ନେତ୍ରୁ ବିଗଳିତ ପ୍ରେମ ଅଶ୍ରୁଧାରା ।

ଜଗନ୍ନାଥ ବ୍ରହ୍ମରୂପୀ ନିରାକାର ସାକାରେ ପ୍ରକାଶ,
ଜଗନ୍ନାଥ ତତ୍ତ୍ୱ ତୁମେ ବୁଝିଥିଲ ବୁଦ୍ଧି, ଜ୍ଞାନ, ପ୍ରେମ ମାଧ୍ୟମରେ,
ମନ୍ଦିରେ ତୁମର ସ୍ଥିତି ସେଥିଲାଗି କେତେବେଶୀ ସୁଖପ୍ରଦ ଥିଲା,
ଅନନ୍ତ ବସନ୍ତ ଯହିଁ ଦିଗେ ଦିଗେ ସୀମାହୀନ ଶ୍ୟାମଳ ବିସ୍ତୃତି ।
ଗରୁଡ଼ସ୍ତମ୍ଭର ପାଖେ ଦୃଷ୍ଟି ତବ ଅପଲକ 'ଚକା ନୟନରେ'
ଏକାଗ୍ର, ତୁମର ତତ୍ତ୍ୱ ବିଶ୍ଳେଷଣ "ଗରୁଡ଼ ଯେସନ
ସ୍ଥିର ଦୃଷ୍ଟି ବିଶ୍ୱମୁଖେ ଅଚଞ୍ଚଳ ଏକାଗ୍ର ମନର
ବ୍ରହ୍ମେ ସ୍ଥିତି ପ୍ରୟୋଜନ ଅର୍ଜୁନର ଦୃଷ୍ଟିଖାଲି ଖଗ ନେତ୍ରେ
ଅନ୍ଧାରର ଅନ୍ୟସବୁ ଦୃଶ୍ୟ ।"

ପ୍ରତିକ୍ଷଣେ ସନ୍ତାନମାନଙ୍କୁ ଜଡ଼ ଆଉ ଜୀବ ମଧ୍ୟେ ଚିନ୍ମୟର ଅଖଣ୍ଡ ପ୍ରକାଶ
ବୁଝାଇଛ ବିଶ୍ଳେଷଣେ, ଭ୍ରମମୁକ୍ତ କରିଛ ଆମକୁ
"ଗୀତାର ସମସ୍ତ ଯୋଗ ଏକୀଭୂତ କରିବାର ସାଧନା ସିଦ୍ଧିରେ
ବିଶ୍ୱରୂପ ଦରଶନ, ବୃଥା ତେଣୁ କର୍ମ, ଜ୍ଞାନ ଇତ୍ୟାଦିର ପୃଥକ ତପସ୍ୟା ।"

ବିଷୟ ବିଷରେ ରହି ଚିର ଅନାସକ୍ତ ତୁମେ ସଦା ଉଦାସୀନ,
ଦାନେ ନିତ୍ୟ ମୁକ୍ତହସ୍ତ ନିର୍ବିଚାରେ ଅଥଚ ତା' ଚିର ଅପ୍ରକାଶ୍ୟ,

'କରୁଣା ସ୍ଫୁରଣ ହୃଦେ' ତୁମ ମତେ ରଖେ ଯଦି ବୁଦ୍ଧି ଆଉ
ବିଚାର ଅପେକ୍ଷା
ବିକୃତ ସେ ପ୍ରହସନ, ଜୀବେ ଦୟା ନିଷ୍କପଟ ହୃଦୟର ସ୍ୱତଃ-ସ୍ଫୁର୍ତ୍ତ
ସ୍ୱଚ୍ଛନ୍ଦ ପ୍ରକାଶ ।
ନିକିତିରେ ତଉଲିବା ନୀତି ତୁମେ ଚିରଦିନ କରିଅଛ ଘୃଣା
ବିଷୟେ ବା ପରମାର୍ଥେ, ଯେଣୁ ତା' ଈର୍ଷାକୁ ଆଣେ ପ୍ରତିଯୋଗିତାର
ଇଚ୍ଛା ସ୍ୱଭାବତଃ ଆସେ
'ଅହଂ'ରୁ ତା' ଜନ୍ମନିଏ, ଆତ୍ମ-ସମର୍ପଣ ବିନା ଅଖଣ୍ଡ ଆନନ୍ଦ
କଦାପି ସମ୍ଭବ ନୁହେଁ, ଉର୍ଦ୍ଧ୍ୱ ମୁକ୍ତ ହସ୍ତେ ନୃତ୍ୟ ଭାବେଭୋଳା
ନାମ ସଂକୀର୍ତ୍ତନେ ।

ବିଂଶ ଶତାବ୍ଦୀର ଏହି ସନ୍ଧିକ୍ଷଣେ ତୁମ ବିଶ୍ଳେଷଣ
ହାସ୍ୟାସ୍ପଦ ହେବ ବାପା, ଆପଣାକୁ ଚିହ୍ନିବାର ପ୍ରୟାସ ଅଯଥା
ସମୟର ଅପଚୟ, 'ଆତ୍ମଚିନ୍ତା' ଏ ଯୁଗର ବହଳ ଅନ୍ଧାରେ
ପାଗଳର ଉନ୍ମତ୍ତତା, ସଂଗ୍ରହ ସହଜସାଧ ହାତ ପାଖେ ପ୍ରତ୍ୟାଖ୍ୟାନ କରି
ଶୂନ୍ୟରେ ଖୋଜିବା କିଛି ନିର୍ବୋଧତା ଛଡ଼ା ଆଉ କ'ଣ ହୋଇପାରେ ?

ତେଣୁ ତୁମ ସ୍ଥାନ ନାହିଁ ବିଷମୟ ସଭ୍ୟତାର ସ୍ୱର୍ଣ୍ଣ ସିଂହାସନେ,
ସେ ଆସନ ରକ୍ତାପ୍ଳୁତ, ବ୍ୟଥାଦଗ୍ଧ, ଈର୍ଷା ପ୍ରଣୋଦିତ,
ତଥାପି ତା' ପ୍ରାପ୍ତି ଲାଗି ପ୍ରତିଦ୍ୱନ୍ଦ୍ୱିତାର ଆହା ଇତି ନାହିଁ ଆହୁରି, ଆହୁରି,
ଅଯୋଗ୍ୟ ଯେ ତୁମ ପରି ସେ ଆସନ ଲଭିବ କିପରି ?

ଯୌବନରୁ ସତ୍ୟ ଲାଗି ତୁମର କି ଅସୀମ ପିପାସା,
ମହୋଦଧିତୀରେ ତୁମ ଦୃଷ୍ଟି-ଜ୍ୟୋତି କଲା ଆବିଷ୍କାର
ଦିଗମ୍ବର ମହର୍ଷିଙ୍କୁ (୧) ଜଟାଜୁଟଧାରୀ ଦୀର୍ଘ ଜ୍ୟୋତିର୍ମୟ ବପୁ,
ଗିରିନାରୀ ବନ୍ତ ତୂଳେ (୨) ଦେବର୍ଷିଙ୍କ ପାବନ ପ୍ରତିଷ୍ଠା
ତୁମର ଅମରକୃତି, ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁ ମହେଶ୍ୱର ।

ତୁମ କୃପା ବିନା ପିତଃ, କିପରି ବା ଲଭିଥାନ୍ତୁ ଆମେ
ଦୁର୍ଲ୍ଲଭ ସେ ଦର୍ଶନକୁ କୃପାମୟ 'ବାବା'ଙ୍କ (୩) ସାନ୍ନିଧ,

ସେ ତ ଆଜି ଅଦର୍ଶନ, (୪) ବାଲିବନ୍ତ ମହାତୀର୍ଥେ କିନ୍ତୁ
ଜନତାର ଭିଡ଼ ଅବ୍ୟାହତ, ମୋକ୍ଷକାମୀ ମାନବର ମୁକ୍ତିଲାଗି
ଅହରହ ବ୍ୟାକୁଳ ପ୍ରାର୍ଥନା ।

ସଂଶୟ ଭଞ୍ଜନ ସେ ତ କରିଥା'ନ୍ତି ପ୍ରତ୍ୟେକ ଜନର
ସଂକ୍ଷିପ୍ତ ଉତ୍ତରେ, ଥରେ ପ୍ରଶ୍ନ ହେଲା, "ପଥ କ'ଣ ଈଶ୍ୱର ପ୍ରାପ୍ତିର ?"
ଉତ୍ତର ପଦିଏ କଥା ସୁଧାସମ "ଗ୍ରନ୍ଥ ତ୍ୟାଗ କଲେ,"
ଏ ଉତ୍ତର ପରେ ଆଉ ପ୍ରଶ୍ନ କାହିଁ ? ପ୍ରଶ୍ନ ଶେଷେ ବିଶ୍ୱାସର
ଅନନ୍ତ ଆନନ୍ଦ ।

କେହି ଜଣେ ଭକ୍ତ କଲା ଅଶ୍ରୁଜଳେ ବ୍ୟାକୁଳ ପ୍ରାର୍ଥନା
"ଉଦ୍ଧାର କର ହେ 'ବାବା' ଅନ୍ଧକାରୁ', ହସି ତାକୁ ବୁଝାଇ ଥିଲେ ସେ,
"ହେବାକୁ ପଡ଼ିବ ତୋତେ 'ବାବା', ଠିକ୍ ସେତେବେଳେ ଯାଇ
ତୋ ଉଦ୍ଧାର ହେବ ଆପେ, ତୈଳହୀନ ଦୀପ କେବେ ସୂର୍ଯ୍ୟେ
ଦୀପ୍ତ ହୁଏ ?"
ହସି ପୁଣି କହିଥିଲେ, " 'ଧ୍ରୁବ', 'ପ୍ରହ୍ଲାଦ' ବେନି ସଂଯୋଗରେ ଅତୀନ୍ଦ୍ରିୟ
ଉପଲବ୍ଧି ପ୍ରାଣାରାମ ପ୍ରାପ୍ତି ।"
ବାପା, ତୁମ ଆଶୀର୍ବାଦୁଁ ଲଭିଛି ସିନା ସେ କୃପା ଅନନ୍ତ, ଅସୀମ
କେବଳ ତୁମରି ପାଇଁ, ତୁମେ ହାୟ ଆଜି ଆଉ ନାହଁ
ନିଃସ୍ୱ କରି ନିଜ ଜନେ ଲିଭିଗଲ ସତେ ଆହା ଅନନ୍ତ ଆକାଶେ
ଯେ ଆକାଶୁଁ କେହି କେବେ ଲେଉଟେନି ଅଶ୍ରୁସିକ୍ତ ପରିବାରେ
ସାନ୍ତ୍ୱନା ଦେବାକୁ ।

ଆମେ କାନ୍ଦୁ ହାହାକାରେ ବୁକେ ଶିରେ କରାଘାତେ ତୁମ ବ୍ୟବଧାନେ,
ହଠାତ୍ ତୁମର ଉକ୍ତି ମନେ ପଡ଼ିଯାଇ କିନ୍ତୁ ଅଶ୍ରୁରୁଦ୍ଧ ହୁଏ
ବଚନ ଅମିୟ ସିକ୍ତ, "ବିକଳ କାନ୍ଦଣା ଆମ ଆତ୍ମୀୟ ବିୟୋଗେ
ବିଶ୍ଳେଷଣ କଲେ ନିଜ ଭୁଲ ଯେତେ ଆପେ ଧରା ପଡ଼େ ।
ମନେକର ମୃତ ଯଦି ଫେରିଆସେ ପୁନର୍ବାର ଜୀବନ ଅଙ୍ଗନେ
ପ୍ରତ୍ୟାବର୍ତ୍ତନେ ତା' ଆମେ ଆନନ୍ଦେ ଉନ୍ମତ୍ତ ହେବା ଖୁବ୍ ସ୍ୱାଭାବିକ,
ମାତ୍ର ସେଇ ଆନନ୍ଦର ସ୍ଥିତି କେତେ କ୍ଷଣ ? ପରକ୍ଷଣେ ପୁନଶ୍ଚ ଶୂନ୍ୟତା ।

ଅତଏବ ଯେଉଁ ଦୁଃଖ ଦୁଃଖ ନୁହେଁ, ଯେ ଆନନ୍ଦ ଆନନ୍ଦ ବି ନୁହେଁ
ତା' ସାଥେ ସଂପୃକ୍ତ କରି ଆପଣକୁ ବିଡ଼ମ୍ବିତ କରିବା କାହିଁକି
ଆଲୋକିତ ଜୀବନକୁ ? ଆତ୍ମହତ୍ୟା କେଡ଼େ ଭୟଙ୍କର ।
ଯା ଲାଗି କାନ୍ଦିବା ଖୁବ୍ ପ୍ରୟୋଜନ ତା' ପାଇଁକି କାନ୍ଦୁନା କଦାପି,
ଆମେ ଯେ ବିଚ୍ଛିନ୍ନ ହୋଇ ପ୍ରିୟଠାରୁ ଏଠାରେ ଏକାକୀ
ନିଃସ୍ୱ ସଙ୍ଗହୀନ ତା' କି ଭାବୁ କେବେ ? ଅଶ୍ରୁଯେତେ ବୃଥା ବ୍ୟୟ ହୁଏ,
ସେ କିନ୍ତୁ ରହିଛି ଚାହିଁ ପଥ ଆମ ଭରା ଆଖି ଲୁହେ ।"

ତୁମେ ଆଉ ନାହିଁ ବାପା, ମାତ୍ର ତୁମ ସ୍ମୃତିର କୁହୁକ
ଆମର ସକଳ ବ୍ୟଥା ଅସ୍ଥିରତା କରିଦିଏ ସ୍ଥିର,
ଅନନ୍ତ ଚାଞ୍ଚଲ୍ୟ ମଧ୍ୟେ ଦୀପ୍ତି ଏକ ଅଚଞ୍ଚଳ ଆଲୋକ ବିନ୍ଦୁର ।

ହେ ଅସୀମ ଅଶରୀରି, ଶୂନ୍ୟେ ଥାଇ କର ଆଶୀର୍ବାଦ
ଏ ଜୀବନ ଲଭେ ଯେହ୍ନେ ପ୍ରିୟତମ ବିରହର ସ୍ୱାଦ,
ଏ ଆଖିର ଲୁହ ଝରୁ ଅନିବାର ସେ ସାଗର ପାଇଁ,
ଜାଗତିକ ହିସାବ ମୋ' ଯେତେ ଯାହା ସବୁ କିଛି ଭୁଲ୍ ହୋଇଯାଇ
ନିର୍ଭୁଲ ପ୍ରମାଣ କରୁ ଅପଦାର୍ଥ ଅଯୋଗ୍ୟ ମୁଁ ମୁଲ୍ୟହୀନ ସଂସାର ପାଇଁକି,
ସେଇ ଅପବାଦ ହେଉ ପାଥେୟ ମୋ' ଉନ୍ମାଦିନୀ ଶ୍ରୀମତୀ ସମାନ
ଆତ୍ମବିସ୍ମୃତି ମୋ ଘଟୁ, ଉପହାସ କରତାଳି ଯେତେ ବାଜୁ ପଛେ
'ବ୍ରହ୍ମୋତ୍ରୀ ବାୟାଣୀ' ବୋଲି ପ୍ରତୀକ୍ଷା ମୋ ରହୁ କିନ୍ତୁ ଅନିଃଶେଷ
ଅପଲକ ପଥପ୍ରାନ୍ତେ ଚାହିଁ
ପ୍ରତିକ୍ଷଣେ ସଚକିତ, ସ୍ପନ୍ଦିତ ହୃଦୟତଳ, ହେଇ ସେ ଆସିଲେ ବୋଧେ,
ଡ଼େରିନାହିଁ ଡ଼େରି ଆଉ ନାହିଁ ।



୧ । ୧୯୩୧ ମସିହାରେ ମୋର ପିତା ୰ କୃଷ୍ଣମୋହନ ମହାନ୍ତି ଏକଦା ପୁରୀ ସମୁଦ୍ର ତଟ ସୈକତରେ ଜଟାଜୁଟଧାରୀ ଦୀର୍ଘ ଜ୍ୟୋତିର୍ମୟ ବପୁଧାରୀ ଜଣେ ଦିଗମ୍ବର ସନ୍ନ୍ୟାସିଙ୍କ ସାକ୍ଷାତ ପାଇ ତାଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି । ପରେ ସେ ତାଙ୍କୁ ଗୁରୁ ରୂପେ ବରଣ କରିଥିଲେ । ପରବର୍ତ୍ତି ସମୟରେ ଜଣାଯାଏ ସେ ହିମାଳୟରେ ତପସ୍ୟା କରୁଥିଲେ । ପଦବ୍ରଜରେ ସେ ଅନ୍ୟ କେତେକ ତପସ୍ୱୀଙ୍କ ସହ ପୁରୀ ଚାଲି ଆସିଥିଲେ ।

୨ । ପୁରୀ ଲୋକନାଥ ମନ୍ଦିର ସମୀପସ୍ଥ ଏକ ସୁଉଚ୍ଚ ବାଲିବନ୍ତର ନାମ । ମୋର ପିତା ଏହି ବାଲିବନ୍ତ ଶୀର୍ଷରେ ଗୋଟିଏ କୁଟୀର ନିର୍ମାଣ କରି ଦିଗମ୍ବର ପରମହଂସଙ୍କୁ ସେଠାରେ ସ୍ଥାପନ କରିଥିଲେ । କାଳକ୍ରମେ ଉକ୍ତ କୁଟୀର ଏକ ଆଶ୍ରମରେ ପରିଣତ ହୋଇଚି । ଆଶ୍ରମର ନାମ 'ଅଦ୍ୱୈତାଶ୍ରମ' ।

୩ । ଭକ୍ତମାନେ ମହର୍ଷିଙ୍କୁ 'ବାବା' ବୋଲି ଡ଼ାକୁଥିଲେ । ଜନସାଧାରଣରେ ସେ 'ଲଙ୍ଗୁଳି ବାବା' ବୋଲି ଖ୍ୟାତ ।

୪ । ତା ୨୪-୦୮-୧୯୬୧ ଶୁକ୍ଳ ଶ୍ରାବଣ ତ୍ରୟୋଦଶୀ ରାତ୍ର ଶେଷ ପ୍ରହରରେ ତାଙ୍କର ମହାସମାଧି ହୁଏ । ବର୍ତ୍ତମାନ ଅଦ୍ୱୈତାଶ୍ରମ ଏକ ମନ୍ଦିର ନିର୍ମାଣ କରାଯାଇ ତନ୍ମଧରେ ଶ୍ରୀ ଶ୍ରୀ ବାବାଙ୍କର ପୂର୍ଣ୍ଣବୟବର (ଉପବେଶନ ଅବସ୍ଥାରେ) ମର୍ମର ମୂର୍ତ୍ତୀ ପୂଜା କରାଯାଉଛି ।

## ଅକ୍ଷୟ

ବିବାହର ପରଠାରୁ ଆମେ ଦୁହେଁ ହେଉଛୁ ପୁରୁଣା,
ପୁରୁଣା ହେଉଛି କ୍ରମେ ଶ୍ରଦ୍ଧାସିକ୍ତ ଯୌତୁକ ସକଳ,
ନୂତନର ଶ୍ୟାମଳିମା ଧୀରେ ଧୀରେ ପଡ଼ିଆସେ ଫିକା,
ପୁରାତନ ସ୍ପର୍ଶେ ସତେ କ୍ଳାନ୍ତ ହୁଏ ପ୍ରୀତି ନୂତନର ?

ବସ୍ତୁର କମୁଛି ଦୀପ୍ତି କ୍ରମେ ତେଣୁ ମମତା ତୁଟୁଛି,
ପ୍ରାରମ୍ଭିକ ଆଦରର ଆକର୍ଷଣ ହୋଇ ଆସେ ଊଣା,
ଉତ୍କଣ୍ଠା, ଆବେଗ ଆଉ କୌତୂହଳ ହରାଉଛି ରୁଚି,
ମମତାର ବିନିମୟେ ଲୋଡୁଛି ସେ ଟିକିଏ କରୁଣା ।

କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହୁଏ ଯେଉଁମାନେ ଆମକୁ ତୁଳନ୍ତି
କ୍ଷୟିଷ୍ଣୁ ପଦାର୍ଥ ସଙ୍ଗେ ଅବସ୍ତୁରେ ବସ୍ତୁର ବିଚାରେ,
ଜଡ଼ର ଭଙ୍ଗୁର ସତ୍ୟେ ଚିନ୍ମୟର ସତ୍ୟରେ ଆରୋପି
ଆତ୍ମତୃପ୍ତି ଅନୁଭବି ଅଜ୍ଞାନର ଭ୍ରମ ମୀମାଂସାରେ ।

ଅନଟନ ଅଭାବର କଷାଘାତେ ତୁମେ ଆଜି ଅସମୟେ
ଜରାରେ ଆକ୍ରାନ୍ତ,
ଜନନୀ ଗୌରବ ଲଭି, ଗୃହିଣୀ ଦାୟିତ୍ୱ ଗୁରୁ, ମୁଁ ଆଜି ସ୍ଥବିରା,
ଯୌବନ ଅକାଳେ ଝରେ, ତଥାପି ତ ପୁରୁଣା ହୋଇନୁ,
ଏବେ ବି ନାହିଁ କି ସତେ ଦୁହିଁଙ୍କ ନୟନେ ସେଇ ପହିଲି
ରାତିର ନିଶା, ପ୍ରଣୟ ମଦିରା ?

ଦେହରେ କଳଙ୍କ ଲାଗେ, କିନ୍ତୁ ଆମ ମନତଳ ସେମିତି ସବୁଜ
ଆହୁରି ସବୁଜ ହୁଏ, ଆହୁରି ସୁନ୍ଦର ହୁଏ ଦିନ ଯେତେ ଯାଏ,
ଦୁଇଟି ହୃଦୟ ତଳେ ସ୍ନେହ ଓ ଆବେଗ କ୍ରମେ ଜମାଟ ବାନ୍ଧୁଛି,
ଦୁଇଟି ମନ ତ ନିତି ପ୍ରତି ମୁହୂର୍ତ୍ତରେ ନୂତନର ପରିଚୟ ପାଏ ।

କିଛିତ ହେଉନି କ୍ଷୟ, କିଛି ହେଲେ ହଜି ଯାଉ ନାହିଁ,
ଅନ୍ୟର ଦୃଷ୍ଟିରେ ଯାହା ଦିଶେ ଖାଲି ହଜିଯିବା ପରି
ସେ ମିଛ ହଜିବା ମାତ୍ର, ଆମେ ଦୁହେଁ ସେମିତି ରହିଛୁ
ଆହୁରି ହୋଇଛୁ ସାନ୍ଦ୍ର, ନବୀନର ଶ୍ୟାମଳ ଉତ୍ତରୀ ।

ତେଣୁ, ମନେ ମୋ ସଂଶୟ ଜାଗେ ସତେ ଆମେ ପୁରୁଣା ହୋଇଛେ ? □□

## ପ୍ରତ୍ୟୟ

ବିବାହର ଆଗୁଁ ଯଦି କେବେ କାରେ ପାଇଥାଅ ଭଲ,
ପରିଣୟ ପରେ ମଧ ଯଦି ସେଇ ସ୍ମୃତି ଏବେ ଅନିର୍ବାଣ ଥାଏ,
ଅଥବା ମୋ ସାନ୍ନିଧ ସତ୍ତ୍ୱେ ନୂତନ ଆସକ୍ତି କିଛି ଇନ୍ଦ୍ରଧନୁ ସୃଜିଥାଏ ମନେ
ସେଥିଲାଗି ଦୁଃଖ ନାହିଁ, ମାତ୍ର ମୋର ଏତିକି ମିନତି
ଚିରଦିନ ସେ ରହସ୍ୟ ମୋ ନିକଟେ ଅପ୍ରକାଶ୍ୟ ରହୁ,
(ଅଯଥା ଔତ୍ସୁକ୍ୟ ମୃତ୍ୟୁ) ତୁମଠାରେ ବିଶ୍ୱାସ ମୋ ଅବ୍ୟାହତ ରଖି ।

ସୁନାର ସଂସାର ମୋର ହୀରା, ନୀଳା, ମୋତିର ସଂସାର,
ମୁଁ ତହିଁ ସାମ୍ରାଜ୍ଞୀ ନେଇ ନିଃସଂଶୟ ନିରୁଦ୍‌ବେଗ ମନ,
ଅଯଥା ସନ୍ଦେହ ଗୁଗ୍‌ଣେ ମନସ୍ତତ୍ତ୍ୱ ବିକୃତ ବିଚାରେ
କି ଲାଗି ଜାଳିବି ତା'ରେ ? 'ମୋତେ ତୁମେ ଖୁବ୍ ଭଲପାଅ,
ଏତେବେଶୀ ଭଲ କେହି କେବେହେଲେ ପାଇଛିକି କା'ରେ ?'

ଭୟାନକ ଭୁଲ୍ କରି ଘରେ ଫେରି ଗଭୀର ରାତ୍ରିରେ
ମୋତେ କିନ୍ତୁ କୁହ ତୁମେ ମନ୍ଦିରରେ ରାମାୟଣ ପାଠ ଶୁଣୁଥିଲ ? □□

## ଆଶ୍ଚର୍ଯ୍ୟ ଇଚ୍ଛା (୧)

ମୋର ଭାରି ଇଚ୍ଛା ହୁଏ ତୁମେ ମୋତେ କନ୍ଦୁକ ସମାନ
ଉପରକୁ ଫିଙ୍ଗିଦେଇ ପଡୁ ପଡୁ ଦି ବାହୁ ପ୍ରସାରି
ଆଶ୍ରୟ ଦିଅନ୍ତ ବୁକେ, ଖସୁ ଖସୁ ଶୂନ୍ୟରୁ ତଳକୁ
ଶିହରି ମୁଁ ପ୍ରାଣର ଆତଙ୍କେ ଉଠନ୍ତି ଚିତ୍କାରି

ଭୟେ ମୁଦି ଦୁଇ ଆଖି, ଅଥବା କୌଣସି ଏକ ତଟିନୀର ତୀରେ
ନୀଳପାଣି ଦେଖିବାର ଛଳନାରେ ଡ଼ାକିନେଇ ହଠାତ୍ ନଈର ବୁକେ
ଠେଲିଦେଇ ମୋତେ
ଓଟାରି ଆଣନ୍ତ ପୁଣି, ସଭୟେ ମୁଁ ଆର୍ତ୍ତନାଦ କରି
ଗଳା ତବ ଜଡ଼ାଇ ଧରନ୍ତି, ଘନଘଟା ନିର୍ମେଘ ଶରତେ ।

ତୁମର ସୋହାଗଭରା ପ୍ରୀତିକଥା ବିଜନରେ ବସି
ଶୁଣିବାର ଇଚ୍ଛା ଆଉ ନାହିଁ, ଅବା ତୁମ ବୁକେ ମଥା ମୋର ରଖି
ଜ୍ୟୋତ୍ସ୍ନାମୟୀ ଯାମିନୀକୁ ଉପଭୋଗ କରିବାର ମନ
ସମ୍ପୂର୍ଣ୍ଣ ମୁମୂର୍ଷୁ ଆଜି, ସେ ଚାହୁଁଛି ନିମଜ୍ଜନ କିଛି ଭୟଙ୍କର ସୁଖେ ।

ଗତାନୁଗତିକ ସେହି ନିଃଶଙ୍କ ପ୍ରଣୟ ବାରମ୍ବାର ଆସ୍ୱାଦନ କରି
ଆସିଲାଣି ପ୍ରାଣରେ ଜଡ଼ତା,
ସେଥିଲାଗି ଲୋଡୁଛି ମୁଁ ଭୀତିପ୍ରଦ ପ୍ରୀତିର ଆସ୍ୱାଦ,
ସ୍ପନ୍ଦିତ ହୃଦୟତଳ, କପାଳ ଓ କପୋଳରେ ସ୍ୱେଦର ମଲ୍ଲିକା,
ସେଥିରେ ପଛକେ କିଛି ମିଶିଥାଉ ମିଥ୍ୟା, ଅପରାଧ ।

ତୁମକୁ ମୋ ରାଣ ଅଛି ରକ୍ଷାକର ଅନୁନୟ ମମ,
ନଚେତ୍ ତୁମକୁ ଦେବି ଅପବାଦ ଭୀରୁ ତୁମେ, କାପୁରୁଷ, ନିଷ୍ଠୁର, ନିର୍ମମ ।□□

## ଆଶ୍ଚର୍ଯ୍ୟ ଇଚ୍ଛା (୨)

ତୁମେ ତ ସୁନ୍ଦର, ମାତ୍ର ରାଗିଗଲେ ଦିଶ ତୁମେ ଆହୁରି ସୁନ୍ଦର,
ମୋର ତେବେ ଭାରି ଇଚ୍ଛା ହୁଏ, କ୍ରୋଧର ସେ ଛବି ହେଲେ
ଅଲିଭା ରହନ୍ତା
ମାତ୍ର ତା' ସମ୍ଭବ କେବେ ? ଉତ୍ତାପର ପ୍ରଶମନ ପରେ
ସୁଷମା ସେ ଅନ୍ତର୍ହିତ, କେବଳ ତା' ସ୍ମୃତିର ସମ୍ଭାର ।

ଅତୃପ୍ତ ଆଖିର ଶୋଷ ଚରିତାର୍ଥ କରିବା ପାଇଁକି
ଜାଣି ଜାଣି ଅକାରଣେ ମୁଁ ତୁମର ବିରକ୍ତିକି ଉତ୍ତେଜିତ କରେ,

ତେଣୁ ତ ଅତିଷ୍ଠ ତୁମେ, ମୋ କ୍ରୁରତା, ନିଷ୍ଠୁରତା ନେଇ
ଓଠେ ଓଠେ କେତେ ନିନ୍ଦା, ସବୁ ଶୁଣି ନୀରବ ମୁଁ ରହେ ।

ଦିନ କ୍ରମେ ଯେତେ ଯାଏ ସମାଲୋଚନା ମୋ ହୁଏ ତୀବ୍ରୁରୁ ତୀବ୍ରତର,
ରହିଯାଏ ଅବୋଧ ମୁଁ, ତଥାପି ସମାପ୍ତି କାହିଁ ମୋ ଅବ୍ୟକ୍ତ
ଆଶ୍ଚର୍ଯ୍ୟ ଇଙ୍ଗାର । ☐☐

## ପ୍ରଶ୍ନ

ମୋତେ ତୁମେ ଭଲପାଅ, ଭଲପାଅ ମୋର ଏ ଦେହକୁ ?
ନୟନେ ମୋ ସ୍ୱପ୍ନ ଦେଖ, ଲୁବ୍ଧ ଆଖି ନ ଧର ଉରସେ,
ବୈଦୂର୍ଯ୍ୟ ଚିକୁରେ ତୁମ ବିହ୍ୱଳତା ସ୍ମରେ କ୍ଷଣେ ଘନ କୃଷ୍ଣ ମେଘ,
ପ୍ରଣୟ ପରଶ ଚାହିଁ ନବନୀତ ତନୁର ପରଶେ ?

ହସୁ ମୋର ମୁକ୍ତା ଝରେ, ଅଶ୍ରୁତଳେ ସୁଷମା ବିନ୍ୟାସ,
ଓଠର ଭାଷାରେ ମୋର ଶୁଣ ତୁମେ ବୀଣାର ଝଙ୍କାର,
ମୁଁ ମଣେ ଏ ସବୁ ନୁହେଁ ପ୍ରୀତି, ଖାଲି ପ୍ରେମର ବିକାର ।

ହଠାତ୍ ମୁଁ ହୁଏ ଯଦି କଦାକାର ଦୁରାରୋଗ୍ୟ ବ୍ୟାଧିର କବଳେ
ହରାଇ ରତିର ରୂପ, ଚକ୍ଷୁ ଜ୍ୟୋତି, ତନୁର ତନିମା,
ଗଳିତ ଅଙ୍ଗ ମୋ' ମତ୍ତ ଆଲିଙ୍ଗନେ ସତେ ଚାପିରଖି
ମଦନେ ଉନ୍ମତ୍ତ ହେବ ସ୍ପର୍ଶି ସ୍ୱର୍ଗ ପ୍ରଣୟର ସୀମା ?

ତୁମେ ଶତ ଯୁକ୍ତି ବାଢ଼, ପ୍ରେମ ଚାହେଁ ମନ, ତନୁ ନୁହେଁ,
ସେ ସବୁ ତର୍କର କଥା, ଥରେ ତୁମ ମନକୁ ପଚାର,
କାମନା ଜାଗ୍ରତ ହୁଏ ତନୁ ଅବା ଅବଲୋକି ମନ ?
ରୂପାନ୍ଧେ ଉନ୍ମତ୍ତ ଚିତ୍ତ କରେ କେବେ ମନର ବିଚାର ?

ଅକସ୍ମାତ ପ୍ରେମ ଯାହା ତାହା ଖାଲି ଚିତ୍ତର ବିକୃତି,
ଅଯଥା ଲୋଡୁଛ କିମ୍ବା ନିକଟୁଁ ମୋ ପ୍ରେମ ପ୍ରତିଶ୍ରୁତି ।

# ତମୋବନ୍ଦନା

ଏକଦମ୍ ଭଲହେବାଟାକୁ ମୁଁ ଆଦୌ ବିଶ୍ୱାସ କରେନି,
ଛୋଟବଡ଼ ଦୁର୍ବଳତା ମୁଁ ବୁଝିଛି ମଣିଷର ନିତ୍ୟ ସହଚର,
ନିଛକ ହେବାଟା ଭଲ ଅନ୍ୟ କିଛି ନୁହେଁ, କାଲି ଆତ୍ମ ପ୍ରବଞ୍ଚନା,
ରଙ୍ଗୀନ ଗଗଲ୍‌ସ ତଳୁ ଛଇ ନାଚ ଚୋରା କଟାକ୍ଷର ।

ଭେଲ ବୋଲି ଯାହାଙ୍କର ଦୁନିଆରେ ରଟେ ଅପଯଶ,
ସମାଜର ଶତ୍ରୁ ବୋଲି ଯେଉଁମାନେ ଦୁର୍ନାମ ନିଅନ୍ତି
ମୁଁ ତ ଭାବେ ସେହିମାନେ ସତ୍ୟବାଦୀ, ଖୁବ୍ ସ୍ୱାଭାବିକ,
ଭଦ୍ରାମିର 'ଛି ଛି' ତଳେ ନିଜ ଭଲ ସବୁ ଭୁଲିଛନ୍ତି ।

ଜଗି ରଖି କଥା କହ, ମିଛଟାକୁ ସତପରି କହ
ମାରାତ୍ମକ ମନୋବୃତ୍ତି, ଅଧରରେ ଉକୁଟାଅ ହାସ,
କଥାର ପାଲିସ୍ ତଳେ ଭଦ୍ରତାର ମିଥ୍ୟା ପରିଚୟ,
ଅନ୍ୟର କୁତ୍ସାରେ ଆତ୍ମପ୍ରଶସ୍ତିର ବିପୁଳ ବିନ୍ୟାସ ।

ଗୁରୁତର ଆଲୋଚନା, ଗବେଷଣା ଚିନ୍ତାପରେ ଯେତେବେଳେ
ଅବସାଦ ଆସେ,
ମୁଣ୍ଡଧରେ, ସେତେବେଳେ ଆସ ଆମେ ଏଣୁ ତେଣୁ
ବାଜେ କଥା ହେବା,
ଟିକେ ଅଭଦ୍ରାମି, କିଛି ଯୌନ ଗନ୍ଧ, ପରଚର୍ଚ୍ଚା ମନଟାକୁ
ହାଲ୍‌କା କରିଦିଏ,
ଖିରାପର ସାହାଯ୍ୟରେ ଭଲଟାକୁ ବଞ୍ଚାଇ ରଖିବା ।

ଅନ୍ଧାର ପ୍ରଥମ ସତ୍ୟ, ଆଲୋକ ତ ତା'ପରେ ଆସୁଛି,
ମାତ୍ର ସେ ଔଜ୍ଜ୍ୱଲ୍ୟ ତଳେ ଅନ୍ଧାରର ଅସ୍ତିତ୍ୱ ଜାଗ୍ରତ,
ପୂରାପୂରି ଭଲ ବୋଲି ଯେଉଁମାନେ ବଡ଼ିମା କରନ୍ତି
ସେମାନେ କି ସାଙ୍ଘାତିକ ମିଥ୍ୟାବାଦୀ, ମୁଁ କହିବି ସେମାନଙ୍କୁ
ଶଠ, ପ୍ରବଞ୍ଚକ ।
ପବିତ୍ରତା, ସଂଯମର ଦ୍ୱାହି ଦେଇ ବନ୍ଦ କରି କପଟତା ଶ୍ଳୀଳ ବ୍ୟଭିଚାର
ତୁମେ ଯାରେ ଘୃଣାକର ମୁଁ ଗାଇବି ବନ୍ଦନା ସେ ପ୍ରେତାୟିତ ଘନ ତମସାର । ◻◻

## ଏ ଏକ ପ୍ରାର୍ଥନା

ଏ ଯୁଗର ଧର୍ମ ହେଲା ନାନାଭାବେ ଆପଣାକୁ ଉତ୍ତେଜିତ କର
ଆନନ୍ଦର ସଂଜ୍ଞା ଖୋଜି, ଅଥଚ ସେ ସକଳର ପ୍ରଶମନ ପରେ
କ୍ଳାନ୍ତି ଆଉ ଅବସାଦ ଜୀବନକୁ କିପରି ବା ଏତେ ବେଶୀ
ମ୍ରିୟମାଣ କରେ ?
ଏ ଦହନୁ ମୁକ୍ତି ଲାଗି ପୁନର୍ବାର ନବ ନବ ଉତ୍ତେଜନା ସୃଷ୍ଟିର ପ୍ରଚେଷ୍ଟା ।

ଆକୁଞ୍ଚନେ, ପ୍ରସାରଣେ ବାରମ୍ବାର ଜୀବନ କି ବିପର୍ଯ୍ୟସ୍ତ ହୁଏ,
ଛିନ୍ନଭିନ୍ନ ମନ, ତାକୁ ଯୋଡ଼ିବାର ନିଷ୍ଫଳ ପ୍ରୟାସେ
ହତାଶର ଦୀର୍ଘଶ୍ୱାସ, ହାହାକାର, ପଥ କାହିଁ, ପଥ ହାୟ କାହିଁ ?
ନୟନେ ନୟନେ ଖାଲି କାରୁଣ୍ୟର ମୂକ ଭାଷା, ଏତେ ଟିକେ
ସାନ୍ତ୍ୱନା ବି ନାହିଁ ।

ଏତେ ଜ୍ୱାଳା ସତ୍ତ୍ୱେ କ'ଣ ପଥ ଭୁଲି ସେ ଚାଲିଛି ଅପଥେ ଅନ୍ଧାରେ
ସ୍ୱୀକାର କି କରେ ? ସେ ତ ଆପଣାର ସକଳ କଷ୍ଟକୁ
ଇଷ୍ଟ ମଣି ନିରନ୍ତର ମତ୍ତ ତୀବ୍ର ପ୍ରତିଯୋଗିତାରେ ।
ଜୟ ତା'ର କାମ୍ୟ ଯେଣୁ, ପ୍ରୟୋଜନ ପ୍ରତିପକ୍ଷ ଶୋଣିତ ତର୍ପଣ ।

ସ୍ନେହ ଓ ସହାନୁଭୂତି, ସେବା, ଦୟା, କ୍ଷମା, ଦାନ ଆକାଶର ଫୁଲ,
ସେ ସବୁର ଅଭିନୟ କେତେବେଶୀ ସାହାଯ୍ୟ ନ କରେ
ସ୍ୱାର୍ଥ ସିଦ୍ଧିଲାଗି, ଖୁବ୍ ଅକପଟ, ସରଳ ହେବାଟା
କେତେ ନା ବୋକାମି ସତେ, ସତ କହେ ନିର୍ବୋଧ କେବଳ ।

ଏ ଯୁଗ ଇଙ୍ଗିତ ହେଲା ଜଳ ତୁମେ ମୂହୂର୍ମୁହୁଃ ଜଳ,
ଶାନ୍ତ, ସମାହିତ ଯେହୁ, ତା'ରେ ତୁମେ ବିଦ୍ରୂପ ଓ ଉପହାସ କରି
ଉଦ୍‌ବେଗ, ଉତ୍କଣ୍ଠା, ନିତ୍ୟ ଅସ୍ଥିରତା, ବ୍ୟସ୍ତତାକୁ ସ୍ୱାଗତ ଜଣାଅ,
ସଂଶୟ ଓ ଅବିଶ୍ୱାସ ହେଉ କ୍ରମେ ତୀବ୍ରରୁ ତୀବ୍ରତର ।

"ଅସମାପ୍ତ ଉତ୍ତେଜନା ମୋ ଜୀବନ ପରିପୂର୍ଣ୍ଣ କରୁ
ଏତିକି ମିନତି ପ୍ରଭୋ" ଅଖଣ୍ଡ ପ୍ରାର୍ଥନା ଶୁଭେ ଏ ଯୁଗର
ବିଷଦଗ୍ଧ ମଣିଷ କଣ୍ଠରୁ । □□

## ଦ୍ୱନ୍ଦ୍ୱ

ପ୍ରତି ବୟସର ଏକ ଧର୍ମ ଅଛି ଏ ସତ୍ୟକୁ ଭୁଲିବା କିପରି ?
ତାରୁଣ୍ୟର ତରଙ୍ଗରେ ଲିଲି, ମିଲି, ଟୁକୁ, ଟୁନା ଆନ୍ଦୋଳିତ ହେଉଥାନ୍ତି ଯଦି
ସେଥିଲାଗି ସେମାନଙ୍କୁ କଟାକ୍ଷ ବା କରିବା କାହିଁକି ?
ଅଥଚ ଆମେ ତା' କରୁ ସେମାନଙ୍କ ବିରୁଦ୍ଧରେ ଫୁସ୍‌ଫାସ୍
ଚୁପ୍‌ଚାପ୍ ହେଉ ।

ଆମେ କି ନ ଭୁଲ୍ କରୁ ଜାଣି ଜାଣି ଆପଣାର ଅତୀତ ପାସୋରି ?
ଆମର ବସନ୍ତ କ'ଣ ତ୍ରୁଟିଶୂନ୍ୟ ଥିଲା କେବେ ? ସେଇ ବୟସରେ
କେତେ ରଙ୍ଗିନ୍ ଥିଲୁ, କାମନାକୁ ଚରିତାର୍ଥ କରିବା ପଥରେ
କେତେ ନୀତି, ନିୟମକୁ ଜ୍ଞାତସାରେ ଜଳାଞ୍ଜଳି ନ ଦେଇଛୁ ଆମେ ।

ତାଳଜ୍ଞାନ ନିର୍ଭୁଲ ଥିଲା କି ତେବେ ନାଚରେ ଆମର ?
ତଥାପି ତ ନାଚିଥିଲୁ, ଗଭୀର ନ ହୋଇ ଖୁବ୍ ହାଲ୍‌କା ଭାବେ
ସବୁ କିଛି ନେଇ
ସ୍ୱପ୍ନଟାହିଁ ସତ୍ୟ ଥିଲା, ବୟସର ସେଇ ସ୍ୱପ୍ନେ ଆଜି ଯଦି କେହି ଖୁବ୍
ବିଭୋର ରହୁଛି
ଆମେ କିମ୍ପା ଅସହିଷ୍ଣୁ ହେବା ? ଯେହେତୁ ସେ ଫୁଲ ଆଉ ଆମଲାଗି
ଫୁଟିବନି କେବେ ।

ସ୍ୱପ୍ନ ଦେଖି, ନାଚି ନାଚି, ସେମାନେ ଯେ ପଡୁଛନ୍ତି, ଉଠୁଛନ୍ତି ବାରମ୍ବାର
ତଥାପି ଅକ୍ଳାନ୍ତ,
ଆମେ ସବୁ ସତର୍କିତ, ସେଇ ଦୃଶ୍ୟ ଦେଖି ଦେଖି ମନେ ମନେ ଜଳି ଜଳି
ଖୁବ୍ ପରିଶ୍ରାନ୍ତ । ◻◻

## ଦର୍ଶନ

ମଣିଷର ମନ ମୁହଁ ଦେଖିଅଛି ମଣିଷ ବାହାରେ,
ତାକୁ ହିଁ ମଣିଛି ସତ୍ୟ, ବିଶ୍ୱାସିଛି ପରିଚୟ ତା'ର,
ବାହାରର ଅଭିନୟେ ବାସ୍ତବର ଦୃଢ଼ତା ଆଣିଛି
ଜୀବନ ସଂଗ୍ରାମେ ତିକ୍ତ ପରାଜୟ ତେଣୁ ବାରମ୍ବାର ।

ପ୍ରୟାସ କରିଛି ତା'ରେ ଚିହ୍ନିବାକୁ ସଭାମଣ୍ଡପରେ
କରତାଳି ମାଳଦିଆ ଉର୍ଜ୍ଜସ୍ୱଳ ବଦନ ବାଣୀରେ,
ଚର୍ଚ୍ଚାର ଆସରେ ଥିବା ରେଷ୍ଟୋରାଁର ଚା' ଖିଆବେଳେ,
ଅଥବା ହଠାତ୍ ଦେଖା ନମସ୍କାର ବିଚିତ୍ର ଠାଣିରେ ।

ସତର୍କିତ ମୁହୂର୍ତ୍ତରେ ମଣିଷର ସତ୍ୟ ପରିଚୟ
ଲଭିବାର ପ୍ରୟାସ ମୋ' ଶୋଚନୀୟ ବ୍ୟର୍ଥତା ଆଣିଛି,
ବିପଣୀରେ ଲୋଭନୀୟ ନାଲିପାଣି ସାଦା ବୋତଲରେ
କଳ୍ପନାରେ ସୁରାସ୍ୱାଦ ଲାଳସାର ପିପାସା ଜାଳିଛି ।

ମୁଁ ତାକୁ ଚିହ୍ନିବି ଏବେ କେଉଁ ଏକ ନିରୋଳା ମୁହୂର୍ତ୍ତେ
ଆନ କେହି ଆସିବାର ଯେବେ ତା'ର ନଥିବ କଳ୍ପନା,
ଛପି ମୁଁ ଦେଖିବି ତା'ରେ, ମାନସର ତୀବ୍ର ପ୍ରତିକ୍ରିୟା
କିପରି ବଦନ ପରେ କରେ ନିଜ ସ୍ୱରୂପ ରଚନା,

ନିଦ୍ରାରେ ସେ ଅଚେତନ ଥିବ ଯେବେ ଜାଗ୍ରତର ମନ
ଅସ୍ତିତ୍ୱ ହରାଇଥିବ, ସ୍ୱସ୍ମାତୁର ମରମର ବାଣୀ
ଆତ୍ମଗୋପନ ମୁଁ କରି ଶୁଣିବାର ପ୍ରୟାସ କରିବି,
ମିଥ୍ୟା ଭଦ୍ରାମିର ଘଞ୍ଚ ଆବରଣେ ପାରିନି ଯା' ଜାଣି ।

ଭୁଲାଇ ନେଇ ମୁଁ ତା'ରେ ସୂଚୀଭେଦ୍ୟ ବିଜନ ଅନ୍ଧାରେ
ଦୁର୍ବଳତା ଆପଣାର ପ୍ରକାଶିବି ମିଥ୍ୟା ଅଭିନୟେ,
ପୁଲକିବ ଅଙ୍ଗ ତା'ର, ନୟନରେ ଲାଳସାର ବହ୍ନି
ହଠାତ୍ ଉଠିବ ଜଳି ଅନ୍ତରର ବିକୃତି ଉଦୟେ,

ଅଥବା ଅଟଳ ରହି ମେରୁ ସମ ତୀବ୍ର ଭର୍ତ୍ସନାରେ
କୁତ୍ସିତା କରିବ ମୋତେ ତା'ରେ କିନ୍ତୁ କରିବି ସ୍ୱାଗତ
ଅସତର୍କ, ଅଚେତନ, ଦୌର୍ବଲ୍ୟର ମାହେନ୍ଦ୍ର ମୁହୂର୍ତ୍ତେ
ମାନବର ଗୁପ୍ତ ମନ ସୂର୍ଯ୍ୟସମ ହେବ ପ୍ରତିଭାତ ।

ଗୋପନ ମନର ଲଭି ଏହିପରି ସତ୍ୟ ପରିଚୟ,
ଜୀବନ ସଂଗ୍ରାମେ ବନ୍ଧୁ ! ଚିରଦିନ ରହିବି ଅଜେୟ । □□

# ପର୍ଯ୍ୟବେକ୍ଷଣ

ପରାପେଟ୍ ପରେ ମୁହିଁ ଠିଆ ହୋଇ ଦେଖୁଛି ଅନାଇ
ଚଳମାନ ଜନସ୍ରୋତ, ତନ୍ମଧ୍ୟରୁ ଖୋଜୁଛି କେବଳ
ତରୁଣ ସତୃଷ୍ଣ ଆଖି, ମୁହୂର୍ତ୍ତକ ତୃପ୍ତି ଲାଗି ଯଥେଷ୍ଟ ଯଥେଷ୍ଟ ।

ଅଥଚ କି ଲଭିଲି ମୁଁ ? କ୍ଷଣିକର ଅନୁଭବ ମଧ୍ୟେ
ଯେ ବିଚିତ୍ର ସତ୍ୟ ଅକସ୍ମାତ୍ କଲି ଆବିଷ୍କାର
ବିସ୍ମୟେ ମୁଁ ହତବାକ୍, ଦୃଷ୍ଟିକଟୁ ଅତି ।

ସ୍ତବ୍ଧେ ମୁଁ ଦେଖିଲି ହାୟ, ଆକାଂକ୍ଷିତ ଦୃଷ୍ଟିର ସହିତ
ସମତାଳେ ଛୁଟି ଆସେ ଶତଦୃଷ୍ଟି ତୀକ୍ଷ୍ଣ ତୀର ସମ
ଦ୍ୱିଧାହୀନ, ଲଜ୍ଜାହୀନ, କ୍ଷୁଧାତୁର କାମନାଜର୍ଜର
ବୟସର ଭେଦ ନାହିଁ, ନୟନେ ନୟନେ ଖାଲି ଭିକ୍ଷାଶୀର ଭାଷା ।
ଏହି କି ରୂପର ମୋହ ? ପକ୍ୱକେଶ ସ୍ଥବିର ଚଞ୍ଚଳ ହୁଏ,
ବିବାହେ ସଂଯତ ମନ, ପାର୍ଶ୍ୱେ ପ୍ରିୟା, ଗୋପନ କଟାକ୍ଷ
ସେ ବି ହାଣିଯାଏ, ଯୌବନଠୁ ବହୁଦୂରେ ପ୍ରଶାନ୍ତ ବାଳକ
ତା' ନୟନେ ସେହି କ୍ଷୁଧା, ଅସମ୍ଭବ, ଏ ସତେ ସମ୍ଭବ ?
କାମନାର ପ୍ରକାଶ କି ବୟସ ନିଗଡ ତଳେ ନୁହେଁ ଶୃଙ୍ଖଳିତ ?

ସେ ଦିନ ସେ ରାଜପଥୁ ଯେତେବାଷ୍ପ ଉଠିଲା ଊର୍ଦ୍ଧ୍ୱକୁ,
ଯେତେ ଆଶା ଛୁଟି ଆସି ଆମନ୍ତ୍ରିଲା ଆସଗୋ, ଆସଗୋ,

ଯେତେ ବାହୁହୀନ ବାହୁ ଆଲିଙ୍ଗିଲା ମୋତେ ବୁକୁ ତଳେ,
ଶୂନ୍ୟରେ ଶୂନ୍ୟରେ ଯେବେ ଛାଇଗଲା ଚୁମ୍ବନ ଚନ୍ଦ୍ରିକା,
ମୋତେ କି ମାଗୁଛ ଆଜି ଟିକିନିଖି ହିସାବ ତାହାର ?

ଅସ୍ମିତା ହରାଇ ମୁହିଁ ଭାବୁଥିଲି କେବଳ ବିସ୍ମୟେ
ଜୀବନେ ଯୌବନ ସତ୍ୟ, ତା' କାମନା ସବୁଠାରୁ ସତ୍ୟ,
ସେ କାମନା କେବେହେଲେ ଦେହ ସାଥେ ବୃଦ୍ଧହୁଏ ନାହିଁ,

ବାଳକର ସେ କାମନା ଅଫୁଟନ୍ତ ଉଚ୍ଛ୍ୱାସ କେବଳ
ବିଳୟ ତାହାର କାହିଁ ? ସମସ୍ତେ ତ ଜଳି ଜଳି ଅକ୍ଷୟ, ଅବ୍ୟୟ ।

ଚଳମାନ ଜନସ୍ରୋତୁ ଏହି ସତ୍ୟ ସେଦିନ ମୁଁ କଲି ଆବିଷ୍କାର,
ତାରୁଣ୍ୟ ରହିଛି ଛପି ମନ ତଳେ, ବୟସରେ ନୁହେଁ । ◻◻

## ପ୍ରସ୍ତାବନା

ମୋତେ ତୁମେ ଭଲପାଇ ଭାବୁଥାଅ ଯଦି କିଛି ଭୁଲ କରିଅଛ
ଯେହେତୁ ଆମର ଏଇ ପ୍ରଣୟର ପରିଣତି ନାହିଁ,
ମୁଁ ତେବେ କହିବି ତୁମେ ବୁଝି ନାହଁ ପୀରତିର ସଂଜ୍ଞା,
ଯାହାର ଆରମ୍ଭ ହଠାତ୍, ପରିଣତି ଆସେନାହିଁ କେବେ ।

ସେ ଏକ ସବୁଜ ମେଘ ଅକସ୍ମାତ୍ ହସିଦେଇ ଟିକେ
ଚିତ୍ତାକାଶେ ଭାସିଯାଏ ଝୁଲି ଝୁଲି ହାଲକା ପବନେ,
'ସେ କାହିଁକି ଦେଖାଦେଲା, ସେ କାହିଁକି ଛପିଗଲା ପୁଣି ?'
ସ୍ଥାୟିତ୍ୱ ତାହାର ଯଦି ଲୋଡିଥିଲ ସେ ତୁମର ଭୁଲ ।

ହଠାତ୍ ତନ୍ଦ୍ରାର ତୃପ୍ତି ନିଦ୍ରାଲାଗି ପ୍ରୟାସରେ କେବେହେଲେ ଥାଏ ?
ତୁମେ ମୋତେ ଭଲପାଅ, ମୁଁ ତୁମରେ ଭଲବି ପାଇଛି
ଚେଷ୍ଟା କରି ନୁହେଁ କେବେ, ଅଚିରାତ ଚଲାମେଘ ବର୍ଷିଯାଏ ଯଥା;
ଚିରନ୍ତନ ମିଳନର ଆଶା ନାହିଁ, ସେଥିଲାଗି ଦୁଃଖ କିମ୍ବା ଏତେ ?

ତୁମେ ଯାଅ ତୁମ ପଥେ ମୁଁ ବି ଯାଏ ନିଜ ପଥେ ଚାଲି,
ସମାଜର କଥା କିଛି ମାନିନେଇ ଚଳିବାକୁ ହେବ,
ତୁମେ ରଚ ନୀଡ ତବ, ମୁଁ ହସିବି ମୋହରି କୁଳାୟେ,
ଅଜସ୍ର କର୍ମର ଚାପେ ପରସ୍ପରେ ଦିନେ ଭୁଲିଯିବା ।

ମୁଁ ଭାବୁଛି,
ବର୍ତ୍ତମାନ ଆମେ ଦୁହେଁ ପରସ୍ପରେ ଭଲ ପାଇ ଖୁସିରେ ରହିଛେ,
ଅନାଗତ ଅନ୍ଧକାର, ସେଥିଲାଗି ଦୁଷ୍ଚିନ୍ତାର ଅର୍ଥ କିଛି ହୁଏ,
( ଯେ ମୁହୂର୍ତ୍ତେ ଅଛେ ଆମେ ସେ ମୁହୂର୍ତ୍ତ କଥାହିଁ ଭାବିବା)
ଯଦି କେବେ ଝଡ ଆସେ, ମୁଁ କହିଲି ଉପରେ ଯେପରି
ବରଷାର ଗତି ଦେଖି ଛତା ଆମେ ଠିକ୍ କରିନେବା । ▫▫

## ମୁଁ କିଏ ?

ମୁହୂର୍ତ୍ତର ବିରହିଣୀ ଏ ଯୁଗର ମୁଁ ପ୍ରେମିକା ରାଧା,
ଅଜସ୍ର ବିରହେ ଜଳି ଅନୁଭବେ ପ୍ରୀତିସ୍ୱାଦ ନବ ନବ ରୂପେ,
ମୁଁ କେବଳ ଜଳେ ନାହିଁ, ସହସ୍ରଙ୍କୁ ଦଗ୍ଧୀଭୂତ କରି,
ସେମାନଙ୍କ ହାହୁତାଶ ହସି ହସି ଅନୁଭବ କରେ ।

ଶତାବ୍ଦୀର ଶ୍ରୀମତୀ ମୁଁ, ତେଣୁ ନୁହେଁ ଜଣକର ପ୍ରିୟା,
ବଂଧନ ମୁଁ ମାନେ ନାହିଁ, ଶୃଙ୍ଖଳରେ କରେ ଅସ୍ୱୀକାର,
ଅସଂଖ୍ୟ ପ୍ରଣୟ ମୋର ଦେହଳୀରେ ନିତି ମଥା ପିଟେ,
ସ୍ୱାଗତ ଜଣାଏ, ପୁଣି ଇଚ୍ଛାହେଲେ ସେମାନଙ୍କୁ ଲେଉଟାଇ ଦିଏ ।

ମୋ ପ୍ରୀତିରେ କେହି ମତ୍ତ ଖୋଜେ ଯଦି ଶୁଦ୍ଧ ଏକାଗ୍ରତା
ତେବେ ସେ ନିରାଶ ହେବ, ଯଦି ଲୋଡେ କ୍ଷଣିକର ପ୍ରୀତି,
ଶମିବାକୁ ଚାହେଁ ଯଦି ସାମୟିକ କ୍ଷୁବ୍ଧ ରତି ଜ୍ୱାଳା,
ଚମତ୍କାର ତୁଷ୍ଟ ହେବ, କହିପାରେ ଶପଥ ମୁଁ କରି ।

ମୁଁ ଏକ ନୂତନ କାବ୍ୟ, ଅର୍ଥ ଯାର ସଂପୂର୍ଣ୍ଣ ଅବୋଧ,
ଅଥଚ ମୁଁ ପଢାହୁଏ, ଚମତ୍କାର ଛନ୍ଦର ଆବୃତ୍ତି,
ସଂଖ୍ୟାହୀନ ଟୀକାକାର, ମୋ ଅଧରେ ଟିକେ ଚାପା ହସ,
ନିତି ଅଭିସାର, ନିତି ବିରହେ ମୁଁ ନୂଆ ରୂପ ନିଏ ।

ଯମୁନାର ତଟ କେଳିକୁଞ୍ଜ ଚେଷ୍ଟାକଲେ ଆଜି କାଲି ଦୁର୍ଲଭ ତ ନୁହେଁ,
ଲୋକ ଦୃଷ୍ଟି ଏଡି ଦେଇ ଯେକୌଣସି ସ୍ଥାନ ଏକ ବାଛି ନେଲେ ହେଲା । ▫▫

# ଜନନୀ ଓ ସଜନୀ

ବିଗତ ଯୌବନା କେଉଁ ମିସେସ୍‌ଙ୍କ ଅଙ୍ଗଭଙ୍ଗୀ ମଧ୍ୟେ
ତୁମେ ଯଦି ଲକ୍ଷ୍ୟ କର ତରୁଣୀର ମୁଗ୍‌ଧ ଚପଳତା,
ଆବରଣେ କାମୁକୀର ନଗ୍ନତାର ନିର୍ଲଜ ପ୍ରକାଶ,
ନୟନରେ ଉର୍ବଶୀର ତନ୍ଦ୍ରାଳସ ରତି ବିହ୍ୱଳତା,

ନିଶ୍ଚୟ ଜାଣେ ମୁଁ ତୁମେ କରିବନି ପସନ୍ଦ ଏହାକୁ
କେବଳ ତୁମେ ତ ନୁହଁ, ସାମାଜିକ ଚେତନା ଓ ସୌଜନ୍ୟ ବା ଶିଷ୍ଟାଚାର ଜ୍ଞାନ
ଏତେଟିକେ ଥିବ ଯା'ର ସେ କିପରି ଭଦ୍ର ସମାଜରେ
ଏଇ ସବୁ ଲଜ୍ଜାହୀନା ରମଣୀଙ୍କୁ ଦେବ କୁହ ନାରୀର ସମ୍ମାନ ?

ନାରୀ ମୁଁ ବାଧୁଛି ତେଣୁ, ଆଭିଜାତ୍ୟ, ସଭ୍ୟତାର ନାମେ
ଏ ଯେଉଁ ଚାଲିଛି ନିତି ସମାଜରେ ଘୃଣ୍ୟ ବ୍ୟଭିଚାର, କଞ୍ଚା ମାଂସ ପ୍ରଦର୍ଶନୀ
ଏହାର କି ଇତି ନାହିଁ ? ନାହିଁ କମା, ନାହିଁ ପୂର୍ଣ୍ଣଚ୍ଛେଦ,
ନାରୀ ସାଥେ ମାଆ ମୃତ୍ୟୁ ଲଭେ, ଚତୁର୍ଦ୍ଦିଗେ ମଉକାଶି କେବଳ ସଜନୀ ।

ଜନନୀ ହେବାକୁ ଘୃଣା, କିନ୍ତୁ ହାୟ, ଦେହ କ୍ଷୁଧା ଏଡ଼ିହୁଏ ନାହିଁ,
ଫଳତଃ ଶିଶୁର ଡ଼ାକ, ମାତ୍ର ସେ ଜଞ୍ଜାଳ ଜାଲ କେତେଦିନ ପାଇଁ ?
ଦିବସ କେତୋଟି ମାତ୍ର, ତାହାପରେ ଆବରଣ ତଳେ
ସବୁ କିଛି ଲୁଚିଯାଏ, ରସଝରା ପ୍ରେକ୍ଷାଳୟେ, କ୍ଲବ୍‌ଗୃହେ ନିଶି ଯାଏ ପାହି,

ପୁଣି ସେ ପୁରୁଣା କଥା, ପୁଣି ବନ୍ଧୁ ପୁଣି କୋଳାହଳ,
ପିଆନୋ ନିକଟେ ବସି କଟାକ୍ଷରେ ବିରହିଣୀ ଗାନ,
ଅନ୍ଦର ମହଲେ ଶିଶୁ ଆୟା କୋଳେ ସପନ ଦେଖୁଛି,
ଅଳିକୁଳ ଗୁଞ୍ଜନରେ ଜନନୀର ସଜନୀ ସମ୍ମାନ ।

ସ୍ୱାମୀର ଓହଳା ମୁହଁ, ବୋକା ହାୟ, ସହି ନ ପାରୁଛି,
ଖାଲି ଟିକେ ଗଳାଧରି ଝୁଲିପଡ଼ 'ପ୍ରିୟ ମୋର, ସଖା ମୋର ତୁମେ'
ବୁକେ ଟିକେ ମଥା ରଖି ହସିଦିଅ, ପରେ ପରେ ଗୋଟିଏ ଚୁମ୍ବନ,
ଜୁଆରରେ ଭଙ୍ଗା ପଡ଼େ, ନିଃସଂଶୟା ସଜନୀ ସେ ନୃତ୍ୟ ତାଳେ
ରତ୍ନରାଜି ବୁଣେ ।

ଏ ମାଟିର ନାରୀ କ'ଣ ଅଭିନେତ୍ରୀ ? ସଜନୀ କେବଳ ?
ସହଧର୍ମିଣୀ ସେ ନୁହେଁ, ଭଗ୍ନୀ ନୁହେଁ, ନୁହେଁ ସେ କି ବନ୍ଧୁରିତ
ଜୀବନର ସାଥୀ ?
ସେ ସତେ ଜନନୀ ନୁହେଁ, ସ୍ତନ୍ୟଦାନେ କରେନି ସେ ଶିଶୁରେ ମଣିଷ,
ସେ ଖାଲି ପୁହାଇ ପାରେ ପ୍ରିୟ ଆଲିଙ୍ଗନ ତଳେ କାମୋତ୍ତଳା ରାତି ।

ଧିକ୍ ସେ ସଜନୀ ସୁଖ, ଧିକ୍ ସେଇ ନବନୀତ ତନୁରେ ଉତ୍ସବ,
ଧିକ୍ ସେଇ ଆଭିଜାତ୍ୟ, ଧିକ୍ ସେଇ ସଭ୍ୟତାର ଭଦ୍ର ବ୍ୟଭିଚାର,
ମଦନ ଉର୍ମିଳୋଚ୍ଛ୍ୱାସ, ମଦାଳସୀ ଅଧରରୁ ଚୁମ୍ବନ ଚିପୁଡ଼ା,
ମତ୍ତ ଉଲ୍ଲାସର କୋଳେ କାମୋନ୍ମତ୍ତ ତନୁର ଜୁଆର ।

ହେ ନାରୀ ତୋ ପଦ ଧରେ, ମୁଁ ବି ନାରୀ, ଥରେ ଚାହାଁ ମୋତେ
ମୋ ନୟନେ ଅବଲୋକ 'ମା' ଜାତିର କରୁଣ ମିନତି,
ଫେରିଆ, ଫେରିଆ ତେଜି ରୂପାଜୀବା ରୁଗ୍ଣ ମନୋବୃତ୍ତି
ଜନନୀ ଅମିୟ ପୁରେ, ତୁ ତ ଖାଲି ରତି ନୋହୁ, ସଖୀ ନୋହୁ,
ଏ ଜାତିର ଅନ୍ତରର ଅନନ୍ତ ଶକତି ।

ଶିଶୁର ଅଧର ସ୍ପର୍ଶେ ସ୍ତନ ତୋର ଲଭୁ ସାର୍ଥକତା
ଅମୃତ ମାଆର ଡ଼ାକେ, ଘୁଞ୍ଚିଯାଉ ମୋହାଚ୍ଛନ୍ନ ସଜନୀର ସକଳ ଜଡ଼ତା । ▫▫

## ଚିଠି

ହଠାତ୍ ସେଦିନ କଲି ଆବିଷ୍କାର ତୁମକୁ ମୁଁ ଲେଖିଥିବା କେତେଖଣ୍ଡ ଚିଠି
ଷୋଳ ବର୍ଷ ଆଗେ, ଆଦ୍ୟ ବିରହର ସଜଳ କବିତା,
ପରିଣୟ ପରେ ଯେବେ ମୋତେ ଛାଡ଼ି ବିଦେଶକୁ ଗଲ
ମୋ ଆଖିର ଲୁହ ପୋଛି, ଦେହ ଛୁଇଁ, ପାଖେ ନେଇଯିବା ପାଇଁ ଦୃଢ଼ ପ୍ରତିଶ୍ରୁତି ।

ସେ ଚିଠିରେ ମୋ ମନର କେତେ କଥା, ବ୍ୟଥାଗୀତ ତୁମ ବିରହର
ଜ୍ୟୋସ୍ନା, ବର୍ଷା, ଶୀତ ସବୁ ତୁଚ୍ଛ ଲାଗେ ତୁମ ବ୍ୟବଧାନେ,
ବସନ୍ତେ କୋଇଲି ଯେବେ ଗୀତ ଗାଏ, ମନ ଜଳିଯାଏ
କେନ୍ଦେରାର ଗୀତ ଶୁଣି ମନେ ଜାଗେ ଅକୁହା ବେଦନା ।

ନିଶିଯାଏ ନିଦ୍ରାହୀନ, ବୁକୁତଳ ଫାଙ୍କା ଫାଙ୍କା ଖାଲି
ତୁମରି ସ୍ମୃତିର ବିନା ଏ ଜୀବନ ସାହାରାର ମରୁ,
ହେ ଦେବତା, ପ୍ରାଣେଶ୍ୱର, ମୋ ସ୍ୱପ୍ନର ରାଜରାଜେଶ୍ୱର,
ରସସିକ୍ତ ସଂବୋଧନ ପଢୁପଢୁ ଭାରି କିନ୍ତୁ ସରମ ଲାଗିଲା ।

ସେ ଘରେ ଗପୁଚି ତା'ର ସାଙ୍ଗ ମିଳି ସାଥେ ରିନା ମୋର ବଡ଼ଝିଅ ପନ୍ଦର ବର୍ଷର
କଲେଜେ ପଢୁଛି ଏବେ, ସୁରଜିତ ପୁଅ ତା' ତଳକୁ
ଦୁଇବର୍ଷ ସାନ ହେବ, କୃତୀଛାତ୍ର, ଏଇ ବର୍ଷ ମାଟ୍ରିକ ସେ ଦେବ,
କ୍ରିକେଟ୍ ତା' ପ୍ରିୟ ଭାରି ଘର ସାମ୍ନା ପ୍ରାନ୍ତରରେ ପାଟି ତା'ର ଶୁଭେ ।

ଆଉ ଦୁଇ ପୁଅ ଝିଅ, କନ୍‌ଭେଣ୍ଟରେ ସେମାନଙ୍କ ସ୍ଥିତି,
ଦୀପୁ, ଜ୍ୟୋତିର୍ମୟୀ, କଣ୍ଠେ 'ଡ୍ୟାଡ଼ି' 'ମାମୀ', ଚମତ୍କାର ଇଂରାଜୀ କୁହନ୍ତି,
ଦୀପୁ ଭଲ ଛବି ଆଙ୍କେ, ଭବିଷ୍ୟତେ ପ୍ରତିଷ୍ଠିତ ଆର୍ଟିଷ୍ଟ ହେବାର ଖୁବ୍
ସମ୍ଭାବନା ତା'ର,
'ଜ୍ୟୋତି'ର ଯା' ନୃତ୍ୟ, ତା'ର ପଦପାତେ, ଦର୍ଶକର ଚରଣରେ
ନାଚ ଆପେ ଆସେ ।

ସେ ସମୟ, ଏ ସମୟ ମଧ୍ୟେ, ସତେ ଆହା ବ୍ୟବଧାନ କେତେ,
ସେ ଦିନର ପ୍ରିୟା ଏବେ ଜନନୀ ଓ ଗୃହିଣୀର ପୂର୍ଣ୍ଣ ରୂପାନ୍ତର,
ଦେହ ଓ ମନରେ କ୍ରମେ ଜରାସ୍ପର୍ଶ, ସେ ଦିନର ସ୍ୱପ୍ନ ମନ ଏବେ କ'ଣ
ଏତେ ଟିକେ ଅଛି ?
କଠୋର ବାସ୍ତବତାର ନିଷ୍ପେଷଣେ ସେ ମନ ମରିଛି ।

ତେଣୁ ତ ଲାଗିଛି ଲାଜ ପଢ଼ିବାକୁ ପୁରୁଣା ଏ ଚିଠି,
ସତେ କ'ଣ ଲେଖିଥିଲି ମୁଁ ତୁମକୁ ଏତେ କଥା, ଏତେ ସ୍ୱପ୍ନ
ନୂଆ ନୂଆ ସଂବୋଧନେ ମୋ ନିଜ ହାତରେ

ପ୍ରୀତିର ନିର୍ଯ୍ୟାସ ଦେଇ ? ବାରମ୍ବାର ପଢ଼ି ବି ତ ବିଶ୍ୱାସ ନ ହୁଏ,
କେତେ ନ ଫରକ ସତେ ସେ ଦିନ ଓ ଆଜିର ମନରେ ।
ଲାଜ ଯେତେ ଲାଗୁ ପଛେ ଆମରଣ ରଖିବି ସାଇତି
ବସନ୍ତ ଆଲେଖ୍ୟ ଆମ ତାରୁଣ୍ୟର ପ୍ରତିବିମ୍ବ, ଅମୂଲ୍ୟ ଏ ଚିଠି ।

## ପ୍ରତିଭା ଓ ପ୍ରେମ

ସଂଗୀତ, ସାହିତ୍ୟ, କଳା, ବିଜ୍ଞାନକୁ ସମ୍ମାନ ଓ ଆଦର ଜଣାଇ
ତୁମେ ଯେବେ ଅକସ୍ମାତ୍ ମଣିଷକୁ ଭଲପାଇ ବସ
ଅନ୍ଧସମ, ହାୟ ତେବେ ଭୁଲ କର, ଭୟାନକ ଭୁଲ କର ତୁମେ,
ନିଜର ଅଜ୍ଞାତସାରେ କର ସିନା ନିଜକୁ ନିଃଶେଷ ।

ବୁଝାଇ କହିଲେ ତୁମେ ଯୁକ୍ତି କର 'ପ୍ରେମ ଅନ୍ଧ ସେ ରଖେନି ବିଚାର ଅପେକ୍ଷା',
କିନ୍ତୁ ମୁଁ ପଚାରେ ତୁମେ ପ୍ରେମ ଲାଗି ପ୍ରେମକୁ ଦେଲ କି ?
ଶ୍ରଦ୍ଧା ବା ଭକ୍ତିକୁ ତୁମେ ଅନୁରାଗେ ରୂପାନ୍ତର କଲ,
ବାସ୍ତବ ଜୀବନ ସାଥେ ପାରିବନି ଯାହା କେବେ ଏତେ ଟିକେ ସାମଞ୍ଜସ୍ୟ ରଖି ।

ତେଣୁ ବନ୍ଧୁ ଅନୁନୟ କରେ, ବିଚାରର ପଥ ଅନୁସରି
ସୂକ୍ଷ୍ମଦର୍ଶୀ ହୁଅ ତୁମେ, ତୀକ୍ଷ୍ଣତମ ଅନ୍ତର୍ଦୃଷ୍ଟି ଦେଇ
ଅନ୍ୟର ସକଳ ପ୍ରଜ୍ଞା, ପ୍ରତିଭାକୁ ପ୍ରଣତି ଜଣାଅ,
ପ୍ରୀତିର ଗୌରବେ କିନ୍ତୁ ବ୍ୟର୍ଥ କର ନାହିଁ ଅନ୍ଧସମ ଅସ୍ମିତା ହରାଇ । ◻◻

## ଇଚ୍ଛା

ଗଛରେ ଅଜସ୍ର କଳି, ପରିଣତି କେତୋଟି ବା ଫୁଲ,
ତଥାପି ଏ ବିକାଶର ଯଥାର୍ଥତା ବିଚାର ସାପେକ୍ଷ,
ସେ ବିଚାରୀ ନତମୁଖୀ, ଖୁବ୍ ଶୋଷ ପାଣି କେ ପିଇଛି,
ତୃଷାର ନିବୃତ୍ତି ତା'ର ସକୌତୁକେ ବିଶ୍ଳେଷିତ ହୁଏ ।

ଏମିତି ମୁଁ ମାପିଚୁପି ପାଦ ଗଣି ପଥ ଯଦି ଚାଲେ
ଶଙ୍କିତ ଓ ସତର୍କିତ, ସରଣୀର ଅନନ୍ତ ଐଶ୍ୱର୍ଯ୍ୟ
ମନେହୁଏ ବ୍ୟର୍ଥଯିବ, ପବନର ସାଥିରେ ଦୌଡ଼ିବା
କେଡ଼େ ତୃପ୍ତିକର, ତା'ର ଧର୍ମେ କରି ନିଜକୁ ଦୀକ୍ଷିତ,
(ସଭିଙ୍କି ସେ ଛୁଏଁ, କେହି ସ୍ପର୍ଶୁ ତା'ର ବଞ୍ଚିତ ହୁଏନା )

ବେଳେ ବେଳେ କ୍ରୋଧ ଆସେ, ତାନ୍‌ପୁରାରେ ଗୀତ ମୁଁ ଗାଉଛି
କାନ ପାଖେ ଫୁସ୍ ଫୁସ୍ 'ଛି,ଛି, ଥାଉ' ଅର୍ଥ ଯା'ର ଅସଙ୍ଗତି ଅଛି,
ଖୁବ୍ ଗୋଟେ ଗାଢ଼ ନିଦ, ଅକସ୍ମାତ୍ ଉଠାଇ କେ ଦେଲା
କି ବିରକ୍ତି ସେତେବେଳେ, ଇଚ୍ଛା ହୁଏ ସବୁ ଭାଙ୍ଗି ଚୂରମାର କରନ୍ତି ।
ମୋ ଗୀତରେ ଯାହାଥିଲା ତୁମେ ତା'ର କାଣିଚାଏ ହେଲେ
ସ୍ୱାଦ ତ ପାଇନ ତେଣୁ ନିରର୍ଥକ ମନ୍ତବ୍ୟରେ ବାଧାଦେବା ଅର୍ଥ କିଛି ହୁଏ ?

'ଭଲମନ୍ଦ', ଭାବିଚିନ୍ତି ଇଚ୍ଛା ମୋର ପରମୁଖାପେକ୍ଷୀ, ?
ଅନୁମତି ପ୍ରୟୋଜନ ? ଏ ଅପେକ୍ଷା ଠାରୁ ବରଂ ଭଲ
ଆତ୍ମହତ୍ୟା ତା'ର, ହାୟ ରୁଚିର କି ଏପରି ସମାଧି ?

ଏଇ ସୂର୍ଯ୍ୟାଲୋକ, ଏତେ ଜ୍ୟୋତ୍ସ୍ନା, ଏତେ ତାରାର ଉତ୍ସବ,
ବସନ୍ତର ସମାରୋହ, ଶରତର ସୁନ୍ଦର ଆକାଶ,
ଝଡ଼ର ଝଙ୍କାର, ପୁଣି ଶୀତ ବେନି ବାହୁର ବନ୍ଧନ,
ଅଜସ୍ର ସ୍ୱାଗତ, କେତେ ଆଖିଠାର, କେତେ ନିମନ୍ତ୍ରଣ,
ଅନ୍ଧ ସମ ଛୁଟିଯିବା, ଝାମ୍ପଦେବା, ନିଜକୁ ଭୁଲିବା
ଏ ତୃପ୍ତିର ଆସ୍ୱାଦନ, ଏଥିଲାଗି କ'ଣ ଦୀର୍ଘ ଚିନ୍ତା ପ୍ରୟୋଜନ ?

ପରାମର୍ଶ, ସଂଶୟର ପ୍ରଶ୍ନୋତ୍ତରେ ମୀମାଂସା ଆଣିବା
ତା'ପରେ ଦରଜା ଖୋଲି ସତର୍କିତ ଆସିବା ବେଳକୁ,
ସେମାନେ କି ଥିବେ ଆଉ ? ଆଉ ଥିବେ ଯଦି, ଅନ୍ୟ ପ୍ରକାରର,
ନିଷ୍କ୍ରିୟ, ନିଷ୍କ୍ରିୟ ଯଥା କ୍ଷୁବ୍‌ଧା ନାରୀ ରତିର ବିଳାସେ ।

ନୈତିକତାର ମୂଲ୍ୟ ଅଛି, ମୂଲ୍ୟ ଅଛି ବିଚାର ବୁଦ୍ଧିର,
'ହାତେ ମାପି ଚାଖଣ୍ଡେ ଚାଲିବା' ଏ ରୀତିକୁ ତାରିଫ୍ ମୁଁ କରେ,
ଏତଦ୍ୱାରା ମାନୁଛି ମୁଁ ବାହାରଟା ଅକ୍ଷତ ରହୁଛି,
ଚମତ୍କାର ଦୂରଦୃଷ୍ଟି, ଅନ୍ତରାଳେ ହଜେ କିନ୍ତୁ ଯାହା
ସେ ତ ନିଜ ଭିତରର, ତୁମେ କୁହ ଇଚ୍ଛା ଆଉ ରୁଚିରେ ଆହୁତି
ଦେବାରେ ଯେ ଶାନ୍ତି ଅଛି, ଚରିତାର୍ଥ କରିବାରେ ସେ ତୃପ୍ତି ତ ନାହିଁ ।
ମାତ୍ର ଏ ତ୍ୟାଗର କଥା, ନୀତି କଥା ମାନି ପାରିବିନି

ସଂକ୍ଷିପ୍ତ ଏ ଜୀବନରେ ଆସୁଥିବା ସମାରୋହ ସବୁ
ଅଧାବାଟୁଁ ଫେରିଯିବେ ? ଲେଉଟାଇ ପାରିବିନି ଦେଇ ।

ମୁଁ ଯାହା କହୁଛି ସେ ତ ନୁହେଁ ଖାଲି ମୋ ନିଜର କଥା,
ମୋ ଅନୁଭୂତିର ମଧ୍ୟେ ଦେଖୁଛି ମୁଁ ତାକୁ ଓ ତୁମକୁ ।

କାଲି ସେଇ କଦାକାର ଝିଅଟା ଯେ ଆତ୍ମହତ୍ୟା କଲା
ଡାକ ନାମ 'ବେଙ୍ଗ' ଯା'ର, କି କୁତ୍ସିତ ବାହାଡ଼ା ଦାନ୍ତ ତା'
ଚେପ୍‌ଟା ନାକ, ବାମନ ସେ, ଦେଖିଦେଲେ ବ୍ରହ୍ମଚର୍ଯ୍ୟ ଆସେ,
ଯୁବକର ମେଳେ ଯାର ରୂପ ନେଇ ବିଦ୍ରୂପର ହସ,
-କୃଷ୍ଣପକ୍ଷ ରାତ୍ରି ଅବା ଆଲକାତରା ସଙ୍ଗେ ସେ ସଙ୍ଗାତ-
ମୁଁ ପଚାରେ କ୍ଷୁଧା ଆଉ ମନଭୋକ ବିରୂପା ହେବାରେ
ବିଲୁପ୍ତ କି ହୁଏ ? ତା'ର କେତେ ଆଶା ପତ୍ନୀ ଆଉ ଜନନୀ ହେବାର
ଚରିତାର୍ଥ କଲା କେହି ? ହାୟ ସେ ତ ପ୍ରତାରଣା ତଳେ
ନିଜକୁ ଭୁଲିଲା ସେ କି ତା'ର ଭୁଲ୍ ? ଶେଷେ ତାକୁ ତୁମେ ହତ୍ୟାକଲ ।

ରେଷ୍ଟୁରାଣ୍ଟ ଟେବୁଲ୍‌ରେ ସୁସଜ୍ଜିତ ମୂଲ୍ୟବାନ ଖାଦ୍ୟ ଓ ପାନୀୟ,
ମହାର୍ଘ ଖୋଳର ତଳୁ ଲାଳସାର କେତେ ନ ଚାହାଣି,
ଅପେକ୍ଷା ଅସହ୍ୟ, କେତେ ହସ, କେତେ ଗପ, ସେମାନଙ୍କ ଇଚ୍ଛା ମୂଲ୍ୟବାନ ।
ଏଇ ଯେ ମାରୁଛି ଉଙ୍କି ହତଭାଗ୍ୟ ଭିକ୍ଷୁକ ସେ ଦ୍ୱାର ପାଖେ ଆଖିରେ ହିଂସ୍ରତା,
ଈର୍ଷାର ଜ୍ୱଳନ, ଏତେ ଚେବୋଷ୍ୟଲେହ୍ୟର ପ୍ରାପ୍ତି' ତା
ସ୍ୱପ୍ନେ ବି ସମ୍ଭବ ନୁହେଁ, ହଠାତ୍ ସେ ଝାମ୍ପ ଦେଇ ଯଦି
ଏ କକ୍ଷର କୋଳେ, ବେନି କ୍ଷିପ୍ର କରେ କ୍ଷୁଧା ତା'ର କରେ ଚରିତାର୍ଥ
ପରିଣତି କି ଭୟାନକ ! ଇଚ୍ଛା ତା'ର ସଙ୍କୁଚିତ କର ।

ବିଦ୍ରୂପ କରିବା କିଛି ଭୁଲ୍ ନୁହେଁ ଆମର ଏ ବିଚାର ଧାରାକୁ,
ଯେତକ ଇଚ୍ଛାରେ ନିଜ ସ୍ୱାର୍ଥ ସିଦ୍ଧି ସେ ସବୁତ ସମ୍ପୂର୍ଣ୍ଣ ସଙ୍ଗତ,
ଧର୍ମ ଆଉ ନୈତିକତା ଦ୍ୱାହି ଦେଇ ସମାଜରେ ସେ ସବୁର ସ୍ଥିତି ।

'ଚାହିଁବ ଯା' ପାଇବ ତା', କିନ୍ତୁ ଦେଖ ଖୁବ୍ ସାବଧାନ',
କେତେ ଆଉ ସାବଧାନ ହେବା କୁହ ସାରା ଜୀବନଟା ?

ସୂର୍ଯ୍ୟ କ୍ରମେ ଅସ୍ତଯାଏ, ଅନ୍ଧକାର ମାଡ଼ି ମାଡ଼ି ଆସେ
ପର୍ବତର ଛାଇ ପରି, ଶ୍ରାନ୍ତ ନେତ୍ରେ କ୍ଳାନ୍ତ ବସି ରହି
ସଂଧ୍ୟାର ଆକାଶେ ଚାହିଁ ହାହାକାରେ କେବଳ କାନ୍ଦିବା,
ଶୂନ୍ୟ କର ବେନି, ଆଉ ମନ ତଳେ ଅସୀମ ଶୂନ୍ୟତା,
ଅଜସ୍ର ଇଚ୍ଛାର ସତ୍ତ୍ୱେ ଦୁଇ ହାତ ଗୋଟାଇ ଅନେକ
କିଛି ତ ପାଇନି ଯେଣୁ ପାଇ ସେ ତ ଫେରାଇ ଦେଇଛି,
ଯେହେତୁ ସକଳ ପ୍ରାପ୍ତି ପ୍ରାଣଭରି ଚରିତାର୍ଥ କରିବାଟା ସଙ୍ଗତ ତ ନୁହେଁ ।
'ବେଙ୍ଗର' ବ୍ୟଥିର ଆତ୍ମା, କ୍ଷୁଧାର୍ତ୍ତର ପ୍ରତିହିଂସା ମନ
ବିଚିତ୍ର କେତେ ଯେ ପ୍ରଶ୍ନ ପଚାରନ୍ତି ଦିବାରାତ୍ରି ଉତ୍ତର ଆଶାରେ,
ଏମିତି ଅଜସ୍ର ପଶ୍ନ ନିଜ ମଧ୍ୟେ ନିଜକୁ ପଚାରେ, ମାତ୍ର ପ୍ରତିଧ୍ୱନି ଶୁଣେ ।
□□

## ସାବିତ୍ରୀ

ତୁମ ପଦ ଅନୁସରି ଯେଉଁ ଲାଭ ମୂଲ୍ୟ ତା'ର କେତେ ?
ସେ ଲାଭରେ ବହୁ ପ୍ରାପ୍ତି, ସହସ୍ର ନୟନ ତଳେ ଅଜସ୍ର ବିସ୍ମୟ,
ଜଣକର ପଦ ତଳେ ଆପଣାକୁ ନିଃଶେଷେ ଅଜାଡ଼ି
ସତୀତ୍ୱର ପରାକାଷ୍ଠା, କୁଳବୃଦ୍ଧି, ମାନବୃଦ୍ଧି, ସୌଭାଗ୍ୟର ବୃଦ୍ଧି,
ଐକାନ୍ତିକ ଅନୁରାଗ, ଚତୁର୍ବର୍ଗ ବସନ୍ତ ବିଳାସ,
ତା'ପରେ, ତା'ପରେ କିନ୍ତୁ ? ସମସ୍ୟାର ସମାଧାନ କାହିଁ ?

ଏ ଜୀବନ ଏତିକିରେ ସତେ କ'ଣ ରୁଦ୍ଧ, ସୀମାବଦ୍ଧ,
ସଂକ୍ଷିପ୍ତ ଏ ସମାରୋହ ସୀମିତ ଏ ସଂଭୋଗ ଭିତରେ ?
କ୍ଷୁଦ୍ର ମାନ, ଅଭିମାନ, କ୍ଷୁଦ୍ରତମ ଜୟ, ପରାଜୟ,
ଭୟ ଓ ଅଭୟ, ମୃଦୁ ହାସ୍ୟ ଆଉ ଅଶ୍ରୁର ପ୍ରବାହ,
ଉତ୍‌ଥାନ, ପତନ କିଛି, ହଜିବା ଓ ମିଳିବାର ଆଶା,
ଉତ୍କଣ୍ଠା, ଉଦ୍‌ବେଗ, ନେତ୍ର ନିଷ୍ପଲକ, ଅନ୍ୟର ଅପେକ୍ଷା,
ସ୍ପନ୍ଦିତ ହୃଦୟ, କର ପ୍ରସାରଣେ ଭିକ୍ଷୁକ ସାଜିବା ।
ଏ ପଥର କ୍ଷୟ ଅଛି, ଇତି ଅଛି, ହେ ସାବିତ୍ରୀ ତା'ପରେ, ତା'ପରେ ?
ସେ ପଥର ଆଲୋକର ନିର୍ଦ୍ଦେଶ ତ ଦେଇ ନାହିଁ କେବେହେଲେ ଥରେ ।

ଅମାବାସ୍ୟା ଅନ୍ଧକାରେ ପ୍ରତିବର୍ଷ ତେଣୁ ଦେବୀ, ତୁମରେ ମୋ ପ୍ରଣତି ଜଣାଇ
ଦେଖେ ମୁଁ ପାଇଛି ଯାହା, କିଛି ନୁହେଁ, ଶୂନ୍ୟ କର କିଛି ପାଇ ନାହିଁ । □□

## କୁନ୍ତୀ

କେହି ତ ଜାଣିଲେ ନାହିଁ କୁମାରୀ ମୁଁ ମୃତ ଏକ ଶିଶୁର ଜନନୀ
ଗୋପନେ ମୁଁ ପ୍ରଣୟିନୀ, ମନ ଆଉ ଦେହ ଜ୍ୱଳନର
ନର୍ବାପନ ପରିଣତି, ମାତ୍ର ମୁଁ କରିଛି ମୁକ୍ତ ଆପଣାକୁ ସମାଜର ଜଘନ୍ୟ କଳଙ୍କୁ
ସବୁ ପୋଛି ହୋଇଗଲା, ମାତୃତ୍ୱ ମୋ ନୀରବେ କାନ୍ଦୁଛି ।

ସେଇ ଶିଶୁ ମୋତେ ହାୟ ମାଆ ବୋଲି ପାରିଲାନି ଡ଼ାକି
କଣ୍ଠ ତା'ର ରୋଧକଲି, କାପୁରୁଷ ଜନକ ତାହାର
ପିତୃତ୍ୱର ପରିଚୟ ସମ୍ମାନକୁ ଅବଜ୍ଞାରେ ପ୍ରତ୍ୟାଖ୍ୟାନ କଲା,
ଆଲୋକେ ଯେ ଆତଙ୍କିତ, ତିମିରେ ସେ ସ୍ମୃତି ତା'ର ଚମତ୍କାର ଜାହିର୍ କରିଛି ।

କୁମାରୀତ୍ୱ ନିରଙ୍କୁଶ, କୁହେଳିର ଘନ ପର୍ଦ୍ଦା ସେ ପାଖେ କେ' ଯାଏ ?
ମଣିଷର ଇନ୍ଦ୍ରଜାଲ, ଏ ଯାଦୁକୁ ନିରୁପାୟ କରିଛି ସ୍ୱାଗତ,
ବଞ୍ଚିବାର ମୋହ ଏଇ ଜୀବନକୁ ପ୍ରାଣଭରି ଉପଭୋଗ କରିବାର ଦୁରନ୍ତ କାମନା
ଏତେ ସବୁ ସତ୍ତ୍ୱେ କେବେ ଆପଣାର ଧର୍ମ ଭୁଲିପାରେ ?

ପୁନଶ୍ଚ ପ୍ରିୟା ମୁଁ ହେବି ପତ୍ନୀ ନାମେ ସାମାଜିକ ସ୍ୱୀକୃତି ପ୍ରାପ୍ତିରେ,
ବାସରରାତ୍ରିରେ ଶୁଦ୍ଧ ଅଭିନୟ 'ହେ ଆଦ୍ୟ ପୁରୁଷ ମୋର, ତୁମ ପଦେ
ଏଇ ମୋର ପ୍ରଣୟର ପ୍ରଥମ ପ୍ରଣତି',
କି ଗୌରବ ସେ ବୁକୁ ତଳେ, ଦୃଢ଼ ଦୁଇ ବାହୁର ବନ୍ଧନ,
ଆଲିଙ୍ଗନେ କମ୍ପିତ ମୋ ତନୁ, ଆହା, ଆନ ମନେ ଶୀତ୍କାରର ଭ୍ରମ,
ମୁଁ ଥରୁଛି ଆତଙ୍କରେ 'ପ୍ରଭୋ, ମୋର ମିଥ୍ୟା ଉକ୍ତି ସତ୍ୟରୂପ ନେଉ,'
ଦୁଇଟି ଚିନ୍ତାର ମଧ୍ୟେ ସୀମାହୀନ ବ୍ୟବଧାନ କେତେ ।

ସମାଜ ସ୍ୱୀକୃତିଲବ୍ଧ ଯେ ଦିନ ଭୂମିଷ୍ଠ ହେବ ଆଦ୍ୟ ମୋ ସନ୍ତାନ
ଯୁଧିଷ୍ଠିର, ସେ ଦିନ କୁନ୍ତୀ ମୁଁ ସତେ ସ୍ମରିବିନି କର୍ଣ୍ଣକୁ ମୋହର ?
'ଧନ ମୋର ବଞ୍ଚିଥିଲେ ଡ଼ାକନ୍ତାଣି ମାଆ ବୋଲି ଦରୋଟି ବଚନେ,'
କାପୁରୁଷ ତପନରେ ! ତନୟ ମୋ ନଦୀ ଜଳେ ଭାସିଗଲା କାହିଁ ?

ଯୁଧିଷ୍ଠିର ଶେଷ ନୁହେଁ, ମାତୃତ୍ୱର ପୁନରାବୃତ୍ତି, ସଂସାରର ଦିଗେଦିଗେ ସ୍ଵୀତି,
କଣ୍ଠେ କଣ୍ଠେ ସ୍ତୁତି 'ଧନ୍ୟ ସତୀ, ପତି, ପୁତ୍ର ଗରବିଣୀ',
ଏତେ ପ୍ରାପ୍ତି ସତ୍ତ୍ୱେ ଦୀପ୍ତ ଜ୍ୱଳନ୍ତ ସେ ସ୍ମୃତିରୁ ମୋ' ଅବ୍ୟାହତି କାହିଁ ?
ସାମ୍ରାଜ୍ଞୀ ମୁଁ ପ୍ରାସାଦର ଚିରଦିନ ପଥେ କାଙ୍ଗାଳିନୀ । □□

## ସୂର୍ଯ୍ୟୋଦୟ

ଅରଣ୍ୟର ଅନ୍ଧକାର ଓ ତା'ର ହିଂସ୍ରତା କ'ଣ ଜୀବନର ଶ୍ରେୟ ?
'ସୌମ୍ୟେନ୍ଦ୍ର' ଏ ମତର କିନ୍ତୁ ସମର୍ଥକ, ସେଥିଲାଗି ପରିଣୟେ ଆପଣାକୁ
ଆବଦ୍ଧ କରିନି,
ବିଚିତ୍ର ଜୀବନ ତା'ର, ନିତି ଅନ୍ଧକାରେ ତା'ର ନୂତନ ଶିକାର,
ଆଜି ଯା'ରେ ଆପଣାର କରେ, କାଲି ତା'ରେ ନିର୍ବିକାରେ କରେ ଅସ୍ୱୀକାର ।

ସୌମ୍ୟେନ୍ଦ୍ର କଲେଜର ବନ୍ଧୁ ଥିଲା ମୋର, ତେଣୁ ତା' ସମ୍ବନ୍ଧେ ହଠାତ୍
ଏପରି ଶୁଣିବା
ମୋ ଲାଗି ଆଶ୍ଚର୍ଯ୍ୟ ଥିଲା, ଏ କିପରି ସମ୍ଭବ ବା ହେଲା ?
ଉଜ୍ଜ୍ୱଳ ଚରିତ୍ର ଯା'ର କଲେଜରେ ଜଳୁଥିଲା ଦୀପ୍ତ ସୂର୍ଯ୍ୟ ସମ,
ବିଶ୍ୱାସଯୋଗ୍ୟ କି କେବେ ଆଜି ତା'ର ଏ ଅଧଃପତନ ?

ଲକ୍ଷପତି ପିତାର ସେ ଏକମାତ୍ର ଭାଗ୍ୟବାନ ପୁତ୍ର,
ପିତାଙ୍କ ଦେହାନ୍ତ ପରେ ବିପୁଳ ଐଶ୍ୱର୍ଯ୍ୟେ ଯେଣୁ ଉତ୍ତରାଧିକାରୀ
ତା' ପାଇଁ ସମ୍ଭବ ସବୁ, ଅସହିଷ୍ଣୁମାନଙ୍କର ମନ୍ତବ୍ୟ ଏ କେବେହେଲେ
ସମର୍ଥନଯୋଗ୍ୟ ?
ହୃଦୟ ବିଚାର ନାହିଁ, ମନୋବିଶ୍ଳେଷଣ କାହିଁ ?
ବହିର୍ଦୃଷ୍ଟି ପରିସ୍ଫୁଟ ସମାଲୋଚନାରେ ।

ବୟସରେ ଛୋଟ ବୋଲି 'ଗୁନୁ ଅପା' ସମ୍ବୋଧନ ମୋ ନିମିତ୍ତ
ଶ୍ରଦ୍ଧା ତା'ର କେତେ,
ବିବାହେ ମୋ ଉପହାର ଦେଇଥିଲା ବଂଶୀଧାରୀ କୃଷ୍ଣ ମୂର୍ତ୍ତିଟିଏ, '
କହିଥିଲା, "ଗୁନୁଅପା ! କୃଷ୍ଣଙ୍କର ଅନ୍ୟ ନାମ ମଦନମୋହନ,
ତୁମ ପରିଣୟେ ହେଉ ସଂଯମର ସ୍ନିଗ୍ଧ ଆଲିମ୍ପନ ।"

ସେଇ ସୌମ୍ୟେନ୍ଦ୍ରର ଆଜି ଜୀବନରେ ଏ ବିଚିତ୍ର ଗତି,
ଦୀର୍ଘ ସାତ ବର୍ଷ ଧରି ସାଥେ ତା'ର ଆଉ ମୋର ସାକ୍ଷାତ ହୋଇନି
ବିଦେଶେ ମୋ ସ୍ଥିତି ଯୋଗୁଁ, ଆଜି ତା'ର ସାକ୍ଷାତ ପାଇଁକି
ଉଦ୍‌ଗ୍ରୀବ ହେବା ମୋ ପକ୍ଷେ ଖୁବ୍ ସ୍ୱାଭାବିକ-
ନୀଳାକାଶ କେଉଁ ଦୋଷେ ଅକସ୍ମାତ ମେଘାବୃତ୍ତ ହେଲା ?

ଡ୍ରଇଂରୁମ୍ ମଧ୍ୟେ ତା'ର ପ୍ରତୀକ୍ଷାରେ ପ୍ରତିଟି ମୁହୂର୍ତ୍ତ
ଉତ୍କଣ୍ଠାରେ ଆର୍ଦ୍ର ଥିଲା, ଚିନ୍ତା କେତେ ବ୍ୟାକୁଳତା ତା' ସମ୍ପର୍କେ ମୋର,
ସ୍ପନ୍ଦିତ ହୃଦୟ ତଳ, ସେଦିନ ସୌମ୍ୟେନ୍ଦ୍ର ଆଉ ଆଜିର ସୌମ୍ୟେନ୍ଦ୍ର ମଧ୍ୟେ
ବ୍ୟବଧାନ କେତେ,
କେଉଁ ବୈଚିତ୍ର୍ୟର ବଂଧେ କେଜାଣି ବା ସାଥେ ତା'ର ସାକ୍ଷାତ ମୋ ହେବ ?

ପର୍ଦ୍ଦା ଘୁଞ୍ଚିଗଲା, ଆଉ ଦରଜା ପାଖେ ସୌମ୍ୟେନ୍ଦ୍ର ସେ ? ଚିହ୍ନି ମଧ
ଚିହ୍ନି ପାରିଲିନି
ସଂଯମେ ସୁନ୍ଦର ସେଇ ତରୁଣ ଏ ? ତା'ର ସେଇ ଶାନ୍ତ ସ୍ନିଗ୍ଧ
ନୟନ ଯୁଗଳେ
ଈଷତ୍ ରକ୍ତର ଆଭା, ଚାହାଣିରେ ପ୍ରଚ୍ଛନ୍ନ କିପରି ଏକ ଅଶ୍ଳୀଳ ଇଙ୍ଗିତ,
ଶିହରି ମୁଁ ଉଠିଥିଲି, ସୌମ୍ୟେନ୍ଦ୍ରର ସଂପର୍କରେ ଜନଶ୍ରୁତି ମିଥ୍ୟା ନୁହେଁ ତେବେ ।

ହଠାତ୍ ମୋ ସାକ୍ଷାତରେ ଯେପରି ସେ ଅପ୍ରସ୍ତୁତ, ସ୍ତବ୍ଧ ହୋଇଗଲା
ତା' ଅବଶ୍ୟ ଲକ୍ଷ୍ୟ କରିବାର କଥା, ଆକସ୍ମିକ ଉପସ୍ଥିତି ମୋର
କଳ୍ପନା ସେ କରିଥିଲା କେବେ ? ତଥାପି ସେ ଆପଣାକୁ ସମ୍ବରଣ କରି ନେଇ
ପଲକ ମଧ୍ୟରେ
ଦ୍ରୁତ ମୋ ନିକଟେ ଆସି, ନଇଁ ପଡ଼ି, ଚରଣ ମୋ ସ୍ପର୍ଶ କରିଥିଲା,

"ରୁନୁଅପା ! ତୁମେ ପୁଣି କେତେବେଳେ ?" ଏ ପ୍ରଶ୍ନର ଉତ୍ତରଟା ଖୁବ୍
ସାଧାରଣ,
ଭୟାନକ ଗମ୍ଭୀର ମୁଁ, ଦି' ଆଖିରେ ଅଭିମାନ ଅଶ୍ରୁ ଛଳ ଛଳ,
ବୁକୁ ତଳେ ଅବ୍ୟକ୍ତ ମୋ ବେଦନାର ଦାହ, ସାମ୍ନାରେ ସେ ବସିବା ଉତ୍ତାରେ
ହୃଦୟ ମୋ ମୁକ୍ତ କଲି, ବାଷ୍ପାଚ୍ଛନ୍ନ ପ୍ରଶ୍ନରେ ମୋ ଅଭିମାନ,
ସଂଶୟ ଓ ଯନ୍ତ୍ରଣାର ସ୍ଥିତି ।

ଏକ ନିଃଶ୍ୱାସରେ ବ୍ୟକ୍ତ ବିବୃତି ମୋ ଶୁଣିବା ଉତ୍ତାରେ
ଲକ୍ଷ୍ୟ କଲି ସୌମ୍ୟେନ୍ଦ୍ରକୁ ସେ କିପରି ବିବର୍ଣ୍ଣ ଓ ମ୍ଲାନ ହୋଇଗଲା,
ସ୍ପନ୍ଦନ ମୋ ଉପଲବ୍ଧି କଲା କି ସେ ? ପରକ୍ଷଣେ ଅଶ୍ରୁଳ ନୟନେ
ବାଷ୍ପାକୁଳ କଣ୍ଠେ ସେ କହିଲା, "ତୁମେ ଯା ଶୁଣିଛ ସବୁ ସତ କଥା,
ମାତ୍ର ମୋର ମୁକ୍ତିର କି ପଥ ?"

ତା' କହିବା କାରୁଣ୍ୟରେ ଯେପରି କି ମନେହେଲା ମୋର,
ପରିସ୍ଥିତି ପୀଡ଼ନରେ ଆପଣାର ଇଚ୍ଛାର ବିରୁଦ୍ଧେ
ମୃତ୍ୟୁକୁ ନେଇଛି ବରି, ମରଣର ମର୍ମାନ୍ତିକ ଯନ୍ତ୍ରଣା କବଳୁ
ସେ ଆଉ ପାରୁନି ଶତ ଚେଷ୍ଟା ସତ୍ତ୍ୱେ ଆତ୍ମରକ୍ଷା କରି ।

ମୋ ଆଖିରେ ପ୍ରଶ୍ନ ଆଉ ତା' ଓଠରେ ଉତ୍ତରର ଅଶ୍ରୁ,
ତା' ସମ୍ପର୍କେ ଭୀତି ମୋର ମୋଟେ ଭୁଲ ନୁହେଁ, ଅକପଟ ସ୍ୱୀକୃତି ତାହାର
ମୋ ସାମ୍ନାରେ ଆଙ୍କିଦେଲା ଚିତ୍ର ଏକ ହିଂସ୍ର ଶିକାରର
ରକ୍ତାକ୍ତ ସେ ଛଟପଟ, ପ୍ରେମ ନାମେ ପ୍ରତାରଣା, ନାରୀବନ୍ଧୁ 'କାବେରୀ'ର
ଓଠପ୍ରାନ୍ତେ ବିଦ୍ରୂପର ହସ ।

ନିଜ ଭୁଲ୍ ନେଇ କ୍ଷୋଭେ ନିଜପରେ ଭୟଙ୍କର ପ୍ରତିଶୋଧ ତା'ର,
ଅନ୍ଧକାର ପଥେ ଯାତ୍ରୀ ତେଣୁ, ଯଦିଓ ବା ବୁଝୁଚି ସେ ବେଶ୍
ତା' ଜୀବନ ଶୂନ୍ୟତାକୁ, ଯେ ଶୂନ୍ୟତା ଏ ଉପାୟେ ପୂର୍ଣ୍ଣ କେବେ ହେବାର
ତ ନୁହେଁ,
ତଥାପି ସେ ନିରୁପାୟ, ଚୈତନ୍ୟ ତା' ପ୍ରତିକ୍ଷଣେ ନିଶ୍ଚେତନ ରହେ ।

ସୌମ୍ୟେନ୍ଦ୍ରର ସ୍ଥିତି ଆହା କେଡ଼େ ଦୟନୀୟ, କରୁଣ ଏ ଉପଲବ୍ଧି ସତ୍ତ୍ୱେ
ସଂଶୋଧନ ପାଇଁ ତା'ର ଉପଦେଶେ ପ୍ରୟାସ ମୋ ବୃଥା ସିନା,
ମୂଲ୍ୟ ତା'ର କେତେ ?
ଅଥଚ ସେ ନିଃସହାୟ ଦୃଷ୍ଟି ମେଲି ନିକଟେ ମୋ ଖୋଜୁଛି ଆଶ୍ରୟ,
କି ଅଭୟ ଦେବି ତା'ରେ ? ଚିନ୍ତାରେ ମୋ ପ୍ରଚଣ୍ଡ ପ୍ରଳୟ ।

ଉପସ୍ଥିତ ବୁଦ୍ଧି ମୋର ଅକସ୍ମାତ ମୋ ଚିନ୍ତାର ଅବରୁଦ୍ଧ ଦ୍ୱାର ଦେଲା ଖୋଲି,
ମର୍ମରର କୃଷ୍ଣମୂର୍ତ୍ତି ଅଭିମାନେ ଆଣିଥିଲି ସାଥେ ସୌମ୍ୟେନ୍ଦ୍ରରେ
ଫେରାଇବି ବୋଲି,

ଅଚିରାତ ଫେରାଇବା ଉଦ୍ଦେଶ୍ୟେ ମୋ ଓଲଟ ପାଲଟ,
ମୋ ଚିନ୍ତାରେ ସୂର୍ଯ୍ୟାଲୋକ, ମନସ୍ତତ୍ତ୍ୱ ବିଚାର କି ଦୀପ୍ତ ।

ବକ୍ସ ଅନ୍ତରାଳୁ ଆଣି ମୂର୍ତ୍ତିଟିକୁ ଯେତେବେଳେ ରଖିଲି ମୁଁ ସୌମ୍ୟେନ୍ଦ୍ର ସମ୍ମୁଖେ
ଚମକି ସେ ହତବାକ୍, ତା' ଆଖିରେ ପ୍ରଶ୍ନ ଆଉ ମୋ ଓଠରେ ସଜଳ ଉତ୍ତର,
"ସେଦିନ ଏ ଶ୍ୟାମଙ୍କୁ ତୁ ଉପହାର ଦେଇ ମୋତେ ଦାମ୍ପତ୍ୟ ଜୀବନ ଆମ
ସଂଯମର ହେଉ
ଏ କାମନା କରିଥିଲୁ, ବିଶ୍ଳେଷଣ ଦେଇଥିଲୁ କୃଷ୍ଣଙ୍କର ଅନ୍ୟନାମ ମଦନମୋହନ
ସେ ମଦନମୋହନଙ୍କୁ ତୋ ନିକଟେ ରଖିଗଲି ତେଣୁ, ସେ ତାଙ୍କର
ମୟୂର ପୁଚ୍ଛରେ
କରନ୍ତୁ ତୋ ମନକୁ ମାର୍ଜନା ପ୍ରତି କ୍ଷଣେ ପ୍ରତି ମୁହୂର୍ତ୍ତରେ ।"
ମେଲାଣିର କରୁଣ ମୁହୂର୍ତ୍ତେ ସୌମ୍ୟେନ୍ଦ୍ରର ଆଖିଜଳେ ଚରଣ ମୋ
ଆର୍ଦ୍ର ହୋଇଥିଲା ।

'ପ୍ୟାରିସ୍'କୁ ଲେଉଟି ମୁଁ ଭୀଷଣ ଉଦ୍‌ବେଗ ଆଉ ଉତ୍କଣ୍ଠିତ ପ୍ରତୀକ୍ଷାରେ
ମାସ ଦୁଇ ରହିବା ଉତ୍ତାରେ
ଅକସ୍ମାତ ପାଇଲି ମୁଁ ଦିନେ ସୌମ୍ୟେନ୍ଦ୍ରର ପରିଣୟ ନିମନ୍ତ୍ରଣ ପତ୍ର ସାଥେ
ହାତଲେଖା ଚିଠିଟିଏ ତା'ର,
ସେ ଲେଖିଛି, "ଗୁନୁଅପା ! ବିଳମ୍ବରେ ହେଉ ପଛେ ଜୀବନକୁ ବୁଝିଛି ମୁଁ,
ଅବହେଳା କରିବାର ନୁହେଁ ଅଥବା ତା' ନୁହେଁ ଫିଙ୍ଗିବାର,
ତୁମର ପ୍ରାର୍ଥନା ଆଉ ବଂଶୀଧାରୀ ମୁରଲୀର ସୁରେ
ଅଂଧକାରୁ ଆସିଛି ଲେଉଟି, ଆପଣାର ସ୍ଥିତି ଲୋଡ଼େ ଯୁଗ୍ମ ଜୀବନରେ,
ତୁମେ କର ଆଶୀର୍ବାଦ ଆଲୋକେ ତା' ହେଉ ଉଦ୍‌ଭାସିତ ।"

ଏ ପତ୍ରର କି ଦେବି ଉତ୍ତର, ଆନନ୍ଦର ଆବେଗରେ ନୟନେ ମୋ
ଅଶ୍ରୁ ଉଦ୍‌ବେଳିତ,
ପ୍ରାଣର ଉଚ୍ଛ୍ୱାସ କରି ସମ୍ବରଣ ପରିଶେଷେ ହୃଦୟ ମୋ ବ୍ୟକ୍ତ କଲି
କ୍ଷୁଦ୍ର ଲିପିକାରେ
"ଅଭିମାନ, ଅହମିକାଶୂନ୍ୟ ଯେ ପ୍ରଦୀପ ନିଜ ତେଜେ ନିଜେ ଜଳିପାରେ,
ଆତ୍ମସମର୍ପଣେ ଦୀପ୍ତ ଶିଖା ତା'ର ଚିର ଅନିର୍ବାଣ,
ଏଇ ମୋର ଆଶୀର୍ବାଦ - ସେ ବର୍ତ୍ତିକା କରୁ କ୍ରମେ ଲକ୍ଷ ଲକ୍ଷ ଅନ୍ଧକାର
ଦୀପେ ଦୀପ୍ତିମାନ ।"□□

# ରୌଦ୍ର

ନିଦାଘ ଆକାଶେ ମୁହିଁ ଦେଖୁଅଛି ନିର୍ନିମେଷେ ଚାହିଁ
ସେ କିପରି ମୂକ, ସ୍ତବ୍ଧ, ରୌଦ୍ରଦଗ୍ଧ ତପ୍ତ ଦ୍ୱିପ୍ରହର,
ବାତାୟନେ ଦୃଷ୍ଟି ମୋର ଲମ୍ବିଯାଏ ଦିଗ୍‌ବଳୟ ଯାଏ,
ଅଶ୍ୱତ୍‌ଥ ତରୁର ପତ୍ର ଅନ୍ତରାଳେ ପକ୍ଷୀଟିଏ ରହି ରହି କ୍ଳାନ୍ତ ଗୀତି ଗାଏ ।

ଗୈରିକ ସରଣୀ ପରେ ଧୂଳି ମହୋତ୍ସବ, ପବନର ପ୍ରୀତି,
ଶ୍ରାନ୍ତ ପଥ ସୂର୍ଯ୍ୟେ ଚାହେଁ, ଅତ୍ୟାଚାରୁଁ ଅବ୍ୟାହତି ଭିକ୍ଷା,
ସୂର୍ଯ୍ୟର ନିଷ୍ଠୁର ହାସ୍ୟ, ଅତୃପ୍ତ ପୁରୁଷ କେବେ ମୁକ୍ତି ଦିଏ ଧର୍ଷିତା ନାରୀକୁ
ଅର୍ଦ୍ଧଭୋଗେ, କରୁଣ କାକୁତି ତା'ର ନିଃସହାୟେ ଶୂନ୍ୟେ ମିଶିଯାଏ ।

ପ୍ରବଳର ପ୍ରତାପରେ ଦୁର୍ବଳର ପ୍ରତିବାଦହୀନ
ମୌନତା ହିଁ ଶ୍ରେୟସ୍କର, ଅନାଗତ ରାତ୍ରିର ପ୍ରତୀକ୍ଷା,
ଶାନ୍ତ, ସ୍ନିଗ୍ଧ ବାହୁଛାୟା ତଳେ ଏତେ ଟିକେ ସାନ୍ତ୍ୱନାର ଆଶା,
ରୁକ୍ଷ ଆଲିଙ୍ଗନେ ଦେହ, ମନତଳେ କାନ୍ତ ବାହୁବନ୍ଧର ପିପାସା ।

ଏ ରୌଦ୍ର ତେବେ କି ଖାଲି କ୍ଳାନ୍ତିକର ବିରକ୍ତିବ୍ୟଞ୍ଜକ ?
ଅର୍ଥହୀନ, ବର୍ଣ୍ଣହୀନ, ବୈଚିତ୍ର୍ୟରେ କେବଳ ବ୍ୟର୍ଥତା ?
ମୋର କିନ୍ତୁ ମନେହୁଏ ଏ ଅସ୍ୱସ୍ତି, ଅନୁଭୂତି ପଛେ
ପ୍ରଚ୍ଛନ୍ନ ଯା'ରହେ ତା'ରେ ନିର୍ବିବାଦେ କରିବା ସ୍ୱାଗତ ।

ସେ ଖାଲି ଆଖିର ନୁହେଁ, ଅନ୍ତରର ପାଣିତଳେ ପ୍ରବାଳ ପ୍ରାସାଦ,
ଏ ଖରାରେ ଜଳି ଜଳି ସ୍ମୃତି ଯା'ର ମନତଳେ ବାରମ୍ବାର ଜାଗେ
ସେ ଶୀତର ଗର୍ଭୁ ଜନ୍ମ ଲଭିଛି ଏ ଦୃପ୍ତ ରୌଦ୍ର ଶିଶୁ,
ମୁଁ ତେଣୁ ଭାବୁଛି ଏ ତ ଅଗ୍ନି ନୁହେଁ, ସୁଧା ଝରେ ଜ୍ୱଳନ୍ତ ଆକାଶୁଁ ।

ସକଳ ବିଷଣ୍ଣତାକୁ ତେଣୁ ଆଜି ଜଳାଞ୍ଜଳି ଦିଏ,
ଆକାଶେ ଆକାଶେ କ୍ଷଣେ ଛାଇଯାଏ ମେଘର ପାହାଡ଼
ଚପଳା ଚଞ୍ଚଳ ନୃତ୍ୟ ଦେଇଁ ଦେଇଁ ଶିଖରେ ଶିଖରେ
ମାଦଳର ତାଳେ ତାଳେ, ଦରୀ କୋଳେ ପ୍ରତିଧ୍ୱନି ଯା'ର ।

ବଳାକା କୁସୁମହାର, ଭାସମାନ ଚାତକିନୀ ତୃଷାର ସମାପ୍ତି,
ଶ୍ୟାମାୟିତ ଶୈଳ ଶିର, ଝରଝର ମହ୍ଲାର ରାଗିଣୀ,
ବାତାୟନ ପାଶେ ପ୍ରିୟା, ଅଶ୍ରୁଆଖି ପ୍ରବାସୀରେ ସ୍ମରି,
ଉଜ୍ଜୟିନୀ ପ୍ରସାଦର ଶୀର୍ଷେ ଏ କି ଘନଘଟା, ସୁଧାକଣ୍ଠେ ମେଘଦୂତ
ଆବୃତ୍ତି କେ କରେ ?

ହେ ରୌଦ୍ର କୃତଜ୍ଞ କବି ତୁମପାଶେ, ଯକ୍ଷ ଆଉ ଯକ୍ଷପ୍ରିୟା ତା'ର
ତୁମରି ଦୟାର ସୃଷ୍ଟି, ଆଜି ତେଣୁ ଅନ୍ତରେ ଅନ୍ତରେ
ରସର ପ୍ରବାହ ତଳେ, ତୁହାଇ ତୁହାଇ ତୁମେ ଖୁବ୍ ମନେପଡ଼,
କବିରେ ପ୍ରଣତି ଆଗୁଁ ଆଦ୍ୟ ନତି ତୁମକୁ ଜଣାଏ ।

ତୁମରେ କହିବି ରୁଦ୍ର କିପରି ହେ ରସରାଜ, ପ୍ରଣୟର ବସନ୍ତ ବିଳାସ,
ପିକର ପଞ୍ଚମ ଗାନେ, କିଶଳୟେ ତୁମରି ପ୍ରକାଶ,
ମାଧବୀ ଚନ୍ଦ୍ରିକା ଝରେ ସୁରଭିତ ମୃଦୁଳ ମଳୟେ
ତୁମରି ହିଲ୍ଲୋଳ, ଶ୍ୟାମ ଶ୍ରୀମତୀର ପ୍ରଣୟର ରାସ ।

ଯମୁନାର ସ୍ନିଗ୍ଧ ତୀରେ ଶୁଭେ କା'ର ନୂପୁର ନିକ୍ୱଣ,
ବେଣୁର ମୂର୍ଚ୍ଛନା, ଅବା ହାତ ଠାରେ ଶୁଣଗୋ, ଶୁଣଗୋ,
ନିଭୃତ ନିକୁଞ୍ଜେ ସ୍ନିଗ୍ଧ ଶିହରଣ, ସରମ, ଶୀତ୍କାର,
ଭିନ୍ନ ଭିନ୍ନ ତନୁ କାହିଁ ? ବ୍ୟବଧାନ ସବୁ ଏକାକାର ।

ଗୋଟିଏ କଥାରେ ତୁମ ସ୍ମୃତି ସଙ୍ଗେ ଓତଃପ୍ରୋତଃ ବିଜଡ଼ିତ ଆମରି ଅସ୍ତିତ୍ୱ
ତୁମରି ଇଙ୍ଗିତ ବିନା ଟେବୁଲ୍‌ରେ ଫୁଲ, ଫୁଲଦାନୀ,
କକ୍ଷ ମଧ୍ୟେ କାରୁକାର୍ଯ୍ୟ, ସବୁକିଛି ସାଜସଜା ହୋଇଥାନ୍ତା ସ୍ୱପ୍ନ,
ନିବିଡ଼ ତିମିର ଗର୍ଭେ ଶୂନ୍ୟ କୋଠରୀଟା ତା'ର ଚୁପ୍‌ଚାପ୍ ପଡ଼ି ରହିଥାନ୍ତା ।

ତୁମରି ଉତ୍ତାପେ ତେଣୁ ସ୍ନାନ କରି ମନେହୁଏ ସାର୍ଥକ ମୁଁ ଆଜି,
ଏଇ ଧୂଳିଝଡ଼, ଏଇ ଘୂର୍ଣ୍ଣିବାୟୁ ଲାର୍ଭାର ପ୍ରବାହ
ଅସ୍ୱସ୍ତି ବିରକ୍ତି, କ୍ଲାନ୍ତି ସବୁ ଯେହ୍ନେ ମିଥ୍ୟା ହୋଇଯାଏ,
ଉତପ୍ତ ବାହୁର ତଳେ ସୁଧାମୟ ଫଲ୍‌ଗୁର ଅସ୍ତିତ୍ୱ ।

ବାତାୟନ ବନ୍ଦକରି ଚାଲିଯିବି ମନ ନାହିଁ ହୁଏ,
ବିସ୍ଫାରି ନୟନ ଖାଲି ଇଚ୍ଛା ଜାଗେ ଦେଖୁଥାନ୍ତି ତୁମରି ବୈଚିତ୍ର୍ୟ,
ଅଦୃଶ୍ୟ ଓ ଦୃଶ୍ୟମାନ, ତୁମ ତାପେ ଅତିଷ୍ଠ ପ୍ରତ୍ୟେକେ
ଶୁଣାନ୍ତି ମୋ ସ୍ନିଗ୍ଧ ଉପଲବ୍ଧି, ତୁମ ଗୀତ ପ୍ରଚ୍ଛନ୍ନ ଅର୍ଥକୁ ।

ମୋର ଏ ସ୍ତୁତିରେ ତୁମେ କେତେଦୂର ତୁଷ୍ଟ ହେବ, ପ୍ରୀତ ହେବ
ମୁଁ ଠିକ୍ ଜାଣେନା,
ମାତ୍ର ମୁଁ ଓ ଅନ୍ୟମାନେ ପରୋକ୍ଷେ ଲଭିବୁ ଯାହା ମୂଲ୍ୟ ତା'ର ଅନିର୍ବଚନୀୟ ୮୦

## ଯଥାର୍ଥ

ଯେଉଁମାନେ ଏ ଦୁନିଆରେ ହାତେ ମାପି ଚାଖଣ୍ଡେ ଚାଲନ୍ତି
ହୁସିଆର ମହଲରେ ସେମାନଙ୍କ ସୁନାମ ରହିଛି
ଏ କଥା ମାନୁଛି ସତ, ନିଃସନ୍ଦେହେ ସ୍ୱୀକାର ବି କରେ
ଆଶ୍ଚର୍ଯ୍ୟେ ଅବାକ୍ କେତେ ସେମାନଙ୍କୁ ଉଚ୍ଛ୍ୱସିତ ତାରିଫ୍ କରନ୍ତି ।

କିନ୍ତୁ ମୁଁ କହିବି (ଯିଏ ଯେତେ ପଛେ ପ୍ରତିବାଦ କରୁ)
ଏଇ ସବୁ ସ୍ୱାର୍ଥାନ୍ୱେଷୀ, ସତର୍କିତ, ଭୀରୁ କୂପମଣ୍ଡୁକର ଦଳ
ବେଶ୍ ଏକ ନିରଙ୍କୁଶ ଆରାମର ଅନ୍ତରାଳେ ନିରାପଦେ ରହି,
ବିଚିତ୍ର ଏ ଜୀବନର ଅନନ୍ତ ଆସ୍ୱାଦୁଁ ହାୟ ବଞ୍ଚିତ ହୁଅନ୍ତି ।

ଅନାଗତ ଭୟ, ଶଙ୍କା ଆକ୍ରମଣେ ଚିରଦିନ ଏମାନେ ବିବ୍ରତ,
ଅତି ସତର୍କତା ହେତୁ କଳ୍ପନାରେ ସୀମାହୀନ ଦୁଃଖକୁ ଲଭନ୍ତି,
ଅତଏବ ଜୀବନର ଯାତ୍ରୀ ବୋଲି ଏମାନଙ୍କୁ କିପରି କହିବା ?
ପ୍ରତି ମୁହୂର୍ତ୍ତରେ ଯେଣୁ ପଦେ ପଦେ ମୃତ୍ୟୁ ଲଭୁଛନ୍ତି ।

ମୁଁ ଦେଖୁଛି ସେମାନଙ୍କୁ ଯେଉଁମାନେ ଏ ବିଶ୍ୱର ପଥେ
ସବୁ ଶଙ୍କା, ସତର୍କତା, ଭୟ, ଦ୍ୱିଧା, ଗ୍ଲାନି ପୋଛିଦେଇ
ଜୀବନକୁ ତୁଚ୍ଛ କରି ଦ୍ରୁତ ପଦେ ଛୁଟି ଚାଲିଛନ୍ତି,
ଦୁରନ୍ତ, ଦୁର୍ବାର ଚିର ନବ ନବ ଝଡ଼ର ପ୍ରୟାସୀ ।

ଜୀବନର ରାଜପଥେ ସେମାନେ ତ ଦେଖନ୍ତିନି ନିଜକୁ କେବଳ,
ସଙ୍କୀର୍ଣ୍ଣ ମମତା ବ୍ୟୂହେ ଆପଣାକୁ ସୀମାବଦ୍ଧ କରି
ସେମାନେ ଭୁଲାନ୍ତିନାହିଁ, ପ୍ରସାରିତ ବାହୁର ବନ୍ଧନେ
ଅଜସ୍ର ମମତା ସ୍ନେହ ବୁକୁ ପରେ ଜଡ଼ାଇ ଧରନ୍ତି ।

ସେମାନେ ଜୀବିତ ତେଣୁ, ଜୀବନର ଅମୃତ ଆସ୍ୱାଦେ
ଦୁନିଆର ବୈଚିତ୍ର୍ୟର ବିଳାସରେ ବିସ୍ମୟେ ବିହ୍ୱଳ,
କୋଟିଏ ସ୍ମରଣେ ନିତ୍ୟ ବର୍ତ୍ତମାନ, ଅକ୍ଷୟ, ଅବ୍ୟୟ,
ନିଜକୁ ବିମ୍ବିତ ଦେଖି ଅଜସ୍ରର ଜୀବନ ମୁକୁରେ ।

ନମସ୍କାର ସେମାନଙ୍କୁ, ମହନୀୟ ଆପେ ଆପେ ଆପଣାର କ୍ଷତିର ଉତ୍ସବେ,
ଅନିର୍ଦ୍ଦିଷ୍ଟ ଯାତ୍ରାପଥ, ଅନପେକ୍ଷ ଜୀବନର ଶଙ୍କାହୀନ, ଦ୍ୱିଧାହୀନ ଗତି ।□□

## ଖରା

ଯେଉଁ ଖରା ଜଳି ଜଳି ପିଚୁରାସ୍ତା ତରଳାଇ ଦିଏ,
ଏବଂ ଆଖି ପିଛୁଳାକେ ଜାଳିପୋଡ଼ି ଦିଏ ଏ ଦେହକୁ,
ତୀକ୍ଷ୍ଣ ତା'ଅସ୍ତିତ୍ୱେ ଲୁଚି ଚମତ୍କାର ମାଦକତା ଅଛି,
ସେ ଆନନ୍ଦ ଉତ୍ତାପର, ଅନାଗତ ଶୀତର ଉତ୍ସବେ ।

ବୁଝିପାରି ନ ଥିଲି ମୁଁ ପ୍ରଥମେ ଏ ପ୍ରଚ୍ଛନ୍ନ ଥଣ୍ଡାକୁ,
ଆଉ ପାଞ୍ଚଜଣ ପରି ଛଟପଟ ମୁଁ ବି ଜଳୁଥିଲି,
ଉତ୍ତାପର ଏ ରହସ୍ୟ ଅକସ୍ମାତ ଖୋଲିଗଲା ଦିନେ ମୋର ଚେତନା ସମ୍ମୁଖେ,
ଏ ଜାତିର ଅନ୍ତରାଳେ ମୁଁ ଦେଖିଲି ସାୟାହ୍ନର ଶୀତଳ ଛାୟାକୁ ।

ତା'ପରେ ଦେଖିଲି ରାତ୍ରି ଦିବସକୁ ହତ୍ୟା କରେ ଯିଏ,
ଏ ତାତିର ବୁକୁ ଚିରି ପିଏ ଯେହ୍ନୁ ତାତିଲା ଲହୁକୁ,
ସେ ରକ୍ତର ଉନ୍ମାଦନା, ସେ ରକ୍ତର ପ୍ରଚଣ୍ଡ ଆସ୍ୱାଦେ
ଏ ରାତ୍ରି ଶୀତଳ ହୁଏ, (ତୃଷା ତା'ର ଚରିତାର୍ଥ ହେଉ ।)

ଏ ଉତ୍ତାପ ଭେଦୁ ମୋର ଏଇ ଦେହ, ଏ ମନ ଭିତରେ,
ଆଞ୍ଚା କରି ଭେଦି ଯାଇ ଯେବେ ସିଏ ଅଣାୟତ୍ତ ହେବ,
ମୁଁ ତେବେ ଚିପିବି ତାକୁ ଏଇ ମୋର ହାତର ମୁଠାରେ,
ମୋ କଠୋର ନିଷ୍ପେଷଣେ ରୂପ ତା'ର ନିଶ୍ଚେ ବଦଳିବ ।

ଏଇ ଖରା, ଯେଉଁ ଖରା ପିଚୁରାସ୍ତା ତରଳାଇ ଦିଏ,
ଅସ୍ମିତା ଭୁଲି ସେ ନେବ ତୁଷାରର ଘନୀଭୂତ ରୂପ । ◻◻

## ରାତ୍ରି

ଆଜି ଏ ତିମିର ରାତ୍ରି, ଚତୁର୍ଦ୍ଦିଗେ ନିରାଟ ସ୍ତବ୍ଧତା,
ଶୂନ୍ୟାକାଶେ ଜଳୁଛନ୍ତି ଦେଖି କୌତୂହଳେ ଅଜସ୍ର ତାରକା
ଏ ଧରିତ୍ରୀ ବୁକେ ଚାହିଁ, ମନ ତଳେ ସହସ୍ର ଉତ୍କଣ୍ଠା,
କ୍ଷୀଣ ଦୀପାଲୋକେ କେବେ ରହସ୍ୟର ହୁଏ ଉଦ୍‌ଘାଟନ ?

ଦିବସର ସୂର୍ଯ୍ୟାଲୋକେ ଅନ୍ଧ, ରଜନୀରେ ପଥ ଭୁଲ୍ ହୁଏ,
ତେଣୁ କି ସେମାନେ ସ୍ଥିର ? ଅଭିଶପ୍ତ, ଅଭିଶପ୍ତ ସତେ ?
'ଦୀପ୍ତିହୀନ' ଉପହାସ ସତ୍ତ୍ୱେ, ସେମାନେ ଯେ ଅବିକୃତ, ଆଖିତଳେ
ଅର୍ଥହୀନହସ,
ଆଶ୍ଚର୍ଯ୍ୟ ସେ କୌତୂହଳ, ନିର୍ଲଜର ଅପମାନ କାହିଁ ?

ଏ ରାତ୍ରିର ଆବରଣ ତଳେ ଦିବସର ଅଜସ୍ର କୌତୁକ
ପ୍ରଚ୍ଛନ୍ନ ରହିଛି ବେଶ୍, ଦେଖି ଯାହା ଦେଖି ହୁଏ ନାହିଁ,
ଅନନ୍ତ ଗୌରବ କେତେ ଛପି ରହେ ନିଘଞ୍ଚ ତିମିରେ
ସୀମାହୀନ ଗ୍ଲାନି ମଧ ଲୁଚି ଲୁଚି ଆତ୍ମରକ୍ଷା କରେ ।

ଏ ରଜନୀ ନିରପେକ୍ଷ, ସବୁ କିଛି ଏକାକାର କରି
ପ୍ରତ୍ୟେକର ନିଜତ୍ୱ ସେ ଭାଙ୍ଗେ, ଦିବସର ତୀବ୍ର ଭେଦ ବୁଦ୍ଧି
ଅପମାନେ ଜର୍ଜରିତ, ମରଣର ପଦାଙ୍କାନୁସରି
ସେ ପ୍ରଚାରେ ସାମ୍ୟ ଭାବ, ବିସ୍ତୃତ ତା' ବାହୁଛାୟା ତଳେ ।

ଏ ରାତ୍ରି କି ନିଦ୍ରିତର ? ଅଚେତନ ଐଶ୍ୱର୍ଯ୍ୟ ବଞ୍ଚିତ
ଦିଗେ ଦିଗେ ପରିବ୍ୟାପ୍ତ, ଦିବସର କ୍ଳାନ୍ତି ଭୁଲୁ ଭୁଲୁ
ଉଷାର ଉଜ୍ଜ୍ୱଳ ହସ, ଫେରେ କିଏ ମନ୍ଥର ଚରଣେ,
ଶୁଣେ ନା ସେ ପଛୁ ଯେତେ ଡ଼ାକିଲେ ବି ତୁହାଇ ତୁହାଇ ।

ଅନ୍ଧାର ପ୍ରଥମ ସତ୍ୟ, ପ୍ରସୂତି ସେ ଆଦ୍ୟ ଆଲୋକରେ
ପଙ୍କରୁ ପଙ୍କଜ ଯଥା, ପଦ୍ମ ଗର୍ଭେ ଅଳିର ସୁଷୁପ୍ତି,
ଆଲୋକର ଉନ୍ମାଦନା ଅପମୃତ୍ୟୁ, ରଜନୀର ଶୀତଳ ଛାୟାରେ
ଜୀବନର ମୂଲ୍ୟ ଅଛି ତିମିରର ଯବନିକା ତଳେ ।

ଏ ନିବିଡ଼ ଅନ୍ଧକାରେ ମୁଁ ଦେଖୁଛି ଆପଣାକୁ ଚାହିଁ
ଅସ୍ତିତ୍ୱ ମୋ କାହିଁ ହାୟ ? ତଥାପି ମୋ ସ୍ଥିତି ମିଥ୍ୟା ନୁହେଁ
ଅଦ୍ଭୁତ ଏ ପ୍ରହେଳିକା, ଚିନ୍ତା ସ୍ରୋତ ଅତ୍ୟନ୍ତ ପ୍ରଖର,
ଆତ୍ମ ଉପଲବ୍ଧି ତେଣୁ, ଆଲୋକରୁ ଅନ୍ଧକାରେ ବେଶୀ ।

ତେଣୁ ଏ ରାତ୍ରିରେ ଆଜି ଆନ୍ତରିକ ସ୍ୱାଗତ ଜଣାଏ,
ଉତ୍କର୍ଣ୍ଣେ ମୁଁ ଶୁଣେ ତା'ର ଶବ୍ଦହୀନ ନୀରବ ସଂଗୀତ,
ସେ ସଂଗୀତ ମୂର୍ଚ୍ଛନାରେ ଅଙ୍ଗେ ଅଙ୍ଗ ଅପୂର୍ବ ଶୀହ୍କାର,
ଅମୃତର ଆସ୍ୱାଦନ, ଅନୁଭୂତି ଅନିର୍ବଚନୀୟ ।

ରାତ୍ରିର ଏ ଶ୍ୟାମରୂପ ଘନନୀଳ ଆପାଦମସ୍ତକ,
ଅଧରେ ବେଣୁର ଧ୍ୱନି, ବିରହର କାହିଁ ପ୍ରିୟା, ଶ୍ରୀମତୀ ରୂପସୀ ?
ଶ୍ୟାମ ଖୋଜେ ଶ୍ରୀମତୀରେ, ଶ୍ରୀମତୀକି ଝୁରେନା ନୀରବେ,
ଶ୍ୟାମର ଅବର୍ତ୍ତମାନେ, କିଏ ଖୋଜେ କାହାକୁ କିପରି ?

ମୁଁ ତ ସେଇ ବିରହିଣୀ ଫୁଲ ଶଯ୍ୟା କରିଛି ରଚନା,
ଅଜସ୍ର ଉତ୍କଣ୍ଠା ହୃଦେ, ପଥ ଚାହିଁ ଆଖି ପାଣି ମରେ,
କାହିଁ ସେ ନିଷ୍ଠୁର ହାୟ, ଚନ୍ଦ୍ରାବଳୀ ବାହୁପାଶେ ବନ୍ଦୀ ?
ସଖୀ ଦ୍ୱାର ବନ୍ଦ କର, ଆସେ ଯଦି କପଟୀରେ ଲେଉଟାଇ ଦିଅ ।

ଅନନ୍ତ ଏ ଅଭିମାନ, ପ୍ରତୀକ୍ଷା ଓ ପ୍ରୀତି ଉନ୍ମାଦନା,
ଅବାରିତ ଅଶ୍ରୁପାତ, ପ୍ରତିକ୍ଷଣେ ବିରହରେ ଦଗ୍ଧ
ତନୁମନ ଜର୍ଜରିତ, ଶୁଷ୍କ ପତ୍ରେ ପତ୍ରର ପତନ,
ଚମକି ଜାଗଇ ରାଧା, ଏଇ ବୋଧେ ଆସେ ପ୍ରାଣନାଥ ।

ସେତିକିରେ ଶେଷ ନୁହେଁ, ସୋପାନ ଶ୍ରେଣୀର ସେ ତ ପ୍ରଥମ ପାହାଚ,
ଏତେ ମାନ ଅଭିମାନ ଧୀରେ ଧୀରେ ଘନୀଭୂତ ହୋଇ,
କ୍ରମଶଃ ଅସ୍ତିତ୍ୱ ଭୁଲେ, କାହା ଲାଗି ଅଶ୍ରୁଝର ଏତେ ?
ଦ୍ୱୈତର ବୈଚିତ୍ର୍ୟ କ୍ରମେ ଅଦ୍ୱୈତରେ କେନ୍ଦ୍ରୀଭୂତ ହୁଏ ।

ହେ ରାତ୍ରି, ଚରଣେ ତବ ଆଜି ମୋର କୋଟି ନମସ୍କାର,
ତୁମର ଏ ମହାଦାନ, ବାହୁ ବନ୍ଧେ ପରମ ଆଶ୍ଳେଷ
ଶ୍ରବଣେ ଅଧର ଥାପି ଭାଷାହୀନ ପୀୟୂଷ ଆବୃତ୍ତି,
ଭୁଲିବି କିପରି କୁହ ? ତୁମେ ମୋତେ ଭୁଲନି ସୁନ୍ଦର ।

ଆଲୋକ ମୋ ଲୋଡ଼ା ନାହିଁ, ଦିବସର ତୀବ୍ର ସୂର୍ଯ୍ୟାଲୋକେ
ଏ ମଣିଷ ଅନ୍ଧ ହୁଏ, ମନେପଡ଼େ ବିଲ୍ୱମଙ୍ଗଳର
କୃତିତ୍ୱ, ନୟନ ନାଶି, ପୃଥିବୀର ଆଲୋକରେ ଭୁଲି,
ତୁମକୁ ନେଲା ସେ ଲୋଡ଼ି କେଉଁ ଲୋଭେ କି ପ୍ରାପ୍ତି ଆଶାରେ ?

ଦିଗ୍‌ବଳୟେ ହେଇ ଫୁଟେ ଅନାଗତ ଦିବାର ଇଙ୍ଗିତ,
ମୋ ମନେ ଅଦ୍ଭୁତ ଭୟ, ଏତେ ପ୍ରାପ୍ତି ରତିର ଉଚ୍ଛ୍ୱାସ
ସବୁ ତ ନିଶ୍ଚିହ୍ନ ହେବ ଆଲୋକର ତୀବ୍ର ବିଶ୍ଳେଷଣ,
ହେ ରାତ୍ରି, ମୋ ଅନୁନୟ, ମୋତେ ତୁମେ ଲୁପ୍ତ କର ତୁମରି ଗରଭେ । ▫▫

## ବିଚାର

ଯେଉଁମାନେ ଏ ଜଗତକୁ ପ୍ରାଣଭରି ଉପଭୋଗ କରି,
ପରବର୍ତ୍ତୀ ସମୟରେ ସକଳ ତା' ଅବଦାନେ କୁହନ୍ତି ଅଳୀକ୍,
ଅକୃତଜ୍ଞ ସେମାନଙ୍କୁ ଅଶ୍ରଦ୍ଧା କରି ନ ଦେଉ ସକଳ ସମ୍ମାନ,
ସେମାନଙ୍କ ବକ୍ତବ୍ୟକୁ ଦ୍ୱିଧାହୀନ ଭାବେ ଆମେ ଯଥାର୍ଥ ବି କହୁ ।

ସେମାନେ ଏ ଦୁନିଆର ମଳୟରୁ ନିଶ୍ୱାସ ଆହରି,
ପ୍ରଣୟର ଅମୃତକୁ ପଳପଳ କରି ଆସ୍ୱାଦନ,
ତୃଣର ଚଟାଣ ପରେ ଆସକ୍ତିର ଗାଲିଚା ବିଛାଇ,
ବୁକୁରେ ମିଶାଇ ବୁକୁ ପ୍ରାଣେ ପ୍ରାଣ ବିନିମୟ କରି ।

ଏ ଜ୍ୟୋସ୍ନା, ଏ ସୂର୍ଯ୍ୟାଲୋକୁଁ ପାନ କରି ଆସବ ଆକଣ୍ଠ,
ଏ ବିଶ୍ୱର ରନ୍ଧ୍ରେ, ରନ୍ଧ୍ରେ ଯେତେ ତୃପ୍ତି ରହିଛି ବସ୍ତୁତ
ସବୁରୁ ନିଗାଡ଼ି ରସ ଚରିତାର୍ଥ କରିନେଇ ପ୍ରାଣର ପିପାସା,
ଆପଣାରେ ପର କରି ଗାଉଛନ୍ତି ନାମେ ତା'ର ଦୁର୍ନାମ ସଂଗୀତ ।

କୋଳେ ଯେ ବିଶ୍ୱାସେ ଦେଲା ସ୍ନେହଭରା ପରମ ଆଶ୍ରୟ,
ପ୍ରତି ଧମନୀରେ ଯେହୁ ବୁହାଇଲା ଜୀବନର ଶୋଣିତର ଧାରା,
ଚୈତନ୍ୟକୁ ଉଦ୍‌ବୁଦ୍ଧ କରି ବିବେକକୁ କଲା ଯେ ଜାଗ୍ରତ,
(ଆଶ୍ରୟ ବିହୁନେ ଯା'ର ଆପଣାର ସ୍ଥିତି ବି ନ ଥାନ୍ତା)

ସେ ପୁଣି ବିରାଟ ମିଥ୍ୟା, ସମସାର ନିଷ୍ଠୁର ନିଗଡ଼,
ସ୍ତନ୍ୟ ତାର ମିଥ୍ୟା ହେଲା, ମିଥ୍ୟା ତା'ର ପରମ ସାନ୍ତ୍ୱନା,
ମିଥ୍ୟା ତା'ର ସବୁ ଦାନ, ମିଥ୍ୟା ତା'ର ସ୍ନେହର ଚୁମ୍ବନ,
ସକଳ ଅସ୍ତିତ୍ୱ ତା'ର ଯାହା କିଛି ଅନୁଭବୁ ସବୁ ପ୍ରହେଳିକା ?

ଚମତ୍କାର ମତାମତ, ଚମତ୍କାର ତର୍କର ସାଫଲ୍ୟ,
ସୁବିଧାବାଦୀଙ୍କ ଦଳ ପଳାୟନ ପନ୍ଥାର ଉହାଡ଼େ
ନିଜ ସ୍ଥାନ ବାଛି ନିଏ, ଆଶ୍ଚର୍ଯ୍ୟ ସେ ଯୁକ୍ତିର ଉଚ୍ଛ୍ୱାସ,
ଆମେ ପୁଣି ତାଳି ମାରୁ ସୂକ୍ଷ୍ମତମ ଅଦୃଶ୍ୟ ବସନ ।

ସେତିକିରେ ବନ୍ଦ ରହୁ ଏବେ ପୂଜ୍ୟପୂଜା, ଭକ୍ତିର ଉଦୟ,
ସ୍ତନୁ ଯେ ଅମୃତ ଦେଲା, ଭୁଲିବୁ କେସନେ ତା'ରେ, ଚିରଦିନ
ଗାଇବୁ ତା' ଜୟ ।□□

## ଶୂନ୍ୟ ପୋଲିସ୍ ଷ୍ଟାଣ୍ଡ୍

ଶୂନ୍ୟ ଏ ପୋଲିସ୍ଷ୍ଟାଣ୍ଡ୍, ନଗରୀର ସ୍ତବ୍ଧ ମଧ୍ୟରାତ୍ରି,
ବିପଣି ବୀଥିକା ଶୂନ୍ୟ, ଶୂନ୍ୟ ପଥ ଉତ୍ତାନ ଶୟନେ
ଦିବସର କ୍ଲାନ୍ତି ଭୁଲେ, ଦୀପହୀନ ପ୍ରାସାଦ ଶ୍ରେଣୀର
ତିମିରିତ ରୂପ, କାହିଁ କ୍ୱଚିତ ବା ଆଲୋକ ଇଙ୍ଗିତ,
ନିଷ୍ପ୍ରଭ ବିଦ୍ୟୁତବତୀ ନତମୁଖୀ ପଥପାର୍ଶ୍ୱେ ନିଦ୍ରିତରେ ଚାହିଁ ।

ଶୂନ୍ୟ ଏଇ ପୀଠ ପାର୍ଶ୍ୱେ ଶ୍ୱାନଟିଏ ନିଶ୍ଚିନ୍ତ ଶୟନେ
ତନ୍ଦ୍ରା ତା' ସାର୍ଥକ କରେ, ବୃଷଭର ବିସ୍ମୟ ଉଦ୍ରେକ,
ରୋମନ୍ଥନ ଅବ୍ୟାହତ, ବେନି ମଧ୍ୟେ ବ୍ୟବଧାନ ନଗଣ୍ୟ, ନଗଣ୍ୟ,
ପ୍ରାଣହୀନ ପିଣ୍ଡ ଯଥା ଏ ପୀଠର ପରିଣତି ତଥା ।

କେତେ ଦୀପ୍ତି ଥିଲା ଏଠି, ନିର୍ଦ୍ଦେଶନ ଯାନ ଆତଯାତ,
କେତେ ତୀବ୍ର ପରାକ୍ରମ, ଆଦେଶର କର୍କଶ ଚିତ୍କାର,
ରକ୍ତଚକ୍ଷୁ, ଆସ୍ଫାଳନ, ପଦାଘାତ ଭ୍ରୂକୁଟି, ବିଦ୍ରୂପ,
ପରିସ୍ଥିତି ପୀଡ଼ନରେ କେତେ ଦର୍ପ ଦୀପ୍ତିହୀନ ହୁଏ ।

ଏ ପୀଠର ଅଧିକାରୀ ଅଶିକ୍ଷିତ, ସ୍ୱଳ୍ପ ବେତନର
ଦୀନହୀନ ରାଜଭୃତ୍ୟ, ହେୟଜ୍ଞାନ ଅଜ୍ଞତା ପ୍ରସୂତ,
କର୍ଣ୍ଣଧାର ଶୃଙ୍ଖଳାର, ମୂର୍ତ୍ତିମାନ ନିରାପତ୍ତା ନିଜେ,
ପ୍ରତିନିଧିତ୍ୱର ଏଇ ତୀବ୍ର ସତ୍ୟ ବୁଝି ସେ ବୁଝେନା,
ଗର୍ବଭର ଆହ୍ଲାଦରେ ଆପଣାକୁ ଦେବତା ମଣିବା,
ଏତେ ଶଙ୍କା, ବିନମ୍ରତା, ଭୀତଦୃଷ୍ଟି, ସବୁ କିଛି ତା ପାଇଁ ଯେପରି ।

ନିର୍ଜନ ଏ ଶୃଙ୍ଗାଟକ, ଶୂନ୍ୟ ଏଇ ପୀଠକୁ ଅନାଇ
ମୁଁ ସ୍ମରୁଛି ତା'ରେ ଶୁଭ୍ର ପରିଚ୍ଛଦ, ତୀବ୍ର ଏକାଗ୍ରତା,
କଠୋର କର୍ତ୍ତବ୍ୟରତ, ଚମତ୍କାର ଅଭିନୟ ଏକ ।

କର୍ମର ବିରତି ପରେ ଶ୍ରାନ୍ତ, କ୍ଲାନ୍ତ ନୀଡ଼କୁ ଲେଉଟି
ଉତ୍କଣ୍ଠିତ, ଶମିଥିବ ଶ୍ରମଜ୍ୱାଳା ପୁରାଣର ନବୀନ ରୂପରେ

ଅମୃତ ଉତ୍ସବେ, ସତେ ଭୁଲିଥିବ ସ୍ନିଗ୍ଧ ଅତୀତକୁ
ବର୍ତ୍ତମାନେ ଝାସ ଦେଇ ? ମୋର କିନ୍ତୁ ଖୁବ୍ ମନେହୁଏ
ଶିରା ପ୍ରଶିରାରେ ଯା'ର ଗୁରୁଗିରୀ ଅଦ୍ଭୁତ ଆକାଂକ୍ଷା,
କର୍ତ୍ତୃତ୍ୱ ଜାହିର କରି ଚମତ୍କାର ତୃପ୍ତି ଆସ୍ୱାଦନ,
ସ୍ୱପ୍ନ କି ତା'  ବ୍ୟର୍ଥ ଯିବ ? ଷ୍ଟାଣ୍ଡ୍ ପରେ ଉପସ୍ଥିତ ଥାଇ
ଜାଗ୍ରତର ତୃପ୍ତି ବେଶ୍ ଲଭୁଥିବ ସହସ୍ର ରୂପରେ,
ରାତ୍ରିର ଅନ୍ଧାର ଖୋଲେ ଦିବସର ଦୁଧରେ ଗାଧୋଇ ।

ଶୂନ୍ୟ ସେ ପୀଠର ପରେ ଶୁଭ୍ରବେଶୀ କିଏ ସେ, କିଏ ସେ ?
କେହି ନାହିଁ, କେହି ନାହିଁ, ସେ ତ ଖାଲି ମୋ ଆଖିର ଭୁଲ । ▫▫

## ଭିଡ଼

ମୁଁ ଆଜି ଏଠାରେ ଏକା ଦୋତାଲାର ନିର୍ଜନ କକ୍ଷରେ,
ନିମ୍ନରେ ମଣିଷ ଭିଡ଼, ରାଜପଥେ ଜନତାର ସୁଅ,
ଅଜସ୍ର ଗୁଞ୍ଜନ ହେଇ ଉର୍ଦ୍ଧ୍ୱେ ଉଠେ, ଏକ ବହ୍ନିଶିଖା,
ମୁଁ ଏଠି ମରୁଛି ହାୟ, ଆପଣାକୁ ଧୋଇ ନେବି ଅଗ୍ନିର ଦହନେ ।

ଦୋତାଲାରୁ ଝାମ୍ପ ଦେବି ଏଇ ତୀର୍ଥ ସାଗରର ବୁକେ,
ଅସଂଖ୍ୟ ସ୍ପନ୍ଦନ, ଚିନ୍ତା ସମାହାର, ଅସମ୍ଭବ ଏଠିକି ପାଇବି
ଦୁର୍ଲଭ ସେ ସମଷ୍ଟିକୁ ? ସ୍ଥିତିବାନ ଉପେକ୍ଷା ସତ୍ତ୍ୱେ ବି ବୁଡ଼ ଦେଇ ମୁଁ ଖୋଜିବି
ଏବଂ ଲଭିବି ଯାହା ମିଳେ ନାହିଁ ଏ କକ୍ଷର ଅପେକ୍ଷାର ଅସ୍ୱସ୍ତି ଭିତରେ ।

ଦୁଇ କାନେ ହାତ ଦେଇ ବ୍ୟସ୍ତ ହୁଅ, କ୍ଳାନ୍ତ ହୋଇପଡ଼,
ଆତ୍ମରକ୍ଷା ଲାଗି ଦ୍ରୁତେ ଅସ୍ତବ୍ୟସ୍ତେ ଦୂରକୁ ପଳାଅ,
ମାତ୍ର ପରେ ଚାହଁନି କି ଫେରିବାକୁ ପୁନଶ୍ଚ ଏ ବ୍ୟସ୍ତତା ମଝିକୁ,
ଯଦିବା ବୁଝୁଛ ବେଶ୍ ପରିଚିତି, ଆତ୍ମୀୟତା ଏଠି ହାଇମାରେ ।

ଅନେକ ଶୂନ୍ୟତା ତଳେ ଆମେ ଦେଖୁ ଅକସ୍ମାତ ପୂର୍ଣ୍ଣ ଏ ପ୍ରାଣକୁ,
ତେଣୁ ଏ ଗହଳି, ଭିଡ଼, ମୋତେ ଆଜି ନିଜ ପରି ଖୁବ୍ ଭଲ ଲାଗେ ।

## ନଳା

ସେ ବେଶ୍ ବହନ କରେ ନିର୍ବିକାରେ ଅଜସ୍ର ଗ୍ଲାନିକୁ,
ସଞ୍ଚୟ ତା' ଧର୍ମ ନୁହେଁ, ଫିଙ୍ଗିବାରେ କୃତିତ୍ୱ ତାହାର,
କେତେ ପୁଣି ନୂଆ ଆସେ ନୂଆ ରୂପ ନୂଆ ଆକାରରେ,
ସମସ୍ତଙ୍କୁ ଫେଣ୍ଟି ଦେଇ ପ୍ରତ୍ୟେକର ନିଜତ୍ୱ ସେ ଭାଙ୍ଗେ ।

ଆମେ ସବୁ ଚେଷ୍ଟା କରୁ ବିକଳାଙ୍ଗ କରିବାକୁ ତାକୁ,
କଳଙ୍କ ପ୍ରଲେପେ ତା'ରେ କରିବାକୁ ବିଭତ୍ସ, କୁତ୍ସିତ,
ମାତ୍ର ସେ ତ ମୁହୂର୍ତ୍ତକ, ଧ୍ୱଂସ କରି ଆମର ଦର୍ପକୁ,
ସେ ଦେଖାଏ ଆପଣାକୁ ଯାହା ଥିଲା କ୍ଷଣକ ପୂର୍ବରୁ ।

ଆମେ ବେଶ୍ ନାକ ଟେକୁ, ଅଥଚ ତା' ନିଜସ୍ୱ ଆମରି,
ନିଜର ସରମେ ତେଣୁ ଜଳି ମରୁ, ସେ ତ କେବେ ଲଜ୍ଜା ଦିଏ ନାହିଁ,
ଲାଭର ପ୍ରତ୍ୟୟ କାହିଁ ? ସ୍ୱାର୍ଥଗତ ସଂଘର୍ଷ କି ଅଛି ?
ଆମକୁ ସେ ଛୋଟ କରି ନିଜ ଧର୍ମେ ବଡ଼ ହୋଇଯାଏ ।

ମୁଁ ତା'ରେ ପ୍ରଣତି ଦିଏ, ସେ ପ୍ରଣତି ନିଜ ଚୈତନ୍ୟକୁ,
ବ୍ୟସ୍ତ ସୂର୍ଯ୍ୟ ପ୍ରଭାତର ନମସ୍କାର ଗୌରବ ନିଏ କି ? ◻◻

## ହଠାତ୍ ଗୋଡ଼ ଖସିଯିବା ପରେ

ଚମକି ଅନାଇ ଦେଲି ଦୃଶ୍ୟ କେହି ଦେଖି ତ ନାହାନ୍ତି ?
ହୁଏତ ବା ଦେଖିଥିବେ, ସେମାନଙ୍କୁ ମୁଁ ବୋଧେ ଦେଖିନି,
ଭୀଷଣ ସ୍ପନ୍ଦନ ବୁକେ, ମନତଳେ ଅସୀମ ସଂଶୟ,
କେହି ବି ନ ଦେଖି ଥିଲେ ଦେଖିବାକୁ ଆସିବେ ନିଶ୍ଚୟ ।

ତା'ପରେ କି ଉତ୍ତର ମୋ' ? ମିଥ୍ୟା କିଛି କହିବାକୁ ହେବ,
ଅଧିକ ତଦନ୍ତ ପରେ ଧରା ପଡ଼ିଯିବା କିଛି ଅସମ୍ଭବ ନୁହେଁ,
ଆତ୍ମରକ୍ଷା କରିବାର କି ଉପାୟ, କି ଉପାୟ ତେବେ ?
କପାଳେ ସ୍ୱେଦର ସୁଅ, ରକ୍ତ ମୁହଁ, କର୍ଣ୍ଣେ ଝିଲ୍ଲିରବ ।

ଆକସ୍ମିକ ଏ ପତନ, ଜାଣି ଶୁଣି ନୁହେଁ ତ କଦାପି,
ତେବେ ଏ ଲଜ୍ଜାର ଲହୁ ? ତର୍କରେ କି ମନ ମାନେ କେବେ ?
ମୋ ମନକୁ ଦେଖିଲି ମୁଁ ଯେତେ ପାରେ ନିଖାରି ନିଖାରି,
ତଥାପି ସ୍ୱରୂପ ତା'ର ଦେଖି ବି ତ ଦେଖି ହେଲା ନାହିଁ ।

ଲୁଗା ଚିରୁ, ଗୋଡ଼ ଛିଡୁ, କିଛି ଭାଙ୍ଗୁ, ତଥାପି ମୁଁ ପଡ଼ିନି ପଡ଼ିନି,
ପଡ଼ିଲି ମୁଁ କେତେବେଳେ ? ତୁଚ୍ଛା ମିଛ, ଟାଲୁ ଟାଲୁ ଡ଼େଇଁ ମୁଁ ପଡ଼ିଲି । ▫▫

## ପାରିଧି

ରାଜା ଏବେ ବାହାରିଲେ ପାରିଧିକୁ, ଆସ ଆସ ମୃଗୟାକୁ ଯିବା,
ବନସ୍ତେ ମାତିଛି ବାଘ ମହାବଳ ଆତଙ୍କ ସୃଜିଛି,
ଶ୍ୱାପଦ-ସଙ୍କୁଳ ସେଇ ବନସ୍ତରେ ଦିହୁଡ଼ି ଜାଳିବା,
ଏ ଶିକାର ନୁହେଁ ଖାଲି ସମ୍ରାଟର, ତମ ଆମ ଆକାଂକ୍ଷା ଲୁଚିଛି ।

ଆସ ଆମେ ବିରଚିବା ମଞ୍ଚ, ବଣସାରା କରିବା ଘେରାଉ,
ଖେଦିଯିବା କୌଶଳରେ, ଆମ ଇଚ୍ଛା ରାଜାର ବନ୍ଧୁକ,
ସେ ଖାଲି ଚିପିବ ଘୋଡ଼ା, ଲକ୍ଷ୍ୟ ଆମେ ସ୍ଥିର କରିଦେବା,
ବ୍ୟାଘ୍ରର ହେଣ୍ଟାଳ ଲିଭୁ, ଗତିପଥେ ବିରାଟ କଳଙ୍କ ।

ଶିକାରୀ ରାଜାର ଆମେ ଅନୁଚର, ସେ ତ ପୁଣି ଆମରି ହାତର,
ଆମେଇ ତିଆରୁ ବ୍ୟାଘ୍ର, ସେ ତିଆରି ଆମରି ଭିତରୁ,
ତାକୁ ବି ପ୍ରଶ୍ରୟ ଦେଉଁ ନିଃସଙ୍କୋଚେ ଭ୍ରମିବାକୁ ତିମିର ଗହନେ,
ନିଜର ସୃଷ୍ଟିରେ ସିନା ନିଜହାତେ କଳଙ୍କିତ କରୁ ।

ସେ କଳଙ୍କ ଆସ ଆମେ ଲିଭାଇବା ଶ୍ୱାପଦ-ରକ୍ତରେ,
ତା'ର ମୃତ ଦେହ ପରେ ନୃପତିରେ କରାଇ ଆସୀନ
ଗାଇବା ରାଜାର ଜୟ, ସେ ବିଜୟ ଆମ ସଭିଙ୍କର,
ଜଣକେ ଗୌରବ ତଳେ ସହସ୍ରର ଅଜସ୍ର କଲ୍ୟାଣ ।

ଜଣଙ୍କ ଆଦେଶ ପଛେ ଗଣଙ୍କର ମିଳିତ ନିର୍ଦ୍ଦେଶ,
ରାଜା ଏବେ ବାହାରିଲେ ପାରିଧିକୁ, ଡ଼େରି ନାହିଁ, ବେଗି ବେଗି ଆସ । ▫▫

## କ୍ଷୁଧା

କୌଣସି ଏକ ଅତି ବିଶୃଙ୍ଖଳ ଭୋଜିସଭା (ବୁଫେ) ମଧ୍ୟେ
ହଠାତ୍ ମୁଁ ଆବିଷ୍କାର କଲି ମଣିଷର ଅନାହାରୀ ରୂପ,
କେଡ଼େ କ୍ଷୁଧାତୁର ସତେ, ଲୋଭନୀୟ ଖାଦ୍ୟର ଦର୍ଶନେ
କେତେଦୂର ହିଂସ୍ର ହୋଇ ଉଠେ, ଭୁଲି ହାୟ ନିଜର ସ୍ୱରୂପ ।

ଆହାରେ ଉଦର ଭରା, ତଥାପି ସେ ଆହାର ଖୋଜୁଛି,
ନିରନ୍ନର ଆତୁରତା, ନୟନରେ 'ହା ଅନ୍ନର' ଛାୟା,
ମୁଷ୍ଟିଯୁଦ୍ଧ ଦ୍ୱନ୍ଦ୍ୱ ମଧ୍ୟେ ସେ ଲୋଡ଼ୁଛି ଆକଣ୍ଠ ଭୋଜନ,
ଚର୍ବ୍ୟ, ଚୋଷ୍ୟ, ଲେହ୍ୟର ଏ ମୁକ୍ତ ଛନ୍ଦେ ଇନ୍ଦ୍ରଜାଲ ମାୟା ।

ବାଧା ବା ବନ୍ଧନ ନାହିଁ, ସ୍ୱାଧୀନତା ମାନବର ଚିର ଅଧିକାର,
କିନ୍ତୁ ଯଦି ସ୍ୱାଧୀନତା ଅର୍ଥ ହୁଏ ଉତ୍‌ଶୃଙ୍ଖଳ ମନୋବୃତ୍ତି ସୃଷ୍ଟି
ଚିତ୍ତର ବିକୃତି ସାଥେ, କି ଲାଭ ସେ ମୁକ୍ତିର ସଂଗୀତେ,
ଅନ୍ତରରେ ସଙ୍କୀର୍ଣ୍ଣତା, ଭଦ୍ର ଆବରଣ ତଳୁ ଲୁବ୍‌ଧ ନୀଚ ଦୃଷ୍ଟି ।

ପଶୁର ପ୍ରାବଲ୍ୟ ସତ୍ୟ, ଦେବତାର ସୌଜନ୍ୟ ସେ ଅଭିନୟ ମାତ୍ର,
ଆସୁରିକ ପ୍ରବୃତ୍ତିର ଧ୍ୱଂସ କେବେ କେଉଁଯୁଗେ ନାହିଁ,
ବସ୍ତୁ ନିରୀକ୍ଷଣେ ରୋଷେ ଜାଗିଉଠେ କ୍ଷୁଧାର କେଶରୀ,
ସଂଯମର କ୍ରମଶଃ ପ୍ରୟାସ ଚେତନାକୁ ଲୁପ୍ତ କରିବା ହିଁ ।

ଚେତନା କି ଲୁପ୍ତ ହୁଏ, କ୍ଷୁଧା କେବେ ମୃତ୍ୟୁ ଲଭିପାରେ ?
ଗରଳ ଅମୃତ ପିଇ ଯୁଗେ ଯୁଗେ ସେ ଚିର ଅମର,
ଅଜସ୍ର କ୍ଷୁଧାର କ୍ରୂର ଆବର୍ତ୍ତନେ ମଣିଷ ଘୂରୁଛି,
ସେ ଦେଖେ ସମଗ୍ର ବିଶ୍ୱ ମହାକ୍ଷୁଧାରୂପୀ ଚତୁର୍ଦ୍ଦିଗେ ଘୂରେ ନିରନ୍ତର ।

ଲୋକଲଜ୍ଜା, ଅପମାନ, ଭୟ ସଂକୋଚର ଛଦ୍ମ ଆବରଣ ତଳେ
କ୍ଷୁଧା କେବେ କ୍ଷୟ ହୁଏ ? ବଡ଼ବାଗ୍ନି ଶିଖା ସମ ଲେଲିହାନ ଜଳେ । □□

# ଭୁଲ୍

ବେଳେବେଳେ ପଥ ଭୁଲୁ ଆମ୍ଭେମାନେ ଜୀବନ ଯାତ୍ରାରେ
ସିଧା ରାସ୍ତା ଛୁଡ଼ି, ମାତ୍ର ଏ ଛୁଡ଼ିବା କେତେ ଶ୍ରେୟସ୍କର,
କେତେ ବେଶୀ ଲାଭପ୍ରଦ, ଅନୁଭବୀ ବିନା ଆନ ବୁଝିବ ବା କିଏ ?
ସମସ୍ତେ କହିବେ 'ଆହା ଜୀବନରେ ମସ୍ତବଡ଼ ଭୁଲ୍ ହୋଇଗଲା' ।

ଭୁଲ୍‌କୁ ଯେତିକି ଜାଣେ ଆଲୋକେ ବା ଅନ୍ଧାରେ ତା' ସ୍ଥିତି,
ନିଃସଂଶୟେ ପ୍ରଶସ୍ତି ତା' ଗାଇବାକୁ ଇଚ୍ଛା ହୁଏ ଭାରି,
ବହୁ ଭୁଲ୍ ପରେ ଏହି ସଂଶୋଧିତ ସମାଜକୁ ଆମେ ତ ପାଇଛୁ,
ଅନାବିଷ୍କୃତ ବି ରହେ ବହୁଭ୍ରାନ୍ତି, ନିର୍ଭୁଲ ବୋଲି ଯା' ଆମେ ଆଜିଯାଏ
ଗ୍ରହଣ କରିଛୁ,
ଆବିଷ୍କାର ପରେ ଯା'ର ବର୍ତ୍ତମାନଠାରୁ ହେବ ସ୍ଥିତି ଆମ ଶୁଭ୍ର, ସ୍ୱଚ୍ଛତର ।

ଭୁଲ୍‌ର ଏ ସବୁ ସିନା ପର କଥା ସଂଶୋଧିତ ଆକାର ପ୍ରକାର,
ନିଛକ ଭୁଲ୍‌ଟା ସତେ କେତେ ବେଶୀ ଉତ୍ତେଜନାପ୍ରଦ,
ସ୍ଥାୟିତ୍ୱ ଅବଶ୍ୟ ତା'ର ଦୀର୍ଘ ବା ସଂକ୍ଷିପ୍ତ ଶୁଦ୍ଧ ବିଚାରସାପେକ୍ଷ,
ମାତ୍ର ସେଇ ମୁହୂର୍ତ୍ତର ସ୍ପନ୍ଦନ କି ଅନିର୍ବଚନୀୟ ।

ଏ ସତ୍ୟରେ ବୁଝିବାକୁ ଗୋଟେ ଅଧେ ଦୃଷ୍ଟାନ୍ତ ମୁଁ ଦିଏ,
ପିଲାଦିନେ ଜହ୍ନମାମୁ ପରବର୍ତ୍ତୀ ବୟସରେ ହାସ୍ୟାସ୍ପଦ କଥା,
କିନ୍ତୁ ସେ ସ୍ମୃତିକୁ ଥରେ ଘାଣ୍ଟି ଦେଖ କେତେ ବେଶୀ ଆନନ୍ଦ ନ ଥିଲା,
ଜହ୍ନକୁ ଚିହ୍ନିବା ପରେ ଉଲ୍ଲାସ ସେ ଆତ୍ମହତ୍ୟା କଲା ।

ଏଇ ନିଅ, କୈଶୋରର କେଉଁ ଏକ ଚପଳ ମୁହୂର୍ତ୍ତ,
ହୃଦ ବିନିମୟ ଛଳେ ଅଙ୍ଗେ ଅଙ୍ଗେ ଅପୂର୍ବ ଶୀତ୍କାର,
କେତେ ବେଶୀ ଉତ୍ତେଜକ, ପ୍ରତି ସ୍ନାୟୁ ଅନ୍ତରାଳେ ବୀଣାର ଝଙ୍କୃତି,
ଥଣ୍ଡା ରକ୍ତ ବୟସରେ ସେ ସବୁ ତ ଲଜ୍ଜାପ୍ରଦ ସ୍ମୃତି ।

ଅନେକ ଭୁଲ୍‌ର ପରେ ଅବିଚାରୁ ପୁନର୍ବାର ଭୁଲ୍ କରାଯାଏ,
'ରାଧିକା' ସେ ଦିନ ଯେବେ ମାଆ ପାଖେ ଅକପଟେ ଫିଟାଇ କହିଲା

ଟିଉଟର ଶ୍ୟାମକୁ ସେ ଭଲପାଏ, ସାଥେ ତା'ର ପରିଣୟ ପ୍ରୟୋଜନ ତେଣୁ
ସେ ଉକ୍ତିରେ କି ଭୀଷଣ ଝଡ଼ ପରିବାରେ, ଅସମ୍ଭବ, ଅସ୍ୱୀକୃତି, ଯେଣୁ ।
ଜାତିଗତ ବ୍ୟବଧାନ, କାନ୍ଦିକାଟି ଦୁହିତା ବିଚାରୀ
କେତେ ନ କରିଲା ଅଳି, ଅଳି ତା'ର କିଏ ବା ଶୁଣିଲା ?
କେହି କି ଚିନ୍ତିଲା ଥରେ ଅନୁନୟ, ବ୍ୟାକୁଳତା ଏତେ ତା'ର କାହିଁକି କାହିଁକି ?
ନଦୀବନ୍ଧେ ଅକସ୍ମାତ ପ୍ରତ୍ୟୁଷରୁ ଦିନେ ଦେଖାଗଲା
ଶ୍ୟାମ, ରାଧା ମୃତ ଦେହ ଆଲିଙ୍ଗନେ, କ୍ଷୁଦ୍ର ଲିପି ଲୁହର କବିତା,
'ଜୀବନେ ଯା' ଅସମ୍ଭବ, ମରଣେ ତା' ଅନାୟାସେ ସମ୍ଭବ କି ନୁହେଁ ?
ଶବ ବ୍ୟବଚ୍ଛେଦ ପରେ ଜଣାଗଲା ହତଭାଗୀ ଅନ୍ତଃସତ୍ତ୍ୱା ଥିଲା ।

ଭୁଲ୍ ତିନି କିସମର ମୋ' ବିଚାରେ ଇଚ୍ଛାକୃତ, ଅଜ୍ଞାତସାରରେ,
ପରିସ୍ଥିତି ପୀଡ଼ନରେ ମର୍ମଦାହ ଅନିଚ୍ଛା ସତ୍ତ୍ୱେ ବି,
ଏ ସବୁ ଭ୍ରମରୁ କିନ୍ତୁ ବହୁ କିଛି ଶିଖିବାର ଅଛି,
ନିଜକୁ ବି ମାପି ହୁଏ, ଅନୁତାପେ ଶୁଦ୍ଧ କରି ହୁଏ,
ଚୈତନ୍ୟକୁ ଦୃଷ୍ଟି ଲମ୍ବେ ସତର୍କତା ଅବଲମ୍ବନରେ ।

ସେ ଏକ ଗୋଷ୍ଠୀର ଧର୍ମ ଭୁଲ୍‌ଟା ବିଳାସ ଯା'ର ସ୍ୱାର୍ଥସିଦ୍ଧି ଲାଗି,
ଚୈତନ୍ୟ ଉଦୟ ଅବା ଅନୁତାପେ ଦଗ୍ଧ ଶୁଦ୍ଧ ହେବା
ଆକାଶର ଫୁଲ ଖାଲି, କିନ୍ତୁ ପ୍ରତିକ୍ରିୟାର ତ ପ୍ରତିକ୍ରିୟା ଅଛି,
ସେମାନେ ବୁଝନ୍ତି ତେବେ ଧକ୍‌କା ମାରି ନିରୁଦ୍‌ବେଗେ ଆଗେଇଲାବେଳେ
ଅକସ୍ମାତ ବିପର୍ଯ୍ୟୟ ପଥ ରୋକେ, ଏତେ ବେଶୀ ସତର୍କତା ଦୂରଦୃଷ୍ଟି ସତ୍ତ୍ୱେ ।

ଅଜ୍ଞାତସାରରେ ବହୁ ଭୁଲ୍ କିନ୍ତୁ ଆଶୀର୍ବାଦ ହୁଏ,
'ବ୍ରହ୍ମପୁର' ଟୁର୍ ଅଛି, ଟ୍ରେନ୍‌ରେ ବସି ରାମବାବୁ ନିଜ ଭ୍ରମ କଲେ ଆବିଷ୍କାର
ଜରୁରୀ ଫାଇଲ୍ ଯେତେ ଘରେ ସବୁ ଛାଡ଼ି ଆସିଛନ୍ତି ।
ବାହୁଡ଼ିଲେ ଗୃହେ, ପରେ ଯାତ୍ରା ପୁଣି, ଘରେ କିନ୍ତୁ ପହଞ୍ଚି ହଠାତ୍
ଆତଙ୍କେ ସେ ସ୍ତବ୍ଧ ହେଲେ, ପତ୍ନୀ ପଡ଼ି ଦେତାଲାର ପାହାଚ ଉପରୁ
ଅଚେତନ, ଅନ୍ୟ କେହି ସେତେବେଳେ ଘରେ ବି ନାହାନ୍ତି ।
ବିଚାରେ ସେ କେନ୍ଦ୍ରୀଭୂତ ଉଚିତ୍ କି ହେଲା ଏତେ 'ଭୁଲ୍'ଟାକୁ ଭର୍ତ୍ସନା କରିବା ।

ଆର୍ଥିକ ଦୁର୍ଗତି ଆଉ ପରିସ୍ଥିତି ବାଧ କରେ, ବହୁ ଭୁଲ୍ ଅସଂଗତି
ଅସହାୟେ ମଥାପୋତି ନୀରବରେ ସହ୍ୟ କରିବାକୁ ।
ଆମ ସାହି 'ପ୍ରିୟନାଥ' କେତେ ବେଶୀ ଗରିବ ମୁଁ ଜାଣେ,
ପିତୃଭକ୍ତ ଭାରି, ବୃଦ୍ଧ ଜନକଙ୍କ ଅନ୍ତିମ କାମନା
'ମୋକ୍ଷକାମୀ, ତ୍ରିବେଣୀରେ ଆପଣାର ଅସ୍ଥି ବିସର୍ଜନ',
ଚରମ ଦାରିଦ୍ର୍ୟ ସତ୍ତ୍ୱେ କଷ୍ଟେ ସଞ୍ଚି ଅର୍ଥ କିଛି କିଛି
ଦିନେ ଯାତ୍ରା ଆରମ୍ଭିଲା ହାତେ ଧରି ନିର୍ଦ୍ଦିଷ୍ଟ ପୁଞ୍ଜିକୁ ।
ପ୍ରୟାଗେ ପହଞ୍ଚି କିନ୍ତୁ ହତଭମ୍ବ, ବିସ୍ମୟେ ଅବାକ୍,
ଅସ୍ଥି ସେ ଆସିଛି ଛାଡ଼ି, ହାୟ, ହାୟ, ଉପାୟ କି ଏବେ ?
ଏ ଭୁଲ୍‌ର ଏକମାତ୍ର ପ୍ରତିକାର ଲେଉଟି ଘରକୁ
ଅସ୍ଥି ନେଇ ପୁନଶ୍ଚ ଫେରିବା, ଚିନ୍ତା ତା'ର ପଥଭ୍ରଷ୍ଟ ହୁଏ ।
ବିବ୍ରତେ ସାନ୍ତ୍ୱନା ଦେଲେ ପୁରୋହିତ, "ବିସର୍ଜନ କ୍ରିୟା
ମନ୍ତ୍ର ଉଚ୍ଚାରଣେ ହେଉ ଶେଷ, ପରେ ଗୃହେ ଫେରି ଯେ କୌଣସି
ନଦୀ ଜଳେ ଅସ୍ଥି ବିସର୍ଜନ ଦେଲେ ଆଉ କିଛି ତ୍ରୁଟି ରହିବନି ।
ଆତୁରେ ନିୟମୋ ନାସ୍ତି ଶାସ୍ତ୍ର ବାକ୍ୟ ସଂଗତ ଏ କ୍ଷେତ୍ରେ ।"
ପ୍ରିୟନାଥ ମାନି ନେଲା ବିନା ପ୍ରତିବାଦେ ସେଇ ବିକଳ୍ପ ପନ୍ଥାକୁ,
ଏ ସ୍ୱୀକୃତି ଆଞ୍ଚ ଆଣେ ପିତୃଭକ୍ତି ଐକାନ୍ତିକତାରେ ?
ଭୁଲ୍‌ର ଶୋଧନ କାହିଁ ? ଭୁଲ୍ ଲାଗି ଭୁଲ୍‌ର ଆବୃତ୍ତି ।

ପୃଥିବୀର ଭୁଲ୍ ଯେତେ, ରଙ୍ଗ ଯେତେ, ଯେତେ ଆଉ ବୈଚିତ୍ର୍ୟ ତାହାର
ବିଶ୍ଳେଷଣ କରି କରି ଯେତେ ବେଶୀ ଦେଖିବା ନିଖାରି
ସେତିକି ବିସ୍ମିତ ହେବା, ସୀମା ନାହିଁ ଆଦି ଅନ୍ତ ନାହିଁ
ବିସ୍ତୃତ ଆକାଶ ସମ, ଅନ୍ତରାଳେ ଆଶ୍ଚର୍ଯ୍ୟ ମନର
ସ୍ଥିତି ମାତ୍ର, ବ୍ୟୋମ ଚିତ୍ର ଭିନ୍ନ ଭିନ୍ନ ସୂର୍ଯ୍ୟର ରଙ୍ଗରେ
ମନର ବୈଚିତ୍ର୍ୟେ ତଥା ଭୁଲ୍‌ମାନ ବିଚିତ୍ର ବିଚିତ୍ର ।

ସାଗରର ଢେଉ କ'ଣ ଗଣି ହୁଏ ? ଗଣୁ ଗଣୁ ତରଙ୍ଗମାନଙ୍କୁ
ସମୁଦ୍ରକୁ ଚିହ୍ନି ହୁଏ, ଏ ଚିହ୍ନିବା ଶ୍ରେୟସ୍କର ଯେଣୁ
ଲୁଣି ପାଣି, ରତ୍ନରାଜି ସବୁକିଛି ଜୀବନର ପ୍ରୟୋଜନେ ଲାଗେ । □□

## ସ୍ୱରୂପ

ସେ ଶୋଇଛି ନିଃସହାୟେ, ଅପଲକ ଆଖି ମେଲି ବଳାତ୍କାର, ମୃତ୍ୟୁର ଆଶ୍ଳେଷେ
ନିର୍ମମ ମୃତ୍ୟୁର ଛଟା, ଛିନ୍ନଗଳା ରକ୍ତାପ୍ଲୁତ, ନିଷ୍ପଳ ତା' ଦେହ ଚାରିପାଖେ
ଲୋଭାତୁର ଦୃଷ୍ଟିର ବିହୁଡ଼ି, କେବଳ କି କ୍ଷୁଧା ଲାଗି ହିଂସ୍ର ଏ ତାଣ୍ଡବ ?
ପୈଶାଚିକ ଉଲ୍ଲାସର ସମାରୋହ ଅରଣ୍ୟର ମଣିଷକୁ ସ୍ମରଣରେ ଆଣେ ।

ମୁଁ ତେଣୁ ଦୃଷ୍ଟିକୁ ମୋର କରେ ଅବିଶ୍ୱାସ, ସମ୍ମୁଖେ ମୋ ପ୍ରସାରିତ ନଗରର
ବିସ୍ତୃତ ସୁଷମା
ସଭ୍ୟତାର ଐଶ୍ୱର୍ଯ୍ୟରେ ପରିପୁଷ୍ଟ ଦିଗେ ଦିଗେ ଇନ୍ଦ୍ରଧନୁ ଶୋଭା
ସବୁ କି ଅଳୀକ ତେବେ ? ମନେ ହୁଏ ମୁଁ ରହିଛି ନୀରନ୍ଧ୍ର କାନ୍ତାରେ
ଅନ୍ଧ ଅନ୍ଧକାର ଆଉ ପାଶବିକତାର ଯହିଁ ନିଷ୍ଠୁର ନିଃଶ୍ୱାସ ।

ହତ୍ୟାର ଉଦ୍ଦେଶ୍ୟେ ତା'ରେ ଅଣା ହୋଇଥିବ ଯେବେ ମୃତ୍ୟୁ ପୀଠେ
ମାଂସର ଲୋଭରେ
ନିରୀହ ସେ ତେବେ କ'ଣ ବୁଝି ପାରିଥିବ ଆତ୍ମରକ୍ଷା କରିବାର ପ୍ରୟାସ ସେ
କରିବା ପୂର୍ବରୁ,
ଛଟପଟ ଦେହ ତା'ର ବିକଟ ହିଂସ୍ରତା ପାଖେ ଦିଶିଥିବ ଦୟନୀୟ କେଡ଼େ ।

ବଞ୍ଚିଥିଲେ ବିଚାରା ସେ ଦେଖୁଥା'ନ୍ତା ପୃଥିବୀର ଆଲୋକକୁ ଏବେ ଆମେ ଠିକ୍
ଦେଖୁଛୁ ଯେପରି,
ସେ ମୁହୂର୍ତ୍ତ ତା'ପାଇଁକି ଅତିକ୍ରାନ୍ତ କିନ୍ତୁ, ଶୋଇଛି ସେ ନୀରବ ନିଦରେ,
ଦେହୁ ତା'ର ମାଂସର ସଂଗ୍ରହ ଲାଗି ଏଇ ଯେଉଁ ପ୍ରସ୍ତୁତି ଚାଲିଛି
ନିଦ୍ରିତ ସେ ବୁଝୁନି ତା', ଜୀବନର ଶେଷ ଲୁହଧାର ତା' ଆଖିରୁ ଏବେ ବି
ଶୁଖିନି ।

ଭଲ ହେଲା, ଛଦ୍ମବେଶୀ ମଣିଷର ଛଳନା ଓ ହିଂସ୍ରତାକୁ ମାପିବାକୁ ବେଳ ସେ
ପାଇନି ।□□

* କଟକ ନଗରର ଏକ ଜନବସତି ଅଞ୍ଚଳରେ ସଦ୍ୟହତ୍ୟା କରାଯାଇଥିବା ଏକ ଛାତ୍ରର କରୁଣ ମର୍ମନ୍ତୁଦ ମୃତ୍ୟୁ ସଂଦର୍ଶନରେ ।

# ଗୋଟିଏ ଆତ୍ମହତ୍ୟା ଓ କେତୋଟି ଆଲୋଡ଼ନ

ଦ୍ରୁତ ଟ୍ରେନ ସ୍ତବ୍ଧ ହଠାତ୍, କିଏ ଜଣେ ଆତ୍ମହତ୍ୟା କଲା,
ରହସ୍ୟ ପ୍ରସରେ କ୍ରମେ, "ଭଲ ପାଇ ଅଶ୍ରୁ ସେ ଲଭିଛି,
ପରିଣୟ ସମ୍ଭବ ନ ହେଲା ଉଭୟଙ୍କ ମିନତି ସତ୍ତ୍ୱେ ବି,
ଅଜସ୍ର ବିରୋଧ, ତେଣୁ ଏ ମୀମାଂସା ତା'ର" ବୁସ୍ ସାର୍ଟ ପକେଟ୍‌ରୁ ଆବିଷ୍କୃତ
କରୁଣ ଏ ଲିପି ।

ମୃତ ଦେହ ଦେଖିବାରେ ଜୀବିତର ଏତେ କୌତୂହଳ,
ବେଶ୍ ତା' କୌତୁକପ୍ରଦ, ମନ ତଳେ ଅଜସ୍ର ସ୍ପନ୍ଦନ,
ସେ ମୁକୁରେ ଆତଙ୍କିତ ମନ ନେଇ ଆପଣାକୁ ନିରେଖି ଦେଖିବା,
ତା'ପରେ ସାନ୍ତ୍ୱନା ଏଇ ବିପର୍ଯ୍ୟୟ ନିଜ ଦେହେ ସମ୍ଭବ କି କେବେ ?

ମୃତ୍ୟୁ କେବେ ନୂଆ ନୁହେଁ, ଆତ୍ମହତ୍ୟା ଦୁର୍ଘଟଣା ତା'ବି ପୁରାତନ,
ତଥାପି ନୂତନ ଚିର ପୁରାତନ ସୂର୍ଯ୍ୟୋଦୟ ଭଳି,
ପ୍ରଶ୍ନୋତ୍ତର, ସମ ଦୁଃଖ, ସାନ୍ତ୍ୱନା ଓ ବହୁକିଛି ଫେଣ୍ଟି ହେବା ଫଳେ
ବୈଚିତ୍ର୍ୟର ସୃଷ୍ଟି ବେଶ୍, ପ୍ରତିକ୍ରିୟା ଅଜସ୍ର ମନର,

"ପୃଥ୍ୱୀରାଜ ପ୍ରୟୋଜନ ଭୀରୁ କେବେ ପ୍ରେମ କରିପାରେ ?
ଦେହର ବିଚ୍ଛେଦ ହେଲା, ପ୍ରେମ କିନ୍ତୁ ଅକ୍ଷୟ ରହିଚି,
ନିଜର ନିଷ୍ଠାରେ ଦ୍ୱିଧା, ତେଣୁ ଏଇ ଘୃଣ୍ୟ ପରିଣତି,
ନିର୍ବୋଧର ଚିନ୍ତାଧାରା ଏ ମୃତ୍ୟୁରେ ପ୍ରେମ ବୋଧେ ଚରିତାର୍ଥ ହେଲା ।

ଏ ସୁନ୍ଦର ପୃଥିବୀକୁ ପ୍ରତ୍ୟାଖ୍ୟାନ କରିପାରେ କେହି ?
ମୋ ସ୍ନେହଠାରୁ କ'ଣ ନାରୀ ପ୍ରେମ ସତେ ମହତ୍ତର ?
ଆତ୍ମହତ୍ୟା ମହାପାପ, ନିରନ୍ତେ କ୍ରନ୍ଦନ ଆହା ଆମୋକ୍ଷ ଆତ୍ମାର ।"
ବକ୍ରୋକ୍ତି ବିକୃତ କଣ୍ଠେ " 'ପଟାସିୟମ୍‌ସାଇନାଇଡ୍' କିନ୍ତୁ
ଆଶୁଫଳପ୍ରଦ, ତେଣୁ ଏ ଯୁଗରେ ଆତ୍ମହତ୍ୟା କରିବାର ଏ ପ୍ରଣାଳୀ ଖୁବ୍
ଲଜ୍ଜାକର ।"

ସହାନୁଭୂତି ବା ଯହିଁ ଶ୍ଳେଷ ମିଶା, "ନାୟିକାରେ ଦାରୁଣ ଆଘାତ,
ଅଶ୍ରୁ, ଶୋକ ସବୁ କିନ୍ତୁ ମୁହୂର୍ତ୍ତକ, କେତେଦିନ ମିଥ୍ୟା ଭାବାବେଗ ?
ନୂତନ ତଟିନୀ ସ୍ରୋତେ ଚାହୁଁ ଚାହୁଁ ଦ୍ରୁତେ ଭାସିଯିବା
ଅତୀତ ନିଷ୍ପ୍ରଭ କ୍ରମେ, ସ୍ମୃତି ଧୀରେ ବିସ୍ମୃତିରେ ଲୀନ ।"

କଣ୍ଠେ କା' କ୍ଷୋଭର କ୍ଷୁର, "ଏଥିପାଇଁ ପିତାମାତା ମଣିଷ କଲେ କି ?
ଏତେ ଅକୃତଜ୍ଞ, ଆତ୍ମକେନ୍ଦ୍ରିକ କି ହେବା ଯୁଗ ସଭ୍ୟତାର ରୀତି ?
ବୃନ୍ତଚ୍ୟୁତ ପୁଷ୍ପ କେବେ ଭୁଲିପାରେ ତରୁର ମାହାତ୍ମ୍ୟ,
ମଣିଷର ପକ୍ଷେ କିନ୍ତୁ ସମ୍ଭବ ତା' ଯେହେତୁ ସେ ଚୈତନ୍ୟେ ଜାଗ୍ରତ ।"

ଉପହାସେ ତିକ୍ତ ଉକ୍ତି, "କେଦାର ସେ ଗୌରୀର ବିରହୀ,
ପ୍ରିୟର ମୃତ୍ୟୁରେ ସଖି ହସି ହସି ଆତ୍ମହତ୍ୟା କଲା
ମିଳନର ମହୋତ୍ସବେ, 'ଏକାମ୍ର'ର ବାୟୁରେ କାରୁଣ୍ୟ,
ସେ ଭାଗ୍ୟ ସମ୍ଭବ ସତେ ? ହତଭାଗ୍ୟ, ଶତାବ୍ଦୀ ସଜନୀ
ସ୍ୱସ୍ତିର ନିଶ୍ୱାସ ତେଜି ଭାବିବ ସେ, 'ଖୁବ୍‌ଗୋଟେ ରକ୍ଷା ମିଳିଗଲା
ଭଲ ହେଲା, ଭଲ ହେଲା, ସିନ୍ଦୁକର ଚାବି ହଜିଗଲା ।'

ମନ୍ତବ୍ୟର ଇତି ନାହିଁ, "ଘଡ଼ିକେ ଛୁଟୁଛି ଘୋଡ଼ା, ଏ ସବୁ ତ ମନର ବ୍ୟାପାର,
ଉତ୍ତେଜିତ ମୁହୂର୍ତ୍ତଟା ସମସ୍ତ ଏ ଅନର୍ଥର ମୂଳ
ଅତିକ୍ରମି ଯାଇଥିଲେ, ମରଣ କି ଏତେ ଦ୍ରୁତ ପାରିଥାନ୍ତା ଛୁଇଁ ?
'ଖୁବ୍ ବଞ୍ଚି ଯାଇଥିଲା' ଭବିଷ୍ୟତେ ଅତୀତର ସ୍ମୃତି ମୂଲ୍ୟବାନ ।

ଅର୍ଥ ଓ ଜୀବନ ମଧ୍ୟେ ଅର୍ଥକୁ ଯେ ଉଚ୍ଚସ୍ଥାନ ଦିଏ
ରୂଢ଼ ବାସ୍ତବତା ଯା'ର ସ୍ୱପ୍ନ, ପ୍ରୀତି, କଳ୍ପନାକୁ ଆବୃତ୍ତ କରିଛି
ସେପରି ଶୁଷ୍କ କେ ଜଣେ ବ୍ୟଙ୍ଗହାସେ, "ଆତ୍ମହତ୍ୟା ନୁହେଁ-ସେ ତ ଆତ୍ମରକ୍ଷା
କଲା,
ଏ ଯେଉଁ ଜଘନ୍ୟ ଯୁଗ ତେଲ ଲୁଣ ଗହନ ଭିତରେ
ପ୍ରେମ ହାଇ ମାରିଥାନ୍ତା, ଭଲ ହେଲା ଇନ୍ଦ୍ରଧନୁ ଲୁଚିବା ଆଗରୁ
ଛୁଟି ସେ ପଳାଇଗଲା ପ୍ରୀତିର ପ୍ରତୀତି ରଖି ଅକ୍ଷୟ, ଅବ୍ୟୟ ।"

ଜଣେ କେ ନୀରବେ କିନ୍ତୁ କରେ ଅଶ୍ରୁପାତ, ସେ ଅଶ୍ରୁର ଅର୍ଥ ବିଶ୍ଳେଷଣ
ସେ କେବଳ କରିପାରେ, ବିଚଳିତ ଦୃଶ୍ୟର କାରୁଣ୍ୟେ ?
ଅଥବା ଘଟଣା ସଙ୍ଗେ ସାମ୍ୟ ରଖେ ଅତୀତର କେଉଁ ଏକ ମର୍ମନ୍ତୁଦ ଅଶ୍ରୁଳ ମୁହୂର୍ତ୍ତ
ଅବିସ୍ମରଣୀୟ, ସେ ସକଳ ଯାହା ହେଉ ଏଇ ସବୁ ପଙ୍କର ଊର୍ଦ୍ଧ୍ୱରେ
ପଙ୍କଜ ସେ, ମନ ତଳେ ସ୍ୱାର୍ଥହୀନ ଅକସ୍ମାତ ମମତାର କରୁଣ ମୂର୍ଚ୍ଛନା ।

ନମସ୍ୟ ଶୃଙ୍ଖଳ ଜଣେ ନୀରବରେ ଦ୍ରଷ୍ଟା ଆଉ ଶ୍ରୋତା
ହଠାତ୍ ମୌନତା ତୁଟେ, "ଆତ୍ମହତ୍ୟା ମହାପାପ ? ସେ ପାପର ନିର୍ଣ୍ଣୟ କେ'
କରେ ?
ଦେଖିଛି କେ ତା' ମନର ଅନ୍ତରାଳେ ବେଦନାର ସ୍ୱରୂପ କିପରି ?
କରୁଣ ତା' ଇତିବୃତ୍ତ ଏତେ ଟିକେ ଆମେ କି ଶୁଣିଛୁ ?
କେତେଦୂର ନିର୍ବୋଧ ସେ, କେତେଦୂର ଅବିବେକୀ ପରି କାର୍ଯ୍ୟକଲା
ସେ ହିସାବ ଦେବ କିଏ ? ଦେଇଥିଲେ ଦେଇଥାନ୍ତା ସେ କେବଳ ନିଜେ ।
ଆମ ପରି ଜୀବନକୁ ସେ ବି ଦିନେ ଭଲ ପାଇଥିଲା
ଏ ପାଣି, ପବନ, ମାଟି ତା'ର ମଧ୍ୟ ଆପଣାର ଥିଲେ,
ଖୁବ୍ ଆପଣାର, ତେବେ କେଉଁ କ୍ଷୋଭେ ଏ ସବୁ ସେ ପ୍ରତ୍ୟାଖ୍ୟାନ କଲା ?
ଯା ଲାଗି ବକ୍ରୋକ୍ତି ଏତେ, ସେ ତ ହାୟ ନାହିଁ ଏବେ ଉତ୍ତର ଦେବାକୁ,
ତେଣୁ ତା' ଅବର୍ତ୍ତମାନେ ଏତେ ସବୁ ଛଳେଇ କହିବା
କେତେଦୂର ସଂଗତ ବା ? ନିଜ ଭୁଲ୍ ନିକିତିରେ ରଖି
କେବେକି ତଉଲୁ ଆମେ ? ଅନ୍ୟଲାଗି ଦଣ୍ଡି ହସ୍ତେ କୃତିତ୍ୱ ପ୍ରକାଶ ।

ବଡ଼ ଦୁଃଖେ ଯାଇଛି ସେ, ଆମ ମଧ୍ୟେ ଫେରିବନି ଆଉ,
ତା' ଯିବାରେ ଆମ ସ୍ୱାର୍ଥେ ଏତେ ଟିକେ କ୍ଷତି ତ ହେଲାନି,
ଅଧିକନ୍ତୁ ତା' ନିଶ୍ୱାସ ଆମ ଲାଗି ଛାଡ଼ି ଚାଲିଗଲା
ଭାଗୀଦାର ଥିଲା ବୋଲି । ଏତେ ସବୁ ବୁଝିବା ସତ୍ତ୍ୱେ ବି
ତା' ଦୁଃଖେ ହେବାନି ଦୁଃଖୀ ଥରେ ହେଲେ ବିକୃତିରେ ବିସର୍ଜନ ଦେଇ ?
ବ୍ୟଥିତ ଆତ୍ମାର ଶାନ୍ତି ଉଦ୍ଦେଶ୍ୟରେ ଆସ ତେଣୁ ଅଶ୍ରୁଅର୍ଘ୍ୟ ପ୍ରାର୍ଥନା କରିବା ।"□□

## ପ୍ରତୀକ୍ଷା

ଦି'ଦିନର ଦୁର୍ବିଷହ ତାତି ପରେ ଆକାଶରେ ମେଘର ସଞ୍ଚାର,
ଅଜସ୍ର ସତୃଷ୍ଣ ଆଖି, ପରସ୍ପରେ ବିସ୍ମର ଜିଜ୍ଞାସା,
ବୁକୁ ତଳେ ଅପୂର୍ବ ସ୍ପନ୍ଦନ, ସତେ ଏଇ ବରଷିବ ମେଘ ?

ଏ ମେଘ ବରଷୁ ଅବା ନ ବରଷୁ ଆଜି,
'ଶୀତଳ' ଆସୁ ନ ଆସୁ, ମାତ୍ର ଏହି ମୁହୂର୍ତ୍ତର ତୃପ୍ତି,
ଅଜସ୍ର ଆବେଗ ପ୍ରାଣେ ଅନାଗତ ବୃଷ୍ଟିର ଅପେକ୍ଷା
ଚନ୍ଦନ ଲେପିଛି ପ୍ରାଣେ, ମୁଁ ଚାହୁଁଛି ଏହିପରି ଆମେ
ଆକାଶକୁ ଚାହିଁ ଚାହିଁ, ଶୁଣି ଶୁଣି, ଗୁରୁ ଗୁରୁ ଗମ୍ଭୀର ଗର୍ଜନ,
ଧାରାର ସ୍ୱାଗତ ଲାଗି ମନେ ମନେ ବିରଚି ତୋରଣ
ବସିଥାନ୍ତୁ ଉର୍ଦ୍ଧ୍ୱନେତ୍ରେ, ଆଖିରେ ଆଖିରେ ଆମ ମେଘର ବିସ୍ମୃତି ।

ଶ୍ୟାମ ତ ଆସୁନି କୁଞ୍ଜେ, ଶ୍ରୀମତୀ ଯେ ପଥ ଚାହିଁ ରହେ,
ପରିଣତି ଲୋଡ଼ା ନାହିଁ, ଏ ମେଘ ଏମିତି ରହୁ, ଏଇ ଭଲ, କେତେ କଥା ଆଗକୁ
ଆଗକୁ । ◻◻

## ବେକାରର ମୃତ୍ୟୁ

ଚିକିତ୍ସକ ମତ ବ୍ୟକ୍ତ କଲେ "ସମ୍ଭବତଃ ଆଉ ନୁହେଁ, ଆଜି ଶେଷ ରାତ୍ରି",
ହଠାତ୍ ଆନନ୍ଦ, କିନ୍ତୁ ଅପ୍ରକାଶ୍ୟ, ମୁହେଁ ମୁହେଁ ବିଷାଦ ବୈଚିତ୍ର୍ୟ,
ସ୍ୱଗତେ କହନ୍ତି "ସେବା ଶୁଶ୍ରୂଷାରେ ଦୁର୍ବିଷହ ଜୀବନ ହେଲାଣି,
ଏତେ ସବୁ ସତ୍ତ୍ୱେ କିନ୍ତୁ ପ୍ରୟାସେ ତା' ସବୁ କ୍ଳେଶ ଆପେ ଆପେ
ଭୁଲି ହୋଇଯିବ ।"
ନିଷ୍କର୍ମାର ନିଷ୍କୃତିରେ ପରିବାରେ ଆଶ୍ୱସ୍ତିର ଚରମ ବିସ୍ମୃତି ।

'ସେ କିନ୍ତୁ ଜିଇଁଛି' କାଲ ରାତ୍ରି ଶେଷେ ଜୀବନ ଜାଗିଛି,
ଚିକିତ୍ସକ ହସ ହସ, "ଖୁବ୍ କମ୍ ଏମିତି ବଞ୍ଚନ୍ତି,

ଆଉ ଏବେ ଭୟ ନାହିଁ" ନିଜ ହାତ ଯଶର ପୁଲକ,
"ଧନ୍ୟବାଦ ଧନ୍ୟବାଦ" କୃତଜ୍ଞତା ଜ୍ଞାପନର ଶୁଦ୍ଧ ଅଭିନୟ ।

ଶେଷଶଯ୍ୟା ପରେ ଶୋଇ ସୂର୍ଯ୍ୟସ୍ନାନେ ପୁନର୍ଜନ୍ମ ସ୍ୱପ୍ନ ଯେ ଦେଖୁଛି,
ତା' ଲାଗି ଭ୍ରୂକୁଟୀ କେତେ, ମୃତ୍ୟୁ ସ୍ତବ୍ଧ, ତପ୍ତ ଦୀର୍ଘଶ୍ୱାସ । ▫▫

## ଏ ବି ଏକ ଦୃଶ୍ୟ

ରେଡ଼ିଓ ନିକଟେ ଟେଷ୍ଟ କ୍ରିକେଟ୍‌ର ବିବରଣୀ ଉତ୍କର୍ଣ୍ଣେ ଶୁଣିବା
ସେ ଏକ ବିଚିତ୍ର ଦୃଶ୍ୟ, ମୁହଁ ପରେ ମନ ପ୍ରତିକ୍ରିୟା,
ସର୍ବାଙ୍ଗରେ ଉତ୍ତେଜନା, ଘନ ଘନ ବୁକୁର କ୍ରନ୍ଦନ,
ସ୍ୱପକ୍ଷେ ମନ୍ତ୍ରର ସ୍ତୁତି, ପ୍ରତିପକ୍ଷ ପ୍ରଳୟ ମନାସି,
ଜୟ, ପରାଜୟ ପ୍ରଶ୍ନେ ଶୋଣିତର ତୀବ୍ର ଆଲୋଡ଼ନ,
ସତେବା ଦିଶୁଛି ଦୃଶ୍ୟ, ସମ୍ମୁଖରେ କ୍ରୀଡ଼ାର ପ୍ରାନ୍ତର,
ପ୍ରତିଯୋଗୀ ପ୍ରତ୍ୟେକଙ୍କୁ ନ ଦେଖି ବି ବେଶ୍ ଚିହ୍ନି ହୁଏ,
କ୍ରୀଡ଼ାର ନୈପୁଣ୍ୟ ଅବା ଅସାଫଲ୍ୟ ପ୍ରଶଂସା ବା ବିତୃଷ୍ଣାର ବୃଷ୍ଟି,
ଶ୍ରୋତା ଓ ଦ୍ରଷ୍ଟାର ମଧ୍ୟେ ଆବେଗର ଫରକ ବା କାହିଁ ?

ଆକାଶେ ସୂର୍ଯ୍ୟର ସ୍ଥିତି, ମନ ତଳେ ସୂର୍ଯ୍ୟ ବି ଜଳୁଛି,
କ୍ରମଶଃ ତା' ଗତି ଉର୍ଦ୍ଧ୍ୱେ, ମଧ୍ୟାହ୍ନର ପ୍ରଖରତା ପରେ
ଉତ୍ତାପ କମୁଛି କ୍ରମେ, ଦିବସର କ୍ଳାନ୍ତ ଦୃଷ୍ଟି ସାୟାହ୍ନ ସାଗରେ,
ମାତ୍ର ଏ ମନର ଦୀପ୍ତି ସୂର୍ଯ୍ୟ ସଙ୍ଗେ ସ୍ତିମିତ ହୁଏନା,
ତୀବ୍ରରୁ ତା' ତୀବ୍ରତର, ମନ ତଳେ ମାର୍ତ୍ତଣ୍ଡର ପ୍ରଚଣ୍ଡ ଜ୍ୱଳନ,
ବୁକୁତଳେ ଲିସ୍‌ବନର ଅଦ୍ଭୁତ ଭୂକମ୍ପ ।

ଯେଉଁମାନେ ବୁଝନ୍ତିନି ଏ କ୍ରୀଡ଼ାର କାର୍ତ୍ତିକ ମାହାତ୍ମ୍ୟ
ସେମାନେ ଅବାକ୍ ସର୍ବେ ଏ ଦଳର ଏ ବିକୃତି ଦେଖି,
(ବିକୃତି କହିବା ଠିକ୍ ?), ଆସକ୍ତିରୁ ଯେତେ ଉଦ୍ଦୀପନା,
ମୋହମୁକ୍ତ କିଏ କୁହ ? ସେଥିଲାଗି ଆମ ମଧ୍ୟେ ଭିନ୍ନ ଭିନ୍ନ ନୃତ୍ୟର ବୈଚିତ୍ର୍ୟ ।
ଚାଞ୍ଚଲ୍ୟ ଓ ଉତ୍ତେଜନା ଜୀବନର ଅର୍ଥକୁ ବୁଝାଏ,
ଅନୁପସ୍ଥିତିରେ ଯା'ର ମନ ତଳେ ମରୁର କାରୁଣ୍ୟ ।

ତେଣୁ ଆମ ଏ ବିସ୍ମୟ ତ ନିରର୍ଥକ, ନିରର୍ଥକ ଉପହାସ କରିବା କାହିଁକି
ଏ ଗୋଷ୍ଠୀର ମତ୍ତତାକୁ, ଶୋଣିତରେ ସେମାନଙ୍କ ବିଦ୍ୟୁତ୍‌ର ଅମୃତ ସଞ୍ଚାର
ଜାଗ୍ରତ ବୁଝେ କି କେବେ ନିଦ୍ରିତର ସୁଖସ୍ୱପ୍ନ ପରମ ତୃପ୍ତିକୁ ?
ରେଡ଼ିଓ ନିକଟେ ତେଣୁ ଏ ବ୍ୟସ୍ତତା, ଏକାଗ୍ରତା ଅନୁଧ୍ୟାନ କରିବାର କଥା । ▫▫

## ଦୋଳି

ମୁଁ ଯେବେ ଜାଗ୍ରତ ତେବେ ଜୀବନଟା ମୋ ପାଇଁକି ସତ,
ସ୍ୱପ୍ନ ବି ତ ସତ୍ୟ ଅଟି ମୁଁ ଯେବେ ନିଦ୍ରିତ,
ମନେ ତେଣୁ ଦ୍ୱନ୍ଦ୍ୱ ଜାଗେ ଦୁଇ ମଧ୍ୟେ ସତ୍ୟ କିଏ ତେବେ ?
ଅଥବା ଅଳୀକ ବେନି ଶୂନ୍ୟତାର ଇନ୍ଦ୍ରଜାଲ ଖାଲି ?

ଗଛରୁ ତୋଳିବା ଫୁଲ ଅବା ଫୁଲ ତୋଳିବାର ସ୍ୱପ୍ନ ଦେଖିବାଟା
ଏକ କଥା, ଚାଙ୍ଗୁଡ଼ିର ଗର୍ଭ ଖାଲି, କୁସୁମର ଆହରଣ କାହିଁ ?
ଉଭୟ ଅବସ୍ଥା ଖାଲି ମନେକର, ସଞ୍ଚୟର ପ୍ରହସନ ଏଡ଼ି
ଆତ୍ମରକ୍ଷା କରିବାନି ସ୍ଥିତି ନିଜ ବିଶ୍ଳେଷଣ କରି ?

ଦୋଳି ଖେଳୁ ଖେଳୁ ଆମ ଚେଷ୍ଟା ହେଉ ଲମ୍ଫଦେଇ ପଡ଼ିବା ସେଠାରେ,
ଯେଉଁଠାରୁ ଫେରିବାନି ଆଉ କେବେ ଝୁଲିବାକୁ ବିଚିତ୍ର ଦୋଳାରେ । ▫▫

## ସଂସ୍କରଣ

ଏ ଗହଳି ଅତିକ୍ରମି ମୁଁ ଠିକ୍ ପାରିବି ପହଞ୍ଚି ?
ସହସ୍ର ପ୍ରଶ୍ନର ବାଣ, ପଥ ମଧ୍ୟେ ଅଜସ୍ର ଜିଜ୍ଞାସା,
ଉତ୍ତର ପାରିବି ଦେଇ ନିଜ ମତେ ପ୍ରତିଷ୍ଠିତ ରହି
ଆତ୍ମବିଶ୍ୱାସ ମୋ ରଖି ଶେଷ ଯାଏ ଅକ୍ଷୟ ଅବ୍ୟୟ ?

ଭୟ ହୁଏ, ପଥ ପରେ ଏତେ ନାଚ, ଏତେ ଗୀତ, ଏତେ ପ୍ରହସନ,
ହୁଏତ ମୁଁ ଆପଣାକୁ ଆୟତ୍ତ ନ କରିପାରି ହଜି ଯାଇପାରେ,
ହଜିଯାଇ ସମ୍ଭବତଃ ଦେଖିପାରେ ଆପଣାର ନବ ଆବିଷ୍କାର,
ପୁରାତନ ଚିନ୍ତାପରେ ସଂଶୋଧିତ ନୂତନ ସ୍ୱାକ୍ଷର ।

ସମୁଦ୍ର ଲହଡ଼ିମାନେ ମୋ ଗୀତର ସୁର ଆଉ ଅର୍ଥ ବଦଳାଇ,
ହାତେ ମୋ ଦର୍ପଣ ଦେବେ ପରିଶେଷେ ସାର୍ଥକ ମୋ ନୂଆ ରୂପ
ନିରେଖିବା ପାଇଁ । ☐☐

## ସାନ୍ତ୍ୱନା

ମେଘ ଯେବେ ବୁଢ଼ା ହୁଏ, ବାଳ ତା'ର ପାଚିଯାଏ,
ଅଦୂର ଶୀତରୁ ଦୃଷ୍ଟି ସୃଜୁଥାଏ ତା' ତା ନିମିତ୍ତ ମରଣ ସଙ୍କେତ
ଥପ୍ ଥପ୍ ଲୁହ ଢ଼ାଳି ଆକାଶକୁ ସମ୍ବୋଧି କୁହେ ସେ,
"ସ୍ଥିତି ମୋର ଶେଷ ହେଲା, ଏବେ ବନ୍ଧୁ ବିଦାୟ, ବିଦାୟ ।"

ଆକାଶ କି କହେ ତେବେ ତୁମ ମଧ୍ୟ ଶୁଣିଛ କି କେହି,
ଚୁପ୍‌ଚାପ୍ କାନେ କାନେ, "ନିରର୍ଥକ ଅଶ୍ରୁ କିମ୍ପା ଏତେ ?
ତୁମେ ଯାଅ, ଲୁଚି ଯାଅ, ଏ ଧରଣୀ ଅନୁଭବୁ ବିରହ ତୁମର
ତୁମ ଲାଗି ଲୁହ ଢ଼ାଳୁ, ପରମ ଗୌରବେ ତେବେ ଫେରି ଆସ ତୁମେ
ପୁନର୍ବାର ।

ଯୁଗଟିଏ ଯାଇଥିବ, ତୁମେ ନେବ ଜନ୍ମ ଆଉଥରେ
ଯୌବନର କଳରୋଳେ ଗୁରୁ ଗୁରୁ ଅଶନି ଗର୍ଜନେ,
ମୋର ପଥପରେ ଯେବେ ଆରମ୍ଭିବ ବିଜୟ ଉତ୍ସବ
ତୁମକୁ ଲୋଡ଼ିବ ପୁଣି ଧରିତ୍ରୀର ପ୍ରତି ଲୋମକୂପ ।

ଯେଉଁମାନେ ଚାହୁଁଛନ୍ତି ବର୍ତ୍ତମାନ ତୁମର ବିରତି,
ବିରହ ଜ୍ୱାଳାରେ ଜଳି ସେମାନେ ଲୋଡ଼ିବେ ପୁଣି ତୁମ ଉପସ୍ଥିତି ।" ☐☐

•

## ନିଜକୁ ସମୁଦ୍ର ମନେକରି

ମୁଁ ଗର୍ଜୁଛି ଦିବାରାତ୍ରି ମୋ ଜୀବନ ବ୍ୟର୍ଥତାର ନିଷ୍ଫଳ ଆକ୍ରୋଶେ
ତରଙ୍ଗର ବାହୁତୋଳି, ମୁଁ ଛୁଟୁଛି ପ୍ରତିକ୍ଷଣେ ତୀର ଛୁଇଁ ରହିଯିବା ପାଇଁ,

ରହି ଅବା ପାରୁଛି କେଉଁଠି ? ପୁନର୍ବାର ଆସୁଛି ଲେଉଟି
ଅତୃପ୍ତ ମୁଁ ଆପଣାର ତରଙ୍ଗିତ ଅଶାନ୍ତ ଗର୍ଭକୁ ।

ସ୍ଥଳେ ମୋ ସ୍ଥିତି ନ ପାଇ ଇଚ୍ଛିଲି ମୁଁ ସ୍ପର୍ଶି ଆକାଶରେ
ଶାନ୍ତ ହେବି ଧର୍ମ ତା'ର ଅନୁସରି, ପ୍ରଶାନ୍ତ ତା' ପ୍ରଶସ୍ତ ବୁକୁରେ
ଆଶ୍ରୟ ପାଇବି ଟିକେ, ଆକାଶ ବି ଦିଏ ନାହିଁ ଧରା,
ମୁଁ ରହିଛି ଉର୍ଦ୍ଧ୍ୱେ ଚାହିଁ ଅସମାପ୍ତ ମୋ ହୃଦୟ ଜ୍ୱାଳା ।

ପୂର୍ବାଶାରେ ସୂର୍ଯ୍ୟ ଉଇଁ ପଶ୍ଚିମର ଦିଗନ୍ତରେ କ୍ରମେ ଅସ୍ତ ହୁଏ,
ଜହ୍ନ ବି ଉଦୟ ହୋଇ ଅସ୍ତଯାଏ ସେମାନଙ୍କ କରର ଐଶ୍ୱର୍ଯ୍ୟେ
ମୋ ବୁକୁରେ ସେ କି ଘଟା, କିନ୍ତୁ ହାୟ ସ୍ଥାୟିତ୍ୱ ତା' କାହିଁ.?
ଏ ସବୁ ଉଦୟ, ଅସ୍ତ ମନେହୁଏ ମୋ ଗର୍ଭରୁ ଜାତ ହୋଇ ଲୀନ ହୁଏ ପୁଣି ।

ଯେ ନୁହେଁ ନିଜର ତାକୁ ଅକାରଣେ ଆପଣାର ମନେ କରିବାଟା
ଦୁଃଖର କାରଣ ସିନା, ସେମାନଙ୍କ ଯାତାୟତ ଆପଣା ଇଚ୍ଛାରେ,
ଅଥଚ ନିଜତ୍ୱ ବୃଥା ଆରୋପରେ ଅକାରଣେ ଦୁଃଖର ବିସ୍ତୃତି,
ପ୍ରତିଟି ତୁଣ୍ଡରେ ପୁଣି 'ସେ ତ ତା'ର', ଉକ୍ତିରେ ନିର୍ବିଚାରେ ଅସମ୍ଭବ ଆସ୍ଥା ।

ବିଷ ଓ ଅମୃତ ବେନି ଗର୍ଭେ ମୋର, ମାତ୍ର ମୋର ଏଇ ଯେଉଁ ଉନ୍ମାଦ ଅବସ୍ଥା
ସେ ଲାଗି କେ ଦାୟୀ ? ତୀବ୍ର ଗରଳର ନିୟତ ଉଚ୍ଛ୍ୱାସେ
ମୁଁ ଅଶାନ୍ତ, କ୍ଷୁବ୍ଧ ଚିର, ଅମୃତର ସ୍ଥିତି ଥିବା ସତ୍ତ୍ୱେ
ପ୍ରତିକ୍ରିୟା କାହିଁକି ତା'ର ? ଅମିୟ ରହିଛି ସତ, ମାତ୍ର ତା'ର
ସେ ବିକାଶ ଅଭାବେ ଓ ଗରଳରୁ ଆତ୍ମରକ୍ଷାବିନା ବିକାଶ ତ ନାହିଁ ।
ହାହାକାରୁ ମୁକ୍ତି କି ସମ୍ଭବ ? ସବୁ କିଛି ଜାଣିବା ସତ୍ତ୍ୱେ ବି
ପରିତ୍ରାଣ ପାଏନି ମୁଁ, ମୋର ଏଇ ଉଦ୍ଦଣ୍ଡ ତାଣ୍ଡବେ
ଅଜସ୍ର କଣ୍ଠରେ ପୁଣି ସମର୍ଥନ କରତାଳି ବାରମ୍ବାର ଆହୁରି ଆହୁରି ।

ତାଣ୍ଡବେ ଆନନ୍ଦ ମିଳେ, ଆନନ୍ଦ ବି ଦିଆଯାଇ ପାରେ,
ମାତ୍ର ତାହା କେତେ କ୍ଷଣ ? ଆପଣାର ଭିତର ନିଃସ୍ୱତା
କ୍ଳାନ୍ତ ନେତ୍ରେ ଖୋଜେ ଯେବେ ଆଶ୍ରା ଟିକେ ବିଶ୍ରାମ ପାଇଁକି,
କୋଟି କଣ୍ଠେ ନାସ୍ତି ବାଣୀ, ନୃତ୍ୟ କିନ୍ତୁ ବନ୍ଦ କର ନାହିଁ ।

ତୁମର କ୍ଳାନ୍ତି ଓ ଦୁଃଖ କାହିଁକି କେ ବୁଝିବ ବା କହ ?
ସେମାନେ ଆନନ୍ଦ ପାଇଁ ବିନା କ୍ଳେଶେ ନିୟତ ଉନ୍ମୁଖ,
ତୁମ ଦୁଃଖ ଉପଲବ୍ଧି କରିବାକୁ ସେମାନଙ୍କ ସମୟ ବା କାହିଁ ।
ରତ୍ନାକର ପାପ ଲାଗି ପରିବାର ଅକାରଣ ଦାୟୀ ।

ତେଣୁ ତୁମେ ନିଜ କ୍ଳାନ୍ତି ନିଜେ ବୁଝ, ନିଜ ଦୁଃଖ ବିଶ୍ଳେଷଣ କର,
ଆପଣାର ନିଃସଙ୍ଗତା ଆପଣାର ଭିତରେ ତୁଟାଅ,
କ୍ଳାନ୍ତ କର ପ୍ରସାରିଲେ ଧରିବ କେ', ଶୂନ୍ୟ ହାତ ଫେରିବା ହିଁ ସାର,
ଆପଣାର ଆଶୀର୍ବାଦେ ପରିବ୍ୟାପ୍ତ ଆପଣା ଉଦ୍ଧାର ।

ଅଜସ୍ର ଏ ଜ୍ଞାନ ଆହରଣ, ଉପଦେଶ ବିତରଣ ସତ୍ତ୍ୱେ
ତାଣ୍ଡବ ମୋ ଅବ୍ୟାହତ, ତଥାପି ଏ ଆସ୍ଥା କେବେ ହରାଇ ତ ନାହିଁ
ଅଶାନ୍ତ ମୁଁ ଶାନ୍ତ ହେବି ଦିନେ, ଅଚଞ୍ଚଳ ମୋ ପାଣିର ତଳେ
ସେ କାହାରେ ପ୍ରତିବିମ୍ବ ଶତସୂର୍ଯ୍ୟ ଦୀପ ସମ ଜଳେ ? ◫

## ଅବୋଲକରା

'ଅବୋଲକରା'ରେ କେତେ ନୂଆ ନୂଆ କଥା ଶୁଣାଇବି ?
ପ୍ରତିକ୍ଷଣେ କୌତୂହଳ, ନିତି ନିତି ଅଦ୍ଭୁତ ଜିଜ୍ଞାସା,
କିନ୍ତୁ ମୋ ବିରକ୍ତ ହେବା ଅଥବା ତା' ପ୍ରଶ୍ନମାନ ଅବଜ୍ଞା କରିବା-
ଅର୍ଥ ତା' ଅବାଧତାରେ ଜାଣି ଜାଣି ଉସ୍‌କେଇ ଦେବା,
ପରିଣତି 'ଅସହଯୋଗ'ର ନିଷ୍ପେ ପ୍ରକାଶ୍ୟ ଧମକ ।
ସେ ଥରେ ରୁଷିଲାମାନେ ଅବୁଝାକୁ ବୁଝାଇବ କିଏ ?
ଲେଉଟି ପଳାଇଯିବ, ପଛେ ତା'ର ଧାଇଁବା ହିଁ ସାର,
ଆସିବା ସ୍କୁଲରୁ ଫେର୍ ଖୋସାମତ୍ ହାତ, ଓଠ ଧରି,
କ୍ଷଣିକର ଭୁଲ୍ ଲାଗି ଗୋଦରାର କୋଡ଼ିବା, ମାଡ଼ିବା ।

ତେଣୁ ମୁଁ କରିଛି ସ୍ଥିର ଯେତେ ଯେତେ ପ୍ରଶ୍ନ କରୁ ସିଏ
ଅର୍ଥପୂର୍ଣ୍ଣ, ଅର୍ଥହୀନ, ଧୈର୍ଯ୍ୟ ମୋର ଖୁବ୍ ପ୍ରୟୋଜନ,
ସେ ବେଶ୍ ବୁଝିବା ଭଳି ଉତ୍ତରରେ ସାକୁଲାଇ ତା'ରେ
ପିଠି ତା' ଆଉଁଶି କ୍ରମେ ନିରଙ୍କୁଶ ଆଗକୁ ବଢ଼ିବି ।

ମୁଁ ଭାବୁଛି ଏ ପ୍ରହସନ ଏହିପରି ଅବ୍ୟାହତ ଥିବ ?

କୌତୂହଳ କ'ଣ ତା'ର ଚିରକାଳ ଏହିପରି ଥିବ ଅନିର୍ବାଣ ?
ଏମିତି ଅବୁଝାଟାରେ ବୁଝାଇବ ନିତି ନିତି କିଏ ?
ତିମିରିର ଧର୍ମ ହେଲା ଅନ୍ଧକାର, ଅପରିବର୍ତ୍ତିତ,
ସେ କେବେ ଆଲୁଅ ହେବ ? ଆଲୋକ ତା' ନିଜର ଧର୍ମରେ
ଓଢ଼ଣା ତା' ତୋଳିଦେବ, ବଧୂ ସେତ ପୁଣି ଟାଣି ନେଇ
ଆପଣାରେ କରିବ ଗୋପନ, ଆଲୋକର ହସ ଓଠ, ବିରକ୍ତି ବା କ୍ଳାନ୍ତି
ତା'ର ନାହିଁ ।

ମୁଁ ତେଣୁ ଭାବୁଛି ମୋର ସେଇ ଧୈର୍ଯ୍ୟ ଏକାନ୍ତ ଭରସା,
ଏ ଏକ ପ୍ରଚଣ୍ଡ ଦ୍ୱନ୍ଦ୍ୱ ଅସମାପ୍ତ, ଇତି ତା'ର କାହିଁ ?
ମାତ୍ର ମୁଁ ତ ଜିତୁଥିବି କୌତୂହଳ ଅବୁଝାର ବାରମ୍ବାର ଚରିତାର୍ଥ କରି,
ଗତି ତା'ର ନିୟନ୍ତ୍ରିତ ମୋ କଥାର ଭେଲିକି ଉପରେ,
(ଯାଦୁକର ଏକ ମାତ୍ର ବୁଝେ ତା'ର ଇନ୍ଦ୍ରଜାଲ କେଡ଼େ ଚମତ୍କାର ।)

ସମାପ୍ତି ମୋ କେଉଁଠାରେ ସେ ରହସ୍ୟ ରହସ୍ୟେ ହିଁ ରହେ,
କେହି କି ପାରିଛି ଭେଦି ? ଅବ୍ୟାହତ ଗତିର ଆନନ୍ଦ,
ଓଠେ ମୋ କାହାଣୀ ପେଡ଼ି ମୁଣ୍ଡେ ବୋଝ ପଛେ ପଛେ ଚାଲିଛି ସେ ବେଶ୍
ହୁଏତ ବୁଣୁଛି ନୂଆ ପ୍ରଶ୍ନଜାଲ, ମୋର ମଧ ସେ ଲାଗି ପ୍ରସ୍ତୁତି । ◻◻

## ଅଦ୍ୱୈତ

ଜୀବନର ପଥପରେ ଯେଉଁମାନେ ଚୁପ୍ ଚାପ୍ ଚାଲିଛନ୍ତି ଏକା
ନିସ୍ତରଙ୍ଗ, ନିର୍ବିକାର, ସେମାନେ କି ନିଃସଙ୍ଗ ସଙ୍ଗୀତେ
ପରିପୂର୍ଣତାର ସ୍ୱାଦ ଅନୁଭବି ନିଶ୍ଚିନ୍ତ ଅଛନ୍ତି ?
ଏକକ ସ୍ୱପ୍ନରେ କେବେ ଏକାଧିକ ଲାଳସାର ନର୍ତ୍ତକୀ ନ ନାଚେ ?

ଏହି ଦେହ, ଏହି ମନ, ସଙ୍ଗ ଖୋଜେ ଖୁବ୍ ସ୍ୱାଭାବିକ,
ସେ ଖୋଜିବା ପାପ ନୁହେଁ, ମିଥ୍ୟା ନୁହେଁ, ଅସଙ୍ଗତ ନୁହେଁ,
ବିସଦୃଶ ଜଣାପଡ଼େ ଯେତେବେଳେ ପ୍ରକୃତିର ଇଚ୍ଛାର ବିରୁଦ୍ଧେ
ବଳଚ୍ଛାରେ କିଛି ଗୋଟେ ଅସମ୍ଭବ କାର୍ଯ୍ୟ କରାହୁଏ ।

ଅଦ୍ୱୈତର ଜୟଗାନେ, ସାମୟିକ ସ୍ପର୍ଦ୍ଧାର ଉଚ୍ଛ୍ୱାସେ
ଅବ୍ୟାହତ ଦ୍ରୁତ ଗତି ଲଭେ ଅକସ୍ମାତ୍ 'ଶିଥିଳ'ର ଶୀତଳ ଚୁମ୍ବନ,
କଳ୍ପନାର କୁଜ୍‌ଝଟିକା ଅନ୍ତରାଳୁ ଜଳି ଉଠେ, ରୂଢ଼ ବାସ୍ତବତା
ଶପଥର ସେତୁ ଭାଙ୍ଗେ ଦୌର୍ବଲ୍ୟର କୁଟିଳ କଟାକ୍ଷେ ।

ତୃଷାରେ କାତର ପ୍ରାଣ ଖୋଜେ ଯେବେ ପାଣି କାହିଁ ପାଣି,
ବାୟୁର ପ୍ରଦାନେ ତାକୁ ଚମତ୍କାର ତୁଷ୍ଟ କରାଯାଏ,
ବାତ୍ୟାହୀନ, ନିସ୍ତରଙ୍ଗ ହ୍ରଦ ବୋଲି ତୁମେ ତା'ର ପ୍ରଶସ୍ତି ଗାଉଛ,
ତଳେଇ କେବେ କି ଥରେ ଦେଖିଛ ସେ ହ୍ରଦେ ରୁଦ୍ର ଝଡ଼ର ତାଣ୍ଡବ ?

ଦୀର୍ଘ ଯାତ୍ରା ପରେ ଦିନେ ସମ୍ମୁଖରେ ଦେଖାଦିଏ ଅସୀମ ଶୂନ୍ୟତା,
ଫେରିବାର ପଥ କିନ୍ତୁ କାହିଁ ? ଅବରୋଧ, ଉପହାସ, ଭ୍ରୂକୁଟୀ, ବିଦ୍ରୂପ,
ଉଚ୍ଛ୍ୱସିତ ଅଶ୍ରୁଚାପି ନତ ମୁଖେ ଚାଲିବା ବ୍ୟତୀତ
କି ଉପାୟ ଅଛି ଆଉ ? ନୀରବରେ ଚାଲିବାକୁ ପଡ଼େ ।

ଏ ନିରାଟ ନିସ୍ତବ୍‌ଧତା ପ୍ରଶାନ୍ତିର ପରିଚୟ ନୁହେଁ,
ଗାମ୍ଭୀର୍ଯ୍ୟ ଗୌରବହୀନ, ପ୍ରତିଛବି ସେ ତ ଏକ କ୍ଷୁବ୍‌ଧ ମାନସର । □□

## ଗୋଟିଏ ସ୍ୱପ୍ନ - ଦୁଇଟି ସଂଜ୍ଞା

ସେ ଦିନ ଦେଖିଲି ସ୍ୱପ୍ନ ନଈକୂଳେ ବସିଛି ମୁଁ ଏକା,
ଶିଶୁଟିଏ ଧାଇଁଆସି ହଠାତ୍ ମୋ ପଛପଟୁ ଗଳା ମୋର ଧରିଲା ଜଡ଼ାଇ,
କହିଲା, "ଆସିଛି, ମୋତେ ଗେହ୍ଲା କର, କୋଳ କରି ଆଦର ତ କର,
ଏତେ ଦିନ ହେଲା ମୋତେ ଭୁଲି ସତେ ରହିଛ କିପରି ?"

ଶିଶୁଟିକୁ କେବେ କାହିଁ ଦେଖିଛି ମୁଁ ମନେ ହେଲା ନାହିଁ,
ତଥାପି ତା' ସ୍ପର୍ଶେ ମୋର ଅଙ୍ଗେ ଅଙ୍ଗେ ଅପୂର୍ବ ପୁଲକ,
ବିପୁଳ ଆବେଗେ ତାକୁ ଟାଣି ନେଇ କୋଳ ଭିତରକୁ
ବୁକୁରେ ଜଡ଼ାଇ ଧରି ବାରମ୍ବାର ଚୋକ ତା'ରେ ଦେଲି ।

ତା'ପରେ ବଦଳେ ସ୍ୱପ୍ନ, ବେଶ୍ ଥିଲି ବୁକେ ତା'ରେ ନେଇ,
ପଛୁ କା' କଠୋର କଣ୍ଠ ଅକସ୍ମାତ ପରିଚିତ ତୁମରି ତୁମରି,

ଧମକର ସ୍ୱର, "କେଉଁ ଏକ ବାରବୁଲା ଟୋକାଟାକୁ ନେଇ
ସୁଆଙ୍ଗ ଲାଗିଚି, ଯେତେ ବାଜେ ଗୁଚି, ଛାଡ଼ି ଦିଅ ତାକୁ ।"
ମୋ ସକଳ ଅନୁନୟ ଅଶ୍ରୁ ଆଉ ଆକୁଳତା ସତ୍ତ୍ୱେ
ତୁମେ ତାକୁ ଟାଣି ନେଲ କୋଳୁ ମୋର ସୀମାହୀନ ବିରକ୍ତି ପ୍ରକାଶେ,
ସେ ବିଚାରା କାନ୍ଦିକାନ୍ଦି ଚାଲିଗଲା, ପଛେ ଟିକେ ନ ଚାହିଁଲା ଫେରି,
'ନିର୍ଦ୍ଦୋଷ ମୁଁ, ନିରୁପାୟ, ବୁକୁତଳେ ଫେରିଆ ଧନରେ ମୋର'
ବିକଳ କାନ୍ଦଣା ।

ନିଦ ମୋର ଭାଜିଗଲା, ଦେଖିଲି ମୁଁ ସତରେ କାନ୍ଦୁଛି
କଇଁ କଇଁ, ତୁମ ନିଦ ଭାଙ୍ଗିଯିବା ଖୁବ୍ ସ୍ୱାଭାବିକ,
ତୁହାଇ ତୁହାଇ ମୋତେ ପଚାରିଲ ଏତେ ଅଶ୍ରୁ କାହିଁକି, କାହିଁକି ?
ସରମେ ସତ ମୁଁ ହଠାତ୍ କହି ପାରି ନଥିଲି ମାନୁଛି ।

ଓଠର ନିବୁଜ ହସ, ସକ୍ଷମ ସେ ହୋଇଛନ୍ତି ବୁଝିପାରିବାକୁ
ସ୍ୱପ୍ନର ରହସ୍ୟ, ମୁହୂର୍ତ୍ତେ ନୀରବ ରହି ଆରମ୍ଭିଲେ ବିଶ୍ଳେଷଣ ଆପଣା ସୀମାରେ
"ଆମେ ନିଃସନ୍ତାନ ଯେଣୁ, ମନ ତଳେ ଗୋପନ ଆକାଂକ୍ଷା
ତୁମର ନେଇଛି ରୂପ, ଅସମ୍ଭବ ଏ ଯାଏ ଯା' ସମ୍ଭବ ହୋଇଛି
ସ୍ୱପ୍ନପୁରେ, ସ୍ୱୀକୃତ ମଣୀଷର ଅନେକ କାମନା
ଚରିତାର୍ଥ ହେବ ଯାହା କଳ୍ପନାର ବିଳାସ କେବଳ
ସ୍ୱପ୍ନରେ ସାନ୍ତ୍ୱନା ଢାଳି, ମୁହୂର୍ତ୍ତକ ଲାଗି ହେଉପଛେ ଶୂନ୍ୟ ହୃଦୟରେ ଶାନ୍ତି
ପ୍ରଲେପ ଦିଅନ୍ତି ।"

ତାଙ୍କର ନିଶ୍ଚୁପ ହସେ ବ୍ୟଥିତା ମୁଁ ମିଳାଇଲି ମୋ ଓଠର କ୍ଷୋଭ ତିକ୍ତ
ମଉନ ହସକୁ,
"ତୁମ ବିଶ୍ଳେଷଣ ଅତି ମୂଲ୍ୟବାନ ଆପଣାର ଚିନ୍ତାର ସ୍ତରରେ,
ସମ୍ମାନ ମୁଁ ଦିଏ, ମାତ୍ର ମୋ ଚିନ୍ତାର ସ୍ୱତନ୍ତ୍ର ଭିତ୍ତିରେ
ଗ୍ରହଣଯୋଗ୍ୟ ତା' ନୁହେଁ, ମୁଁ ଯା ଦେବି ବିଶ୍ଳେଷଣ ମୋର
ତୁମକୁ ଲାଗିବ ହାତ ବଢ଼ାଏ ମୁଁ ବାମନ ଚନ୍ଦ୍ରକୁ,
ଛୋଟ ମୁହେଁ ବଡ଼ କଥା କେବେ ହେଲେ ଶୋଭା ପାଏ ନାହିଁ,
ଅନ୍ଧାରେ ସତତ ରହି ଆଲୋକର କାହାଣୀ କହିବା
ହାସ୍ୟାସ୍ପଦ କଥା, ମତ୍ସ୍ୟ ଗନ୍ଧ ଦେହେ, ମାତ୍ର ମାଲୁଣୀର ଶୁଦ୍ଧ ପରିଚୟ ।

ତୁମେ ଯା ଭାବୁଛ ଭାବ, ଶ୍ଳେଷେ ତୁମ ଯେତେ ଯାହା ଥାଉ
ମୋ ଚିନ୍ତାରେ ମୁଁ ଅଟଳ, ମୁଁ ଜାଣିଛି ନିଜକୁ ଯେତିକି
ତା' କଦାପି ମିଥ୍ୟା ନୁହେଁ, ହୋଇପାରେ, ନାରୀ ଯେତେବେଳେ,
ମୋ ଭିତରେ ସୃଜନର ଆକାଂକ୍ଷାଟା ଅକ୍ଷୟ, ଅବ୍ୟୟ,
ସୃଷ୍ଟିର ଅଭାବବୋଧ ଜାଳିପାରେ ଏ ମନ, ଦେହକୁ,
କିନ୍ତୁ ସେ ଜ୍ୱଳନ କ'ଣ ସେତିକିରେ ସୀମିତ ରହିବ ?

ବ୍ୟକ୍ତି ଓ ବସ୍ତୁର ତୀବ୍ର ବ୍ୟବଧାନ, ତଦ୍‌ଜନିତ ଅଭାବ ଯନ୍ତ୍ରଣା
ଯେତେବେଶୀ ମ୍ଳାନ କରେ ମଣିଷର ପ୍ରଶାନ୍ତ ମନକୁ,
କ୍ଷୁଣ୍ଣ କରେ ଯେତେବେଶୀ ଅନାହତ ଅନନ୍ତ ଶାନ୍ତିକୁ
ଇୟତ୍ତା ତା' କାହିଁ ? କ୍ଷୁଦ୍ର କ୍ଷୁଦ୍ରତର, କ୍ଷୁଦ୍ରତମ ହୋଇ
ଊର୍ଦ୍ଧ୍ୱକୁ ବଢ଼ାଇ ହାତ, ଏ ମଣିଷ ହାରିଯାଏ ଛୁଇଁବାରେ ଅସୀମ ସତ୍ତାକୁ
ମୁଁ କହୁନି ଜ୍ଞାନ କଥା, ତତ୍ତ୍ୱ କଥା, ଦର୍ଶନର କଥା,
ମୁଁ କହୁଛି ଅନୁଭୂତି ଲବ୍‌ଧ ମୋର ଚିରନ୍ତନ ବିରହର ବ୍ୟଥା ।

ଏମିତି ଅଭାବ ଯା'ର ଯନ୍ତ୍ରଣାରେ ଗୋପୀ କାନ୍ଦେ ଅଶ୍ରୁଜଳେ ଭାସି
ସେ ଅଭାବେ ଚନ୍ଦ୍ରସେଣା ମିଥ୍ୟା ହୁଏ, ସତ୍ୟ ହୁଏ ରାଈ ଉନ୍ମାଦିନୀ,
ଅଦର୍ଶନେ ତନୟର ଯଶୋଦାର ଆକୁଳ ଜିଜ୍ଞାସା,
ସୁଦାମା ଯାତ୍ରିକ ହୁଏ, ବ୍ୟାକୁଳତା ବନ୍ଧୁ ଦର୍ଶନର ।

ସେ ବିରହ, ସେ ବିଚ୍ଛେଦ, ସୀମାହୀନ ସେ ଅଭାବବୋଧ
ଏତେ ଟିକେ ଥିଲେ କ'ଣ ଏତେ ବେଶୀ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ
ଏ ମଣିଷ ସଢୁଥାନ୍ତା ନିଃସ୍ୱତାର ଅନ୍ଧ କୁମ୍ଭୀପାକେ ?
ସେଇ ସେ ଅଭାବବୋଧ, ମୋତେ କର ଉପହାସ ପଛେ,
ଆସିଥିଲା ଶିଶୁରୂପେ କୋଳ ମୋର ପୂର୍ଣ୍ଣ କରିବାକୁ
ନିଜେ ମୋତେ ଡ଼ାକି ଡ଼ାକି ଚେତନା ମୋ' ଉଦ୍‌ବୁଦ୍ଧ ସେ କରି
ଜାଗ୍ରତର ସାଧନା ଓ ଆକାଂକ୍ଷାକୁ ସପନରେ କରି ରୂପାୟିତ,
ତୁମେ ତା'ରେ ଫିଙ୍ଗିଦେଲ କାନ୍ଦି କାନ୍ଦି ଚାଲିଗଲା ହାୟ,
ଆଉ କି ସେ ଫେରିବନି ? ଅମୃତର ସରଣୀରେ ଏ କି ଅନ୍ତରାୟ ?"
ମୋ ଦୁଃଖ ମୋ କ୍ଷୋଭ ଯେତେ ଅଶ୍ରୁରୂପେ ପଡ଼ିଲା ଉଛୁଳି ।

"ମୋତେ ତୁମେ କ୍ଷମା କର" କଣ୍ଠେ ତାଙ୍କ ବ୍ୟଥାର ବିସ୍ତୃତି,
"ହଠାତ୍ ମନ୍ତବ୍ୟ କିଛି ଦେଇଦେବା ଅନ୍ୟକୁ ନ ବୁଝି
ଭୀଷଣ ଅନ୍ୟାୟ ସତେ," ମୁଁ କହିଲି ବାଷ୍ପାକୁଳ କଣ୍ଠେ,
"ସମସ୍ତ ଜୀବନ ଆମ ସାଧନାର, ଶୁଦ୍ଧ ତପସ୍ୟାର,
ଚଲାପଥେ କେହି କା'ରେ ସାହାଯ୍ୟ ନ କରୁ ପଛେ, ପ୍ରତିବନ୍ଧ ହେବାନି କଦାପି,
ପବନେ ନ ଦୋଳୁ ପଛେ ଲତା, ମାତ୍ର ପ୍ରଭଞ୍ଜନେ ସ୍ଥିତି ନ ହଜାଉ ।" ❑❑

## ହିପ୍‌ପିମାନଙ୍କ ସମ୍ପର୍କରେ

ସେମାନଙ୍କୁ ଦେଖି ଆମେ କାହିଁକି ବା କରିବା ବିଦ୍ରୂପ
ଉପହାସେ ଉପଦ୍ରବ, ଜୀବନରେ ସବୁ କିଛି ପାଇ
ବସ୍ତୁର ସମ୍ରାଟମାନେ ଯେତେବେଳେ ଉପଲବ୍ଧି କଲେ
ଦି' ହାତ ପୂର୍ଣ୍ଣତା ସତ୍ତ୍ୱେ ପୂରାପୂରି କାଙ୍ଗାଳ ସେମାନେ,
ମନ ତଳେ ସେମାନଙ୍କ କି ପ୍ରଚଣ୍ଡ ଆଲୋଡ଼ନ ତେବେ-
ସକଳ ପ୍ରାପ୍ତିର ଗର୍ଭେ ଅପ୍ରାପ୍ତି ଓ ଅଶାନ୍ତିର ମର୍ମଦାହ କାହିଁକି କାହିଁକି ?

ଏ 'କାହିଁକି' ଉତ୍ତରକୁ ଖୋଜି ଖୋଜି ସେମାନେ ତ ନିଜର ମାଟିରୁ
ପାଇ ତ ପାରିଲେ ନାହିଁ, ହଠାତ୍ ସେ ଉତ୍ତର ଶୁଣିଲେ
ଏ ମାଟିର ସଙ୍ଗୀତରେ, ସବୁ ପାଇ ଫିଙ୍ଗି ଦିଆଗଲେ
ଫଲ୍‌ଗୁର ପ୍ରଚ୍ଛନ୍ନ ପାଣି, ମାତ୍ର ଏହି ସତ୍ୟଟାକୁ ବୁଝି ଠିକ୍ ନ ବୁଝିବା ହେତୁ
ସମୁଦ୍ର ଉପର ଢେଉ ଗଣୁ ଗଣୁ 'ରତ୍ନାକର'ମାନେ
ଅବୋଧ ତ ରହିଗଲା, ଯଦିବା ସେମାନେ ଏବେ ତରଙ୍ଗରେ ମୁଗ୍ଧ,
ତଥାପି ସେ ଅଜ୍ଞତାକୁ ଆମେ କ'ଣ କଟାକ୍ଷ କରିବା ?

ଏଇତ ଆରମ୍ଭ ମାତ୍ର, ଏ ଆରମ୍ଭ ଖୁବ୍ ଶୁଭଙ୍କର,
ଆରମ୍ଭରେ ତ୍ରୁଟି ଥାଏ, କିଛି କିଛି ବିକୃତି ବି ଥାଏ,
ସେ ତ୍ରୁଟି ଓ ବିକୃତି ପରେ ସଂଶୋଧିତ ସୌଧ ଗଢ଼ାଯାଏ,
ଏ ସତ୍ୟକୁ ବୁଝି ଆମେ ସେମାନଙ୍କ ଚାଞ୍ଚଲ୍ୟକୁ ବିଚାରକୁ ନେଲେ
ଭ୍ରୂକୁଟିର ପ୍ରଶ୍ନ କାହିଁ ? 'ବସ୍ତୁର ବହଳ ସ୍ୱପ୍ନ ସବୁ କିଛି ନୁହେଁ'
ଏ ମହାର୍ଘ ଉପଲବ୍ଧି ସେମାନଙ୍କ ଚେତନାକୁ ଚଞ୍ଚଳ କରିଛି,
ଯାଯାବର ସେମାନେ ତ ତେଣୁ, ମହାଚେତନାର ଦ୍ୱାରେ ଆଦ୍ୟ କରାଘାତ ।

'ଜୋକର' ତ ନୁହନ୍ତି ସେମାନେ, ପ୍ରହସନ ପ୍ରଦର୍ଶନ ସେମାନଙ୍କ ଅଭିପ୍ରାୟ ନୁହେଁ,
ବଡ଼ ଦୁଃଖୀ ଗୋଷ୍ଠୀ ସେ ତ, ପ୍ରଚ୍ଛନ୍ନ ସେ ଆଖି ଲୁହ କେହି କେବେ ଦେଖିବାକୁ
କରିଛୁ ପ୍ରୟାସ ?
କରିଛୁ ପ୍ରଚେଷ୍ଟା କେବେ ବୁଝିବାକୁ ସେମାନେ କାହିଁକି
ଗୋଲକ ଐଶ୍ୱର୍ଯ୍ୟ ତେଜି ପଥେ ପଥେ ଘୂରୁଛନ୍ତି ଧୂଳି ଧୂସରିତ ?

ଆମେ ବେଶ୍ ହିପ୍‌ପି ସାଜୁ ମାତ୍ର ମନ ଆମର କି କେବେ ?
ଭୀଷଣ ଭଉଁରି ମଧ୍ୟେ ଆକ୍‌ତା ମାକ୍‌ତା ହେବାରେ ଯେ ଦୁଃଖ
ସେ ଦୁଃଖରୁ ପୁନର୍ବାର ଆତ୍ମରକ୍ଷା କରିବାର ପ୍ରଚଣ୍ଡ ପ୍ରଚେଷ୍ଟା,
ଏଇ ଅଭିଜ୍ଞତା କ'ଣ କିଛି ହେଲେ ଅଛି କି ଆମର ?
ତେଣୁ ଆମେ ହିପ୍‌ପି ହେବା ହାସ୍ୟାସ୍ପଦ ବିଳାସ କେବଳ ।

ହିପ୍‌ପିର ମନର ଜ୍ୱାଳା 'ଶାନ୍ତି କାହିଁ, ଅଖଣ୍ଡ ଓ ଅସମାପ୍ତ ଆନନ୍ଦ ମୋ କାହିଁ ?'
ମୃଣ୍ମୟରେ ଅନ୍ୱେଷଣ ବ୍ୟାକୁଳତା ପହଞ୍ଚିବ ଦିନେ ନିଶ୍ଚେ ନିନ୍ମୟର
ଚତ୍ୱରରେ ଯାଇ । ▭▭

## ନିଥର ହ୍ରଦର ଶିହରଣ

ଏବେ ମନେପଡେ ମୋର ନୃତ୍ୟେ ସେଇ ସାଫଲ୍ୟର ପ୍ରଥମ ମୁହୂର୍ତ୍ତ,
କି ଭୀଷଣ ଉତ୍ତେଜନା, ଅଭିନନ୍ଦନର ସେ କି ଅପୂର୍ବ ଉଚ୍ଛ୍ୱାସ
ଅବିସ୍ମରଣୀୟ, ପ୍ରତି ଓଠେ ମୋର କୃତିତ୍ୱର ଅଜସ୍ର ପ୍ରଶସ୍ତି,
ମୋ ଦୃଷ୍ଟିର ସ୍ୱପ୍ନାକାଶେ ତେବେ ଇନ୍ଦ୍ରଧନୁ ସପ୍ତବର୍ଣ୍ଣ ଜ୍ୟୋତି ।

ତା'ପରେ କି ପ୍ରୟାସ ମୋ ଆହୁରି ଆହୁରି କ୍ରମେ ଉର୍ଦ୍ଧ୍ୱେ ଉଠିବାର,
କି ଉତ୍ସାହ, ଉନ୍ମାଦନା, ଖ୍ୟାତି ଲଭିବାର ସେ କି ପ୍ରବଳ ଆକାଂକ୍ଷା,
ପ୍ରଶଂସା ଓ ସମ୍ମାନର ସ୍ରୋତେ ସ୍ନାନ ବାରମ୍ବାର କରିବା ସତ୍ତ୍ୱେ ବି
ପରିତୃପ୍ତି କାହିଁ ମୋର ? ମୋ ଦୃଷ୍ଟିରେ ନବ ନବ ସୂର୍ଯ୍ୟୋଦୟ ଦର୍ଶନ ପିପାସା ।

ଆବେଗ, ଉତ୍କଣ୍ଠା ଆଉ ତୀବ୍ର କୌତୂହଳେ
ପ୍ରାଥମିକ ଜୀବନର ସେ ସବୁ ଚାଞ୍ଚଲ୍ୟ ମୋର ଥିଲା ଆହା କେଡ଼େ ମଧୁମୟ

ବହୁ ଭ୍ରମ, ତ୍ରୁଟି ସତ୍ତ୍ୱେ, ଆଜି ମୋର ସ୍ଥିତି ଯେବେ ଦୃଢ଼ ପ୍ରତିଷ୍ଠାର
ସ୍ୱର୍ଣ୍ଣ ସିଂହାସନେ,
ଶୀର୍ଷେ ପହଞ୍ଚିବା ପରେ ଅଧିକ ମୋ ସମ୍ପର୍କରେ ଯେବେ ଶୁଣିବାର
କିଛି ନାହିଁ ଆଉ,

ମୋ ହୃଦୟ ଶୂନ୍ୟ କିମ୍ବା ? ମୁଁ କାହିଁକି ନିଃସହାୟ, ନିଃସ୍ୱ ଆଜି ?
କି ଅବ୍ୟକ୍ତ ଯନ୍ତ୍ରଣା ମୋ ଅଶ୍ରୁଳ ନୟନେ ?
ଉପଲବ୍ଧି ମୋର ଆହା, ଅନୁଭବୀ ବିନା ଆନ ବୁଝିବ ବା କିଏ ?
ଦି' ହାତ ପୂର୍ଣ୍ଣତା ସତ୍ତ୍ୱେ ମୁଁ କି ଲାଗି ଦୈନ୍ୟ ଓ ଦୁଃଖରେ
କରେ ହାହାକାର, ନିରାନନ୍ଦ, ନିରୁଦ୍‌ବେଗ, ନିଷ୍କମ୍ପ ମୁଁ ସ୍ଥିର ଜଳ ଯଥା ଏକ
ନିଥର ହ୍ରଦର ।

ମୁଁ ଆଜି ଚାହୁଁଛି ତେଣୁ ପ୍ରାଣ ଚାଞ୍ଚଲ୍ୟରେ ଭରା ଅତୀତର ସେ ସକଳ ମୁହୂର୍ତ୍ତକୁ
ଫେରି ଥରେ ପାଇବାର ପାଇଁ,
ଅପୂର୍ଣ୍ଣ ମୁଁ ଥିବା ସତ୍ତ୍ୱେ ଯେ ଆନନ୍ଦ ଥିଲା ତେବେ
ଆଜି ହାୟ ସେ ଆନନ୍ଦ କାହିଁ ? □□

## କ୍ରୋଧର ଏକ ସମୀକ୍ଷା

ସେ ଖୁବ୍ ରାଗିଲେ ବୋଲି ତୁମେ ମଧ ରାଗିବ ସେ ପରି
ପ୍ରତିଶୋଧ ମନ ନେଇ ? ଏ ବିଚାର ମୋଟେ ଠିକ୍ ନୁହେଁ,
ଦୃଷ୍ଟିର ବିହୁଡ଼ି ଜାଳି ସେ ଅନ୍ତର ଦହନକୁ ଦେଖିବାକୁ ଥରେ ଚେଷ୍ଟା କଲେ
ରାଗି କି ପାରିବ କେବେ ? ମନ ତୁମ ନିଶ୍ଚେ ଆର୍ଦ୍ର ହେବ ।

.ରାଗେ କିଏ ? ବିରକ୍ତ କେ ହୁଏ ? ଅଶାନ୍ତ କିଏ ସେ ?
ଏ ସତ୍ୟକୁ ବୁଝିଗଲେ କ୍ରୋଧ ତୁମ ମିଳାଇବ ଆପେ,
ବିଚାରା ସେ ମର୍ମାନ୍ତିକ ଯନ୍ତ୍ରଣାରେ ଜଳି ଜଳି ଦୁଃଖୀ ଆହା କେଡ଼େ,
କରୁଣ ଏ ଉପଲବ୍ଧି କରୁଣାର ପ୍ରତିମୂର୍ତ୍ତି କରିବ ତୁମକୁ ।

ରୋଷଦୀପ୍ତ ସେ ନୟନୁ ଅଗ୍ନିକଣା ଛିଟ୍‌କି ଆସି ମୁଖେ ତବ ପଡୁଥିବା ବେଳେ,
ଆଖି ତୁମ ଭରିଥିବ କରୁଣାର ଅଶ୍ରୁଜଳେ, ସୀମାହୀନ ସହାନୁଭୂତିରେ । □□

## ଅନ୍ୱେଷଣ

ସକଳ ପ୍ରାପ୍ତିର ସତ୍ତ୍ୱେ କି ଅପ୍ରାପ୍ତ ଦୁଃସହ ଯନ୍ତ୍ରଣା
ଦଗ୍ଧ କରେ ମଣିଷରେ ? ସୀମାହୀନ ନିଃସଙ୍ଗ ଶୂନ୍ୟତା
ସମସ୍ତ ଐଶ୍ୱର୍ଯ୍ୟ ମଧ୍ୟେ ଦାରିଦ୍ର୍ୟର ବିବର୍ଣ୍ଣ ରୂପରେ
ବିଚିତ୍ର ବିଦ୍ରୂପ କରେ, ଏ ଦୈନ୍ୟରୁ ମୁକ୍ତି କ'ଣ ନାହିଁ ?

ଏ ଦୁର୍ଭୋଗ ଉପଶମ କେଉଁପରି, କାହାର ହାତରେ ?
କେଉଁ ଶାସ୍ତ୍ର ବାକ୍ୟ ମଧ୍ୟେ କେଉଁ ଗୁରୁ ବାଣୀ ସାନ୍ତ୍ୱନାରେ ?
କେଉଁ ସୂର୍ଯ୍ୟୋଦୟେ କେଉଁ ଜ୍ୟୋତ୍ସ୍ନା ରାତେ ପ୍ରଚ୍ଛନ୍ନ ରହିଛି ଏଇ ବେଦନାର
ଅବସାନ ମନ୍ତ୍ର ?

ଏଇ ମୋ ସାମ୍ନାରେ ଶୋଇ ଧେନୁଟିଏ ନୀରବରେ କରୁଛି ପାକୁଳି
ସମୟ କି କଟେ ତା'ର ? ଶ୍ୱାନଟିଏ ଶୋଇ ଧରଣୀରେ
ନିଶ୍ଚିନ୍ତ କି ନିଦ୍ରାଘୋରେ ? ନିଃସଙ୍ଗତା ଭୁଲିବାକୁ ପ୍ରୟାସ ସେ କରେ,
ମଣିଷର ଠିକ୍ ଯଦି ଏହିପରି ନିଃସହାୟ ଦୁରବସ୍ଥା, ସେ ତେବେ କିପରି ଆଉ
ପଶୁର ଊର୍ଦ୍ଧ୍ୱରେ ?

ତୀବ୍ର ଏଇ ନିଃସଙ୍ଗତା ଶୂନ୍ୟତାର ଦହନରୁ ପରିତ୍ରାଣ ପାଇଁ
ଆପଣାର ଖୋଜିବାକୁ ଚେଷ୍ଟା ହେଉ ଦିବାରାତ୍ରି କାବ୍ୟ ମଧ୍ୟେ ଆପଣାର ପାଇଁ ।

## ବର୍ଷାସ୍ମୃତି

ଏ ବର୍ଷାକୁ ଚାହିଁ ଚାହିଁ ମୁଁ ଭାବୁଛି ସେମାନଙ୍କ କଥା,
ଯେଉଁମାନେ ଆସିଥିଲେ ମୁହୂର୍ତ୍ତକ ଆଶ୍ରୟ ପାଇଁକି
ସମ୍ପୂର୍ଣ୍ଣ ଅପରିଚିତ, ବର୍ଷା ଛାଡ଼ିଯିବା ପରେ ମେଲାଣି ମୁହୂର୍ତ୍ତେ
ବ୍ୟବଧାନ ବ୍ୟଥା ଅନୁଭୂତ, ମନେ ହେଲା ଆମ୍ଭେମାନେ ପରସ୍ପରେ ବହୁ ଆଗୁଁ
ଖୁବ୍ ଚିହ୍ନିଥିଲୁ ।

ଏ ବର୍ଷା ମଧ୍ୟସ୍ଥ ତେବେ ? ଏହି ସ୍ଥାନେ ଆସିଥା'ନ୍ତେ ସେମାନେ କାହିଁକି
ପ୍ରୟୋଜନ ନ ଥିଲେ ବା, ଜାଗତିକ ଆତ୍ମୀୟତା ସବୁବେଳେ ରଖେ କ'ଣ ସ୍ୱାର୍ଥର
ଅପେକ୍ଷା ?
ସମ୍ପର୍କ ନିବିଡ଼ ଯେତେ, ସ୍ୱାର୍ଥ ମଧ୍ୟ ସେଇପରି ନିବିଡ଼, ନିବିଡ଼ ?

ଏହି ଯଦି ବିଶ୍ଳେଷଣ, ନିଃସ୍ୱାର୍ଥପରତା କ'ଣ ଅର୍ଥହୀନ ଶବ୍ଦର ଝଙ୍କାର ?
'ଘନବାବୁ' ଆମ ପ୍ରତିବେଶୀ, ଅମାୟିକ ଅତି ଭଦ୍ରଲୋକ, ବହୁ ଚିନ୍ତା ପରେ ଏହି
ମୀମାଂସାରେ ପହଞ୍ଚିଲେ ଆସି
ପ୍ରୟୋଜନ, ପରିସ୍ଥିତି ଯଦି କରେ ସମ୍ପର୍କର ସୃଷ୍ଟି
ସେ ସମ୍ବନ୍ଧ ନିରର୍ଥକ, ମଣିଷ ମଣିଷ ମଧ୍ୟେ ପରିଚୟ ପାଇଁ
ଅବଲମ୍ବନର ଯଦି ପ୍ରୟୋଜନ ସେ ପ୍ରଚେଷ୍ଟା ନିଶ୍ଚେ ନିନ୍ଦନୀୟ,
ସ୍ୱାର୍ଥହୀନ ସୌଖ୍ୟ ସୃଷ୍ଟି ଲାଗି, ଡ଼ାକି ଡ଼ାକି ପ୍ରତ୍ୟେକ ପଥିକେ
ଆରମ୍ଭିଲେ ଆତ୍ମୀୟତା, 'ନମସ୍କାରେ' 'ଆଲିଙ୍ଗନେ' ବୈଚିତ୍ର୍ୟ ବିସ୍ତୃତି ।
କେହି କି ବୁଝିଲା ତାଙ୍କ ଚିନ୍ତାଧାରା ? ବିନା ସ୍ୱାର୍ଥେ କିଏ ସେ କାହିଁକି
ପଥ ପରେ ନିରର୍ଥକ ବିବ୍ରତ ବା ହେବ ? ପ୍ରତିବାଦ ତୀବ୍ରୁ ତୀବ୍ରତର,
ଉନ୍ମାଦ ସେ ପ୍ରତିକଣ୍ଠେ, ଶୁଣି ଶୁଣି ପ୍ରକୃତରେ ପାଗଳ ସେ ହୋଇଗଲେ ଦିନେ ।

ଏ ବର୍ଷା ସ୍ମୃତିକୁ ଆଣେ 'ବ୍ରଜଭାଇ' ନିଜ ଭାଇଠାରୁ ବଳି ଖୁବ୍ ଆପଣାର,
କେତେ ନ କରନ୍ତି ସ୍ନେହ, ନିଜର ଚରିତ୍ର ପରେ ଅସମ୍ଭବ ଆସ୍ଥା,
ବିବାହ କରିବେ ନାହିଁ ଜିଦ୍ ତାଙ୍କ, ସ୍ୱାମୀଜୀଙ୍କ ପଥେ ଯିବେ
ସୁଖ ଲାଗି ଏକ ମାତ୍ର ପଥ ।
ଏ ଜିଦ୍‌ରେ ଏକ ମାତ୍ର ସନ୍ତାନର ପିତାମାତା କିପରି ଅସୁଖୀ
ଅନୁଭବୀ ବିନା ଅନ୍ୟ କିଏ ଆଉ ଉପଲବ୍ଧି କରିବ ସେ ବ୍ୟଥା ?

ଅନୁରୁଦ୍ଧ ହେଲି ଯେବେ 'ବ୍ରଜଭାଇ' ଦୃଢ଼ ମତ ବଦଳାଇବାକୁ
ଉତ୍ତର ମୁଁ ଦେଲି, "ତାଙ୍କ ନିଷ୍ଠା କେତେ ମୁଁ କେବଳ ଜାଣେ,
କାଉଁରିଆ କାଠି ସେ ତ ଭାଙ୍ଗିଯିବେ ପଛେ କିନ୍ତୁ ନଇଁବେନି କେବେ ।"
'ବ୍ରଜଭାଇ' ପରେ ଏତେ ପ୍ରତ୍ୟୟ ଏ ଯାଦୁକରୀ ବର୍ଷା
କିପରି ନିଶ୍ଚିହ୍ନ କଲା ? ସେଇ ଦିନୁ ଏ ମେଘକୁ ମୋର ଭାରି ଭୟ ।

ମାଉସୀ ବାରଣ କଲେ, "ଏ ବର୍ଷାରେ କିପରି ମା' ଘରକୁ ଫେରିବୁ ?"
ବ୍ରଜଭାଇ ନାରାଜ କି, ଅପରାହ୍ନେ ଆସିଥିଲି ତାଙ୍କ ଘରେ ବୁଲି ।
ରାତି ଅଧ ହେବ ବୋଧେ ହଠାତ୍ ମୋ ନିଦ ଭାଜିଗଲା,
ପଲଙ୍କୁ ପଡ଼ିଲି ଡ଼େଇଁ, ଗୋଟିପଣେ ଥରୁଛି ଭୟରେ,
"ବ୍ରଜଭାଇ, ଛି ଛି, ତୁମ ଗୋଡ଼ ତଳେ ପଡୁଛି ମୋ ହାତ ଛାଡ଼ି ଦିଅ,"

ବିଦ୍ୟୁତ୍ ଝଲକେ ଯେଉଁ ଦୀପ୍ତି କଲି ଲକ୍ଷ୍ୟ ତାଙ୍କ ଉଭୟ ଆଖିରେ
ମୃତ୍ୟୁଠାରୁ ଭୟଙ୍କର, ରହି ରହି ବଜ୍ରର ଗର୍ଜନ,
କଠୋର ନ ହେବା ଛଡ଼ା ଅନ୍ୟ କିଛି ଉପାୟ କି ଥିଲା ?
"ବାଧ ହୋଇ ଚିତ୍କାର କରିବି କିନ୍ତୁ", ହାତମୁଠା ହୁଗିଳିଲା ଆପେ,
ପଲକେ ସେ ଅନ୍ତର୍ଦ୍ଧାନ, ମୋ ଚିନ୍ତାରେ ପ୍ରଳୟ ତାଣ୍ଡବ ।
ସପ୍ତାହକ ପରେ ମୋର ମାନସିକ ଅଶାନ୍ତିରେ ସାମୟିକ ପୂର୍ଣ୍ଣଚ୍ଛେଦ ଟାଣି
ଆଖି ଜଳେ ଭାସି ଯେବେ ବ୍ରଜଭାଇ ନିଜର ସ୍ଖଳନ ଲାଗି ମେଘେ ଦୋଷୀ କଲେ
ବିଶ୍ୱାସ ମୁଁ କଲି, "ତୋର ରାଣ ଅଛି, ଏ ବର୍ଷା, ବିଜୁଳି
ମୋତେ କି ନ କଲେ ସତେ, ଏତେ ମୋର ଦମ୍ଭ କରି ବ୍ୟର୍ଥ ଭ୍ରୂକୁଟୀରେ ।"
ସାନ୍ତ୍ୱନା ମୁଁ ଦେଇ ତାଙ୍କୁ କହିଥିଲି, "ଛୋଟ ଏଇ ଭଉଣୀର ଟିକି ଅନୁରୋଧ,
ବିବାହେ ସମ୍ମତ ହୁଅ", ଭିତରର ଏତେ କଥା କେହି କି ବୁଝିଲେ ?
ସମସ୍ତେ କହିଲେ, "ଆମେ ଜାଣିଥିଲୁ ବ୍ରଜକୁ ଜିଣିବୁ ନିଶ୍ଚେ"
ମୋ ଆଖିର ଲୁହ ନିରୁତ୍ତର ।

ଏ ବର୍ଷା ଅତୀତ ଖୋଲେ, ରୋଷଘରେ ଥିଲି, ହଠାତ୍ ଶୁଣାଗଲା ଦୋତାଲାରେ
ନୂପୁର ନିକ୍ୱଣ,
ଏମିତି ନାଚୁଛି କିଏ ? ବାହାରେ ବର୍ଷାର ନାଚ, ଦ୍ୱିତଳରେ ପହଞ୍ଚି ଅବାକ୍,
ମୋର ସାନ ଝିଅ 'ମୀନା' ଲାସ୍ୟମୟୀ ପାଞ୍ଚ ବରଷର,
ମୋ ନୂପୁର ପାଦେ ତା'ର, କଣ୍ଠେ ଗୀତି "ରୁମ୍‌ଝୁମ୍ ବରଷା ଏ ନାଚେ",
ଚରଣେ ଅପୂର୍ବ ତାଳ, ତା' ନୃତ୍ୟର ସେଇ ତ ଆରମ୍ଭ,
ଦିନେ ତା' ନାଚର ଖ୍ୟାତି ବହୁ ମନେ ଈର୍ଷା ଆଣିଥିଲା,
ପରିଣୟ ଇଚ୍ଛା ମଧ, 'ଦୀପଙ୍କର' ବାରିଷ୍ଟରି ପାସ୍ ପରେ ନିକଟରେ ବିଲାତୁ ଫେରିଛି,

ମୀନାର ନୃତ୍ୟେ ସେ ମୁଗ୍‌ଧ, ପରିଣୟ ପରେ କିନ୍ତୁ କଣ୍ଠସ୍ୱର ବଦଳିଲା ତା'ର,
"ପତ୍ନୀ ମୋ ନର୍ତ୍ତକୀ ସାଜୁ କୁତ୍ସିତ ଏ ଇଚ୍ଛା ନୁହେଁ ମୋର ।"
ସ୍ୱପ୍ନ ଓ ବାସ୍ତବ ମଧ୍ୟେ କେତେ ବେଶୀ ତଫାତ୍ ନ ସତେ,
ଅନ୍ୟ ପକ୍ଷେ ଅସୀମ ଦୃଢ଼ତା – କଳାର ଏ ଅପମୃତ୍ୟୁ ଠାରୁ ଛାଡ଼ପତ୍ର ବରଂ ଶ୍ରେୟସ୍କର ।
ଛାଡ଼ପତ୍ର ପରେ କିନ୍ତୁ ମୀନା ତା'ର ନୃତ୍ୟ ବି ଭୁଲିଲା ।
ଜିଦ୍‌ର ଏ ଯୁଦ୍ଧ ଶେଷେ, ବର୍ଷ ଦୁଇ ଗତ ହେବା ପରେ,
ଏବେ ଲକ୍ଷ୍ୟ କରାଯାଏ ମୀନା ଆଉ ଦୀପଙ୍କର ମଧ୍ୟେ

ସମ୍ପର୍କର ସୃଷ୍ଟି ପୁଣି, କେବେ କେବେ ସେମାନେ ମିଶନ୍ତି
ଦୃଷ୍ଟି ଅନ୍ତରାଳେ, ହଉ, ଭଗବାନ ସେମାନଙ୍କୁ ପୁନଶ୍ଚ ଯୋଡ଼ନ୍ତୁ ।

ଏ ବର୍ଷାରେ କେତେ କଥା, କେତେ ବ୍ୟଥା, କେତେ ବିଶ୍ଳେଷଣ,
ଧରାପଡ଼େ ମଣିଷର ଭିତର ଓ ବାହାରର କେତେ ପରିଚୟ,
କେତେ ନ ବୈଚିତ୍ର୍ୟ ସତେ, ଚେତନାର ରୁଦ୍ଧ ଦ୍ୱାର କରିବାରେ ମୁକ୍ତ
ଅଜସ୍ର ତା'ଦାନ କେବେ ଅସ୍ୱୀକାର କରାଯାଇ ପାରେ ?
ତେଣୁ ଭାରି ଇଚ୍ଛା ହୁଏ ତିନ୍ତିବାକୁ ମନ ଭରି ଏ ଘୋର ବର୍ଷାରେ । □□

## ସ୍ମୃତି

ଖରା ଚାଲିଯିବା ପରେ ଛାଇ କ୍ରମେ ଉପସ୍ଥିତ ହେଲା,
ସେ ଛାଇରେ ଖୋଜିଲି ମୁଁ ଖରା ଦତ୍ତ ପ୍ରତ୍ୟେକ ସ୍ମୃତିକୁ,
ସେ ସ୍ମୃତିରେ ଫୁଲ ଥିଲା, ଫଳ ଥିଲା, ଶୂନ୍ୟତା ବି ଥିଲା,
ବୈଚିତ୍ର୍ୟ ଦୃଷ୍ଟିରୁ କିନ୍ତୁ ସେମାନେ ପ୍ରତ୍ୟେକେ ଥିଲେ ମୋ ପାଇଁ ମହାନ ।

ଛାଇରେ ନୀରବେ ବସି ସେ ସବୁର କରିବା ହିସାବ
କେତେ ଚମତ୍କାର ସତେ, ସେମାନଙ୍କୁ ଗୋଟି ଗୋଟି ମାଳାରେ ଗୁନ୍ଥିବା
ଏବଂ ଗଳାରେ ପିନ୍ଧି ପ୍ରତିଟିକୁ ନିରେଖି ଦେଖିବା
କେତେ ବେଶୀ ପ୍ରୟୋଜନ, ମୋ ବ୍ୟତୀତ ଅନ୍ୟ କେ ବୁଝିବ ?

କାଲି ଖରା ଆସିବା ବେଳକୁ ସେମାନେ ତ ମୋର ହୋଇଥିବେ,
ଏକତ୍ରିତ ସେମାନଙ୍କ ମୂଲ୍ୟାଙ୍କନେ ଆଗନ୍ତୁକ ଖରାର ଝାସରେ
କେତେ ବେଶୀ ଝଟକିବେ, ପୁଣି ନୂଆ ଆହରଣ ସାଥେ
ସେମାନଙ୍କୁ ମିଶାଇ ମୁଁ ଆପଣାକୁ ସଜାଇବି ନୂତନ ରୂପରେ । □□

## ଏକାନ୍ତ

ମୁଁ ବସିଛି କକ୍ଷ ମଧ୍ୟେ ଚୁପ୍ ଚାପ୍ କାହାର ପ୍ରତୀକ୍ଷା ?
ବାରଣ୍ଡାରେ ପାଦଶବ୍ଦ ଏ ଯାଏଁ ମୁଁ ଶୁଣିନାହିଁ, ତଥାପି ଅପେକ୍ଷା,
କକ୍ଷ ମଧ୍ୟେ ଅନ୍ଧକାର, ମୋ ମନର ଅନ୍ଧାରକୁ ଚିରି
କେହି ଆସିବେନି ଏଠି ? ସେ ଆସିବା ଆଗ୍ରହରେ ପ୍ରତିକ୍ଷଣେ ହୃଦୟ ସ୍ପନ୍ଦିତ ।

ଆକୁଳ ଏ ଅପେକ୍ଷାର ଇତି ନାହିଁ ? ବ୍ୟାକୁଳତା ତେଣୁ ମୋର ଅବ୍ୟାହତ ରହେ,
ପଦଶବ୍ଦ ଆସୁ ଦ୍ୱାରେ, ମାତ୍ର କ୍ରମେ ମିଳାଇ ତା' ଯାଉ
ମୋ ଆଖିର ପ୍ରଜ୍ୱଳିତ ଆକାଂକ୍ଷାକୁ ଅସାର୍ଥକ କରି,
ଏହାହିଁ ତ କାମ୍ୟ ମୋର, କଳ୍ପନା ମୋ ରହୁ ସୀମାହୀନ ।

ଅନେକ କଣ୍ଠର କଥା ଗୁଞ୍ଜନରେ ସ୍ଥିତି ମୋର ଅଛି ?
ହୁଏତ ବା ଥାଇପାରେ, ମୋ ଉଦ୍‌ବେଗ ମୋ ଉତ୍କଣ୍ଠାମାନ
ବଞ୍ଚାଇ ରଖିଛି ମୋତେ, ମୋ ଅବ୍ୟକ୍ତ କବିତାମାନଙ୍କୁ
ସମାପ୍ତି ତ ଦିଅନ୍ତିନି, ତେଣୁ ମୋର ଲେଖନୀରେ ଅନନ୍ତ ଜୀବନ ।

ମୋ ପ୍ରକୋଷ୍ଠ ଦ୍ୱାର ଖୋଲି କେହି କେବେ ଆସିବେନି ଆଉ,
ନିଭୃତ ଏ ଅନ୍ଧକାରେ ଚିରଦିନ ଅପେକ୍ଷାର ଆନନ୍ଦ ମୋ ଅବ୍ୟାହତ ଥାଉ । ▭▭

## ମୃତ୍ୟୁ ସମ୍ପର୍କରେ

'ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁ ଆସି ହାତ ଠାରି ପାରେ'
ସେଇ ଆଶଙ୍କାରେ, ଯେଉଁମାନେ ପ୍ରତିକ୍ଷଣେ ଆତଙ୍କିତ, ସ୍ପନ୍ଦିତ ହୃଦୟ,
ଜୀବନ ତ ସେମାନଙ୍କୁ କରେ ଉପହାସ, ଅମୃତରେ ବୁଡିଥିବା ସତ୍ତ୍ୱେ
ଅଯଥା ମୃତ୍ୟୁର ଭୟେ ସେମାନଙ୍କ ସ୍ଥିତି ଆହା କେଡ଼େ ଦୟନୀୟ ।

ହେଇ ତ, ସେଦିନ ମୋର ନାରୀ ବନ୍ଧୁ ନିରୁପମା ଦେବୀ
ଆପଣାର ନିଶ୍ଚିତ ମୃତ୍ୟୁର ବ୍ୟାଧି ସମ୍ପର୍କରେ ସବୁ କିଛି ଜାଣିବା ଉତ୍ତାରେ
(ଅବଶ୍ୟ ଅନେକ ଦିନ ବ୍ୟାପାରଟା ତାଙ୍କ ପାଖେ ଲୁକ୍‌କାୟିତ ରଖାଯାଇଥିଲା,)
ଜୀବନରେ ଥାଇ ମଧ୍ୟ ଜୀବନର ସବୁ ସ୍ୱାଦ ଭୁଲି
ପ୍ରତିକ୍ଷଣେ ମରଣର ଆତଙ୍କରେ ଚିନ୍ତିତ ରହିଲେ,
ଶେଷଯାଏ ସେ କେବଳ କହୁଥିଲେ ମୃତ୍ୟୁକଥା ସାଶ୍ରୁ ନୟନରେ,
ଅଥଚ ମୃତ୍ୟୁଟା ଯେବେ ଅକସ୍ମାତ ଆସିଗଲା ଦିନେ
ଘୁଣାକ୍ଷରେ ସେ ତାହା ତ ପାରିଲେନି ଜାଣି ।
ଆମେ କ'ଣ ଶୋଉ ନାହୁଁ ? ବୃଥା କହୁ କହୁ କ'ଣ ପଡୁନୁ ଢୁଳାଇ ?
ମୃତ୍ୟୁ କ'ଣ ଏହାଠାରୁ ବେଶୀ କିଛି ? ସାମୟିକ ମରଣର ଅନୁଭବ ସତ୍ତ୍ୱେ

ଚିରସ୍ଥାୟୀ ଶୟନକୁ ମୃତ୍ୟୁ ଭାବି ଆମେ କିମ୍ପା ମିଛରେ ଡ଼ରିବା ?
ଭୟ ହେଲା ମୃତ୍ୟୁ, ଆଉ ମୃତ୍ୟୁ ପ୍ରତି ବେଖାତିର ଜୀବନର ମାନେ ।

ମୃତ୍ୟୁର ସ୍ୱରୂପ ନେଇ ଏତେ ସବୁ ଜାଣିବା ଉତ୍ତାରେ,
ମରଣ ତା' ମିଛ ଭୟେ ଯଦି ଆମକୁ ଜୀବନଠାରୁ ରଖେ ବହୁ ଦୂରେ,
ତେବେ ଆମ ସ୍ଥିତି ଏହି ପୃଥିବୀରେ କେତେ ମୂଲ୍ୟହୀନ,
ଜଳିବାର ଉପଯୋଗୀ ଦୀପ ଯଥା ଆପଣାର ଅସାମର୍ଥ୍ୟେ ଅନ୍ଧାରେ ମଳିନ । ▭

## ସହାବସ୍ଥାନ

ଜଣେ ତ ଆନନ୍ଦମୟ, ଅନ୍ୟଜଣେ ନିରାନନ୍ଦେ ସଦା ଜର୍ଜରିତ,
ଅଥଚ ସହାବସ୍ଥାନ ପ୍ରୟୋଜନ ସେମାନଙ୍କ ମଧ୍ୟେ
କେଉଁପରି ସମ୍ଭବ ବା ? ନିରାନନ୍ଦ ସବୁବେଳେ ଆନନ୍ଦ ଦେଖି ଈର୍ଷାତୁର,
ଅସହିଷ୍ଣୁ, ଆପଣାର ଅନ୍ତର୍ଦାହେ ପ୍ରତିଯୋଗୀ ମଣି ତା'ରେ ତା'ପ୍ରତି ବିରୂପ ।

ନିରାନନ୍ଦେ ଦୁଃଖୀ ଯେହ୍ନୁ, ପରଶ୍ରୀକାତରତା ତା'ର ଏକାନ୍ତ ସମ୍ବଳ,
ଏ ସତ୍ୟର ଉପଲବ୍ଧି ଚିର ଆନନ୍ଦର ମନେ ଦୃଢ଼ୀଭୂତ କରିଥାଏ ସହାନୁଭୂତିକୁ,
ସେ ତେଣୁ ସତତ ସ୍ଥିର, ଅବିଚଳ, ବିପଦରେ ପଡ଼ିଥିବା ବ୍ୟକ୍ତିର ବ୍ୟସ୍ତତା,
ଭାଷା ଆଉ ଆଚରଣେ ଅସଙ୍ଗତି, 'ନିରାପଦ' ଧୃଷ୍ଟତା କି ମଣେ ?

ଆନନ୍ଦ ବିଚାରେ ସଦା ଅଚଞ୍ଚଳ, ସ୍ଥିତପ୍ରଜ୍ଞ, ଅଗ୍ରଜ ସେ ଧୀର ଯୁଧିଷ୍ଠିର,
ବିପରୀତ ବୈଚିତ୍ର୍ୟ ମଧ୍ୟେ ସହ ଅବସ୍ଥାନ ତେଣୁ ଅବଶ୍ୟ ସମ୍ଭବ । ▭

## ତାରା

ବସ୍‌ରେ ମୁଁ ଯିବାବେଳେ ତାରାଟିଏ ସଙ୍ଗେ ସଙ୍ଗେ ଯାଉଥିଲା ମୋର,
ତରୁମାନଙ୍କର ଶୀର୍ଷ ଛୁଇଁ ଛୁଇଁ, କେତେବେଳେ ଦିଶି ପୁଣି କେତେବେଳେ
ଯାଉଥିଲା ଲୁଚି,
ଆକାଶରେ ଏକୁଟିଆ ବସ୍ ସାଥେ ପ୍ରତିଯୋଗିତାରେ
ମୋ ଆଖିର ତାରାକୁ ସେ ଚାହିଁ ଚାହିଁ କରୁଥିଲା ଗତି ।

ହଠାତ୍ ମୋ ମନେ ହେଲା ସେ ଯେପରି ଖୁବ୍ ଆପଣାର,
ମୋ ମନର ନିଃସ୍ୱତାକୁ ପ୍ରାଣେ ପ୍ରାଣେ ଉପଲବ୍ଧି କରି
ମୋତେ ତା ସାନ୍ନିଧ ଦିଏ, ଦୂରେ ଥାଇ ନିକଟର ସ୍ପର୍ଶେ,
ଅଥଚ ପୂର୍ବରୁ କେବେ ତା' ସହିତ ପରିଚୟ ନ ଥିଲା ତ ମୋର ।

ଚିନ୍ତାରେ ନ ଥିଲା ତୃପ୍ତି, ବନ୍ଧୁତ୍ୱ ଓ ଆତ୍ମୀୟତା ହଠାତ୍ ଯା' ମିଳେ
ତା'ର କି ତୁଳନା ଅଛି, ଏଇ ତାରା, ଏଇ ବସ୍, ଏ ପ୍ରତିଯୋଗିତା
କାଲି କି ଥିବ ଆଉ ? କାଲି ଠିକ୍ ଏହି ମୁହୂର୍ତ୍ତରେ
ସହସ୍ର ପ୍ରଚେଷ୍ଟା ସତ୍ତ୍ୱେ ଏହି ଦୃଶ୍ୟ, ଏ ସ୍ପନ୍ଦନ ସୃଷ୍ଟି ଆଉ ହେବା କି ସମ୍ଭବ ?

ତେଣୁ ଏ ତାରାକୁ ଆଜି ମନେ ମନେ ନମସ୍କାର କରେ,
କାଲି ଯେ ନ ଥିବ ଆଉ ଏମିତି ଏ ପରିବେଶେ ଥିବ ଖାଲି ଅନିର୍ବାଣ
ଉଜ୍ଜ୍ୱଳ ସ୍ମୃତିରେ । □□

## ନିଃସଙ୍ଗତା ସମ୍ପର୍କରେ

ନିଃସଙ୍ଗତାବୋଧ ଏବଂ ତଦ୍‌ଜନିତ ଯନ୍ତ୍ରଣା ସମ୍ବନ୍ଧେ ଏବେ ମୁଁ କିଛି କହୁଛି ।
ଏଇ ଅନୁଭବ ଖାଲି ମୋର ନୁହେଁ, ତୁମର ଓ ଅନ୍ୟମାନଙ୍କର,
ମାତ୍ର ସେଇ ସମ୍ପର୍କରେ ବିଶ୍ଳେଷଣ କରିବା ଓ ଗଭୀର ହେବାର
ଯେଉଁ ବ୍ୟାକୁଳତା ଖୁବ୍ ପ୍ରୟୋଜନ, ରହୁଛି ତା' ନୀରବ ନିଃସ୍ପନ୍ଦ ।

ସେଥିଯୋଗୁଁ ଆମ୍ଭେମାନେ ଅହରହ ଯନ୍ତ୍ରଣାରେ ଜଳୁଥିଲେ ମଧ
ନିଷ୍କୃତିର ଉପାୟ କି ପାଉ ? ନିରର୍ଥକ ଛୁଟୁ ଇତସ୍ତତଃ,
ଶୂନ୍ୟତାବୋଧରୁ ନିଜ ମୁକ୍ତିଲାଗି ଆମେ ଲୋଡୁ ସାନ୍ନିଧ ଯାହାର
ନିଜେ ସେ ନିଃସଙ୍ଗ ଏବଂ ନିଃସହାୟ, ଶୂନ୍ୟକୁ ସେ ଅନାଇଛି ଜ୍ୱଳନରୁ ପରିତ୍ରାଣ ପାଇଁ

ନିଃସଙ୍ଗତା ସମ୍ପର୍କରେ କେତୋଟି ଦୃଷ୍ଟାନ୍ତ ଦେଲେ ବକ୍ତବ୍ୟ ମୋ ବେଶ୍ ସ୍ପଷ୍ଟ ହେବ ।
ସଚ୍ଚିବାବୁ, ସଚିବାଳୟେ ସେ ଥିଲେ ସେକ୍ରେଟାରୀ ଘରୋଇ ବିଭାଗେ,
ଅବସର ନେବାପରେ କେତେ ସେ ନିଃସଙ୍ଗ, ତା'ର ଟେର୍ ସେ ପାଇଲେ ।
ଫାଇଲ୍‌ର ସ୍ତୂପମଧେ ବସି ରହି ସମୟ କି ପାଉଥିଲେ କେବେ
ପରିବାରେ ଯୁକ୍ତ ହୋଇ ବିଭିନ୍ନ ସ୍ପନ୍ଦନ ସାଥେ କରିବାକୁ ନିଜକୁ ସଂପୃକ୍ତ,
ବନ୍ଧୁ ଓ ଆତ୍ମୀୟମାନେ ତାଙ୍କର ସାନ୍ନିଧ ଲୋଡ଼ି ବ୍ୟର୍ଥ ହେଉଥିଲେ,
କ୍ଷମତା ନିମିତ୍ତ କେତେ ଖାତିର ଓ ନମସ୍କାର, କେତେ ନିମନ୍ତ୍ରଣ,

ମାତ୍ର ବୁଦ୍‌ବୁଦ୍ ବା ସ୍ଥାୟୀ କେତେକ୍ଷଣ ?
ଚାକିରିରୁ ଯିବାପରେ ସବୁ କ୍ରମେ ଶୂନ୍ୟ ହୋଇଗଲା ।
ଯେଉଁମାନେ ନଇଁଥିଲେ ତାଙ୍କ ପାଖେ, ସସମ୍ଭ୍ରମେ କହୁଥିଲେ କଥା,
କୁଆଡ଼େ ସେମାନେ ଗଲେ ? ଅକସ୍ମାତ୍ ପଥେ କେବେ ଦେଖା ହୋଇଗଲେ
ଦେଖି ନ ଦେଖିଲା ଭଳି ବାଟଭାଙ୍ଗି ଚାଲିଯା'ନ୍ତି, ନମସ୍କାର କରିବା ତ ବନ୍ଧୁ ଦୂର କଥା ।
କ୍ରମେ ସେ ବୁଝିଲେ ଏକ ମୋହ ମଧ୍ୟେ ଏତେଦିନ ଭୁଲ୍‌ଟାକୁ ଠିକ୍ ବୋଲି ସ୍ୱପ୍ନ
ଦେଖୁଥିଲେ ।
ପରିବାର ମଧ୍ୟେ ଯେବେ ଦୃଷ୍ଟି ଦେଲେ, ସେଠାରେ ବି ଅନୁଭବ କଲେ କେହି
ନିଜର ନୁହନ୍ତି
ଯଦିଓ ନିଜର ସର୍ବେ, ସ୍ନେହ ଓ ଆଦର କଲେ ପଶୁ ମଧ୍ୟ ଆପଣାର ହୁଏ,
ଅଥଚ ମଣିଷ ଯେବେ ଲୋଡ଼ିଛି ମଣିଷଠାରୁ ସେ ଅମୃତ ସେ କେବେ କି
ଦେଇଛନ୍ତି ତା'ରେ ?

•

ରକ୍ତର ହେଲେ ବି ନିଜ ସୃଷ୍ଟିମାନେ ଆତ୍ମଜ, ଆତ୍ମଜା
ପିତା ପ୍ରତି ଅନୁରକ୍ତ ହେବା ପରିବର୍ତ୍ତେ ବୀତସ୍ପୃହ ଥିଲେ,
ବିସ୍ମୟ କି ଅଛି ତହିଁ, ସେମାନଙ୍କ କଥା ଛାଡ଼, ନିଜ ଅର୍ଦ୍ଧାଙ୍ଗିନୀ
ମନେ ବି ତା' ପତି ପ୍ରତି ଚରମ ବିତୃଷ୍ଣା,
ଅତୀତେ ଲୋଡ଼ିଛି ଯେବେ ସ୍ୱାମୀର ସାନ୍ନିଧ୍ୟ ଟିକେ ଲଭିବାକୁ ମୁକ୍ତି ନିଜ ମନ
ଶୂନ୍ୟତାରୁ,
କର୍ମବ୍ୟସ୍ତତାର ଦେଇ ଦ୍ୱାହି ସେ ତ ପ୍ରତ୍ୟାଖ୍ୟାନ କରିଛନ୍ତି ତା'ରେ,
ସେଇ ଅବଜ୍ଞାର ତୀବ୍ର ପ୍ରତିଶୋଧ ନେବାଲାଗି ସେ ଏବେ ପ୍ରସ୍ତୁତ ।
ଦୂର ଆଉ ନିକଟର ଆତ୍ମୀୟ ସ୍ୱଜନ ଯେତେ ଚକ୍ରାନ୍ତ କି କରିଛନ୍ତି ସତେ
ପାଖେ ତାଙ୍କୁ ନ ପୂରାଇବାକୁ, ସେମାନଙ୍କୁ ଉପେକ୍ଷା ସେ କରିବାର ଏଇ
ପରିଣତି ?

ସଚ୍ଚିବାବୁଙ୍କର ହଠାତ୍ ମନେହେଲା ଆପଣାର ବୋଲି କେହି ଜଣେ ହେଲେ ନାହିଁ,
ଈଶ୍ୱର ହିଁ ଏକମାତ୍ର ସାଥୀ, ମାତ୍ର ସେଇ ଈଶ୍ୱରଙ୍କୁ ପାଇବାର ଉପାୟ କି ଏବେ ?
ସାରା ଜୀବନଟା ଯାରେ ଚିହ୍ନିବାକୁ ଏତେ ଟିକେ ପ୍ରୟାସ ହୋଇନି
ଅଯଥା ବ୍ୟସ୍ତତା ମଧ୍ୟେ, ସେ ହଠାତ୍ ଆପଣାର କିପରି ବା ହେବେ ?
ଗୀତାପାଠ ? ଭାଗବତ ଅଧ୍ୟୟନ ? ଭିନ୍ନ ଭିନ୍ନ ସ୍ଥାନେ ପ୍ରବଚନ ଶୁଣିବା, ବୁଝିବା ?
ସନ୍ଧ୍ୟାରେ ମନ୍ଦିରେ ଯାଇ ବିଗ୍ରହରେ ଯୋଡ଼ହସ୍ତେ ଦର୍ଶନ କରିବା ?
ସମସ୍ତ ପ୍ରୟାସ ସତ୍ତ୍ୱେ ନିଃସଙ୍ଗତା ଯନ୍ତ୍ରଣାରୁ ମୁକ୍ତି ତ ମିଳୁନି ।

ତେବେ, ତେବେ ଉପାୟ କି ତେବେ ? ପଥ କାହିଁ ? ଆଲୋକ ବା କାହିଁ ?
ଶୂନ୍ୟ ଦୃଷ୍ଟି ମେଲି ସଚ୍ଚିବାବୁ ସଙ୍ଗ ଖୋଜୁଛନ୍ତି, କିନ୍ତୁ ସଙ୍ଗୀ ମିଳୁନାହିଁ ।

ଶୁଭକାନ୍ତ କେତେବଡ଼ କବି ସତେ, ଉଚ୍ଚ ପଦଧାରୀ ଜଣେ ଯୋଗ୍ୟ ଅଫିସର୍,
ଅଧ୍ୟୟନେ ଅସୀମ ପିପାସା, ନିଜକୁ ଏକାଗ୍ର ସଦା ରଖିବାରେ ଏଇ ସବୁ ମହତ୍
ମାଧ୍ୟମ ସତ୍ତ୍ୱେ ବି,
ସେଦିନ ହଠାତ୍ ତାଙ୍କ ଘରେ ଯାଇ ଯାହା ଲକ୍ଷ୍ୟ କଲି
ବିସ୍ମୟେ ମୁଁ ହତବାକ୍, ପତ୍ନୀ ଏବଂ ବନ୍ଧୁମାନଙ୍କୁ ସେ ନେଇ ବ୍ରିଜ୍ ଖେଳୁଛନ୍ତି,
କେତେ ସେ ତନ୍ମୟ ସତେ, କବିତା ସମ୍ପର୍କେ କିଛି ଆଲୋଚନା ତାଙ୍କ ସଙ୍ଗେ
ପ୍ରୟୋଜନ ଥିଲା,

ମୋର ଉପସ୍ଥିତି ହେତୁ ସୌଜନ୍ୟ ଦୃଷ୍ଟିରୁ ଖେଳ ସେତିକିରେ ବନ୍ଦ ରଖାଗଲା,
ଆମ୍ଭମାନଙ୍କର ମଧ୍ୟେ କିୟତ୍‌କ୍ଷଣ ଆଳାପ ଉତ୍ତାରେ
କ୍ରୀଡ଼ାମୋଦୀ ବନ୍ଧୁମାନେ ବିଦାୟ ଗ୍ରହଣ କଲେ, ପତ୍ନୀ ରେବାଦେବୀ
କେଉଁ ଏକ ପ୍ରୟୋଜନ ଲାଗି ଭିତରକୁ ଉଠି ଚାଲିଗଲେ,
ଏକାନ୍ତରେ ଏବେ ଆମେ ଦୁହେଁ, କିନ୍ତୁ ମୁଁ ଗୋପନ ରଖି ତାଙ୍କ ପାଖେ ଆସିବାର
ଅଭିପ୍ରାୟ ମୋର
ହଠାତ୍ ପ୍ରକାଶ କଲି ମୋ ମନର ଉପସ୍ଥିତ ପ୍ରତିକ୍ରିୟା ତାଙ୍କ ସମ୍ପର୍କରେ
ଦୃଷ୍ଟିରେ ମୋ କୌତୂହଳ, କିୟତ୍‌କ୍ଷଣ ଚିନ୍ତା ପରେ ସ୍ତବ୍‌ଧ ଦୃଷ୍ଟି ମେଲି ଯେଉଁ
ଉତ୍ତର ସେ ଦେଲେ
ନିଶ୍ଚୟ ତା' ପ୍ରଣିଧାନଯୋଗ୍ୟ, "ଚାକିରିରେ ମୋ ପ୍ରତିଷ୍ଠା, ମୋ କବିତ୍ୱ,
ଦିବାରାତ୍ରି ଗ୍ରନ୍ଥ ଅଧ୍ୟୟନ
ମୋତେ ମୋ ଅଭାବବୋଧୁଁ ମୁକ୍ତି କି ଦେଇଛି ? ସମୁଦ୍ରର ଢେଉ ଗଣି ଗଣି
ସମୟ କି ସରେ କା'ର ? ମୋ ଶୂନ୍ୟତା ସମ୍ପର୍କରେ ତୁମ ଆବିଷ୍କାର
କେତେ ନ ନିର୍ଭୁଲ ସତେ, ମୋ ସକଳ ପ୍ରାପ୍ତି ଯାହା ବାହାରର
ତନ୍ମଧ୍ୟରୁ ସେ ପରମ ସତ୍ୟକୁ ମୁଁ ପାଇଥାନ୍ତି ଯଦି
'ବ୍ରିଜ୍'ର ବେଷ୍ଟନୀ ମଧ୍ୟେ ମୁଁ କେବେ କି ଆପଣାକୁ ବିହ୍ୱଳ ରଖନ୍ତି,
ମୋର ନିଃସଙ୍ଗତା କେତେ ବ୍ୟାପକ ତା' ମୋ ବ୍ୟତୀତ ଅନ୍ୟ କେ' ବୁଝିବ ?
ଶୁଭକାନ୍ତ ପୁନର୍ବାର କହିଥିଲେ ମୋତେ
ପ୍ରିୟନାଥବାବୁଙ୍କର ବର୍ତ୍ତମାନ ସ୍ଥିତି ସମ୍ବନ୍ଧରେ

"କେତେ ବଡ଼, ଔପନ୍ୟାସିକ ସେ, ପ୍ରଜ୍ଞା ଓ ବୁଦ୍ଧିରେ ଦୀପ୍ତ ତାଙ୍କ ଗ୍ରନ୍ଥମାନ,
ତାଙ୍କ ସମକକ୍ଷ ଅନ୍ୟ କେହି ଅଛି ? ଅଥଚ ସେ କକ୍ଷଚ୍ୟୁତ ଗ୍ରହସମ ଏବେ
ଅଶାନ୍ତ, ଅସ୍ଥିର ସଦା, ତାଙ୍କ ସୂକ୍ଷ୍ମ ଚିନ୍ତାମାନ ବିଷଣ୍ଣ, ବିବର୍ଣ୍ଣ,
କେବେ କେବେ ନିର୍ଜନେ ଏକାକୀ ବସି ବଂଶୀ ସେ ବଜାଇ ଯେହ୍ନେ ମନେ ମନେ
କାହାକୁ ଖୋଜନ୍ତି,
ସାରା ଜୀବନର ଏତେ ଆହରଣ, ଶେଷ ଜୀବନରେ ଆହା ଶୂନ୍ୟତାରୁ ମୁକ୍ତି ଲାଗି
କି ସାହାଯ୍ୟ କଲା ?"
ଶୁଭକାନ୍ତ କଥା ଶେଷେ ନୀରବରେ ଦୀର୍ଘଶ୍ୱାସ ତ୍ୟାଗ କରିଥିଲେ ।

ଏହିପରି ଦୃଷ୍ଟାନ୍ତର ଶେଷ କାହିଁ ? ବିନୋଦିନୀ, ଗାୟିକା ସେ, କେତେ ଯଶ
କେତେ ଖ୍ୟାତି ତା'ର,
ସଙ୍ଗୀତରେ ସାରା ଜୀବନର ସାଥୀ କରିବାର ସିଦ୍ଧାନ୍ତକୁ ନେଇ
କୁମାରୀ ସେ ରହିଗଲା, ମାତ୍ର ସେ ସଙ୍ଗୀତ ତାକୁ ନିଷ୍କୃତି କି ଦେଲା
ସଙ୍ଗହୀନତାର କ୍ରୂର ଯନ୍ତ୍ରଣାରୁ, ମନ ତଳେ ପୂର୍ଣ୍ଣତାର ପରିତୃପ୍ତି କାହିଁ ?
ମୀରାର ଭଜନ ଗାଇ ଲାଭ କ'ଣ ? ମୀରାର ସେ ପ୍ରାଣ
ପାଇ ସେ ତ ପାରିଲାନି, ଶୂନ୍ୟତାର ହାହାକାରେ ଏବେ ସେ ଜଳୁଛି ।

ଶୁଭଙ୍କର କେତେବଡ଼ ଚିତ୍ରଶିଳ୍ପୀ, ଅଙ୍କନରେ ଧ୍ୟାନ ତା'ର ଲକ୍ଷ୍ୟ କରିବାର କଥା,
ନିତି ନୂଆ ଛବି ଅଙ୍କା, ନୂତନ ଚିନ୍ତାରେ ସ୍ନିଗ୍‌ଧ, କେତେ ଲୋଭନୀୟ,
ମାତ୍ର ସେଇ ଆନନ୍ଦର ସ୍ଥିତି କେତେ କ୍ଷଣ ? ସେ ନୂତନ କେତେ ଶୀଘ୍ର ପୁରାତନ ହୁଏ,
ପୁନଶ୍ଚ ନବୀନ ସୃଷ୍ଟି ଲାଗି ବ୍ୟାକୁଳତା, ନଚେତ୍ ଆନନ୍ଦ କାହିଁ ? ମନତଳେ
ଶୂନ୍ୟତାର ସ୍ଥିତି,
ଏହିପରି ଆକୁଞ୍ଚନ ପ୍ରସାରଣେ, ଅନ୍ଧାର, ଆଲୁଅ ମଧ୍ୟେ ଦୋଳୁଥିଲା ଯେବେ
ଚିନ୍ତାରେ ତା' ହଠାତ୍ ଚମକ, 'ଏପରି ଗୋଟାଏ କିଛି ଆଙ୍କନ୍ତି ମୁଁ ସୃଷ୍ଟିପରେ
ଯା'ର
ଅନ୍ୟ ସୃଷ୍ଟି ପ୍ରୟୋଜନ ପଡ଼ନ୍ତାନି ଆଉ, ନିତି ତା'ରେ ଦେଖୁଥା'ନ୍ତି ଯେତେ
ନୂଆ ନୂଆ ଲାଗିଥା'ନ୍ତା, ଅପରିବର୍ତ୍ତିତ ଛବି, ଅଥଚ ଆନନ୍ଦ ନିତି ନବ ନବ
ଅନିର୍ବଚନୀୟ,
ସେ ତାହାର ବିଚିତ୍ର ଏ ମନୋଭାବ ବ୍ୟକ୍ତ କଲା ଅନେକଙ୍କ ପାଖେ,
ମାତ୍ର ସେଇ ସମସ୍ୟାର ସମାଧାନ କାହିଁ, ସେ ଛବିର କେଉଁ ସ୍ୱରୂପ ବା ହେବ ?

ଚିନ୍ତାର ଐଶ୍ୱର୍ଯ୍ୟ ତା'ର ଅଜସ୍ର ପ୍ରୟାସ ସତ୍ତ୍ୱେ ତୂଳୀରେ ତା' ସମ୍ଭବ କି ହେଲା ?
ସେ ଯେବେ ହତାଶ, ଠିକ୍ ସେଇ ଅସମୟେ ତା'ର, ସ୍ୱାମୀ 'ପ୍ରଜ୍ଞାନନ୍ଦ'
ତ୍ରୁଟି ତା' ଦର୍ଶାଇ ଦେଲେ, "ବସ୍ତୁର ସୃଷ୍ଟିରେ ତାହା ସମ୍ଭବ କି କେବେ ?
ଚିନ୍ମୟକୁ ରୂପ ଦେଇ ପାରିବକି ? କିପରି ତା' ସମ୍ଭବ ହୋଇଚି
ଥରେ ଯା'ର ଦେଖି ଆସ ନୀଳାଚଳେ, ବ୍ରହ୍ମର ଅପୂର୍ବ ରୂପ, ବାରମ୍ବାର
ଦେଖୁଥିଲେ ତାହା
ନୟନର ତୃଷା ମେଣ୍ଟେ ନାହିଁ,ବିଗ୍ରହର ଅନ୍ତରାଳେ ଅରୂପର ସ୍ଥିତି,
ସେପରି ପାରିବ ଆଙ୍କି ?" କୌତୂହଳୀ ଶୁଭଙ୍କର ଶ୍ରୀକ୍ଷେତ୍ରକୁ ଗଲା,
ତା'ପରେ ଫେରିଲା ଯେବେ ସ୍ୱାମିଜୀଙ୍କ ପାଖେ, ଦୃଷ୍ଟିରେ ତା' ହତାଶାର ଛବି,
ଏତେ ଆନନ୍ଦର କ'ଣ ଅଛି ତହିଁ ? ସେ ବିକୃତ ବିଗ୍ରହର ରୂପେ
କଳାର କି କୃତିତ୍ୱ ବା ଅଛି ?" ପ୍ରଶ୍ନରେ ସ୍ୱାମିଜୀ ହସିଲେ ଅଳ୍ପ, ଓଠରେ ଉତ୍ତର,
"ଯେଉଁଦିନ ତୁମ ଉପଲବ୍ଧି ସକ୍ଷମ ହେବ ସେ କଳା ବୁଝିବାକୁ, ସେଦିନ ତୁମର
ଶିଳ୍ପୀ ଜୀବନର ହେବ ସୂର୍ଯ୍ୟୋଦୟ" ଶୁଭଙ୍କର ଏତେ ସବୁ ଶୁଣିବା ସତ୍ତ୍ୱେବି
ବସ୍ତୁର କଳାକୁ ଛାଡ଼ି, ଚିନ୍ମୟର କଳା ପ୍ରତି ଆକୃଷ୍ଟ କି ହେଲା ?
ଆଙ୍କୁଛି ସେ ଆଙ୍କୁଥିବ, ମାତ୍ର ନିଜ ନିଃସଙ୍ଗତା, ଅଭାବକୁ ଅତିକ୍ରମ କରି
ପହଞ୍ଚି ସେ ପାରିବ କି କେବେ ପୂର୍ଣ୍ଣତାର ଦିଗ୍‌ବଳୟେ, ଉର୍ଦ୍ଧ୍ୱ ଆଉ ନିମ୍ନ ଯହିଁ
ଏକତ୍ର ହୋଇଛି ।
ଏଇ ହେଲା ନିଃସହାୟ ମଣିଷର କେତୋଟି ଆଲେଖ୍ୟ,
ବସ୍ତୁ ଐଶ୍ୱର୍ଯ୍ୟର ସବୁ ପ୍ରାପ୍ତି ସତ୍ତ୍ୱେ ଭିକ୍ଷୁକ ସେ, ପ୍ରସାରିତ ପାଣି,
ଏତେ ଜନ, ଏତେ ଧନ, ଖ୍ୟାତି, ସ୍ତୁତି, ତଥାପି ତା' ନିଃସଙ୍ଗତାବୋଧ
ଅବ୍ୟାହତ ରହେ, ଠିକ୍ ଠିକ୍ ସେ ଯେଣୁ ପାରୁନି କାନ୍ଦି ନିଜ ଯନ୍ତ୍ରଣାରେ
ଶୂନ୍ୟତାରୁ ମୁକ୍ତି କି ସମ୍ଭବ ? ସୂର୍ଯ୍ୟକୁ ମୁଠାରେ ଧରି ଡ଼ରୁଛି ସେ, ଝୁଣ୍ଟିପାରେ
ମିଛ ଅନ୍ଧକାରେ । □□

## ଲାଭା

ହଜି ଯାଇଥିବା ମୋର ଯୌବନକୁ ଖୋଜୁଛି ମୁଁ ଅଶ୍ରୁଳ ନୟନେ,
ସେ ଆଉ ଫେରିବ ନାହିଁ ସମସ୍ତ ତା' ଐଶ୍ୱର୍ଯ୍ୟକୁ ନେଇ,
ଯଦି ବା ଆସିବ କେବେ, ଦେଖିଦେଇ ଶ୍ଲଥ ଏଇ ଅଙ୍ଗକୁ ମୋହର
ନିରାଶେ ଲେଉଟି ଯିବ, ହାତ ମୁଁ ବଢ଼ାଇ ହାୟ, ହାତ ମୋର ଆଣିବି ଫେରାଇ ।
ପ୍ରକୃତିରେ ରହିଛି ବସନ୍ତ, ଫୁଲରେ ବି ସୁଗନ୍ଧ ରହିଛି,
ଜ୍ୟୋତ୍ସ୍ନା ବି ଝରୁଛି ଠିକ୍ ଆଗପରି, ସୂର୍ଯ୍ୟର ଆସିବା ଯିବା ଅବ୍ୟାହତ ଅଛି,
ଅଥଚ ବଦଳି ଗଲା କେତେ ଦ୍ରୁତ ଲୋଭନୀୟ ଏ ଦେହଟା ମୋର,

କିପରି ଝାଉଁଳି ଗଲା ? କାଳର ଅହଙ୍କା ଏତେ, କି ଲାଭ ତା' ହେଲା ?
ମୋ ମନେ ବସନ୍ତ ଅଛି, କୁସୁମର ଗନ୍ଧ ଅଛି, ଭରପୂର ରହିଛି ଯୌବନ,
ଦେହଟା ଅଳୀକ ଏହି ସତ୍ୟ ଆଜି ବାରମ୍ବାର ଆବୃତ୍ତି କଲେବି
କାହିଁକି ବୁଝେନା ମନ ? ଅତୀତରେ ଏ ଦେହର ସବୁଜ ଅଙ୍ଗନେ
କେତେ ଉନ୍ମାଦନା, ବିହ୍ୱଳତା ଅଭିବ୍ୟକ୍ତ ନ ହୋଇଛି ପାପପୁଣ୍ୟ ବିଚାରକୁ ଏଡ଼ି ।

ସେ ସବୁର ମୂଲ୍ୟାଙ୍କନ କରିବାକୁ ମୁଁ କାହିଁକି ଆଜି ଏତେ ଦ୍ୱିଧାଗ୍ରସ୍ତ ହୁଏ ? ▭▭

## ଉନ୍ମୀଳନ

ବ୍ରହ୍ମାନନ୍ଦ ବାବୁଙ୍କର ଓଠେ ସଦା ଗୀତାର ଆବୃତ୍ତି,
ଅଠର ଅଧ୍ୟାୟ ସେ ତ ଅନର୍ଗଳ ମୁହେଁ ମୁହେଁ ଗାଇ ପାରୁଥିଲେ,
ପ୍ରତି ଶ୍ଲୋକ ପରେ ତାଙ୍କ ବ୍ୟାଖ୍ୟା ପୁଣି ଏତେ ଚମତ୍କାର,
ଜ୍ଞାନ ଆଉ ଭକ୍ତି ଯେହ୍ନେ ମୂର୍ତ୍ତିମାନ ହୋଇଥିଲେ ତାଙ୍କ ନିକଟରେ,
ଉଚ୍ଚାରଣ କରୁ କରୁ 'ଜୟ ଜଗନ୍ନାଥ,' ଆର୍ଦ୍ରହୋଇ ଉଠୁଥିଲା ନୟନ ତାଙ୍କର
ଭାବାବେଗେ, ଦିନେ କିନ୍ତୁ ଅକସ୍ମାତ ସବୁ କିଛି ହୋଇଗଲା ଓଲଟପାଲଟ-
ଏକମାତ୍ର ପୁତ୍ର ତାଙ୍କ 'ଅଭିଜିତ୍' ପ୍ରାତଃକାଳେ ସ୍ନାନ ଲାଗି ଯାଇ
ଫେରିଲାନି ଆଉ, 'ଦର୍ଶନ'ର ସେ ଛାତ୍ର ଥିଲା, ଦୀର୍ଘକାଳ ଖୋଜା ଖୋଜି ପରେ
ନଦୀ ଗର୍ଭୁ ମୃତ ଦେହ ହେଲା ଆବିଷ୍କୃତ, ପରିବାରେ କି ବିକଳ କ୍ରନ୍ଦନର ରୋଳ ।
ବ୍ରହ୍ମାନନ୍ଦବାବୁ କ'ଣ ଏ ମୃତ୍ୟୁରେ ଅସ୍ଥିର ନ ହୋଇ ଶାନ୍ତ ରହି ପାରିଥିଲେ ?
ଭାଙ୍ଗି ଖୁବ୍ ପଡ଼ିଥିଲେ, ଅଥଚ ସେ ନିଜ ଅଶ୍ରୁ ସଂଗୋପନ କରି
ସ୍ଥିର ରହିଥିବା ଭଳି କରୁଥିଲେ ବେଶ୍ ଅଭିନୟ,
ଓଠେ ତାଙ୍କ 'ବାସାଂସି ଜୀର୍ଣ୍ଣାନି' ସେଇ ଶ୍ଲୋକର ଆବୃତ୍ତି,
ମନେହୁଏ ସ୍ଥିତପ୍ରଜ୍ଞ ଯେହ୍ନେ, ଅଥଚ ଅନ୍ତରେ ତାଙ୍କ ସେ ଯେଉଁ ଯନ୍ତ୍ରଣା
ପୁତ୍ର ଶୋକେ, ଅନୁଭବୀ ବିନା ତାହା ଅନ୍ୟ କେ' ବୁଝିବ ?

ମୃତ ପୁତ୍ର ମୁଖେ ଚାହିଁ ଉଚ୍ଛ୍ୱସିତ କୋହକୁ ସେ ଚାପି ରଖୁଥିଲେ,
ମାତ୍ର ଏହା ମୋହମୁକ୍ତି ଲକ୍ଷଣ ତ ନୁହେଁ, ଶୋକରେ ଆହତ ହୋଇ ସହ୍ୟକରିଯିବା
ଏବଂ ଶୋକ ନ କରିବା ଏକ କଥା ନୁହେଁ ତ କଦାପି,
ଛଳନା ତାଙ୍କର କେଡ଼େ ଚମତ୍କାର, ଅନ୍ୟମାନେ ସ୍ୱାଭାବିକ କିନ୍ତୁ,
ଶୋକରେ ବିକଳ ହୋଇ କାନ୍ଦୁଛନ୍ତି, କାନ୍ଦୁଛନ୍ତି ମୁଣ୍ଡ କୋଡ଼ି, ବୁକେ କରାଘାତ କରି,

ଇଚ୍ଛା କଲେ ସେ କାନ୍ଦନ୍ତେ, ମନ ଭରି କାନ୍ଦି ପକାଇଲେ
ଛାତିରେ ଜମାଟ ବନ୍ଧା ଦୁଃଖ କେତେ ଲାଘବ ହୁଅନ୍ତା,
ଅଥଚ ସେ କାନ୍ଦିବେନି, କାନ୍ଦି ପକାଇଲେ ସେ ତ ହୋଇଯିବେ ଛୋଟ
ଅନ୍ୟର ଆଖିରେ, ଉଜ୍ଜ୍ୱଳ ସ୍ୱରୂପ ତାଙ୍କ ମୁହୂର୍ତ୍ତକେ ହୋଇଯିବ ମ୍ଳାନ ।

ଶ୍ରୀବାସଙ୍କ ଗୃହ ଅଙ୍ଗନରେ ସଙ୍କୀର୍ତ୍ତନ ହେବ, ଆସି ନାଚିବେ 'ନିମାଇ'
ସେଥିଲାଗି ଗୃହେ ତାଙ୍କ ମହୋତ୍ସବ, ଆୟୋଜନ କେତେ,
ବିନାମେଘେ ବଜ୍ରପାତ, ଶ୍ରୀବାସଙ୍କ ରୁଗ୍ଣ ତନୟର ମୃତ୍ୟୁ ଅକସ୍ମାତ,
ଅଥଚ, ଭକ୍ତଙ୍କର ଗହଣରେ 'ନିମାଇ'ଙ୍କ ଆସିବାର ସମୟ ଆସନ୍ନ,
ବୁଝିପାରି ପରିସ୍ଥିତି ସତର୍କ ସେ କରିଦେଲେ ତାଙ୍କ ପରିବାରେ ପ୍ରତ୍ୟେକ ଜନକୁ
ଶୋକାକୁଳ ନ ହେବାକୁ, ଯଦି ଜାଣି ପାରନ୍ତି 'ଗୌରାଙ୍ଗ'
ଭାବ ଯେ ବ୍ୟାହତ ହେବ, କୃଷ୍ଣ ପ୍ରେମେ ମତ୍ତ ହୋଇ ନାଚିବେ କି ଆଉ ?
ଶ୍ରୀବାସଙ୍କ କଥା ସ୍ମରି ବ୍ରହ୍ମାନନ୍ଦବାବୁ ଭାବୁଥିଲେ ଏ ମୁହୂର୍ତ୍ତେ ଯଦି
'କୃଷ୍ଣ' ଆସି ଅକସ୍ମାତ ଆବିର୍ଭୂତ ହୁଅନ୍ତି ସମ୍ମୁଖେ,
ସେ କି ତେବେ ଭୁଲି ଯାଇ ପୁତ୍ର ଶୋକ,
ଶ୍ୟାମ ସୁଖେ ସତେ କ'ଣ ହୁଅନ୍ତେ ବିହ୍ୱଳ ?
ନିଜର ପ୍ରଶ୍ନର ପାଇ ଉତ୍ତର ସେ ମନ ତଳେ, ସରମରେ ଅଧୋମୁଖ ହେଲେ ।

ବ୍ରହ୍ମାନନ୍ଦ ବାବୁ ଅନୁଭବ କରୁଥିଲେ ଅର୍ଜୁନଙ୍କ ପୁତ୍ର ଶୋକ,
ଅଭିମନ୍ୟୁ ବଧର କାରୁଣ୍ୟ,
ସମସ୍ତ ଯୋଗର ବାଣୀ ଶୁଣି କୃଷ୍ଣ ମୁଖୁଁ, ବିଶ୍ୱରୂପ ଦରଶନ ପରେ,
ପୁତ୍ର ଶୋକେ ସେ କିପରି କଲେ ହାହାକାର ? 'ମୋହ'ର କି ଯାଦୁକରୀ ମାୟା,
ଜନନୀ ଜଠରୁ ପଡ଼ି 'ଶୁକଦେବ' ଅବିଳମ୍ବେ ସଂସାରେ ଉପେକ୍ଷା କରି ଚାଲିଗଲେ
ଯେବେ,
ପଶ୍ଚାଦଧାବନ କରି ତନୟର, ବ୍ୟାସଦେବ ଫେରିଆସିବାର ଲାଗି କରିଥିଲେ
କରୁଣ କାକୁତି,
ବ୍ରହ୍ମଜ୍ଞାନୀମାନଙ୍କର ମୋହରୁ ବି ମୁକ୍ତି ନାହିଁ ? ଅତଏବ ସେ କାହିଁକି ସ୍ୱାଭାବିକ,
ସରଳ ନ ହେଲେ ?
ଅଧ୍ୟୟନ ଓ ଆଚରଣ ମଧ୍ୟେ ସାମ୍ୟ ରଖି ପାରିବାଟା ଏତେ କି ସହଜ ?

ଯଦି ସେ ତା' ନ ପାରିଲେ, ଅଭିନୟେ ଅନ୍ୟକୁ ବିଭ୍ରାନ୍ତ କରି ଭ୍ରାନ୍ତିରୁ ସେ ମୁକ୍ତି
କି ପାଇଲେ ?
ଅଭାବରେ ବୁଡି ରହି 'ଭାବ'ର ବାହାନା କରି କି ଲାଭ ବା ହେଲା ?
ସାଶ୍ରୁନେତ୍ରେ ସ୍ମରୁଥିଲେ ବ୍ରହ୍ମାନନ୍ଦ ବାବୁ ଗତ ବର୍ଷ ପୂଜାବେଳେ ଘଟିଥିବା ଦୁର୍ଘଟଣା
କଥା,
'ଅଭିଜିତ୍' ଓ ତା' ବନ୍ଧୁ 'ପାର୍ଥ' କଟକକୁ ଯାଉଥିଲେ ସ୍କୁଟରରେ, ଫୁଲନଖରାପାଖେ
ଟ୍ରକ ସଙ୍ଗେ ମୁହାଁମୁହିଁ ଧକ୍କା, ଅସମ୍ପୂର୍ଣ୍ଣ ଦୁଃସମ୍ବାଦ ଅତି ମର୍ମନ୍ତୁଦ-
ଘଟଣା ସ୍ଥଳରେ ମୃତ୍ୟୁ ଜଣକର,
ଅନ୍ୟ ଜଣେ ରକ୍ଷା ପାଇ ଯାଇଅଛି ସୌଭାଗ୍ୟ ବଶତଃ
କେବଳ ଆହତ ହୋଇ, 'ଭଗବାନ ବଞ୍ଚି ଯେ ଯାଇଛି
ଅଭିଜିତ୍ ହୋଇ ଥାଉ,' ସ୍ୱାର୍ଥପର ଏହି ଚିନ୍ତା ମନରେ ତାଙ୍କର
ଆସିଥିଲା ଅକସ୍ମାତ, ଅସତର୍କ ମୁହୂର୍ତ୍ତରେ,
ଏହିପରି ମଣିଷର ନିର୍ଭୁଲ ରୂପ ଠିକ୍ ଧରାପଡ଼େ,
ସେ ଦିନ ଚିନ୍ତାର ସେଇ ଅପରାଧ ଲାଗି ଶାସ୍ତି ଏବେ ମିଳିଗଲା, ଅନ୍ତର୍ଯ୍ୟାମୀ ସେ
ସେ, ଠକି ପାରିବ କେ' ତାଙ୍କୁ ?

ଅନୁକୂଳ ପରିବେଶେ ସ୍ୱାଚ୍ଛନ୍ଦ୍ୟରେ ରହି, ଶାସ୍ତ୍ର ଅଧ୍ୟୟନ ଏବଂ ଈଶ୍ୱରାନୁରାଗ ଏକ
ବିଳାସର କଥା,
ବ୍ରହ୍ମାନନ୍ଦ ବାବୁ, ବିଶ୍ଲେଷଣ କରୁଥିଲେ ନିଜର ଚିନ୍ତାକୁ, ଅହଙ୍କାର ନେଇ
ନିଜକୁ ମଣିବା ଜ୍ଞାନୀ, ଯୋଗୀ, ଭକ୍ତ ନିର୍ବୋଧତା ସିନା,
ପାଣ୍ଡିତ୍ୟରେ ପ୍ରୀତି କାହିଁ ? ପ୍ରୀତି କ'ଣ କହି ହୁଏ ? ବ୍ୟକ୍ତ କରି ହୁଏ ?
ବିଜ୍ଞାପନ ଦେଇ ହୁଏ ପ୍ରେମର କି ? ଅନୁରାଗ ଚିରଦିନ ସରମେ ଜଡ଼ିତ ।

ବ୍ରହ୍ମାନନ୍ଦ ବାବୁଙ୍କର ତୁଣ୍ଡେ ଏବେ ଶୁଣାଯାଏ ନାହିଁ ଆଉ ଗୀତାର ଆବୃତ୍ତି,
ଅନ୍ୟକୁ ସାକ୍ଷାତ କାଳେ 'ଜୟ ଜଗନ୍ନାଥ' ଧ୍ୱନି କଣ୍ଠେ ତାଙ୍କ ଉଚ୍ଚାରିତ ହୁଏ ନାହିଁ
ଆଉ,
ନୀରବ ନିଶ୍ଚୁପ ସେ ଏବେ, ତାଙ୍କ ସମ୍ପର୍କରେ ତେଣୁ କେତେ ନ ବିସ୍ମୟ,
ଅଥଚ ସେ ମୌନତାରେ ସବୁ କିଛି ଦୃଶ୍ୟମାନ, ସବୁ ଧ୍ୱନିମୟ । ◻◻

# ଏକ ଅଶ୍ଳୀଳ ଅଭିବ୍ୟକ୍ତି

ଯେତେବେଳେ ସକାଳେ ତୁ ବ୍ୟସ୍ତଥିଲୁ ବସ୍ ଚଢ଼ିବାକୁ
କଲେଜକୁ ଯିବାଲାଗି, ସେତେବେଳେ ତୁ ଅଥବା ଅନ୍ୟମାନେ ଭାବିଥିଲେ କେହି
ସଂଧ୍ୟାର ସଂବାଦପତ୍ରେ ତୁ ହେବୁ ସଂବାଦ ଏକ, ଆକସ୍ମିକ ଅପମୃତ୍ୟୁ ତୋର
ପରିଚିତ କରିଦେଲା ତୋତେ ଅସଂଖ୍ୟଙ୍କ ମଧ୍ୟେ, ଶବାଧାର ପରେ ତେଣୁ
କୁଢ଼ କୁଢ଼ ଫୁଲର ସଂଭାର ।

ତୋର ମୃତ ଦେହ ପାଖେ ହାତୁ ଖସି କଲେଜରେ ବହି ତୋର, ରାସ୍ତା ପରେ
ପଡ଼ିଥିଲା ଜୁଡୁବୁଡୁ ତୋ ଶେଷ ରକ୍ତରେ,
ବାପା ତୋର ମୁଣ୍ଡକୋଡ଼ି କାନ୍ଦୁଥିଲେ, ବୋଉ ତୋର ବାରମ୍ବାର
ଯାଉଥିଲେ ମୂର୍ଚ୍ଛା,
ଆତ୍ମୀୟ ସ୍ୱଜନ ଆଉ ବଂଧୁମାନେ ତୋର, ନୀରବରେ ଅଶ୍ରୁ ଢାଳୁଥିଲେ,
କଲେଜରୁ ଫେରି, 'ବୋଉ, ଭୋକ ଲାଗିଲାଣି' ବୋଲି କହିବାର
ପ୍ରଶ୍ନ ଆଉ କାହିଁ ?

କଲେଜରେ ତୋ ବସିବା ସ୍ଥାନ ଏବେ ଶୂନ୍ୟ ପଡ଼ିଥିବ,
କଲେଜର ସାଥୀମାନେ ତୋର
ଅଶ୍ରୁସିକ୍ତ ନୟନରେ ଅଙ୍ଗୁଳି ନିର୍ଦ୍ଦେଶି, କୁହାକୁହି ହେଉଥିବେ
ତୋ ସ୍ମୃତିର ଅନେକ କାହାଣୀ,
କଲେଜର ଗେଟ୍‌ପାଖେ ଗୁପ୍‌ଚୁପ୍, ବାରମଜା, ବାଦାମର ଆକର୍ଷଣମାନେ
ହାତଠାରି ଡାକିବେନି ଆଉ ତୋତେ, ସେଠାରେ ତୋ ବଂଧୁମାନଙ୍କର
ସାଥେ ତୁ ଥିବୁ କି ଆଉ ?
ଏତେ ହୃଦୟର ଏତେ ଆଲୋଡନ, ତୁ ଅବଶ୍ୟ ବୁଝୁନାହୁଁ, ବେଶ୍ ଅଛୁ
ସେସବୁ ନ ବୁଝି,
ବାହାରେ ତୋଫାନ, ମାତ୍ର ଗୁମ୍ଫା ମଧ୍ୟେ ଅସମ୍ଭବ ଶୀତଳ ମୌନତା । ▭▭

(ରାଜଧାନୀ ଭୁବନେଶ୍ୱରସ୍ଥ ରମାଦେବୀ ମହିଳା କଲେଜ୍‌ର ପ୍ରଥମ ବାର୍ଷିକୀ ଛାତ୍ରୀ କୁମାରୀ ବିନୀତା ୧-୨-୧୯୮୦ ତାରିଖ ଦିନ ଚଳମାନ ବସ୍‌ରୁ ଖସିପଡ଼ି ମୃତ୍ୟୁବରଣ କରିଥିଲେ ।)

## ଉପହାର

ଗତବର୍ଷ ମୋ ଜନ୍ମଦିନରେ ଯେଉଁମାନେ ମୋତେ ଅଭିନନ୍ଦନ ଜଣାଇବାକୁ
ଆସିଥିଲେ, ଆଜିର ମୋର ଏ ଜନ୍ମୋତ୍ସବରେ ସେମାନେ ସମସ୍ତେ ମୋର ମନେ
ନ ଥିଲେ ବି, 'ସୁତପା' ସ୍ମରଣରେ ଅମ୍ଳାନ ରହିଛି ।
ଉତ୍ସବ ଶେଷରେ ସେ ଦିନ ସେ ମୋଠାରୁ ବିଦାୟ ନେବାବେଳେ, ମୋତେ
ପ୍ରଚୁର ଆଦରରେ ତା'ର ଦୁଇ ବାହୁ ବେଷ୍ଟନୀରେ ବନ୍ଦୀ କରି ଚୁପ୍‌ଚୁପ୍ କହିଥିଲା,
'ଆଗାମୀ ଜନ୍ମଦିନରେ ତୋର, ଏପରି ଏକ ଉପହାର ତୋତେ ଦେବି... । ▭

ସ୍ୱାମୀ ସଙ୍ଗେ ମନାନ୍ତର ହେତୁ 'ସୁତପା' ଦୁଇମାସ ତଳେ ଆତ୍ମହତ୍ୟା କରିଛି ।

## ଅପହୃତ

'କାବେରୀ' ହଠାତ୍ ଚମକି ଚେୟାର ଛାଡି
ଉଠିପଡିଲା, "ଛି, ଛି, ଆପଣ ମୋର ପିତୃ
ସମାନ, ଆପଣଙ୍କ ଓଠରେ ପୁଣି ଏ
ଅନ୍ୟାୟ ଅନୁରୋଧ... ।"

'ପ୍ରଫେସର' ସ୍ଥାଣୁ ପାଲଟି ଯାଇଛନ୍ତି,
ଅନୁତାପ, 'ଅବ୍ୟକ୍ତ ଭାବନାକୁ ବ୍ୟକ୍ତ
ସେ କଲେ କାହିଁକି ?'

କାବେରୀ ଆଖିରେ ଲୁହ, 'ତା'ର ଏତେ
ବିଶ୍ୱାସ କେହି ପୁନଷ୍ଚ ତାକୁ ଫେରାଇ
ଦେଇ ପାରନ୍ତା କି !' ▭

## ଦୃଷ୍ଟିର ଦ୍ୟୁତି

ଜୟର ଆନନ୍ଦମାନେ ପ୍ରତିଦ୍ୱନ୍ଦ୍ୱୀ ପରାଜୟେ ହର୍ଷ ଉପଲବ୍ଧି,
ସେ ଆନନ୍ଦ କାମ୍ୟ ମୋର ? ଅନ୍ୟ ଦୁଃଖେ ତୃପ୍ତି ଆହରଣ,

ହିଂସ୍ର ସେ ଉଲ୍ଲାସେ ମୋର ଏତେ ଟିକେ ପ୍ରୟୋଜନ ନାହିଁ,
ଅନ୍ୟକୁ ମୁଁ ଛୋଟ କରି ପାରିବିନି ବିଶ୍ୱେ ନିଜେ ବଡ ହେବା ପାଇଁ ।

'ନିମାଇ' ଦୃଷ୍ଟାନ୍ତ ମୋର, ଅନ୍ୟର ତୃପ୍ତିର ପାଇଁ ନିଜ କ୍ଷତି କ୍ଷତି ମୋଟେ ନୁହେଁ,
ସେ କ୍ଷତିରେ କି ଆନନ୍ଦ, ଅନୁଭବୀ ବିନା ଆନ ବୁଝିବ ବା କିଏ ?
'ରଘୁନାଥ' ଅଶ୍ରୁ ଦେଖି ନିଜକୃତ ନ୍ୟାୟଶସ୍ତ୍ର ଟୀକା ଗଙ୍ଗାବକ୍ଷେ ଫିଙ୍ଗିଦେଇ
ହୁଏ ନିର୍ବିକାରେ,
ସେ ଫିଙ୍ଗିବା ଲାଗି ଯେଉଁ ହୃଦୟର ପ୍ରୟୋଜନ, ସେ ହୃଦୟ ପାଇବାକୁ
ବ୍ୟାକୁଳ ମୁଁ ନିତ୍ୟ ପ୍ରାର୍ଥନାରେ ।

ଗପଟିଏ ପଢିଥିଲି ପିଲାଦିନେ ରାଜା ଥରେ ଅଭିଳାଷ ବ୍ୟକ୍ତ କଲେ
ମନ୍ତ୍ରୀଙ୍କ ନିକଟେ
ଅଦ୍ୱିତୀୟ ନିର୍ଲଜ୍ଜ ଯେ ବିଶ୍ୱ ମଧ୍ୟେ ସାନ୍ନିଧ ତା' ଲଭିବାକୁ ସେ ଅତି ବ୍ୟାକୁଳ,
ଚତୁର ସଚିବ ବୁଝି ନୃପତିଙ୍କ ଆଶ୍ଚର୍ଯ୍ୟ ଇଚ୍ଛାରେ
ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ଆଣି ଉପସ୍ଥିତ କରାଇଲେ ରାଜ ଦରବାରେ-

"ମହାରାଜ ! ଏଇ ହତଭାଗ୍ୟ ଆପଣଙ୍କ ଇଚ୍ଛାର ପ୍ରତୀକ,
ଉପପତି ଔରସରେ ଭିନ୍ନଗ୍ରାମେ ନିଜପତ୍ନୀ ଜନନୀ ହେବାର
ସଂବାଦ ଶୁଣିବା ପରେ, ସେ ଏବେ ସେଠାକୁ ତା'ର ଆରମ୍ଭିଛି ଯାତ୍ରା,
ନବଜାତ ତନୟର ଜନ୍ମୋତ୍ସବେ ଯୋଗ ଦେବା ଲାଗି,
ଆନନ୍ଦେ ସେ ଆତ୍ମହରା, ଅର୍ଦ୍ଧପଥୁ ମୁଁ ତା'ରେ ଆଣିଛି ଧରି" ରାଜା ଶୁଣି
ବିସ୍ମୟେ ଅବାକ୍ ।

ସେ ଗଳ୍ପର ନାୟକକୁ ସେ ଦିନ କି ବୁଝିଥିଲି ? ବୁଝି ଏବେ ମନେ ମନେ
କରୁଛି ପ୍ରଣାମ,
କି ବିଶାଳ ହୃଦୟ ତା'ଆପଣାର ଏତେ ବଡ କ୍ଷତିକୁ ବିସ୍ମରି
ସୀମାହୀନ ସଂକୀର୍ଣତା ଦ୍ୱେଷ, ଈର୍ଷା, ପାରିଲା ଯେ ଅତିକ୍ରମ କରି ।

ସେ ହୃଦୟ ଲୋଡା ମୋର, ସୀମାବଦ୍ଧ ସମାଜର କୁତ୍ସା, ତୀବ୍ର ତିରସ୍କାର
ଉପହାସେ, ବିଦ୍ରୂପେ ମୋ ଦୃଷ୍ଟି କେବେହେଲେ ମଳିନ ନ ହେଉ,
ବାହାରର ବିପର୍ଯ୍ୟୟେ, ଅପ୍ରଶସ୍ତ ନ ହୁଏ ମୁଁ, ଅବ୍ୟାହତ ରହୁ ନିତ୍ୟ
ମୋ ଅନ୍ତରେ ଉଦ୍‌ବେଳିତ ଆଲୋକିତ ସାଗରର ଢେଉ । □□

## ପ୍ରଦକ୍ଷିଣ

୧

ଅନାବିଳ ସ୍ନେହଟିକେ, ସ୍ୱାର୍ଥହୀନ ପ୍ରେମ ଟୋପେ,
ଶ୍ରଦ୍ଧା କଣିକାଏ ମାତ୍ର ପାଇବାର ପ୍ରୟାସ ମୋ ମଣିଷ ନିକଟୁ
ସମ୍ପୂର୍ଣ୍ଣ ହୋଇଛି ବ୍ୟର୍ଥ, ବଢ଼ାଇଛି ହାତ ଯେତେ ମୋର,
ସେ ହାତକୁ ଛୁଇଁ ନାହିଁ କେହି,
ପୁନର୍ବାର ଛୁଇଁବାର ଛଳନାକୁ ମୁଁ ଯେବେ
ଭାବିଛି ବୋଧେ ପାଇଗଲି ସବୁ,
ମୁଁ ତେବେ ଦେଖିଛି କେହି ପାଖେ ନାହିଁ,
ଶୂନ୍ୟତାର ହାହାକାର, ବ୍ୟବଧାନ ଅବ୍ୟାହତ ଅଛି।

ଏହିପରି ସାରା ଜୀବନଟା ଆମେ ସ୍ୱପ୍ନଦେଖୁ,
ସକଳ ହରାଇ ମଧ୍ୟ, ସବୁ ପାଇବାର,
କେତେ ପ୍ରବଞ୍ଚନା ଆଉ ହତାଶାର ମର୍ମନ୍ତୁଦ ଗୀତ,
ଆମକୁ ନ ପ୍ରଜ୍ୱଳିତ କରେ,
କେତେ ବ୍ୟର୍ଥତାର ବଜ୍ର ଆମକୁ ନକରେ ବିପର୍ଯ୍ୟସ୍ତ,
ତଥାପି ନିର୍ଲଜ ସମ, ବ୍ୟାକୁଳ ନୟନେ ଆମେ
ଚାହିଁଥାଉ ସେମାନଙ୍କୁ ପାଇବାକୁ ପାଖେ।

ଅଥଚ ଯେ ଆପଣାର, ଚିରଦିନ ଆପଣାର,
ତା'କଥା କି ସ୍ମରୁ ଆମେ କେବେ ?
ଯେ ସଦା ଅପେକ୍ଷା କରେ ଆମର ସାନ୍ନିଧ୍ୟ ଲାଗି ଆକୁଳ ଆଗ୍ରହେ,
ଅପଲକ ପ୍ରତୀକ୍ଷା ସେ, ତା'ରେ ଆମେ ଉପେକ୍ଷା ହିଁ କରୁ,
ତା' କରୁଣ କାନ୍ଦଣା କି କେବେ ଆମ ଶ୍ରବଣେ ପହଞ୍ଚେ ?

ସାରା ଜୀବନର ଏହି ଭୁଲ ଲାଗି ପ୍ରୟାସ
ଆମର ସିନା ହୁଏ ଅଶ୍ରୁମୟ,
ପରମ ପୁଲକ କାହିଁ ? ମୁଷ୍ଟିବଦ୍ଧ ବେନି କରେ
ଭରିଥାଏ ହାହାକାର, ଗ୍ଳାନି, ପରାଜୟ।

୨

ଦର୍ପଣେ ଦେଖିବା ଭଳି ପ୍ରତିବିମ୍ବ, ସ୍ୱରୂପ ମୋ ସାକାରେ ପ୍ରକାଶି
ଆପଣାକୁ ଅବଲୋକେ, ସେ ଐଶ୍ୱର୍ଯ୍ୟେ ନିଜେ ମୁଁ ଅବାକ୍,
ଏତେ ଦୀପ୍ତି, ଏତେ ଛଟା, ଅଥଚ ମୁଁ ଚିହ୍ନେନା ନିଜକୁ,
ମାତ୍ର ପରିଚୟ ପରେ, ସବୁ ଯଦି ପୁଣି ଭୁଲ ହୁଏ,
ନିଜକୁ ପ୍ରଣାମ ଅର୍ଥ, ପୂଜାର୍ଚ୍ଚନା ବିଗ୍ରହପାଇଁ କି
ଶେଷେ ହୁଏ ଅଭ୍ୟାସର କଥା, ଉଦ୍ଦୀପନାହୀନ,
ତେବେ ଏତେ ବିଶ୍ଳେଷଣେ କେଉଁ ଲାଭ ?
ରଜନିରେ ନିରର୍ଥକ ଶୂନ୍ୟେ ଦୃଷ୍ଟିପାତ ।
ନିଜକୁ ପୃଥକ ରଖି ସ୍ୱରୂପର ସ୍ୱାଦ ଯଦି ଆସ୍ୱାଦନ ନ ପାରିଲି କରି,
ଅଦ୍ୱୈତେ ଆପଣା ସତ୍ତା ଅମୃତତ୍ୱ ଅନ୍ତହୀନ ଉପଲବ୍ଧି ହେବ କେଉଁପରି ?

୩

ଆଜି ବ୍ରାହ୍ମ ମୁହୂର୍ତ୍ତରେ ଯେତେବେଳେ ନିଦ ମୋ ଭାଜିଲା,
କି ଆନନ୍ଦ ପ୍ରାଣତଳେ, ନିଜ ଶକ୍ତିପରେ ମୋର କି ପ୍ରଚଣ୍ଡ ଆସ୍ଥା,
ମୁଁ ଜିତିଛି, ହାରି ନାହିଁ, ଗତ ରାତ୍ରି ଦ୍ୱନ୍ଦ୍ୱ, ମୋର ସ୍ମରଣେ ଉଜ୍ଜ୍ୱଳ,
ମନ ଓ ବିବେକ ମଧ୍ୟେ, ଭୁଲ କରିବାର ସେ କି ପ୍ରଲୋଭନ,
ସଙ୍ଗେ ସଙ୍ଗେ ବିବେକର ପ୍ରଚଣ୍ଡ ବିରୋଧ ।

ନିର୍ଜନ ଅନ୍ଧାରେ ମନ ଚାହିଁଥିଲା ବିବେକର ଅସ୍ତିତ୍ୱ ନରଖି
ପ୍ରତିଷ୍ଠା କରିବ ନିଜ ସ୍ଥିତି ତା'ର, ଚୈତନ୍ୟକୁ ବିପର୍ଯ୍ୟସ୍ତ କରି,
କି ଦ୍ୱନ୍ଦ୍ୱ ମୋ ଚିନ୍ତା ମଧ୍ୟେ ତେବେ, ସ୍ଖଳନର ହାତଠାର,
ବିବେକର କରୁଣ ମିନତି,
ଆଲୋକର ବିଜୟରେ ଆଜି ସୂର୍ଯ୍ୟାଲୋକ ମୋର କେଡ଼େ ଆପଣାର ।

ଏମିତି ପାଦକୁ ରଖି ଦୃଢ଼ ସଦା ଦ୍ୱନ୍ଦ୍ୱଭରା ପ୍ରତି ମୁହୂର୍ତ୍ତରେ,
ବିନ୍ଦୁ ବିନ୍ଦୁ ସୁଧା ଯଦି ସଂଗ୍ରହ ମୁଁ କରେ,
ସେତ ଜୀବନର ପରମ ପାଥେୟ,
ଆତ୍ମସମର୍ପଣେ ତେଣୁ ପ୍ରୟୋଜନ, ସେ ଚରଣେ ଆତ୍ମବିସ୍ମୃତିରେ

ଆଲୋକର ଜୟଗାନ, ଅନ୍ଧାରର ନୀରବ ପ୍ରସ୍ଥାନ।
ଆଜି ମୋ ଶକ୍ତିର ତେଣୁ ଜୟଗାଇ ଏ ଅମୃତ ବ୍ରାହ୍ମ ମୁହୂର୍ତ୍ତରେ,
ସେ ମହାଶକ୍ତିକୁ ସ୍ମରେ, ନତଶିରେ, ମୋ ନୟନ ଜଳେ।

୪

ମୋ ସ୍ୱରୂପ ଆନନ୍ଦର ଏହି ସତ୍ୟ ଜାଣିବା ସତ୍ତ୍ୱେ ବି
କାହିଁକି ମୁଁ ନିରାନନ୍ଦ, ଅବସନ୍ନ, ମ୍ରିୟମାଣ ସଦା,
ଆପଣା ଗ୍ଲାନିର ଠିକ୍ ମୋ' ଆବିଷ୍କାର ପରେ,
ନିରର୍ଥକ ଯନ୍ତ୍ରଣାରୁ କି ଲାଗି ମୁଁ ପାରୁ ନାହିଁ ଆତ୍ମରକ୍ଷା କରି ?

ଆନନ୍ଦ ସ୍ୱରୂପ ଯା'ର ମନକୁ ତା' ସ୍ପର୍ଶ କେବେ କରିପାରେ ଅନ୍ଧ ଅହମିକା,
'ବ୍ରହ୍ମ ମୁଁ' ଓ 'ଅହଂ ମୁଁ' ମଧ୍ୟେ ଯେଉଁ ବ୍ୟବଧାନ,
ତାକୁ ଯେଣୁ ପାରୁନାହିଁ ବୁଝି,
ନିଜର ସ୍ୱରୂପ ତେଣୁ ମନେହୁଏ ଦୁଃଖମୟ ସଦା,
'ଅହଂ ମୁଁ' ରେ ଅବସ୍ଥିତି ଯେଣୁ, ଆନନ୍ଦ ବା ଆସିବ କିପରି ?
'ଅହଂ ମୁଁ'ରେ ଅଭିମାନ, 'ବ୍ରହ୍ମମୁଁ'ରେ ଅଭିମାନ କାହିଁ ?

ଆତ୍ମମ୍ଭରିତାରେ ଏକ ଚିର ଦହ୍ୟମାନ, ଆତ୍ମସମର୍ପଣେ ଆନ ଶାନ୍ତ ସ୍ନିଗ୍ଧ ସଦା,
ମୁଁ ଯେଣୁ ଅଶାନ୍ତ ଚିର, ଅତଏବ ମୋ ସ୍ୱରୂପ ସତ୍ୟ
ବୁଦ୍ଧିରେ ମିଳିଛି ଯାହା, ଅନୁଭବ ମୋଟେ ତ ମିଳିନି।
ବୁଦ୍ଧି ଓ ପ୍ରଜ୍ଞାକୁ ଯଦି କରାଯାଏ କେବଳ ସମ୍ବଳ
ସ୍ୱରୂପର ଉପଲବ୍ଧି ଲାଗି, ସେ ଅମୃତ ଅନୁଭବ ହେବ ବା କିପରି ?
ପ୍ରଜ୍ଞା ଆହରଣେ କେବେ ଅହଂ ଘନ ଅନ୍ଧକାରୁ ମୁକ୍ତି ମିଳିପାରେ ?
ଆନନ୍ଦର ଆଲୋଡ଼ନ ନାହିଁ, ତେଣୁ ମନେହୁଏ ସ୍ୱରୂପ ମୋ ଅନ୍ଧାର ଯେପରି।
'ସ୍ୱରୂପ'ର ସୁଧା ଯେହୁ କରେ ଆସ୍ୱାଦନ-ଜୀବ ଓ
ଜଡ଼ରେ ସେ ତ ସଂଦର୍ଶନ କରେ ନାରାୟଣ
ତା' ମଧ୍ୟେ ବିଭକ୍ତି ତେଣୁ କାହିଁ ? ଅହମିକା ପ୍ରଶ୍ନ ତ ଆସେନା,
ସେ କେବଳ ଆନନ୍ଦକୁ ଦେଖିପାରେ, ମୋ ଦୃଷ୍ଟିରେ ସେ ଆଲୋକ କାହିଁ ?
ମୁଁ ତେଣୁ ଦୁଃଖରେ ସଦା ମ୍ରିୟମାଣ,
ସ୍ୱରୂପ ସତ୍ୟକୁ ଠିକ୍ ବୁଝିବା ସତ୍ତ୍ୱେ ବି।

ଚତୁର୍ଦ୍ଦିଗେ ମୋର ଆସକ୍ତି ଓ ବିରକ୍ତିର ଦୁର୍ଭେଦ୍ୟ ପ୍ରାଚୀର,
ତନ୍ମଧ୍ୟେ ମୋ ସ୍ଥିତି, କେତେ ନ ଦୁଃସାଧ୍ୟ ତେଣୁ
ଆତ୍ମ-ଉପଲବ୍ଧି, ମାତ୍ର ଏଇସବୁ ପ୍ରତିବନ୍ଧ ସତ୍ତ୍ୱେ
ମୋ ସ୍ୱରୂପ ଆନନ୍ଦରେ ମୁଗ୍ଧ ମୋତେ ହେବାକୁ ପଡ଼ିବ।

ସେଇ ତ ସାଧନା ସିଦ୍ଧି, ପ୍ରାଥମିକ କ୍ଳେଶକର ଯାତ୍ରାର ଶେଷରେ
ଅମୃତର ଆବାହନ, 'ଅହଂ ମୁଁ'ର ବିସର୍ଜନେ 'ବ୍ରହ୍ମ ମୁଁ'ରେ ଚିରନ୍ତନ ସ୍ଥିତି,
ପ୍ରତ୍ୟାବର୍ତ୍ତନର ଆଉ ପ୍ରଶ୍ନ କାହିଁ? ଚତୁର୍ଦ୍ଦିଗେ ନାନା ବିଭୀଷିକା ସତ୍ତ୍ୱେ
ଅବ୍ୟାହତ ଧ୍ରୁବର ତପସ୍ୟା, ତପସ୍ୟା ମୋ ସେହିପରି ରହୁ ଅନିର୍ବାଣ।
ସେ ତପସ୍ୟା ଦେଇପାରେ ମୋ ସ୍ୱରୂପ ସ୍ନିଗ୍ଧ ପରିଚୟ,
ଥରେ ତହିଁ ପହଞ୍ଚିଲେ ଖାଲି ନୃତ୍ୟ କରିବାର କଥା,
ଏଇସବୁ କ୍ଷୁଦ୍ର ବ୍ୟଥା, କ୍ଷୁଦ୍ର ଦୁଃଖ, କ୍ଷୁଦ୍ର ହାହାକାର
ମ୍ରିୟମାଣ ହୋଇଯିବ, ଆପଣାର ସ୍ଥିତିକୁ ହରାଇ।

ସେତେବେଳେ ମନେହେବ ଅତୀତରେ ସମୟର ଖାଲି ସିନା ହେଲା ଅପଚୟ,
ଆହା ଏହି ଉପଲବ୍ଧି ହୋଇଥା'ନ୍ତା ସେତେବେଳେ ଯଦି,
ଊର୍ଦ୍ଧ୍ୱଗତି ମୋର, ବୃଥା ହୋଇ ତ ନଥା'ନ୍ତା କେଉଁ ବୃଥା ବିଳମ୍ବିତ,
ନିରର୍ଥକ ଅନ୍ଧକାରେ ପଥଭ୍ରଷ୍ଟ ହୋଇ ମୁଁ ନଥାନ୍ତି।
ମାତ୍ର ଏହା ପରକଥା, ବର୍ତ୍ତମାନ ମୁଁ ଜଳୁଛି ଯାତନାରେ ସିନା,
'ତତ୍ତ୍ୱକଥା' ବିଶ୍ଳେଷଣେ ମନେହୁଏ ବେଶ୍ ପାରଦର୍ଶୀ,
ଅଥଚ ମୋ ଆନନ୍ଦର ସ୍ୱରୂପକୁ ଚିହ୍ନି ମଧ୍ୟ ଚିହ୍ନି ନାହିଁ ପାରେ,
'ଅପରିଚୟ'ର ହାୟ ଅପମାନ ଆପଣାର ଦ୍ୱାରେ।

ମୋ ସ୍ୱରୂପ ଆନନ୍ଦର ଏହି ସତ୍ୟ ବୁଝିବା ସତ୍ତ୍ୱେ ବି,
ମୁଁ କାହିଁକି ପାରୁ ନାହିଁ ଦେଖି ଦିଗ୍‌ବଳୟେ ସ୍ନିଗ୍ଧ ସୂର୍ଯ୍ୟ ଛବି ?

୪

ବେଳେ ବେଳେ ମନେହୁଏ ସବୁ କିଛି ଅଛି, ଅଥଚ ମୁଁ ନିଃସଙ୍ଗ ଯେପରି.
ବାହାରର ଭିନ୍ନ ଭିନ୍ନ ଆକର୍ଷଣ, ଆନନ୍ଦର ସ୍ଥିତି ଥିବା ସତ୍ତ୍ୱେ

ଶୂନ୍ୟତାର ମର୍ମଦାହେ କେଉଁ ଲାଗି ଛଟପଟ ହେବାକୁ ବା ପଡ଼େ,
ଏହି ଶୂନ୍ୟତାର ହାହାକାରେ ହେକହି କେହି ବିଶ୍ଳେଷଣ କରେ ?
ପ୍ରଥମ ଧକ୍‌କାକୁ କେହି ଧକ୍‌କା ବୋଲି ମନେ କେବେ କରେ,
ଗୋଡ଼ ଖସି ପଡ଼ିଯିବା ଆଦ୍ୟ ପତନକୁ କ'ଣ କେହି କେବେ ହିସାବରେ ଗଣେ,
ମାତ୍ର ତା' ପୁନଃରାବୃତ୍ତି ପ୍ରତ୍ୟେକକୁ ସଚେତନ କରେ
କାରଣ ଖୋଜିବା ଲାଗି ଧକ୍‌କା ଆଉ ପତନର,
କିଛି କେବେ ହୋଇଛି କି ବିନା କାରଣରେ।

କାରଣର ଆବିଷ୍କାରୁଁ ଶୂନ୍ୟତାର ସ୍ୱରୂପକୁ କ୍ରମେ ହୁଏ ଧରି,
ସେ ସ୍ୱରୂପ ପଡ଼ିଗଲେ ଧରା ଥରେ, ନିଃସଙ୍ଗତା ଦୁଃଖ
ଆଉ କି ରହିବ କେବେ ? ସେତେବେଳେ ବାହାରର ସବୁ
କିଛି ଭାଙ୍ଗିରୁଜି ଚୂରମାର ହୋଇଯିବା ସତ୍ତ୍ୱେ
ଆନନ୍ଦ ଅକ୍ଷୁଣ୍ଣ ସଦା, କ୍ଷୟ ଯା'ର ନାହିଁ,
ସେ କି କ୍ଷୟ ହୁଏ କେବେ ?
ଏ ବୋଧର ପୂର୍ଣ୍ଣତାରୁ ଚତୁର୍ଦ୍ଦିଗେ ଜ୍ୟୋତି ସିନ୍ଧୁ, ନିତ୍ୟ ସଂଗମୟ,
ପରାଜୟ ପ୍ରଶ୍ନ କାହିଁ ? ଗ୍ଳାନି କାହିଁ ? ଅନ୍ତରରେ ଅନନ୍ତ ବିଜୟ।

୬

ଯା' ଲାଗି ମୁଁ କାନ୍ଦେ ତା'ରେ ଚିହ୍ନି ନାହିଁ, ଦେଖି ନାହିଁ କେବେ,
ତଥାପି ସେ ମନେହୁଏ ଖୁବ୍ ଆପଣାର,
ତା' ବିରହ ଯନ୍ତ୍ରଣାରେ ବହୁ ଆସକ୍ତିର ତୀବ୍ର
ବ୍ୟବଧାନ ତୁଚ୍ଛ ହୋଇଯାଏ,
ମୁଁ ତେଣୁ ଖୋଜୁଛି ତା'ରେ ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ,
ମାତ୍ର କି ଆଶ୍ଚର୍ଯ୍ୟ ସେ ତ ମିଳେନି ବି ଥରେ।

ଅଥଚ ଏ ବ୍ୟର୍ଥତା ମୋ, ମୋତେ କେବେ
କ୍ଷୁଣ୍ଣ କରେ ନାହିଁ,
ଅଧିକନ୍ତୁ ଉତ୍ସାହିତ କରେ ମୋତେ ବାରମ୍ବାର,
ତା' ସାନ୍ନିଧ୍ୟ ପ୍ରାପ୍ତି ଲାଗି ଦିବସ ରଜନୀ,
ଆତ୍ମବିସ୍ମୃତ ମୁଁ ହୋଇ ତା'ସାକ୍ଷାତ ପ୍ରତୀକ୍ଷାରେ

ପଥ ଚହେ ଚାହିଁ।
ସେ ଆସୁ ବା ନ ଆସୁ ମୋ ପାଶେ,
ମୋର କିବା ଯାଏ ଆସେ,
ମୋ ଆନନ୍ଦ ଅବ୍ୟାହତ ସେ ଅପରିଚିତରେ
ଖୋଜି ପାଇବାର ଅଖଣ୍ଡ ବିଶ୍ୱାସେ।

୭

ରାତ୍ରି ଶେଷେ, ଦ୍ୱାରେ ମୋର କିଏ ଆସି କରେ କରାଘାତ ?
ଦ୍ୱାର ଖୋଲି ଲକ୍ଷ୍ୟ କଲି ବ୍ରାହ୍ମ ମୁହୂର୍ତ୍ତର ସ୍ମିତି, ମୋତେ
କହେ ମୁଗ୍ଧ ହାସେ, "ମଙ୍ଗଳ ପ୍ରଭାତ
ଆସିବାର ଯଥେଷ୍ଟ ପୂର୍ବରୁ, ତୋ ଭିତର ସୂର୍ଯ୍ୟସ୍ନାନେ
ଅବିଳମ୍ବେ ହୁଅ ସ୍ନିଗ୍ଧ, ଶାନ୍ତ,
ତା'ହେଲେ ଏ ପୃଥିବୀର ଆଲୋକର କୋଳାହଳେ
କଦାପି ତୁ ହେବୁ ନାହିଁ କ୍ଲାନ୍ତ,
ତେଣୁ ତୋର ସାମୟିକ ମୃତ୍ୟୁଶଯ୍ୟା ତେଜି ତୁରିତେ
ଆତ୍ମସ୍ଥ ହୁଅ, ପରିଣତି ଯା'ର
ତୋତେ ଦେବ ନବଜନ୍ମ, ନୂତନ ସ୍ମିତିର ଜ୍ୟୋତି,
ଗୂଢ଼ ପ୍ରଶ୍ନମାନଙ୍କର ନିର୍ଭୁଲ ଉତ୍ତର।

୮

ମୁଁ ନିଜକୁ ନିତି ନିତି ନୂଆରୂପେ କରେ ଆବିଷ୍କାର,
କ୍ଷୟରେ ମୋ ପରିଚୟ ନୁହେଁ, ନିତି ନବ ଅମୃତ ସୃଷ୍ଟିରେ
ଅସ୍ତିତ୍ୱ ମୋ ହତବାକ୍, ଆତ୍ମହରା ନୂତନ ଗଂଧରେ,
ନାଚୁଛି ମୁଁ ମୁଗ୍ଧ ପଦପାଦେ ତେଣୁ ପ୍ରତିକ୍ଷଣେ ନବୀନ ଛନ୍ଦରେ।

ବସ୍ତୁର ଐଶ୍ୱର୍ଯ୍ୟ ଯାହା, ନିଷ୍ପ୍ରଭ ସେମାନେ କ୍ରମେ ସମୟର ସ୍ରୋତେ,
ନିଜକୁ ତ ପାରନ୍ତିନି ରଖି ଅକ୍ଷୟ, ଅବ୍ୟୟ ମହାକାଳର କଳଙ୍କେ,
ସେମାନେ କ୍ରମଶଃ ମ୍ଳାନ, ଅଥଚ ମୁଁ ଝଟକୁଛି ନିତି ଔଜ୍ଜ୍ୱଲ୍ୟରେ
ନିତି ବୈଚିତ୍ର୍ୟର ଦେହାତୀତ, କାଳାତୀତ, ପ୍ରତିକ୍ଷଣେ

ପ୍ରଫୁଲ୍ଲିତ ଅବ୍ୟକ୍ତ ଆନନ୍ଦେ,
ସୂକ୍ଷ୍ମରୁ ସେ ସୂକ୍ଷ୍ମତର ହୁଏ, ଏକାକାର ହେବାଲାଗି ଅବ୍ୟାହ ତଛନ୍ଦେ।

୯

କେତେ ନ ସହଜ ସତେ ଧୂପ, ଦୀପ ନୈବେଦ୍ୟରେ
ପ୍ରତିମାରେ ଅର୍ଚ୍ଚନା କରିବା,
ଆମେ ସବୁ ସୀମାବଦ୍ଧ ସେତିକିରେ ଗତିହୀନ ହୋଇ,
ଅନାୟାସ ସେ ଅନୁଷ୍ଠାନେ ସିଦ୍ଧିମଣି ଆତ୍ମସନ୍ତୋଷରେ
ସ୍ଥାଣୁ ରହୁ, ସ୍ୱାଭାବିକ ପରିଣତି, ଯନ୍ତ୍ରଣାର ଇତି
ନାହିଁ, ଅଖଣ୍ଡ ସେ ଆନନ୍ଦ ବା କାହିଁ ?

ସ୍ୱରୂପ ନ ବୁଝି, ନିଜ ଖଣ୍ଡିତ ସ୍ଥିତିକୁ ଆହା ସଂପୂର୍ଣ୍ଣର ଭ୍ରମେ
ଅଧିକ ବିକଳ କରୁ, ପୁନଶ୍ଚ ତା' ଉପଲବ୍‌ଧି ସତ୍ତ୍ୱେ
ତ୍ରୁଟି ସଂଶୋଧନେ କିନ୍ତୁ ବୀତସ୍ପୃହ, ଅନଗ୍ରସରର ଅକ୍ଷମତା ଲାଗି
ଏତେ ଟିକେ ଗ୍ଲାନି ନାହିଁ ଉପସ୍ଥିତ ସ୍ଥିତି ସିନା ପ୍ରହସନ ମାତ୍ର।
ଆପଣାର ସ୍ଥୁଳ ଅନ୍ତରାଳୁ ଚିନ୍ମୟର ଆହରଣେ
ପ୍ରତିମାରେ ଜୀବନ୍ତ କରିବା
ପରିବର୍ତ୍ତେ ନିଜେ ହିଁ ପ୍ରତିମା ହେଉ, ଶାଶ୍ୱତର ବିସ୍ମରଣେ ଅନନ୍ତ ଅଂଧାର।

୧୦

ଦ୍ୱାର ପାଖେ ଠିଆ ହୋଇ ଦେଖୁଛି ମୁଁ ରାସ୍ତାପରେ
ଯେଉଁମାନେ ଚାଲି ଯାଉଛନ୍ତି
ବିଭିନ୍ନ ଭଙ୍ଗୀରେ, ମୋର ଭାରି ଇଚ୍ଛାହୁଏ ସେମାନଙ୍କ
ପ୍ରତ୍ୟେକର ଫଟୋମାନ ତୋଳି,
ନିର୍ଜନ ମୁହୂର୍ତ୍ତେ ମୋର ସେଇସବୁ ମୁଖର ଛବି ନିରୀକ୍ଷଣ କରି
ସେମାନଙ୍କ ମନ ଆଲୋଡ଼ନ କିଛି ଜାଣିବାକୁ ଚେଷ୍ଟା ମୁଁ କରନ୍ତି।
ସେମାନେ ପ୍ରତ୍ୟେକେ, ଗଳ୍ପ, ଉପନ୍ୟାସ, ଏକାଙ୍କିକା କବିତାର ଗୁଚ୍ଛ,
ଆମ୍ଭମାନଙ୍କର ସଂଦର୍ଶନ କାହିଁ, ତେଣୁ ନିରୁଦ୍ଦେଶ୍ୟ, ଅର୍ଥହୀନ ଦୃଷ୍ଟି

ମହାର୍ଘ୍ୟ କିଛି ତ ହେଲେ ଆହରଣ କରେ ନାହିଁ, କେବଳ ହିଁ ଲକ୍ଷ୍ୟ କରେ
ସେଥିରୁ କି ଲାଭ ? ଖାଲି ବହିର୍ଦ୍ଦୃଷ୍ଟି ସଂବଳରେ ଆମର
ଏ ସ୍ଥିତି କେତେ ଦୟନୀୟ ସତେ ।

ପ୍ରତ୍ୟେକ ଦେହର ତଳେ ଯେଉଁ ମନ ତା' ଐଶ୍ୱର୍ଯ୍ୟ ଦେଖିବାର ଆମର ପ୍ରୟାସ
ଏତେ ଟିକେ ଥିଲେ କ'ଣ, ଜୀବନଟା କେବେ
ଶୂନ୍ୟ ସଂଗହୀନ ମନେ ହେଉଥା'ନ୍ତା,
ବାହାରର ଦର୍ଶନରେ ସମାପ୍ତିତ ଅଛି, ମାତ୍ର
ମନ ଦର୍ଶନର ଶେଷ କାହିଁ ?
ସୀମାହୀନ ସିନ୍ଧୁ ଓ ଅନନ୍ତ ଆକାଶ ତା'ର ତୁଳନାରେ ଅକିଞ୍ଚିତକର ।

ବେଶୀ ନୁହେଁ, ଆପଣାର କ୍ଷମତାର ପରିସରେ ପ୍ରତ୍ୟହ
କେତୋଟି ମନ ପଢ଼ିବାର ଚେଷ୍ଟା କରାଯାଉ,
ମନ ଛବି ବଦନେ ବିମ୍ବିତ, ପ୍ରତିବିମ୍ବମାନଙ୍କର
ବିଶ୍ଳେଷଣ ନିର୍ଭୁଲ ନ ହୋଇପାରେ,
ମାତ୍ର ସେଇ ବ୍ୟବଚ୍ଛେଦ, ଅନେକ ବିଚିତ୍ର କଥା,
କହିବ ତ ତୁମ କାନେ କାନେ,
ପ୍ରୟୋଜନ ନାହିଁ ସେଇ ବ୍ୟକ୍ତି ପାଶେ ଯାଇ
ତା'ର ସତ୍ୟାସତ୍ୟ ନିର୍ଣ୍ଣୟ କରିବା ।

ଆମେ ତ ବିଦ୍ୱାନ, ପୁଣି ବୁଦ୍ଧିମାନ, ବୈଷୟିକ
ଐଶ୍ୱର୍ଯ୍ୟରେ ଅକ୍ଷୟ ଏ ସ୍ଥିତି,
ଅଥଚ ଏ ମନତଳେ କି ଶୂନ୍ୟବୋଧ ଯାହା ବହୁ ଚେଷ୍ଟା ସତ୍ତ୍ୱେ
ଅଚଳ, କି ଦୁର୍ବିଷହ, ଆମେ ଛୁଟୁ ଶରୀର ଓ ବସ୍ତୁର ସମୀପେ
ସେ ଦାହରୁ ମୁକ୍ତି ଲାଗି, ତାହା କ'ଣ ସମ୍ଭବ କି କେବେ ?

ମନ ଖୋଜୁ ମନକୁ ନିୟତ, ଦେହ କ୍ରମେ ଅନ୍ତର୍ହିତ ହେଉ,
ବସ୍ତୁ ରହୁ ସଦା ଉପେକ୍ଷିତ, ମନମାନଙ୍କର ଏଇ ସାଗରରେ ବୁଡ ଦେଉ ଦେଉ
ନିଜ ମନ ମନେହେବ ସେଇ ମନମାନଙ୍କଠୁ ସଂପୂର୍ଣ୍ଣ ଅଭିନ୍ନ,
ତା'ପରେ ଏକତ୍ୱବୋଧ ପରମାନନ୍ଦରେ ଆଉ ନିଃସଙ୍ଗତା କାହିଁ ?

ଶ୍ରୀମତୀର ପ୍ରୟୋଜନ 'ଲଳିତା' ଓ ବିଶାଖା'ରେ,
ଶ୍ୟାମ ପ୍ରାପ୍ତି ଲାଗି ସେ ତ ମଧୁର ମାଧ୍ୟମ,
ଅଜସ୍ର ମନ ଦୂତୀ, ସେଇ ଦୂତୀମାନଙ୍କର
ସହାୟତା ଏ ମନ ରାଧାରେ
କୁଞ୍ଜପାଖେ ପହଞ୍ଚାଇ ଦିଏ ଅନ୍ତରାଳେ ମୁରଲୀର ଗାଢ଼ ନିମନ୍ତ୍ରଣ,
ପରବର୍ତ୍ତୀ ପଦକ୍ଷେପ ଏକାକାର ହେବା, ତେଣୁ ସଖୀମାନଙ୍କର ପାଖେ କୃତଜ୍ଞତା,
ସେମାନଙ୍କ ଚରଣରେ ପ୍ରଥମ ପ୍ରଣାମ।

୧୧

ବାହାରର ଧ୍ୱନିମାନ ଏବେ ମୋର ମନେହୁଏ ଖୁବ୍ ଅବାନ୍ତର,
ଅଥଚ ଏମାନେ ଥିଲେ ଦିନେ ମୋର କେତେ ଆପଣାର,
ବିଭିନ୍ନ ମୋ ଶୂନ୍ୟତାକୁ ଚମତ୍କାର ପରିପୂର୍ଣ୍ଣ ରଖୁଥିଲେ ସଦା
ନିଜ ନିଜ ବୈଶିଷ୍ଟ୍ୟରେ, ଏବେ କିନ୍ତୁ ମୋ ନିମିତ୍ତ ସଂପୂର୍ଣ୍ଣ ନିଷ୍କ୍ରିୟ,
ଖଣ୍ଡିତ, ସୀମିତ ଯେଣୁ, ଏମାନେ ମୋ ପରିବ୍ୟାପ୍ତ ଚିନ୍ମୟ ସତ୍ତାକୁ
ଆଲିଙ୍ଗନ କରିବାକୁ ପୂର୍ଣ୍ଣ ଅସମର୍ଥ,
ଶବ୍ଦ ସବୁ ଅର୍ଥହୀନ, ଅତ୍ୟନ୍ତ ବିରକ୍ତିକର ଏମାନଙ୍କ ଲାଗି
ମୋର ଅତୀତର ଅନୁରକ୍ତିମାନ
ସଂପୂର୍ଣ୍ଣ ବିବର୍ଣ୍ଣ ଏବେ, ଆପଣାର କରିବାରେ ଏମାନଙ୍କୁ ପରାଂମୁଖ ତେଣୁ,
ବିକ୍ଷିପ୍ତ ମୁଁ ଆପଣାକୁ ବ୍ୟାକୁଳେ ସାଉଁଟି ଆଣି
ଚେଷ୍ଟାକରେ ଅନ୍ତରର ସେ ଅବ୍ୟକ୍ତ ବେଣୁ ଶୁଣିବାକୁ।
ସେହି ବେଣୁ ଶୁଣାଯାଏ ଯେଉଁଠାରେ ପୃଥିବୀର ଧ୍ୱନିମାନ ସଂପୂର୍ଣ୍ଣ ନିଷ୍ଫଳ,
ସେ ଗୋଲକେ ସମାଧି ମୁଁ ଲୋଡ଼େ ତେଣୁ, ଶବ୍ଦହୀନ ଧ୍ୱନିର କଲ୍ଲୋଳ
ମୋ ଦେହକୁ କୂର୍ମ ସମ କରୁ ସଙ୍କୁଚିତ, ଅନ୍ତରାଳେ ସ୍ୱରୂପର ଅନନ୍ତ ବିସ୍ତାର,
ସବୁ ସ୍ଥିତି, ସବୁ ଜ୍ୟୋତି, ସବୁ ରତି ତେଇଁ ହେଉ ଶୂନ୍ୟେ ଏକାକାର।

୧୨

ଯେହେତୁ ପ୍ରକୃତି ଆମେ, ପ୍ରକୃତିମାନଙ୍କ ସହ ଅକୈତବ ପ୍ରୀତି କି ସଂଭବ ?
ଅବାସ୍ତବ ପ୍ରୟାସ ସେ ନିଃସଙ୍ଗତାବୋଧୁଁ କ'ଣ କେବେ ମୁକ୍ତି ଦେବ ?
ଗ୍ରହ, ଉପଗ୍ରହ, ତାରା, ସ୍ଥାବର, ଜଙ୍ଗମ ଆଦି ପ୍ରକୃତି ସକଳ, ଶୂନ୍ୟତାର

ଯନ୍ତ୍ରଣାରୁ ଆମକୁ ପାରିବେ କେବେ ଅବ୍ୟାହତି ଦେଇ ହୋଇ ଅତି ଆପଣାର ?
ରତି ଓ ରମଣ ଲାଗି ପ୍ରତିକ୍ଷଣେ ରଖିଛି ଯେ ଆମରି ଅପେକ୍ଷା
ଚିନ୍ମୟ ପୁରୁଷ ସେଇ, ସଙ୍ଗେ ତା'ର ପଲକର ଦେଖା
ପୁଲକ ଓ ରୋମାଞ୍ଚରେ ପୂର୍ଣ୍ଣକରି ଭରିଦେବ ଦ୍ୱୈତର ଆନନ୍ଦ,
କ୍ରମ ପରିଣତି ଯା'ର ପରଶିବ ପରିଶେଷେ ଅଦ୍ୱୈତର ଛନ୍ଦ ।
ସେ ପରମ ପ୍ରାପ୍ତି ଲାଗି ପ୍ରୟୋଜନ ସେଇ ପରିଚୟ,
ପ୍ରକୃତିର ପରେ ଯା'ର ଅଖଣ୍ଡ ଅନନ୍ତ ସ୍ଥିତି, ଦିବ୍ୟ, ଜ୍ୟୋତିର୍ମୟ ।

୧୩

ହଠାତ୍ ମୋ ମନେହେଲା ଏ ପୃଥିବୀ ସତେ କେତେ ଫାଙ୍କା,
ସେମାନେ ସମୀପେ ଥାଇ ଚମତ୍କାର କହୁଥିଲେ କଥା,
ସେମାନଙ୍କ ଗହଣରେ ପରିବେଶ ବେଶ୍ ଜମିଥିଲା,
କେଜାଣି କାହିଁକି ମୋତେ ଅକସ୍ମାତ ସବୁ କିଛି ଶୂନ୍ୟ ବୋଧ ହେଲା ।

ଉପସ୍ଥିତ ଥିଲେ ମାଆ, ଜ୍ୟେଷ୍ଠା ଦୁଇ ଭଗ୍ନୀ ଏବଂ ଶ୍ରୀଯୁକ୍ତ ସ୍ୱୟଂ,
ସମୟଟା ଅପରାହ୍ଣ, ପୀତ ସୂର୍ଯ୍ୟ ରଶ୍ମି କକ୍ଷେ ଶ୍ରାନ୍ତ, କ୍ଳାନ୍ତ ମନେ ହେଉଥିଲା,
ପ୍ରକୋଷ୍ଠର ପବନ ଚଞ୍ଚଳ, ଓଠରେ ଓଠରେ କେତେ କଥାର କଲ୍ଲୋଳ,
ମନ ବିନିମୟେ ପ୍ରୀତି ମହୋତ୍ସବ, ଆନନ୍ଦ ଉଜ୍ଜ୍ୱଳ ।
ଅକସ୍ମାତ ଉଚ୍ଚାରିତ ଭିନ୍ନ ଭିନ୍ନ ଧ୍ୱନିମାନ ସ୍ତବ୍ଧ ହୋଇଗଲେ,
ପଲକେ ପ୍ରକୋଷ୍ଠ ମଧ୍ୟେ ପରିବ୍ୟାପ୍ତି ଅସହ୍ୟ ମୌନତା,
ଆଖିମାନ ଭାଷାହୀନ, କାହାରି ଯେପରି ଆଉ
କିଛି ହେଲେ କହିବାର ନାହିଁ,
ଗପୁଥିଲେ ସେମାନେ ଯେ ଏତେବେଳ ତା' କ'ଣ
କେବଳ ନିଜେ ମୁହୂର୍ତ୍ତକ ବଂଚିଯିବାପାଇଁ ?

ସେମାନଙ୍କ କଥାମାନ ନିଃସଙ୍ଗତା-ବୋଧୁଁ ମୋତେ
ମୁକ୍ତିଦେବା ଲାଗି କେବେ ଉଦ୍ଦିଷ୍ଟ ନଥିଲା,
ସେମାନେ ନିଜର ଯେତେ ଶୂନ୍ୟତା ସେ ସମୟର ପୂର୍ଣ୍ଣ କରୁଥିଲେ,
ହଠାତ୍ ସେମାନେ ଯେବେ ଚୁପ୍ ହୋଇଗଲେ, ତେବେ ମୋର ମନେ ହେଲା

ଯନ୍ତ୍ର ମାଧ୍ୟମରେ କଥା କହୁଥିବା ପୁତ୍ତଳିକାମାନ ଅଚଳ ବା ହେଲେ
ସେମାନେ କେତେ ନ ଶୂନ୍ୟ, ଅଥଚ ମୁଁ ସେମାନଙ୍କ ଦ୍ୱାରା
ଭରୁଥିଲି ଶୂନ୍ୟତାରେ, ଏଇ ଅନୁଭବ ମୋର ଆସିବା ଉତ୍ତାରେ
କକ୍ଷ ଛାଡ଼ି ଚାଲିଗଲି, ସେମାନଙ୍କ ମଧ୍ୟୁଁ ଜଣେ ତ ବୁଝିଲେ କେହି ନାହିଁ,
ମୋ ପ୍ରସ୍ଥାନ ସଂପର୍କରେ ପରେ ମୁଁ ଶୁଣିଲି, ଯେ ଯାହାର
ଭ୍ରମପୂର୍ଣ୍ଣ ଅନୁମାନ ବ୍ୟକ୍ତ କରିଥିଲେ।

ସେମାନଙ୍କ ଟିପ୍ପଣୀକୁ ବିଶ୍ଳେଷଣ କରିବାକୁ ଯାଇ
ବୁଝିଲି ମୁଁ, ସେମାନେ ଅଣ୍ଡାଳୁଥିଲେ ଲଉଡ଼ିକୁ ଅନ୍ଧାର ଭିତରେ,
ଭାଗ୍ୟକୁ ତା' ମିଳିଯାଏ ଯଦି, ଆଉ ସେମାନଙ୍କୁ ଆଶ୍ରୟ କରିବା,
ପରିଣତି ପବନକୁ ଚୁମା ଦେବା, ଓଠ ତଳେ ସ୍ଥିତି ଶୂନ୍ୟତାର,
କିନ୍ତୁ ଆମେ କେହି କେବେ ସେ ହତାଶା ବ୍ୟର୍ଥତାକୁ କରୁ କି ସ୍ୱୀକାର ?

କାନ ଚିପି, ମଥା ପୋତି, ଚୁପ୍‌ଚାପ୍ ପଥ ପାର୍ଶ୍ୱେ ଏକା ଏକା ଚାଲିବା ଅଭ୍ୟାସ
ପରିପୂର୍ଣ୍ଣ ଦୃଶ୍ୟ, ଧ୍ୱନି, ସଂଗ ଦିଏ, ବୁକୁତଳେ ଅଫୁରନ୍ତ ଅମୃତ ନିଃଶ୍ୱାସ।

୧୪

କାହାର ଯନ୍ତ୍ରଣା କେତେ ଆମେ କ'ଣ କେବେହେଲେ ବୁଝୁ ?
ବିଦ୍ରୂପ ହିଁ କରିଥାଉ ଅନ୍ୟର ଅସମୟେ, ମାପିବାକୁ ଚେଷ୍ଟା କରୁ କେବେ
ତା' ବ୍ୟଥାର ସରହଦ, ସେ ଦୁଃଖ ବି ଆମ ଜୀବନରେ
ସ୍ଥିତି ତା'ର ଜାହିର କରିବ ଦିନେ, ଏ ସତ୍ୟକୁ ବୁଝିବି ବୁଝୁନା।

ସେଥିଲାଗି ସମସ୍ତ ପ୍ରଯତ୍ନ ସତ୍ତ୍ୱେ ଆମ ଜୀବନରେ ଆସେ ଘୋର ବିଶୃଙ୍ଖଳା,
ସହାନୁଭୂତିରେ ଆମେ ଦୀନ ଯେଣୁ, ପରିଛନ୍ନ ଆମର ରାସ୍ତାରେ
ଅଗ୍ରଗତି ହୁଏ ବାଧାପ୍ରାପ୍ତ, ଚିନ୍ତାର ଦାରିଦ୍ର୍ୟ
ଆମକୁ ତ ରଖେ ସଦା, ଅବସନ୍ନ, ଦୁସ୍ଥ, ମ୍ରିୟମାଣ।

ଯେଉଁଠାରେ ବ୍ୟଥା ତହିଁ ଈଶ୍ୱରଙ୍କ ସ୍ଥିତି ଯଦି କରୁ ଉପଲବ୍ଧି,
ସହୃଦୟ ହେବା କେତେ ସୋଜା ସତେ, ଆମେ ତିନି ଅକ୍ଳେଶରେ ଏକାକାର ହେବା

୧୫

ବହୁ ଲୋକ ଜମିଛନ୍ତି ସେଥିଲାଗି ମୁଁ କି ଯାଇ ସେଠି ଠିଆ ହେବି ?
ସେମାନେ ତ ଶୂନ୍ୟ ଯେଣୁ, ବାହାରର ଉତ୍ତେଜନା, ପ୍ରଦର୍ଶନୀମାନ
ସେମାନଙ୍କ ଲାଗି ସମୟ କଟାଇବାର କିଛିଟା ସଂବଳ,
ମାତ୍ର ତା' ସମାପ୍ତି ପରେ, ସେମାନେ ପୁନଶ୍ଚ ଶୂନ୍ୟ, ନିଃସଙ୍ଗର ସ୍ୱର ।

ପରିଣତି ଯାର ଏତେ ଦୁଃଖାବହ, ସାନ୍ତ୍ୱନାର ପରିବର୍ତ୍ତେ
କ୍ରମ ବର୍ଦ୍ଧମାନ ତୀବ୍ର ଯନ୍ତ୍ରଣାକୁ ଆଣେ,
ମୁଁ କିଁପା ସଂପୃକ୍ତ ହେବି ସାମୟିକ ସେ ସଂଭୋଗେ
'ଶବ'ର ଯେ ପ୍ରତୀକ କେବଳ,
ତେଣୁ ସେ ଗହଳି ଥାଉ ଦୂରେ ସେଠି ଚିତ୍କାର ଓ
ଅର୍ଥହୀନ ଉଲ୍ଲାସର ଢେଉ
ନାଚୁଥାଉ ମନଇଚ୍ଛା, ମୋର ବ୍ୟବଧାନ କିନ୍ତୁ ବଢ଼ିବଢ଼ିଯାଉ ।

କି ଅବ୍ୟକ୍ତ ପୂର୍ଣ୍ଣତା ସେ ନିଜ ମଧ୍ୟେ, ବାହାରର
ଧ୍ୱନି ନାହିଁ, ସମ୍ମୁଖେ, ପଶ୍ଚାତେ ପାର୍ଶ୍ୱେ କେହି ଜଣେ ନାହିଁ
ଅଥଚ ନିଃସଙ୍ଗବୋଧ, ଶୂନ୍ୟତାର ହାହାକାର, ଏତେ ଟିକେ କାହିଁ ?

୧୬

ଶୂନ୍ୟ ମୁହୂର୍ତ୍ତଗୁଡ଼ିକ ଯେବେ ଅସ୍ୱସ୍ତିକର ଓ ଦୁର୍ବିସହ ମନେହୁଏ ତୁମର
ନାମ ନିଅ, ସ୍ମରଣ କର ତାଙ୍କୁ,
ଅନୁଭବ କରିବ, ସେଇ ମୁହୂର୍ତ୍ତଗୁଡ଼ିକ ଅମୃତମୟ ହୋଇଯିବ ତୁମ ଲାଗି,
ନାମ ସ୍ମରଣ ତାଙ୍କ ପାଖେ ପହଞ୍ଚିବାର ଏକମାତ୍ର ସୋପାନ,
ଶ୍ରଦ୍ଧା ଓ ପ୍ରେମ ତ ପଛକୁ ପଛ,
ମନେହେବ କେତେ ନିକଟରେ ସେ, କେତେ ଆପଣାର ।

୧୭

ନିରାନନ୍ଦ ବୋଲି କିଛି ଅଛି କି ?
ଯଦିଥାଏ, ସେ ତ ମନର ଭୁଲ,

ସେ ଭୁଲର ସଂଶୋଧନ ପରେ
ସବୁ ଆନନ୍ଦମୟ, ସବୁ ଆଲୋକମୟ,
ମନକୁ ନିଜର ଥରେ କରିପାରିଲେ, ସେ ନିଜର
ହୋଇଯା'ନ୍ତି ଖୁବ୍ ଅକ୍ଳେଶରେ।

୧୮

ଭିକ୍ଷା ଥାଳ ଧରି ସେ ତୁମ ଦ୍ୱାରରେ ପ୍ରତି ମୁହୂର୍ତ୍ତରେ ଉପସ୍ଥିତ,
ଏତେ ତୁମେ କୁଣ୍ଠିତ କାହିଁକି, ମୁଠେ ଭିକ୍ଷା ଦେବା ଲାଗି ତାଙ୍କୁ ?
ନିଜକୁ ଉଜାଡ଼ି ଦେଇ ପାରିବ ଯଦି ତାଙ୍କ ପାଖେ, ଦେଖିବ,
ସେ ଏକୀଭୂତ ହୋଇଯାଇଛନ୍ତି ତୁମର ସମଗ୍ର ସତ୍ତାରେ।

୧୯

ସେ ନିରପେକ୍ଷ, ସେ ନିର୍ଭୁଲ, ସେ ନିରୁଦବେଗ, ସେ ନିର୍ଲିପ୍ତ, ଅନାସକ୍ତ ସେ,
ହଜିଯାଇ ପାରିବ ଯଦି ସେ ହିରଣ୍ମୟର ଅନ୍ତରାଳରେ
ତେବେ ଅଚଳ ମହାମେରୁ, ସ୍ଥିତପ୍ରଜ୍ଞ ତୁମେ।

୨୦

ଏଇ ଅନୁଭବ ଯେବେ ଘନୀଭୂତ ହେବ ତୁମରି ମଧ୍ୟରେ
ସଂଘଟିତ ହୁଏ ଯାହା କିଛି, ସବୁ ତାଙ୍କରି ଇଚ୍ଛାରେ,
ସେତେବେଳେ ପ୍ରତି ମୁହୂର୍ତ୍ତର ପ୍ରତିଟି ଘଟଣା
ମନେ ହେବ ପ୍ରୀତିସିକ୍ତ, ମନ ହେବ କେତେ ମଧୁମୟ,
ତୁମର ଦୃଷ୍ଟିରେ, ଆପାତତଃ ମନେ ହେଉଥିବା କ୍ଷୟ, କ୍ଷତିସବୁ
ଆପଣାର ହୋଇଯିବେ, ସବୁ କିଛି ଯନ୍ତ୍ରଣା ମଧ୍ୟରେ
ଭାବମୟ, ପ୍ରେମମୟ ସ୍ଥିତି ତାଙ୍କ ହେବ ଉଦ୍‌ଭାସିତ।

୨୧

ଏ ଦେହଟା କେଉଁଠାରେ କେଉଁପରି ଶେଷ ହୋଇଯିବ
ସେଥିଲାଗି ଚିନ୍ତା କିଂପା ଏତେ ?
ପ୍ରତିକ୍ଷଣେ ଓଠେ ନାମ ଥାଉ, ପ୍ରତି ମୁହୂର୍ତ୍ତରେ
ଦିଶୁଥାଉ ଆଖି ଆଗେ ସେ ସୁନ୍ଦର ମୂର୍ତ୍ତି,

ସେଇ ଦୃଶ୍ୟେ ନିରନ୍ତର ବିଭୋର ମୁଁ ରହେ,
ଅଥଚ ନିଷ୍କ୍ରିୟ ନୁହେଁ, ସଂସାରର ପ୍ରତି କର୍ମ
କରିଯାଏ ଅନାସକ୍ତ ଅସଂପୃକ୍ତଭାବେ ।

୨୨

ଯାହାଙ୍କ ସାକ୍ଷାତ ଲାଗି ଆକୁଳେ ମୁଁ ପଥ ରହେ ଚାହିଁ,
କାହାନ୍ତି ସେ ? ଦୃଷ୍ଟି ମୋର ଅପଲକ, ଦେଖା ତାଙ୍କ ନାହିଁ,
ଆସି ସେ ନାହାନ୍ତି ଅବା ଆସି ମଧ୍ୟ ରହିଛନ୍ତି ଛପି
ମୋ ଦୃଷ୍ଟିର ଅନ୍ତରାଳେ, ଲୁଚୁକାଳି ଖେଳିବାର ଦୁରନ୍ତ ଇଚ୍ଛାରେ,
ଅଭୀପ୍‌ସା ତାଙ୍କର ତେବେ ଚରିତାର୍ଥ ହେଉ ।

୨୩

ବେଦାନ୍ତରେ ଥରେ ଯଦି ସ୍ଥିତି ତବ ହୁଏ ପ୍ରତିଷ୍ଠିତ,
ଅସ୍ୱାଦନ ହେବ ଅନାୟାସେ ଅବତାର ସ୍ନିଗ୍‌ଧ ଲୀଳାମୃତ,
କେବଳ ଦ୍ୱୈତରେ ରହି ଅଦ୍ୱୈତର ଉପେକ୍ଷାରେ
ରାସ କେବେ ଉପଲବ୍ଧ ହୁଏ ?
ଅଦ୍ୱୈତରେ ପୂର୍ଣ୍ଣ ସ୍ଥିତି ବିନା ଦ୍ୱୈତାନନ୍ଦ ଚିରଦିନ ଅବୋଧ୍ୟ ହିଁ ରହେ ।

୨୪

ସେ ସବୁ ଅନେକ ମୁହଁ, ସ୍ନେହ ଶ୍ରଦ୍ଧା ସହାନୁଭୂତିର,
ସେମାନଙ୍କୁ ସାଥୀ କରି ବଂଚିବାକୁ ଚାହିଁଥିଲି ଆନନ୍ଦ ହିଲ୍ଲୋଳେ
ଅଫୁରନ୍ତ ଶାନ୍ତି ନେଇ, ଅଥଚ ମୁଁ ଦେଖିଲି କ୍ରମଶଃ
ସେମାନେ ନିଷ୍ପ୍ରଭ ହେଲେ, ନିଶ୍ଚିହ୍ନ ବି ହେଲେ, ଶେଷେ
ଠିଆ ହୋଇ ରହିଲି ମୁଁ ଛକ ପରେ ଏକା ।

ସେତେବେଳେ ମନେ ହେଲା ଅବଲମ୍ବନ କି ମୋର ନାହିଁ, ମୁହଁର ସମାପ୍ତି ?
ଶୁନ୍‌ଶାନ୍ ଚତୁର୍ଦ୍ଦିଗ, ହସ ନାହିଁ, କଥା ନାହିଁ, ଶୂନ୍ୟତା
ମୋ ଭରିବାକୁ କେହି ଜଣେ ନାହିଁ,

ଏଇ ଯେ ଲମ୍ବିଛି ଦୀର୍ଘ ପଥ, ଜୀବନର ସଙ୍ଗୀଭାବେ
କେହି ଆଉ ଦେବେ ନାହିଁ ଦେଖା ?

ଏ ଯେଉଁ ଅଭାବବୋଧ ପ୍ରିୟଜନ ଅନୁପସ୍ଥିତିରେ, ତାହାରି ଗର୍ଭରୁ
ସେ ମୁହଁର ଅଭ୍ୟୁଦୟ, ସଂପୂର୍ଣ୍ଣ ଅପ୍ରତ୍ୟାଶିତ, କ୍ରମେ ତାହା ସ୍ପଷ୍ଟ ସ୍ପଷ୍ଟତର ।
ପ୍ରଥମ ଚମକ ଆଉ ବିସ୍ମୟର ପରେ କ୍ରମେ ମନେ
ହେଲା, ମୋର ସେଇ ମୁହଁ କେତେ ପରିଚିତ,
ଆଜିଯାଏ ଲୁଚିଥିଲା ତେବେ କେଉଁ ଅନ୍ତରାଳେ ?
ଏ ଯାଏ ତା'ଦୃଶ୍ୟ ହେଉ ନଥିଲା କାହିଁକି ?
ହସୁଛି ସେ ଦିବ୍ୟ ହସ, ଓଠେ ତା'ର କେତେ ସ୍ନେହ,
କେତେ ଶ୍ରଦ୍ଧା, କେତେ ନ ଆଦର,
କେତେ ମୋ' ଘନିଷ୍ଠ ସତେ, କିନ୍ତୁ ସାଇତି ମୁଁ ପାରିବି କି ରଖି
ପାଇଛି ଯା' ଅକସ୍ମାତ, ଭୟ ହୁଏ, ଭାରି ଭୟ ହୁଏ,
ହରାଇ ମୁଁ ବସିବିନି ତା'ରେ, ଯେପରି ମୁଁ ହରାଇଛି
ଅତୀତରେ ଅନେକ ମୁହଁକୁ !

ମୋ ଭୟକୁ ବୁଝିପାରି ପ୍ରବୋଧ ସେ ଦେଲେ " ଏ ମୁହଁ
ଓ ସେ ମୁହଁମାନଙ୍କ ମଧ୍ୟେ ପାର୍ଥକ୍ୟ ନ ବୁଝୁ ?
ଆସିଛି ମୁଁ ଥରେ ଯେବେ, ହଜିଲେ ମୁଁ ହଜିପାରେ ତୋହରି ଭିତରେ
ଏକାକାର ହେବା ଲାଗି, ପରିଣତି ଜ୍ୟୋତିର୍ମୟ ପ୍ରକାଶ ମୋ ତୋହରି ମୁହଁରେ"

୨୫

ଅନ୍ୟକୁ ଦେଖିବା ଲାଗି କ୍ଷୟ କରେ ଯେତେ ମୋ ସମୟ,
ସେଇ ସମୟକୁ ଯଦି ଆତ୍ମନିରୀକ୍ଷଣେ ମୋର କରୁଥା'ନ୍ତି ବ୍ୟୟ
ବହୁ ବିପର୍ଯ୍ୟୟଁ ତେବେ ଆତ୍ମରକ୍ଷା ପାରୁଥା'ନ୍ତି କରି,
ଅନେକ ସଂପଦ ଯାହା ଅନ୍ତରର ଐଶ୍ୱର୍ଯ୍ୟର ଅଭିବୃଦ୍ଧି
ଲାଗି କେବେ କରେନି ସାହାଯ୍ୟ,
ସେ ସବୁର ପ୍ରାପ୍ତି ଲାଗି ନିରର୍ଥକ ଯାତନା ମୁଁ କରିଛି ବରଣ,
ଅଥଚ ମୋ ମା ସାମାନ୍ୟ ବିଚାରେ, ଉପେକ୍ଷାତ କରି ତାହା ହୁଅନ୍ତା ସହଜେ ।

ସବୁ ମୁଁ ବୁଝୁଛି ମାତ୍ର ବୁଝି ମଧ୍ୟ ଅବୁଝା ରହୁଛି,
ସମୟର ପ୍ରବାହରେ ଆୟୁ ମୋର ଶୀର୍ଣ୍ଣ ହୁଏ, ଧୀରେ ଧୀରେ ସଂଧ୍ୟା ଆସେ ନଇଁ,
ଅଥଚ ଯା' ଅସୁନ୍ଦର, ଅକଲ୍ୟାଣ, ଅକର୍ତ୍ତବ୍ୟ ପାରେନି ମୁଁ କେବେ ବାଦ୍‌ଦେଇ
ବସି ରହି ସୀମିତ ମୋ ପରିବେଶ, କହିବି ମୁଁ କାହା ଆଗେ,
ସହାନୁଭୂତିରେ କିଏ ଶୁଣିବ ମୋ ବ୍ୟଥା ?
ନିଃସ୍ୱାର୍ଥପର କେ ଅଛି ଏତେ ବଡ଼, ମୋ ଲାଗି ଯା'
ହୃଦେ ଅଛି ଅନନ୍ତ ମମତା ?

୨୬

ଏକାକୀ ରହିବାଠାରୁ ଅଧିକ ସାନ୍ନିଧ୍ୟ ସୁଖ କି ଅଛି ବା ଆଉ ?
ସତେ କି ମୁଁ ଏକା ଥାଏ ? ପାଖେ କେହି ନଥା'ନ୍ତି କି ମୋର ?
କହୁଥାଏ କାହା ସାଥେ କଥା ତେବେ ? ମିଶିଥାଏ କା' ଆଖିରେ ଆଖି ?
କାହା ଭାବନାରେ ଥାଏ ବିହ୍ୱଳ ମୁଁ ? ଅନ୍ୟମାନେ ବିସ୍ମୟେ ଅବାକ୍।
ଉଦ୍‌ବେଳିତ ସେମାନଙ୍କ ଚିନ୍ତା- ଏ କିପରି ସୁଖ ?
ଚୁପ୍‌ଚାପ୍ ଏକୁଟିଆ ଏତେ କି ଆନନ୍ଦ ?
ସେମାନେ ମୁହୂର୍ତ୍ତେ ହେଲେ ସଂଗଶୂନ୍ୟ, ଜୀବନଟା
ସେମାନଙ୍କ ମନେହୁଏ କେତେ ଦୁର୍ବିଷହ,
କେହି ହେଲେ ଗପୁଥା'ନ୍ତା, ଅବ୍ୟାହତ କୋଳାହଳ,
ଉଚ୍ଚ କଣ୍ଠେ ଗାଉଥା'ନ୍ତା କେହି ଜଣେ ଗୀତ,
ଯିବା ଆସିବାରେ ପୂରି ରହିଥା'ନ୍ତା ଘର ସବୁବେଳେ।

ଲୋକ ଖାଲି ହାଉଯାଉ, ଘରେ ଓ ବାହାରେ ଖାଲି ଧ୍ୱନି ଆଉ ଧ୍ୱନି,
ନିରର୍ଥକ ହେଉ ପଛେ, ତଥାପି ସେ ଢେଉ ମଧ୍ୟେ
ନାଚି ନାଚି ବଂଚି ହୁଏ, ଅଭ୍ୟସ୍ତ ସେଥିରେ
ଯେଉଁମାନେ, ସେମାନେ ବୁଝିବେ କ'ଣ ଏକୁଟିଆ
ଚୁପ୍ ଚାପ୍ ରହିବାର ଅବ୍ୟକ୍ତ ସୁଖକୁ,
ଅବଶ୍ୟ ବୁଝିବେ ଯେଣୁ ସେ ତୁରୀୟ ଉପଲବ୍ଧି ପ୍ରତ୍ୟେକର
ଜୀବନରେ ଦିନେ ଆସିବ ନିଶ୍ଚୟ।

୨୭

ନିଃସହାୟ, ନିଃସଙ୍ଗ ରୂପ କେବେ ଆଖି ଖୋଲି ଦେଖିଛ ନିଜର ?
ସବୁ ତ ତୁମର, ଚତୁର୍ଦ୍ଦିଗେ ପରିପୂର୍ଣ୍ଣ,
ସେଇ ସଂପୂର୍ଣ୍ଣତା ମଧ୍ୟେ ରହି ମଧ୍ୟ କାହିଁକି ବା ଏକୁଟିଆ ଲାଗେ ?
ଏତେ ବେଶୀ ଏଁକୁଟିଆ ଲାଗେ, ଇଛା ହୁଏ ସବୁ ଛାଡ଼ି ପଳାନ୍ତି କୁଆଡ଼େ ।

ଯୁଆଡ଼େ ବା ଯାଅ, ନିଃସଙ୍ଗତା ତମ ପାଖ ଛାଡ଼ିବନି କେବେ,
ସଙ୍ଗେ ସଙ୍ଗେ ଚାଲିଥିବ, ପୁନଶ୍ଚ ଫେରିବ ତୁମେ ନିରୁପାୟ ସଙ୍ଗେ ତାକୁ ଧରି,
ଚେଷ୍ଟା କି କରିଛ କେବେ ବୁଝିବାକୁ ସ୍ୱରୂପ ତାହାର ?
ତାକୁ ଠିକ୍ ଚିହ୍ନି ନ ପାରିବା ହେତୁ, ସେ ତମକୁ ସବୁବେଳେ ଭୀଷଣ ଡରାଏ,
ତୁମେ ଥାଅ ତାକୁ ହାତ ଯୋଡ଼ି,
ବ୍ୟସ୍ତ ବା ବିବ୍ରତ ନ ହୋଇ ସ୍ଥିର ଚିତ୍ତେ ଯଦି ଚିନ୍ତାକର
ଦେଖିବ ସେ ଶୂନ୍ୟତାଟା କେତେ ଫାଲ୍‌ତୁ, ନିଜକୁ ନ ଚିହ୍ନିବାର ଅକ୍ଷମତା ହେତୁ,
ମିଛ ଯନ୍ତ୍ରଣାରେ ସଦା ହାହାକାର, ସବୁ ଥାଇ କିଛି ନ ଥିବାର ମିଛ ଅନ୍ତର୍ଦାହ ।

ଥରେ ଦେଖି ନିଜକୁ ପଚାର କ'ଣ ତୁମ ପ୍ରୟୋଜନ ?
ଯେଉଁ ସମସ୍ତଙ୍କୁ ଆସିବାକୁ ମନେ ମନେ କର ନିମନ୍ତ୍ରଣ,
ସତେ ସେ ସମସ୍ତେ କ'ଣ ଲୋଡ଼ାଥିଲେ ? ସେମାନଙ୍କ
ବ୍ୟତିରେକେ ତମେ କ'ଣ ନିଃସହାୟ ଏଡ଼େ
ସେମାନେ ପହଞ୍ଚିଗଲେ ସବୁ ତମ ଶୂନ୍ୟତା କି ଭରିଯିବ ?
ପୂର୍ଣ୍ଣତାର ଆନନ୍ଦରେ ଉଚ୍ଛୁଳିବ ତମେ ?

କ୍ରମେ ଏଇ ଅନୁଭବ ହେବ, ନିଜ ଅପୂର୍ଣ୍ଣତା ପୂର୍ଣ୍ଣ କରିବାରପାଇଁ
ବାହାରର କିଛି ହେଲେ ପ୍ରୟୋଜନ ନାହିଁ,
କାହିଁକି ନା, ତମ ମଧ୍ୟେ ଶୂନ୍ୟତା ବୋଲି ସତେ କ'ଣ କିଛି ହେଲେ ଅଛି ?

ଯାହା ଅଛି, ସେ ସବୁ ମନର ଭୁଲ, ନିଜକୁ ଭାବରେ ରଖି ନ ପାରିବା ହେତୁ
ସବୁବେଳେ ନିଜ ମଧ୍ୟେ ଫାଙ୍କା ଫାଙ୍କା ଭାବ,
ମିଛ କଷ୍ଟ, ବୃଥା ବ୍ୟଥା, ଅଯଥାରେ ଛଟପଟ ହେବା ।

କୁଆଡ଼େ ନଯାଇ କାହା ପାଖେ ହାତ ନପତାଇ,
ଚୁପ୍‌ଚାପ୍ ବସିଯାଅ, ଡୁବିଯାଅ ନିଜ ମଧ୍ୟେ, ହଜି ଯାଅ ଆପଣା ଭିତରେ,
ଆବିଷ୍କାର କରିବ କ୍ରମଶଃ ତମ ମଧ୍ୟେ ସବୁ ଭରପୁର,
ଉଚ୍ଛୁଳୁଛି ନଈ ଦୁଇକୂଳ, ଅଭାବର ପ୍ରଶ୍ନ କାହିଁ ?
ଉଦ୍‌ବୃତ ଭାବକୁ ନେଇ ବିତରଣ କରିବାକୁ ତମେ ସତତ ଉନ୍ମୁଖ ।

୨୮

ଜୀବନରେ ଯେବେ ଅବସାଦ, କ୍ଳାନ୍ତି ଘୋଟି ଆସେ,
ସେତେବେଳେ ଇଛା ହୁଏ, କିଛି ଗୋଟେ ବିସ୍ମୟକର ଘଟଣା ଘଟିଯା'ନ୍ତା କି
ଚମକାଇ ଦେଇ ମୋତେ, ଶୋଇ ପଡୁଥିବା ମନମୋର ଚିହିଁକି ଉଠନ୍ତା,
ସତେଜ ସେ ପୁନର୍ବାର, ଭରିଯା'ନ୍ତା ପୁନଶ୍ଚ ଫୁର୍ତ୍ତି,
ଜୀବନର ଉଚ୍ଛଳତା ଆସନ୍ତା ଲେଉଟି ।

ମାତ୍ର ସଦା ଏହା ସମ୍ଭବ କି ? ଭୁଲାଇବା ଲାଗି ଏ ମନକୁ
ଏମିତି ଏ ଛଳନାର ମୂଲ୍ୟ କ'ଣ ?
ଏତେ ଜ୍ଞାନ, ବୁଦ୍ଧି, ପ୍ରଜ୍ଞା ଆହରଣ ପରେ, ଏକୁଟିଆ ଲାଗୁଥିବ ଦୁଃଖଟାକୁ ଯଦି,
ଦୂର କରି ହେଲା ନାହିଁ, ମନତଳେ ଜମି ରହିଲା ଜଡ଼ତା,
ବିକଶିତ ହେଲା ନାହିଁ ହସ, ବୁକୁତଳ ଫୁଲି ଉଠିଲାନି ଅଫୁରନ୍ତ ସୁଖେ,
ଜୀବନର ଯେତେ ସବୁ ସାଧନ ଏ ଯାଏ, ବୃଥା ସିନା, ସମୟର ଅପଚୟ ଖାଲି ।

ଶୂନ୍ୟ ମୁହୂର୍ତ୍ତରେ, ଯେତେବେଳେ ବ୍ୟକ୍ତି ନାହିଁ, ବସ୍ତୁ ନାହିଁ
ସେମାନଙ୍କ ସଂପର୍କିତ ଆନନ୍ଦ ବି ନାହିଁ,
ନୀରବେ 'ନାମ'କୁ ନେଇ ତାଙ୍କ ସଙ୍ଗେ ଏକୀଭୂତ
ହୋଇଗଲେ ନିଶୂନ ହାହାକାର କାହିଁ ?

ନାମେ ତେଣୁ ଶ୍ରଦ୍ଧା ପ୍ରୟୋଜନ, ଯେଉଁ ନାମ ଅଜସ୍ର
ଅଳୀକ ନାମଠାରୁ ଅନେକ ପୃଥକ,
ସେ ନାମର ଉଚ୍ଚାରଣେ କେତେ ଶାନ୍ତି, କେତେ ତୃପ୍ତି, ଥରୁଥାଉ ଓଷ୍ଠାଧାର ମୃଦୁମୃଦୁ,
ଅନ୍ତରର ତଳେ ଅମୃତର ଅଖଣ୍ଡ ପ୍ରବାହ ।

## ଆରତି

୨୯

ଆମେ ତ ହସି ନ ପାରୁ ହସିବାର ସୁଯୋଗ ବି ପାଇ,
ସେ ସୁଯୋଗ ଥରେ ଅଧେ ନୁହେଁ, ଜୀବନରେ ବହୁବାର ଆସେ,
ମାତ୍ର ଅନ୍ୟମନସ୍କତା 'ବୃଥା' ଲାଗି ଆମକୁ ତ କରିଛି ବଂଚିତ,
ସେ ଅମୃତ ଆହରଣୁଁ, ତେଣୁ ଆମେ ସତତ ବିମର୍ଷ।

ଏ ବିଶ୍ୱର ମଧୁ ସୃଷ୍ଟି ଘନୀଭୂତ ଆନନ୍ଦରୁ ସ୍ଫୁର୍ତ୍ତ,
ସୂର୍ଯ୍ୟଠାରୁ ରେଣୁ ଯାଏ ପ୍ରତ୍ୟେକେ ଆନନ୍ଦେ ସ୍ନିଗ୍ଧ ସେମାନଙ୍କ ଆନନ୍ଦ ସ୍ୱରୂପ,
ଆମେ ମଧ୍ୟ ସମଧର୍ମୀ, ମାତ୍ର ଆମ ଚିନ୍ତାର ବିକୃତି,
ସବୁ ତ ଅନ୍ଧାର ଦେଖେ, ଚକ୍ଷୁଷ୍ମାନ ଦୃଶ୍ୟରୁ ବଂଚିତ।
ନିଜକୁ ପୃଥକ କରି ପ୍ରତ୍ୟେକଠୁ, ସ୍ୱାର୍ଥପର ଚିନ୍ତା,
ଶୀର୍ଣ୍ଣ ସରହଦ ମଧ୍ୟେ ଆପଣାକୁ ସୀମାବଦ୍ଧ କରେ,
ଯେ ସୀମିତ, ସଂକୀର୍ଣ୍ଣ ଯେ, କ୍ଷୁଦ୍ର ଯେହୁ, ସୀମାହୀନ ଆନନ୍ଦକୁ ଲଭିବ କିପରି ?

ସେ ମିଛ ଦୁଃଖରେ ଜଳେ, ଆନନ୍ଦ ତା' ଦେହଳୀରୁ ଲେଉଟି ତ ଯାଏ।
କିନ୍ତୁ, ଆନନ୍ଦ ଅପେକ୍ଷା ରଖେ ଅନ୍ତରାଳେ ପ୍ରତିକ୍ଷଣେ ଅମର ଠାରକୁ।

୩୦

କୌତୂହଳୁଁ ସିନା ମୋର ମନତଳେ ଦୁଃଖର ଅରଣ୍ୟ,
କ୍ରମେ ତା' ବିସ୍ତୃତ ହୁଏ, ଏହି ସତ୍ୟ ବୁଝିବା ସତ୍ତ୍ୱେବି,
ନିବୃତ୍ତ ମୁଁ ହୁଏ କେବେ ? ଆପଣାକୁ ରଖିପାରେ ଆୟତ୍ତ ଭିତରେ ?
କୌତୂହଳ ନିଜର ଅଭାବବୋଧୁଁ ଜନ୍ମ ନେଇଥାଏ,
କା' ସଂବନ୍ଧେ କୌତୂହଳ ? ମୋ ଦୃଷ୍ଟିରେ ଅସମାପ୍ତ ସବୁ,
ତେଣୁ ସବୁ ଜାଣିବାର ଆକାଂକ୍ଷାରୁ ଏତେ ଆଲୋଡ଼ନ।

ମୁଁ ଯଦି ବୁଝନ୍ତି ମୁଁ ତ ପରିପୂର୍ଣ୍ଣ, କୌତୂହଳ ଅନ୍ୟର ସଂପର୍କେ
ଜାଗ୍ରତ ହୁଅନ୍ତା କେବେ ? ଯାହା କିଛି ଘଟିବାର ନିଶ୍ଚୟ ଘଟିବ

ପୂର୍ବରୁ ତା' ସ୍ବୀକୃତ, ଅତଏବ କୌତୂହଳ, ଉଦ୍‌ବେଗ ମୋ ମନେ
ଅଶାନ୍ତ କରନ୍ତେ କି ମୋତେ ? ଖଣ୍ଡିତ ଭାବରେ ସର୍ବେ ପୂର୍ଣ୍ଣତାକୁ କରୁଛନ୍ତି ଗତି ।

ସ୍ଥିର ମନେ, ନିର୍ଭୁଲ ମୀମାଂସା ଦୃଢ଼ ଆସିଗଲେ ଥରେ,
କୌତୂହଳ କାହିଁ ଆଉ ? ନାସାଗ୍ରାରେ ଦୃଷ୍ଟି ସ୍ଥିର ବର୍ତ୍ତମାନ ପରେ ।

୩୧

ତୁମର ଚିନ୍ତନେ ଯଦି ଉଦ୍ଦୀପନା ଲକ୍ଷ୍ୟ କରେ କା'ର
ତୁମର କଥା କହୁ କହୁ ଦେଖେ ଯଦି ନେତ୍ରୁ କା'ର ଅଶ୍ରୁ ଝରିବାର,
ତୁମ କଥା ଶୁଣୁ ଶୁଣୁ କେହି ଯଦି ରୋମାଞ୍ଚିତ ହୁଏ,
ମୁଁ ତେବେ ନିଜକୁ ଅତି ଦୀନାମଣି ସ୍ତବ୍ଧ ହୋଇ ରହେ ।

ତୁମ ସଂବନ୍ଧରେ କେତେ ଅଧ୍ୟୟନ ନ ଅଛି ବା ମୋର,
ପାଣ୍ଡିତ୍ୟର ମାଧ୍ୟମରେ ତୁମ କଥା ବିଶ୍ଳେଷଣେ କୃତିତ୍ୱ ମୋ'
ସେଥିଲାଗି ମନେ ମୋର କେତେ ଅହଙ୍କାର,
ତୁମ ସଂପର୍କରେ ଯେବେ ତର୍କ କରେ ଅନ୍ୟ ସାଥେ ଲକ୍ଷ୍ୟ ମୋର ଥାଏ,
ପରାଜିତ କରି ତା'ରେ ବିଜୟୀର ଗୌରବ ମୁଁ ପାଏ ।

ଏପରି ମୁଁ ଜଣେ ଅତି ଶୁଷ୍କ ଆଉ କଠିନ ହୃଦୟ,
ପ୍ରଜ୍ଞାର ପ୍ରାବଲ୍ୟେ ସିନା ପ୍ରତିକ୍ଷଣେ ଆପଣାକୁ କରୁଅଛି କ୍ଷୟ,
କେବେ ଦିନେ ହେଲା ନାହିଁ ତୁମ କଥା ସ୍ମରି ମୋର ହୃଦ ବିଗଳିତ,
ଅଥଚ ଅଧରେ ନିତ୍ୟ ଉଚ୍ଚାରଣ, 'ତୁମେ ମୋର ପ୍ରାଣର ଦୟିତ ।"

ଏହିପରି ଛଳନାରେ କେତେଦିନ ଯିବ ଅବା ମୋର,
ହୃଦତଳେ ପ୍ରେମ ନାହିଁ, ମନତଳ କାମନାଜର୍ଜର,
ଏ ମହାବ୍ୟାଧିରୁ ମୋର ପରିତ୍ରାଣ ଉପାୟ କି ନାହିଁ ?
ଚଉଦିଗ ପରିପୂର୍ଣ୍ଣ ମୋର, ହୃଦେ କିନ୍ତୁ ପୂର୍ଣ୍ଣତା ମୋ କାହିଁ ?
ତୁମରି ସ୍ମରଣେ ପ୍ରଭୋ ! ଯେଉଁମାନେ ଆପଣାକୁ ହୁଅନ୍ତି ବିସ୍ମୃତ,
ସେମାନଙ୍କ ପଦରଜ ଏକମାତ୍ର ସଂବଳ ମୋ'
ଲଭିବାକୁ ମୃତ୍ୟୁ ମଧ୍ୟେ ଅନନ୍ତ ଅମୃତ ।

୩୨

ତୁମେ ମୋର କଣ୍ଠେ ପ୍ରଭୋ ! ଗୀତ ଗାଅ, ମନେହୁଏ
ମୁଁ ଯେପରି ଗାଉଅଛି ଗୀତ,
ତୁମରି ପରଶେ ମୋର ଲେଖନୀ ଚଞ୍ଚଳ ହୁଏ,
କବି ବୋଲି ମୁହିଁ କିନ୍ତୁ ଜଗତେ ବିଦିତ,
ବିଭିନ୍ନ ଶକ୍ତିର ମୋର ପ୍ରକାଶ ଯା ଘଟେ, ସେ ତ ତୁମ କରୁଣାର ଖେଳ,
ଅଥଚ ମୁଁ ତୁମକୁ ବିସ୍ମରି ନିରର୍ଥକ ଅହଙ୍କାରେ ହୁଅଇ ଉଦ୍‌ବେଳ,
ତାଗଲେହ୍ୟ ମୋ ତୁମେ କିନ୍ତୁ ହସୁଥାଅ ଆଶୀର୍ବାଦ ହସ, ପରିଣତି ଯାର,
ମୋତେ କ୍ରମେ କରେ ଭ୍ରମମୁକ୍ତ, ନିଜ ମଧ୍ୟେ ତୁମକୁ ମୁଁ କରେ ଆବିଷ୍କାର ।

୩୩

ତୁମେ ନାମେ ତାଳି ମାରି, ଗୀତ ଗାଇ, ସମୟ ମୋ କଟିଯାଏ ଯଦି,
ଆଉ ତେବେ ପ୍ରୟୋଜନ କ'ଣ ? ପ୍ରକୃତରେ କିଛି କ'ଣ ପ୍ରୟୋଜନ ଅଛି,
ତେର ଦିନ ବିଷୟୀ ମୁଁ ହେଲି, ହିସାବକିତାବ ମଧ୍ୟେ ଆସକ୍ତିକୁ ନେଇ,
କେତେ ବ୍ୟକ୍ତି, ବସ୍ତୁକୁ ମୁଁ କଲି ଆପଣାର, ମାତ୍ର ଆପଣାର କେହି କ'ଣ ହେଲେ ?
ସେମାନଙ୍କୁ ଆଶ୍ରା କରି ଆନନ୍ଦ ମୁଁ କରିବାକୁ ଯାଇ
ଆନନ୍ଦୁ ବଂଚିତ ହୋଇ ନିରାଶ୍ରୟ, ନିଃସହାୟ ମୋ ପାଇଁକି
କେହି ଜଣେ ଅଛି ଆହା ପଦେ କହିବା ପାଇଁକି ?

ଅଥଚ ତୁମର କେତେ ଦରଦ ମୋ ଲାଗି, ଆପେ ଆସି ମୋ ସହିତ ଯୋଡ଼ିଲ ସଂପର୍କ,
ଶୂନ୍ୟତାକୁ ମୋର ଭରିଦେଲ ସହାନୁଭୂତିରେ, ଯନ୍ତ୍ରଣାର ପରେ ମୋର ବୁଲାଇଲ ହାତ,
ମୋ ଆଖିର ଲୁହେ ତୁମ ଆଖି ଲୁହ ମିଶାଇଲ,
ମୁହାଁମୁହିଁ ଦୁହେଁ, ଦୁହିଁଙ୍କର ଆଖି ଅପଲକ,
ତେଣୁ ତୁମ ନାମ ଧରି, ଗୀତ ଗାଇ, ତାଳି ମାରି,
ପ୍ରତି ମୁହୂର୍ତ୍ତରେ, ମନତଳେ ତୁମକୁ ମୁଁ ରଖିବି ସାଇତି ।

୩୪

ମୁଁ ଯେବେ ଏକାକୀ ଥାଏ, ସବୁ କିଛି ଖାଁ ଖାଁ ଲାଗେ,
ଇଛାହୁଏ କେହି ଜଣେ ଆସନ୍ତା କି ନିକଟକୁ ମୋର

ନିଃସଙ୍ଗତା ଦୁଃଖୁଁ ମୋତେ ମୁକ୍ତି ଦେବା ଲାଗି, ସେତେବେଳ କିନ୍ତୁ,
ତୁମ କଥା ଭାବେ କି ମୁଁ? ଠିଆ ହୋଇଥାଅ ତେବେ ତୁମେ ମୋ ସମୀପେ,
ସଙ୍ଗ ମୋତେ ଦେବା ଲାଗି, କରିବାକୁ ସାଥେ ମୋର ଭାବ ବିନିମୟ,
ଅଥଚ ମୁଁ ତୁମ ଚିନ୍ତା ମନରେ ନ ଆଣି, ଖୋଜିଥାଏ ସେମାନଙ୍କୁ
ଯେଉଁମାନେ ଆସିଲେ ଆସିବେ ସିନା ନିଜ ସ୍ୱାର୍ଥ ଲାଗି, ମୋ ପାଇଁ ତ ନୁହେଁ,
ସେମାନଙ୍କୁ ବାରମ୍ବାର ଚିହ୍ନିବା ସତ୍ତ୍ୱେବି, ଧକ୍କା ଖାଇ ଚେତନା ନ ଆସେ,
ଶୂନ୍ୟତାରୁ ଦେବା ପାଇଁ ମୁକ୍ତି ମୋତେ, ସେମାନଙ୍କୁ ଲୋଡ଼େ ମୋର ପାଶେ।

ବହୁବାର ସେମାନେ ତ ଆସିଛନ୍ତି, ଚାଲି କିନ୍ତୁ ଯାଇଛନ୍ତି ମୋତେ ନ ଅନାଇ,
ପ୍ରୟୋଜନ ଯେତେବେଳେ ପଡ଼ିଛି ନିଜର, ଆକୁଳ ମୋ ଅନୁରୋଧମାନ
ଛାଡ଼ି ମୋତେ ନ ଯିବାର, ପ୍ରତ୍ୟାଖ୍ୟାନ କରିଛନ୍ତି
ନିଃସଙ୍କୋଚେ, ପ୍ରଶ୍ନ କାହିଁ ସହାନୁଭୂତିର ?

ଏ ହୃଦୟ ସ୍ପନ୍ଦନକୁ ବୁଝନ୍ତିନି କିପରି ବା, ଏତେ ଯଦି ମୋର ଆପଣାର,
ଛଳନାର ମର୍ମନ୍ତୁଦ ଏ ଆଘାତ ସତ୍ତ୍ୱେ, ମୁଁ କିପରି ଲୋଡ଼େ ନାହିଁ ତୁମର ସାନ୍ନିଧ୍ୟ ?
ତୁମରି ପରଶ, ତୁମ ଆଲିଙ୍ଗନ, ଶବ୍ଦହୀନ ବଚନ ତୁମର ?
ନିଛାଟିଆ ଖରାବେଳେ, ଶୁନ୍‌ଶାନ୍ ରଜନୀରେ, କାନେଇ ରହିଲେ କ'ଣ
ଶୁଣନ୍ତିନି ଦରଦରେ ଭରା ତୁମ ବଇଁଶୀର ସ୍ୱର।

୩୪

ସମସ୍ତ ମୋ' ଶୂନ୍ୟତାକୁ, ଅନୁଭବେ, ପ୍ରଭୁ ତୁମେ ପରିପୂର୍ଣ୍ଣ କର,
ସମସ୍ୟା-ତିମିରେ ତୁମେ ଦୀପ୍ତ କରି ସମାଧାନ ସୂର୍ଯ୍ୟ
ମୋତେ କର ହତବାକ୍, ତଥାପି ମୋ ମନର ସଂଶୟ
ତୁମରି ନେତୃତ୍ୱ ପରେ, ମୋତେ କରେ ପଳପଳ କ୍ଷୟ।

ତୁମ ସ୍ଥିତି, ବ୍ୟାପ୍ତି ନେଇ ଅନଭିଜ୍ଞ ଯେଉଁମାନେ ନିଶ୍ଚିନ୍ତ ସେମାନେ,
ସେମାନଙ୍କ ପ୍ରତିକ୍ରିୟା ଏ ମାଟିକୁ କେନ୍ଦ୍ରକରି, ଲାଭକ୍ଷତି
ହସକାନ୍ଦ, ଯେତେ ଯାହା ସବୁ ଏ ମାଟିର,
ନିଷ୍କ୍ରିୟତା ସେମାନଙ୍କ ତୁମ ଲାଗି ମନେହୁଏ ତେଣୁ ସତେ ଅଭିନନ୍ଦନୀୟ,
ତୁମକୁ ମୁଁ ଭଲପାଇ ଜୀବନମୃତ, ଯାତନା ଆଖି ଖୋଲି ଦେଖ ଥରେ ପ୍ରିୟ।

ତୁମ ପରିଚୟ ପାଇ, ପ୍ରୀତି ଦେଇ ମନେହେଲା ନିଷ୍କୃତି ଲଭିଲି
ଏତେ ଦିନେ ଅନ୍ଧକାରୁ, ମାତ୍ର ତେବେ ଚିହ୍ନି ଠିକ୍ ନ ଥିଲି ନିଜକୁ,
କେତେ ମୁଁ ଦୁର୍ବଳ ସତେ, ଭୀରୁ କେବେ ଭଲ ପାଇ ପାରେ ?
ନିଃସଂଶୟ ଆତ୍ମୋତ୍ସର୍ଗବିନା କାହିଁ ପ୍ରାପ୍ତି ପ୍ରୀତି ସୁଖ ?
ପ୍ରୀତି ଏତେ ଦେଲ ଯଦି, ଅକାତରେ ଦିଅ ତେବେ
ମନେ ମୋର ତୁମ ଲାଗି ଅଖଣ୍ଡ ବିଶ୍ୱାସ,
ସ୍ମୃତି ତବ ଅନୁଭବୁ ପ୍ରତିକ୍ଷଣେ ପ୍ରତି ପଲକରେ ମୋ ପ୍ରାଣର ପ୍ରତିଟି ନିଃଶ୍ୱାସ।

୩୬

ତୁମେ ମୋ ଭଲପାଅ, ସେଥିଲାଗି କରିବି ମୁଁ ତୁମରେ କି ନିଜ ଆଜ୍ଞାବହ ?
ନିଜର ପ୍ରତିଟି ଇଚ୍ଛା ଚରିତାର୍ଥ କରିବାକୁ ପ୍ରତିକ୍ଷଣେ କରୁଥିବି ଅଳି
ଶିଶୁସମ ?  ଟିକେ କ୍ଷୟ, ଏତେ କ୍ଷତି ସହିବାକୁ ଚିର ପରାଂମୁଖୀ,
ନିଃସ୍ୱାର୍ଥ ପ୍ରଣୟ ଲୋଡ଼େ ପ୍ରେମାସ୍ପଦ ଇଚ୍ଛା ସଦା ଚରିତାର୍ଥ ହେଉ।
ତୁମ ଅଯାଚିତ ଦାନେ ଅହଙ୍କାରେ ବଶବର୍ତ୍ତୀ ହୋଇ
ନିଜକୁ ମଣିବି ବଡ଼ ଆତ୍ମସମର୍ପଣ ଭୂଲି ଆତ୍ମମ୍ଭରୀତାରେ ?
ଏ ଭୁଲ୍‌ର ବିସ୍ମୃତିରେ ଗୋପୀଗଣ ନିଃସ୍ୱ ରାସେ କୃଷ୍ଣ ଅନ୍ତର୍ଦ୍ଧାନେ,
ଶ୍ରୀମତୀବି ଉପେକ୍ଷିତା, ମୁହୂର୍ତ୍ତର ଅହମିକା
- ଶ୍ୟାମ ସ୍କନ୍ଧେ ମହାର୍ଘ ମୋ ସ୍ଥିତି।
ତୁମର ଐଶ୍ୱର୍ଯ୍ୟ ଲାଭେ ମୁଁ ଯେପରି ଅନ୍ଧ ନାହିଁ ହୁଏ,
ଏତିକି ପ୍ରାର୍ଥନା ଖାଲି, ତୁମେ ରହ ଅନିର୍ବାଣ ମୋ ଆଖିର ଲୁହେ।

୩୭

ଅସମାପ୍ତ ରଖି ତୁମ ଗୀତ ପ୍ରିୟ ଅନ୍ତର୍ହିତ ହୁଅ,
ଅନ୍ତରାଳୁ ରହି ରହି ତୁମେ କିନ୍ତୁ ଗୀତ ଗାଉଥାଅ,
ଗୀତର ମୂର୍ଚ୍ଛନା ଭାସେ ଆକାଶରେ ଦିଗ ଦିଗନ୍ତରେ,
ମୁଁ ତୁମକୁ ଖୋଜିବୁଲେ ଉନ୍ମାଦିନୀ ବିରହର ସୁରେ।

ତୁମ ଅଦର୍ଶନେ ତୁମ ଗୀତ କିନ୍ତୁ ଏହିପରି ଅବ୍ୟାହତ ରହୁ,
ଗୀତର ମୂର୍ଚ୍ଛନା ଅନୁସରି, ମୋ ଧାଇଁବା ଅସମାପ୍ତ ଥାଉ,

ମୃଣ୍ମୟ ମହଲେ ଆଜି ସକଳ ପୂର୍ଣ୍ଣତା ଲଭି
ସ୍ଥିତି ମୋର ଅତି ଦୟନୀୟ,
ଚିନ୍ମୟ ଚତ୍ୱରେ ତେଣୁ ଅସମ୍ପୂର୍ଣ୍ଣ ରଖି ମଧ୍ୟ
ବଞ୍ଚିବାର ରାହା ଟିକେ ଦିଅ।

୩୮

ସକଳ ଐଶ୍ୱର୍ଯ୍ୟ ଆଉ ସଂପଦର ଆବେଷ୍ଟନୀ ମଧ୍ୟେ।
କୀର୍ତ୍ତନ, ଭଜନ ଆଦି ଉନ୍ମାଦନା ତୁମ ଲାଗି ମନେହୁଏ କେବଳ ବିଳାସ,
ଆଲୋଚନା ଚକ୍ରେ ବସି ଅଧ୍ୟୟନ ଲବ୍ଧଜ୍ଞାନେ
ତତ୍ତ୍ୱକଥା ତର୍କଛଳେ କେତେକ କହିବା
ହାତ ତାଳି ଅପେକ୍ଷାରେ, ସେ ତ ନିଜ ଅହମିକା ପରୋକ୍ଷ ପ୍ରକାଶ।
ବିଷୟ ଆନନ୍ଦଠାରୁ ଏ ଭଜନ ଆନନ୍ଦର ପାର୍ଥକ୍ୟ କେଉଁଠି ?
ଖାଲି ଯା' ପ୍ରକାରଭେଦ, ଅଥଚ ଅନ୍ତରେ ସେଇ ଉଦ୍ଧତ ଅନ୍ଧାର,
ପ୍ରଭୋ ! ମୋତେ ମୁକ୍ତକର ସେ ନିବିଡ଼ ତିମିର କବଳୁ
ତୁମକୁ ମୁଁ ସ୍ମରେ ପଛେ ମୁହୂର୍ତ୍ତକ କିନ୍ତୁ ତାହା ହେଉ
ମୋର ଅହମିକାଶୂନ୍ୟ ଶୁଦ୍ଧ ଆତ୍ମସମର୍ପଣ।
ପରାଜୟ, ପରାଭବ, ଅପମାନ, ଅତ୍ୟାଚାର, ଭର୍ତ୍ସନା,
ଭ୍ରୂକୁଟୀମଧ୍ୟେ ତୁମ ହସ ଦେଖିପାରେ ଯଦି
ସେଇ ତ ଭଜନ ମୋର, ସେଇ ମୋର ସବୁ
ପୂଜା, ସାଧନାର ସିଦ୍ଧି।

୩୯

ଅପର୍ଯ୍ୟାପ୍ତ ଆଲୋକର ମଧ୍ୟେ, ପ୍ରଭୋ, ମୋତେ ଅନ୍ଧ କରିଦିଅ
ଠିକ୍ ସେଇ ଅନ୍ଧସମ, ମୋ ସାମ୍ନାରେ ଚାଲିଛି ଯେ ପଥ ଖୋଜି ଖୋଜି,
ହୁଏତ ଭାବୁଛି ମନେ ଅକସ୍ମାତ ଦୃଷ୍ଟି ଶକ୍ତି କେବେ ଯଦି ଫେରିଆସେ ତା'ର
ସମାଧାନ ହୋଇଯିବ ତା' ଚାଲିବା ସବୁ ସମସ୍ୟାର।

କିନ୍ତୁ ମୋ ଭାବନା ଭିନ୍ନ, ପ୍ରଖର ମୋ ଦୃଷ୍ଟିଶକ୍ତି ସତ୍ତ୍ୱେ,
ମୋ ଯାତ୍ରାରେ ଏ କି ଗ୍ଲାନି, ପଥ ଠିକ୍ ଚିହ୍ନିବା ପରେ ବି

ଆଖିର ପ୍ରଦୀପ ଥାଇ ଗତି ମୋର ଯଦି ଏତେ ପ୍ରହେଳିକାମୟ
ଆଲୋକର ଅନ୍ଧକାରେ, ମୋ ଜୀବନେ କାହିଁ ତେବେ ସୂର୍ଯ୍ୟର ଉଦୟ ?

'ସାଧବାଣୀ' ଦତ୍ତ ମଥା କଣ୍ଟାସମ, କଣ୍ଟାଟିଏ ତୁମ ହାତୁ ଖୁବ୍ ପ୍ରୟୋଜନ
ଚକ୍ଷୁଷ୍ମାନ ବିଲ୍ୱମଙ୍ଗଳର, ନଚେତ୍ ସମ୍ଭବ କେବେ ତୁମର ଦର୍ଶନ ?

୪୦

ଯେତେବେଳେ ଯାହା କିଛି ଘଟେ ପ୍ରଭୋ ! ସେ ସବୁ
ତୁମରି ଇଚ୍ଛା, ତନ୍ମଧ୍ୟରେ ତୁମରି ପ୍ରକାଶ,
ପ୍ରତି ମୁହୂର୍ତ୍ତରେ ଏହି ସ୍ଥିତି ତବ ନ ବୁଝି ମୁଁ,
ଖୋଜୁଛି ତୁମକୁ ସିନା ଇତସ୍ତତଃ ହୋଇ,
ତେଣୁ ମୋର ଅନ୍ୱେଷଣ ତୁମକୁ ପାଇବା ଲାଗି ବ୍ୟର୍ଥ ହୋଇଥାଏ,
ଅଥଚ ତୁମେ ତ ସଦା ଅକାତରେ ଧରା ଦେବା ଲାଗି ରହିଛ ଉନ୍ମୁଖ ।

ନିଜକୁ କର୍ତ୍ତା ନ ଭାବି, ଦାୟିତ୍ୱ ନେବାର ବୃଥା ଅହମିକା ତେଜି
ଘଟଣାର ପ୍ରବାହରେ ଦୃଢ଼ ଆତ୍ମ ସମର୍ପଣ ମନୋବୃତ୍ତି ଧରି
ଭାସିବାରେ କି ଆନନ୍ଦ, ଅନାସକ୍ତ ଉଲ୍ଲାସରେ ପ୍ରତିକ୍ଷଣେ ତୁମରି ଦର୍ଶନ,
ଉତ୍କଣ୍ଠା, ଉଦ୍‌ବେଗ ଶୂନ୍ୟ, ପରିଣତି ପ୍ରତି ବୀତସ୍ପୃହ, ନୟନୁ ନିରବଚ୍ଛିନ୍ନ ଅଶ୍ରୁ ବରଷଣ ।
ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ମଧ୍ୟେ ପାର୍ଥକ୍ୟ କି ଅଛି,
ଅବ୍ୟାହତ ରହେ ଯଦି ତୁମର ସାକ୍ଷାତ
ତେଣୁ ପ୍ରତିକ୍ଷଣେ, ପ୍ରତି ସ୍ପନ୍ଦନରେ ତୁମରି ଦର୍ଶନ ଲୋଡ଼େ ସ୍ନିଗ୍ଧ, ଅବଦାତ ।

୪୧

ପୁସ୍ତକର ସମାରୋହ ତୁମକୁ ପାଇବା ପଥେ ଚିର ଅନ୍ତରାୟ,
ତୁମ ସଂପର୍କରେ କେବେ ମନେ ମୋର ଏତେ ଟିକେ ଜାଗିଲେ ସଂଶୟ
ନିଃସହାୟ ମୁଁ ଲୋଡ଼ିଛି ମୋ ଚିନ୍ତାର ସ୍ଥୈର୍ଯ୍ୟ ଗ୍ରନ୍ଥ ପୃଷ୍ଠାର ଉହାଡ଼େ ।
ଉଚିତ ହୁଅନ୍ତା କିନ୍ତୁ, ମିଥ୍ୟା ଅବଲମ୍ବନରେ ତୁଚ୍ଛ କରି,
ଯନ୍ତ୍ରଣାର ଛଟପଟ ସେଇ ମୁହୂର୍ତ୍ତରେ
ତୁମକୁ ସ୍ମରିବା ଆଉ କାନ୍ଦି କାନ୍ଦି ପ୍ରାର୍ଥନା କରିବା-

ଲେଉଟାଇ ଦେବା ଲାଗି ବିଶ୍ୱାସର ରସଘନ ଅନନ୍ତ ଆନନ୍ଦ-
ଶବ୍ଦର ଶାସ୍ତ୍ରରୁ କରି ଆତ୍ମରକ୍ଷା ଅଶବ୍ଦରେ ପୂର୍ଣ୍ଣ ଆତ୍ମ-ସମର୍ପଣ, ଏକମାତ୍ର ଛନ୍ଦ।

୪୨

ସୃଷ୍ଟିର ରକ୍ଷାର ଲାଗି ଯାହା କିଛି ଘଟିଯାଏ, ପସନ୍ଦ ବା
ନାପସନ୍ଦ, ଆମ ଦୃଷ୍ଟି ଚକ୍ରତଳେ, ସେ ତମର ଲୀଳା,
ବିନା ମନ୍ତବ୍ୟରେ ସେଇ ଲୀଳାରେ ଆତ୍ମସ୍ଥ ହେବା
ଅର୍ଥ ହେଲା ଆତ୍ମସମର୍ପଣ, ନିତ୍ୟ ଲୀଳା ସହଚର,
ଲୀଳା କ'ଣ ନିର୍ଦ୍ଦିଷ୍ଟ ଦେହର ବା ସମୟର, ଅସମାପ୍ତ, ଅଖଣ୍ଡ ତା' ବ୍ୟାପ୍ତି,
'ଅନ୍ୟମନସ୍କ ହେବାର ଅବସର କାହିଁ ତେଣୁ, ଯେଉଁମାନେ ବୁଝନ୍ତିନି ଏ ମହାସତ୍ୟକୁ
ସେମାନଙ୍କ ଆଧ୍ୟାତ୍ମିକ ଅନୁଷ୍ଠାନ ବିଧି ରକ୍ଷା ମାତ୍ର, ସ୍ୱତଃସ୍ଫୂର୍ତ୍ତ ସ୍ପନ୍ଦନ ଶୂନ୍ୟତା।

ବିମର୍ଷତା, ବିଷଣ୍ଣତା ନିଃସଙ୍ଗତା ତେଣୁ, ବାରମ୍ବାର ହତାଶାର ହାର,
ଲୀଳା ଆଉ ଲୀଳା ଦ୍ରଷ୍ଟା ଅଭେଦ, ଅଭିନ୍ନ ଯେଣୁ, ବ୍ୟବଧାନ, ବିରହ ବା କାହିଁ ?

୪୩

ତୁମର ମୋହର ପ୍ରଭୋ, ମିଳନରେ ଏ ଦେହଟା କି ଭୀଷଣ ବାଧା।
ଦେହତ ନିମିତ୍ତ ମାତ୍ର, ଅନ୍ତରାଳେ ଯେ ରହିଛି ଆମ ମଧ୍ୟେ ତୀବ୍ର ବ୍ୟବଧାନ
ସେ 'ଅହଂ'ର ଔଦ୍ଧତ୍ୟରୁ ଆତ୍ମରକ୍ଷା ଲାଗି ମୋର ସକଳ ପ୍ରୟାସ
ବୃଥା ଯାଏ, ତେଣୁ ତୁମେ ସେ ପାଖେ ଓ ଏ ପାଖେ
ମୋ ସ୍ଥିତି ଆହା କେଡ଼େ ଦୟନୀୟ।

ତମର ବଂଶୀର ସ୍ୱନ ପ୍ରତିକ୍ଷଣେ ପ୍ରତି ମୁହୂର୍ତ୍ତରେ
ଭାସି ଆସି ମୋତେ କରେ ଆକୁଳିତ, ଅଥଚ ମୁଁ ଧାଇଁ ଯାଇ
ତୁମ ପାଖେ ପହଞ୍ଚିବି, ଉପାୟତ ନାହିଁ।

ତେଣୁ ମୁଁ କାନ୍ଦୁଛି ଏଠି,ଏ କ୍ରନ୍ଦନ, ଏ ବିରହ ପରି..
ଶେଷେ ପରଶିବ ଯେବେ ଚୂଡ଼ାନ୍ତକୁ ଯାଇ

ତେବେ ଏ ଶରୀରଧାରୀ ଆଉ ଶରୀରର ସ୍ରଷ୍ଟା ହେବେ ଉଭୟେ ନିଶ୍ଚିହ୍ନ,
ଚମକି ଦେଖିବି କ୍ଷଣେ ଯୁଗଳର ସ୍ଥିତି କାହିଁ,
ପରିଚୟେ ପାର୍ଥକ୍ୟ ନାହିଁ, ଆମେ ବେନି ଏକାକାର ଅଖଣ୍ଡ ଅଭିନ୍ନ।

୪୪

ଆପଣାର କ୍ଷୁଦ୍ରତାକୁ ମାପି ମୁଁ ତୁମକୁ ସୀମାବଦ୍ଧ କରେ,
ତୁମର ଅମାପ ଶକ୍ତି ସଂପର୍କରେ ଅବହିତ ଥିବା ସତ୍ତ୍ୱେ
ମୁ କିମ୍ବା ସମୀମ ପାଖେ ଆପଣାକୁ ବିସର୍ଜନ ଦିଏ ?

ପରିଣତି ଯାର, ମୋତେ ଆପଣାର ପରିଚୟ
ଲଭିବାରେ ସାହାଯ୍ୟ ନ କରି
ସଂକୀର୍ଣ୍ଣ ବେଷ୍ଟନୀ ମଧ୍ୟେ ମୋତେ ସିନା କରେ ନିଃସହାୟ।

ନିରର୍ଥକ ଉଦ୍‌ବେଗ ତେଣୁ, ଆତଙ୍କ ଓ କାତରତା ସମୟର ଅପଚୟ ସିନା,
ଅପଚୟ ନିଭୃତ ଶକ୍ତିର ଆଉ ଆତ୍ମ ବିଶ୍ୱାସର, ତେଣୁ ପରମୁଖାପେକ୍ଷୀ,
ସମ୍ପୂର୍ଣ୍ଣ ମୌନତା ନେଇ ନିଜ ମଧ୍ୟେ ତୁମ ସଙ୍ଗେ ସଙ୍ଗେ ଅଖଣ୍ଡ ଆଳାପେ
ଯେ ସାଲିସ୍ ସମ୍ଭବ ହୁଅନ୍ତା, ତାହା ରହେ ଚିର ଉପେକ୍ଷିତ।
ଆମେ ତ ଅଭିନ୍ନ ଏହି ଉପଲବ୍ଧି ବିନା ଉଭୟଙ୍କ
ମୂଲ୍ୟ ନିର୍ଦ୍ଧାରଣ ତ୍ରୁଟିପୂର୍ଣ୍ଣ ହୁଏ,
ତୁମକୁ ମୁଁ କ୍ଷୁଦ୍ର କରି ଚିରଦିନ ତେଣୁ ସିନା କ୍ଷୁଦ୍ର ହୋଇ ରହେ।

୪୫

ମୁଁ ଯେବେ ଅନେକ କ୍ଳାନ୍ତ, ପରିଶ୍ରାନ୍ତ, ତୁମେ ତେବେ
ଆସି ପାଶେ ହୋଇଅଛ ଠିଆ,
କିଏ ଆଉ ଏତେ ଆପଣାର ? ବ୍ୟଥା ପୋଛି ଦେବା ଲାଗି କହିଛ ବୁଝାଇ,
"ତୁ ତ ମୋର ପ୍ରତିନିଧି, ତୋ ଇଚ୍ଛାର ଅଭିବ୍ୟକ୍ତି ଇଚ୍ଛାରେ ମୋହରି,
ଯା' କିଛି ଘଟୁଛି ଅବା ନ ଘଟୁଛି ସବୁ ପଛେ
ମୋ କଠୋର ନିର୍ଦ୍ଦେଶ ପ୍ରହରୀ।

ତୋ ଅଯଥା କର୍ତ୍ତା ମନୋଭାବ, ପରିଣତି ସମ୍ପର୍କରେ ବୃଥା ଚିନ୍ତା ତୋର
ମୋହଗ୍ରସ୍ତ ରଖେ ତୋତେ, ନିରର୍ଥକ ଯନ୍ତ୍ରଣାରେ ତେଣୁ ତୁ କାତର।
ଅସଂପୃକ୍ତ ତୁ ତ ଯେଣୁ, ବାହାରେ ଜୁଆର, ଭଙ୍ଗା,
ସେ ବିକାରେ ତୋ ସମ୍ବନ୍ଧ କାହିଁ ?

ମୋ ସହିତ ତୋ ସମ୍ପର୍କ ତିନି ଗାର ଡେଇଁ, ତେଣୁ
ଦୁଃଖ ନା କାହିଁ, ଦହନ ବି ନାହିଁ।

ତୋ ଆଖିର କ୍ଳାନ୍ତି ପୋଛି ଦେଇ, ଅବଲୋକ
ମୁକୁର ମୁଁ, ପ୍ରତିବିମ୍ବ ତୋର,
ସେ କେତେ ଉଜ୍ଜ୍ୱଳ ଆଉ ଉର୍ଜସ୍ୱଳ, ସ୍ୱରୂପ ଯା ସ୍ନିଗ୍ଧ ଅମୃତର।

୪୬

ତୁମେ ତ ଡାକୁଛ ନିତି ପ୍ରତି କ୍ଷଣେ ପ୍ରତି ମୁହୂର୍ତ୍ତରେ,
କି ଲାଗି ସେ ଆହ୍ୱାନ ମୁଁ ଶୁଣି ମଧ୍ୟ ଶୁଣିପାରୁ ନାହିଁ ?

ତୁମ ଆନ୍ତରିକତାର କାଣିଚାଏ ହୃଦୟେ ମୋ ଥାଆନ୍ତା ତ ଯଦି
ଆମ ବିଚ୍ଛେଦର କ'ଣ କେବେ ହେଲେ ସ୍ଥାୟିତ୍ୱ ରହନ୍ତା ?
ଅନେକ ପାଉଛି କିଛି, ମାତ୍ର ସେଇ ପାଇବାର ସ୍ୱାଦ
କେତେକ୍ଷଣ ସ୍ଥାୟୀ ହୁଏ ? ପୁନର୍ବାର ନୂତନ ସ୍ୱାଦର।
ଆକାଂକ୍ଷା ପ୍ରବଳତର, ସେ ଆକାଂକ୍ଷାମାନ ମଧ୍ୟ ଚରିତାର୍ଥ ହୁଏ,
ତଥାପି ଶୂନ୍ୟତା ହାୟ, କେତେ ପ୍ରାପ୍ତି ପରେ ସେଇ ଶୂନ୍ୟତା ବା ଯିବ ?
ତୁମ ଉପସ୍ଥିତି ବିନା ଏ ସବୁ ଅଜସ୍ର ପ୍ରାପ୍ତି ହୁଏ ମୂଲ୍ୟହୀନ,
ତୁମର ଐଶ୍ୱର୍ଯ୍ୟେ ତେଣୁ ପ୍ରୟୋଜନ ନାହିଁ ମୋର,
ସେ ତ ମୋତେ ଅଂଧ କରି ରଖେ,
ମୋ ସମୀପେ ତୁମ ସ୍ଥିତି ଅଦୃଶ୍ୟ ତ ରହେ ତେଣୁ ତୁମ କଣ୍ଠସ୍ୱର
ଅଜସ୍ର ଧ୍ୱନିର ସ୍ୱର ଶୁଣିବାକୁ କାହିଁ ଅବସର ?
ସବୁ ଧ୍ୱନି, ସବୁ ପ୍ରାପ୍ତି, ସବୁ ସଙ୍ଗ ପ୍ରତ୍ୟାହାର କରିନେଇ ପ୍ରିୟ,
ତୁମର ଅମୃତ ସ୍ପର୍ଶ ଏକାନ୍ତରେ ଅନୁଭବ କରିବାକୁ ଦିଅ।

୪୭

ଅନ୍ଧାରର ଏତେ ପୁଣି ରୂପ ଅଛି କ୍ରମେ ସେଇ ସତ୍ୟକୁ ଜାଣିଲି
ଯେଉଁଦିନ ହଜିଗଲା ଆକସ୍ମାତ ମୋ ଆଖିର ଦ୍ୟୁତି,
ସେତେବେଳେ ମନେ ହେଲା ବିଶ୍ୱେ ମୋର ଅବଶିଷ୍ଟ କି ରହିଲା ଆଉ ?
ମୁଁ କି ତେବେ ବୁଝିଥିଲି ତିମିରର ଆଶୀର୍ବାଦ କେତେ ।

ଚକ୍ଷୁଷ୍ମାନ ଥିବାବେଳେ ଦେଖୁଥିଲି ଯେତେ ମୁଁ ଆଲୋକ
ଅନ୍ତରାଳେ ତା'ର ପୁଣି ଏତେ ଘନ ଅନ୍ଧକାର ସଂଗୋପନେ ଥିଲା,
ଏବେ ମୁଁ ହରାଇ ଯେବେ ଆଖି ଜ୍ୟୋତି ରାତ୍ରିକୁ ବରିଲି
ସେ ରହସ୍ୟ ଉନ୍ମୋଚନ ହେଲା କ୍ରମେ ଚେତନା ମୋ ପୁଲକିତ କରି ।

ପ୍ରଥମ ଦିନର ସେଇ ଜ୍ୟୋତି ମୋର ଲିଭିଯିବା
ଦୁଃଖ କ'ଣ ଆଜି ଆଉ ଅଛି ?
ସେ ତ ଏବେ ଅମିୟରେ ରୂପାନ୍ତର, ଯେ ଆଖି ହଠାତ୍ ମୋର ଖୋଲିଗଲା
ଉନ୍ମୁକ୍ତ ତା' ହୋଇଥା'ନ୍ତା କେବେ, ନୟନ ମୋ ଦୀପ୍ତ ଥିଲେ,
ସେଇ ମହାସତ୍ୟକୁ ବୁଝିଛି-ବିଲ୍ୱମଙ୍ଗଳ କି ଲାଗି,
ହସି ହସି ବିସର୍ଜିଲା ତା' ଦୃଷ୍ଟିର ଦ୍ୟୁତି ।

ଅତୀନ୍ଦ୍ରିୟ ଦର୍ଶନ ଲାଗି ଧ୍ୟାନ ଖୁବ୍, ପ୍ରୟୋଜନ,
ମୁଦ୍ରିତ ନୟନ ତଳେ ଜ୍ୟୋତିର ବିସ୍ତାର,
ମାତ୍ର ସେ ତ ସାମୟିକ, ଏ ଯେ ମୋର ନିତ୍ୟଧାନ,
ବଗଳିତ କରୁଣାର ଅଖଣ୍ଡ ପ୍ରକାଶ,
ପ୍ରଲୋଭନେ ଖୋଲି ତ ପାରିବି ନାହିଁ ଆଖି ଆଉ
ଅବ୍ୟାହତ ଅନନ୍ତ ତପସ୍ୟା,
ଅନ୍ଧର ସାମ୍ରାଜ୍ୟେ ନିତ୍ୟ ଆଲୋକର ସ୍ନିଗ୍ଧରାସ ଚରିତାର୍ଥ ପରମ ପିପାସା
ଅସ୍ଥିରତା ଖଣ୍ଡିଲ ମୋ, ଚାଞ୍ଚଲ୍ୟକୁ ଚମତ୍କାର ଦେଲ ନିର୍ବାସନ,
ଆତ୍ମମ୍ଭରିତାରେ ମୋର ହତ୍ୟାକଲ, ହରାଇବା ଗୀତେ ଦେଲ ପାଇବାର ସୁର,
ଏ ପ୍ରାପ୍ତି କାହାକୁ ମିଳେ ? ତେଣୁ ନୀରବରେ ଏଠି ଏକାକୀ ମୁଁ ବସି
ତୁମର ଦର୍ଶନ ଲାଗି ପ୍ରତିକ୍ଷଣେ ପ୍ରୟାସ କରୁଛି ।

ତୁମେ କେବେ ହଜିଯାଅ, ଦେଖାଦିଅ କେବେ ପୁଣି ଆସି
ଏ ପ୍ରବେଶ ପ୍ରସ୍ଥାନର ପ୍ରହସନେ ନିଷ୍ଚିହ୍ନ ତ କରିବାକୁ ହେବ,
ଆସିବ ନିକଟେ ଯେବେ, ଫେରିବାର ପ୍ରଶ୍ନ ଆଉ ନାହିଁ,
ଯେ ଆସିବା ଲେଉଟିବା ଦୁଃଖ ଘେନି ଆସେ, ସେ ଆସିବା ମୂଲ୍ୟ ସତେ କାହିଁ ?

ମୋ ଆଖି ସମାଧି ତଳେ, ନିଃସଙ୍ଗ ମୋ ହୃଦୟ କନ୍ଦରେ,
ତୁମେ ନାଚ ପ୍ରିୟତମ ନୂପୁର ନିକ୍ୱଣେ ସ୍ନିଗ୍ଧ, ମଧୁର ଛନ୍ଦରେ
ଗୀତ ମୁହିଁ ଗାଉଥିବି ଉଚ୍ଛ୍ୱାସେ ତୁମେ ତ ତାହା ଶୁଣୁଥିବ ବସି,
ଯେଉଁଠି ପାରିବି ନାହିଁ ଗାଇ ଆଉ, ତୁମେ ତେବେ ଗାଇ ଦେବ ହସି, ।

ଦୃଷ୍ଟିର ମୋ ଅନ୍ତରାଳେ ଅବ୍ୟକ୍ତ ଏ ଲୀଳା ପ୍ରିୟ ରହୁ ଅବ୍ୟାହତ,
ଦ୍ୱୈତର ମାଧ୍ୟମେ ନିତ୍ୟ ଉଚ୍ଚାରିତ ଅଦ୍ୱୈତର ଅମର ସଙ୍ଗୀତ ।

୪୮

ତୁମ କଥା କହିବାରେ କଥକ ଯେ ଅନୁଭବେ ଆନନ୍ଦ ବକ୍ତାର,
ତୁମ ଲୀଳା ଶ୍ରବଣରେ ଶ୍ରୋତାର ଯେ ଶିହରଣ, ବ୍ୟକ୍ତ ହୁଏ ଅଶ୍ରୁଜଳେ ତା'ର,
ପୃଥକ ସ୍ଥିତିରେ ଥାଇ, କେହି କା'ର ଆନନ୍ଦକୁ ଉପଲବ୍ଧି ପାରନ୍ତିନି କରି,
ମଧ୍ୟସ୍ଥଳେ ତୁମେ କିନ୍ତୁ, ତନ୍ମୟ ଓ ଆତ୍ମହରା, ବେନି ବୁକୁ ସ୍ପନ୍ଦନକୁ ନିଜ ହୃଦେ ଭରି ।

୪୯

ସ୍ଥାବର, ଜଙ୍ଗମ ସାଥେ ଘନିଷ୍ଠ ସଂପର୍କ ରଖି,
ମୁଁ କ୍ରମଶଃ ତୁମଠାରୁ ଯାଉଛି ଦୂରେଇ,
ସେ ସଂବନ୍ଧେ ଅନାସକ୍ତ ହୋଇ, ସେମାନଙ୍କ ମଧ୍ୟେ ଯଦି ଦେଖନ୍ତି ତୁମକୁ,
ଅଜସ୍ର ତମର ଲୀଳା, ପ୍ରତିଭାତ ହୁଅନ୍ତା ମୋ ମନତଳେ ପ୍ରତି ମୁହୂର୍ତ୍ତରେ,
ଦୃଷ୍ଟିର ଦାରିଦ୍ର୍ୟେ କରି ଉଦ୍‌ଭାସିତ ଦୀପ୍ତ ଆଲୋକରେ ।

ସୀମାବଦ୍ଧ କରି ତୁମ ଅବତାରେ, ଲୀଳା ତବ ସୀମିତ ଯେ କରେ,
ସେ କାହୁଁ ପାରିବ କରି ଅନୁଭବ ସ୍ଫୂର୍ତ୍ତି ତବ,
ପ୍ରତିକ୍ଷଣେ, ପ୍ରତିସ୍ଥଳେ, ସୀମାହୀନ ଲୀଳା ଅଭ୍ୟନ୍ତରେ ।

୫୦

ତୁମ ଗାଥା ଗାଉ ଗାଉ, ଯେତେବେଳେ ମନେ ହେବ
ସ୍ମରୁନି ମୁଁ ତୁମ ଲୀଳା ଆଉ,
ତୁମ ଗୁଣଗାନ ଛଳେ, ଅଧରୁ ସ୍ଫୁରୁଛି ଖାଲି ନିଜ ଜ୍ଞାନ, ଗାରିମାର କଥା,
ଉଦ୍ଦୀପନା ଶୂନ୍ୟ ପ୍ରାଣ, ସରଳ ବିଶ୍ୱାସୀ ମୁଗ୍ଧ ଶ୍ରୋତାଗଣ କିନ୍ତୁ,
ଭାବେ, ଆବେଗେ ଉଚ୍ଛର୍ଣ୍ଣ,
ନିଜକୁ ସଂବରି ନେବା ସଂଗତ ନହେବ ତେବେ,
ଛଳନା ନ କରି ଆଉ ପ୍ରେମର ସାମ୍ରାଜ୍ୟେ।

ଅକୈତବ ପ୍ରେମ ଭୁଲି ଗୋପୀମାନେ ଅନ୍ଧ ହେଲେ ଯେବେ
'ଶ୍ୟାମ ଧନ୍ୟ ସେମାନଙ୍କ ସାନ୍ନିଧ୍ୟକୁ ପାଇ'
ଲୀଳାମୟ ଅନ୍ତର୍ଦ୍ଧାନ ଅକସ୍ମାତ, ଶ୍ରେଷ୍ଠା ଗୋପୀନୀଙ୍କୁ ନେଇ ରାସ ପରିସରୁ,
'ଶ୍ରୀମତୀ' ବି ପ୍ରତ୍ୟାଖ୍ୟାତ, କୃଷ୍ଣରେ ବିସ୍ମରି ନିଜ ଶ୍ରେଷ୍ଠତ୍ୱ ସ୍ମରଣେ,
ଆତ୍ମସମର୍ପଣ ବିନା ସେ ଅଖଣ୍ଡ ଆନନ୍ଦର ସାମୀପ୍ୟ କି ମିଳେ ?

ପ୍ରତିକ୍ଷେତ୍ର ବୃନ୍ଦାବନ, ଆମେ ସବୁ ନିତ୍ୟ ଗୋପୀ, ପ୍ରତି କ୍ଷଣେ ରାସ ମହୋତ୍ସବ,
ପଲକର ଚାଞ୍ଚଲ୍ୟରେ, ସକଳ ସଂଶୟ ହଜେ,
ମଧୁର ସେ ମୂର୍ତ୍ତି ହୃଦେ କିପରି ସମ୍ଭବ ?

୫୧

ଅଜସ୍ର ପ୍ରଚେଷ୍ଟା ପଛେ, ଏକମାତ୍ର ଉଦ୍ଦେଶ୍ୟ ମୋ ଥାଏ,
ପ୍ରତି ମୁହୂର୍ତ୍ତରେ ଯେହ୍ନେ ହୃଦତଳେ ତୁମ ଦେଖାପାଏ,
ପଲକର ଲାଗି ମଧ୍ୟ, ହଗାଇ ମୁଁ ନ ବସେ ତମକୁ,
ଆନନ୍ଦ ମୋ ଅନିର୍ବାଣ ସିନା ପ୍ରତିକ୍ଷଣେ ତୁମରି ପରଶେ।

ମୋ ମନ ଚାଞ୍ଚଲ୍ୟଠାରୁ ତୁମେ ପ୍ରଭୋ, ଆହୁରି ଚଞ୍ଚଳ,
ଗରୁଡ଼ର ଦୃଷ୍ଟିତଳେ ତୁମେ କିନ୍ତୁ ମେରୁ ସମ ଅଚଳ, ଅଟଳ।

୫୨

ତୁମର ପ୍ରତିମା ଅବା ପ୍ରତିଷ୍ଠା ମୁଁ କରିବିନି କେବେ ପ୍ରଭୋ !, ତମ ପୂଜାପାଇଁ
ସେଥିଲାଗି ଯତ୍ନ ଆଉ ସତର୍କତା ମୋର, ବୃଦ୍ଧି କ୍ରମେ କରିବ ମୋ ବିଷୟ ବୁଦ୍ଧିକୁ,
ଯଦିଓ ଉଦ୍ଦେଶ୍ୟ ତୁମେ, ତୁମ ପୂଜା, ଅର୍ଚ୍ଚନାରେ ବ୍ୟାକୁଳତା, ଯେତେ ମୋ ବ୍ୟସ୍ତତା,
ସେ ସବୁକି ସତେ ତୁମପାଇଁ ? ପରୋକ୍ଷେ ପ୍ରପଞ୍ଚ ପ୍ରତି ପ୍ରଚ୍ଛନ୍ନ ଆସକ୍ତି ।

ତୁମ ଲାଗି ଧୂପ, ଦୀପ, ନୈବେଦ୍ୟର ନାନା ଆୟୋଜନ,
ଷୋଡ଼ଶୋପଚାରେ ତୁମ ପୂଜା ଲାଗି ଗଳଦ୍‌ଘର୍ମ ହେବା,
ଏତେ ଟିକେ ତ୍ରୁଟି ତହିଁ ଦେଖାଦେଲେ, କି ବିରକ୍ତି, କି ବ୍ୟସ୍ତତା ପୁଣି,
ଅଶାନ୍ତିରେ ଜଳି ନିଜେ, ଅନ୍ୟମାନଙ୍କୁ ବି ସେଇ ଦୁଃଖରେ ଦହିବା ।

ସୀମାହୀନ ତୁମେ ପ୍ରଭୋ, ତୁମକୁ ମୁଁ ସୀମାବଦ୍ଧ କରିବି କାହିଁକି
ମୃଣ୍ମୟର ବେଷ୍ଟନୀରେ, ପରିଣତି ନିଜ କ୍ଷୁଦ୍ର ପରିସରେ ଆବଦ୍ଧ ରହିବା,
ସ୍ରୋତ ଯେ ପ୍ରବହମାନ, କଲୁଷର ତନ୍ମଧ୍ୟରେ ରହେ ନାହିଁ ସ୍ଥିତି,
ପଲକରେ ପୂତି ଗନ୍ଧ, ତୁମକୁ ମୁଁ କ୍ଷୁଦ୍ର କରି, କି ଲାଗି ବା ନ୍ୟୂନ ହେବି ନିଜେ ।

ତୁମ ଲାଗି ଐଶ୍ୱର୍ଯ୍ୟର ଘଟା ଯେତେ, ପରୋକ୍ଷେ ତା' ଆପଣାର ସ୍ପର୍ଦ୍ଧାର ପ୍ରକାଶ,
ଭଙ୍ଗୁର ଯା, ତା' ସହିତ ଚିନ୍ମୟକୁ ସଂଯୁକ୍ତ କରିବା ଅର୍ଥ
ବିପର୍ଯ୍ୟୟ ଅବଶ୍ୟମ୍ଭାବୀ, ସ୍ଥିତି ତବ ଦୋହଲିଲେ ଦୋହଲିବି ନିଜେ,
ଭୂକଂପେ ଧରଣୀ ଥରେ, ସୀମାହୀନ ଆକାଶ ପ୍ରଶାନ୍ତ ।
ତୁମେ ରୁହ ଶୂନ୍ୟ ହୋଇ ରୂପହୀନ ଅରୂପ ଆଲୋକେ,
ଧ୍ୟାନେ ନିତ୍ୟ ବର୍ତ୍ତମାନ, ହଜିବାର ଦୁଃଖ କାହିଁ ?
ମିଳନ ଯେ ପ୍ରତିଟି ପଲକେ ।

୫୩

ଏପରି କେତେକ ଅଛି ସୁର, ରୂପ, ରସ ଗନ୍ଧ ସାନ୍ନିଧ୍ୟେ ଯାହାର,
ଅକସ୍ମାତ ମୁଁ ତୁମକୁ ମନ ତଳେ କରେ ଆବିଷ୍କାର,
ବର୍ତ୍ତମାନ ସ୍ଥିତି ମୋର ତେବେ,କେତେ ବେଶୀ ମିଥ୍ୟା ମନେହୁଏ,
ତୁମ ବ୍ୟବଧାନ ସ୍ମରି ଅନ୍ଧ ହୁଏ ବିରହର ଲୁହେ ।

ବିଶେଷ ମାଧ୍ୟମେ ପ୍ରଭୋ, ମଧ୍ୟେ ମଧ୍ୟେ ଏଇ ଯେଉଁ ତମରି ପ୍ରକାଶ,
ସ୍ମରଣ କରାଇ ଦିଏ, ଚିନ୍ମୟ ମୋ ସ୍ୱରୂପରେ, ପ୍ରୀତିର ନିର୍ଯ୍ୟାସ।

୫୪

ସବୁବେଳେ କହେ ପ୍ରଭୋ ! ଇଚ୍ଛା ତବ ଚରିତାର୍ଥ ହେଉ,
ମାତ୍ର ସେ ଯେ କେତେ ବଡ଼ ମିଥ୍ୟା, ଛଳନା ଓ ପ୍ରତାରଣାଭରା
ତୁମଠାରୁ କିଏ ଆଉ ବୁଝିବ ଅଧିକ ? ପରିଣାମେ ଜୀବନରେ
ଯଦି କେବେ ବିଫଳତା ଆସେ,
ଭୀଷଣ ମୁଁ କ୍ଷୁବ୍‌ଧ ହୁଏ, ସଂଶୟ ଉପୁଜେ କ୍ଷଣେ,
ତୁମ ପରେ ମୋ ମନର ଗଭୀର ବିଶ୍ୱାସେ।

ଏପରି ଦୁର୍ବଳ ଏକ ମନ ନେଇ ତୁମକୁ କି ପ୍ରେମ କରି ହୁଏ ?
ଆତ୍ମସମର୍ପଣ ତୁମ ପଦତଳେ, ଏତେ କ'ଣ ସହଜ ବ୍ୟାପାର ?
ଦୃଷ୍ଟିରେ ତୁମର କେବେ ଫୁଟି ପାରେ ପ୍ରୀତିର ସ୍ୱୀକାର ?

ନିଜେ ନେଇ ନିଜର ଦାୟିତ୍ୱ ତେଣୁ ଆପଣାକୁ ଅସହାୟ ମଣେ,
ନୀରବରେ ଠିଆ ହୋଇ ଅବିଚଳ, ନିର୍ଦ୍ୱନ୍ଦ୍ୱ ମନରେ
ପ୍ରତ୍ୟେକ କାର୍ଯ୍ୟକୁ ତବ ନିର୍ଭୁଲ ବୋଲି ମୁଁ ଯଦି କରନ୍ତି ଗ୍ରହଣ,
ତୁମ ଲୀଳା ମଧ୍ୟେ କେତେ ସହଜରେ କରି ମୁଁ ପାରନ୍ତି ପ୍ରଭୁ ଆତ୍ମନିବେଦନ।

ଇଚ୍ଛା ମୋର ଅହଙ୍କାର, ତୁମ ଇଚ୍ଛା ଏକ ମାତ୍ର ସତ୍ୟ,
ଏ ପରମ ଉପଲବ୍ଧି ପରେ ମୋର, ଆଉ ମଧ୍ୟେ ରହିପାରେ କେବେ ବି ଦ୍ୱୈତ୍ୱ ?

୫୫

ମୋ ଚିନ୍ତାରେ ଏତେ ଟିକେ କଳୁଷ ଦେଖାଦେଲେ ପ୍ରଭୋ,
ମୁହୂର୍ତ୍ତକେ ତୁମେ ହୁଅ ଅନ୍ତର୍ହିତ, ସେତେବେଳେ କି ଭୀଷଣ ଅନ୍ତର୍ଦାହ ମୋର,
ବିରହର ଯନ୍ତ୍ରଣାରେ ଜର୍ଜରିତ, ମନେ ମୋର ତୁମ ପରେ
ଭୟଙ୍କର ଅଭିମାନ ଆସେ,
ଫିଙ୍ଗିଦେଇ ମୋତେ ତୁମେ କିପରି ପଳାଇ ଯାଅ,
ବିଚାର ନ କରି ମୋର ବିଚ୍ୟୁତିକୁ ସହାନୁଭୂତିରେ।

ଏତେ ବଡ଼ ପ୍ରଭୁ ତୁମେ, ମୋ ସାଥିରେ ପ୍ରତିଯୋଗିତା କି
ତବ କେବେ ଶୋଭାପାଏ,
ମୋର ଛୋଟ ଛୋଟ ତ୍ରୁଟି ନେଇ ମୋ ଉପରେ ରାଗିଯିବା,
ରୁଷି ଦୂରେ ଚାଲିଯିବା, ତୁମ ପକ୍ଷେ ସୁନ୍ଦର କି କେବେ ?

ମୁଁ ଜାଣି ଅବୁଝା, ଯଦି ତୁମେ ପ୍ରଭୋ ଅବୁଝା ବି ହେବ,
ତେବେ ଆମ ମିଳନର ସଂପର୍କରେ କିଏ ଆଉ ସମାଧାନ ହେବ ?
ସାମୟିକ ଭ୍ରମକୁ ମୋ' ଯଦି ତୁମେ ଦେଖନ୍ତ ତଳେଇ,
କ୍ଷୁବ୍ଧ କେବେ ହୁଅନ୍ତନି ଏତେ, ପ୍ରବୃତ୍ତିମାନଙ୍କ ସହ
କି ପ୍ରଚଣ୍ଡ ଦ୍ୱନ୍ଦ୍ୱ ମଧ୍ୟେ ମୁଁ ତୁମକୁ ଆପଣାର କରିବାକୁ ଚାହେଁ,
ମୋର ବ୍ୟାକୁଳତା ଏତେ, ବ୍ୟଗ୍ରତା ମୋ ତୁମ ଲାଗି,
ସେସବୁର ମୂଲ୍ୟ କ'ଣ କିଛି ହେଲେ ନାହିଁ ?

ତୁମର ସାନ୍ନିଧ୍ୟ ମୋତେ କି ଲାଗି ବଂଚିତ କର,
ଅଣୁ ମାତ୍ର ମୋର ଭୁଲପାଇଁ।
କ୍ଷୋଭ ପରିବର୍ତ୍ତେ, ତୁମ କ୍ଷମା ଆଶ୍ୱସନା ଭରା, ମୋର ପ୍ରୟୋଜନ,
ନଚେତ୍ ଆମରି ମଧ୍ୟେ ସମ୍ଭବ କେବେ କି ପ୍ରଭୋ, ଅଖଣ୍ଡ ମିଳନ।

୫୬

ତମରି କୃପାରେ ପ୍ରଭୋ ତୁମ ସଂପର୍କରେ କିଛି ଜାଣିବା ଉତ୍ତାରେ,
ଅନିର୍ବଚନୀୟ ସେହି ଭୂମାନନ୍ଦ ନିଜେ ମଧ୍ୟେ ସୀମାବଦ୍ଧ ରଖି ମୁଁ ନପାରି,
ବିତରି ତା' ହେବା ଲାଗି, କୀର୍ତ୍ତନେ ତୁମର ଯେବେ ଉନ୍ମତ୍ତ ମୁଁ ହୁଏ,
ମୋ ଚରଣ ତଳେ ତେବେ ପୁଞ୍ଜ ପୁଞ୍ଜ ଅଜସ୍ର ପ୍ରଣତି।
ମୋ ଲାଗି ତା' କଠୋର ପରୀକ୍ଷା, ସେ ପ୍ରଣାମ
ପ୍ରାପ୍ୟ ନୁହେଁ ମୋର, ଉଦ୍ଦିଷ୍ଟ ତମରେ,
ମାଧ୍ୟମ ମୁଁ, ମୁଁ ଯେ ଗୁରୁ ନୁହେଁ, ଗୁରୁ ତୁମେ ଅନ୍ତରେ ମୋହର,
ସେଥିଲାଗି ଶାସ୍ତ୍ର ବାକ୍ୟ, ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁ ମହେଶ୍ୱର।

ଅନ୍ୟମାନଙ୍କର ସାଥେ, ମୁଁ ବି ଢାଳି ନିଜ ପାଦେ ଆପଣାର ନତି,
ଅଦ୍ୱୈତ ଆନନ୍ଦେ ପ୍ରଭୁ, ଆନୁଗତ୍ୟ ରଖିବି ମୁଁ ସଦା ତୁମ ପ୍ରତି।

୫୭

ତୁମରି ଚିନ୍ତାରୁ କ୍ଷଣେ ବିଚ୍ୟୁତ ମୁଁ ହେଲେ,
ଯନ୍ତ୍ରଣା କି ମର୍ମାନ୍ତିକ ଅନୁଭବୁଁ ଜାଣେ,
ତୁମେ ନାହଁ, ମୁଁ ଏକାକୀ, ଏପରି ମୁହୂର୍ତ୍ତଟିଏ
ମୋ ଜୀବନେ କଦାପି ନ ଆସୁ,
ସେଥିଲାଗି ପ୍ରଯତ୍ନ ମୋ କେତେ, ତଥାପି ତା' ସମ୍ଭବ କି ହୁଏ ?

କେଉଁ ଏକ ଅସତର୍କ ମୁହୂର୍ତ୍ତରେ ମୁଁ ତୁମକୁ ହଜାଇ ଯେ ବସେ,
ତୁମ ବ୍ୟବଧାନେ, ଆହା ସ୍ଥିତି ମୋର, କେତେ ବେଶୀ ଦୟନୀୟ ସତେ ।

ଦୈନ୍ୟମୋର, ଗ୍ଲାନି ମୋର, ବାରମ୍ବାର ବୁଝିବା ସତ୍ତ୍ୱେ ବି,
ହରାଏ ମୁଁ ମୁହୁର୍ମୁହୁଃ ତୁମର ସାନ୍ନିଧ୍ୟ, ଯେଉଁ ଅକ୍ଷମତା ଯୋଗୁଁ
ମୋର ଏଇ ବିପର୍ଯ୍ୟୟ, ସେଇସବୁ ଦୁର୍ବଳତାମାନ
ତୁମକୁ ସମର୍ପି ଦେଇ ପାରିଲେ ମୁଁ, ତୁମ ଠାରୁ କେବେ କ'ଣ ହୁଅନ୍ତି ବିଚ୍ଛିନ୍ନ ?

ତୁମର ଧ୍ୟାନରେ ତେବେ ଅହଂବୋଧ ଉନ୍ମେଷର ପ୍ରଶ୍ନ ଆଉ କାହିଁ ?
ଦୁହିଁଙ୍କ ସ୍ଥିତିର ମଧ୍ୟେ, ମୁଁ ଦେଖିବି ବ୍ୟାପ୍ତ ତୁମେ ଚରାଚରେ, ଅସ୍ତିତ୍ୱ ମୋ ନାହିଁ ।

୫୮

ତୁମେ ତ ନିର୍ଭୁଲ ଏଇ ବିଶ୍ୱାସେ ମୁଁ ଦୃଢ଼ ରହି ପାରୁ ନାହିଁ ବୋଲି
ବ୍ୟସ୍ତ ଓ ବିବ୍ରତ ସଦା, ତେଣୁ ମୋର ମନ୍ତବ୍ୟ ପ୍ରକାଶ
ପ୍ରତି ମୁହୂର୍ତ୍ତରେ ତୁମ କର୍ମପରେ ପାଗଳର ପ୍ରଳାପ ହିଁ ହୁଏ,
ନିଜ ଭାବନାକୁ ତୁମ ସ୍ରୋତ ସାଥେ ସାମିଲ୍ ପାରିଲେ କରି,
କେତେ ବେଶୀ ନିଶ୍ଚିନ୍ତ ହୁଅନ୍ତି ।

ସମ୍ଭବ ତା' ହେଲେ ମୋର ମାନସିକ ଦୋଳନର ସ୍ଥିତି ଆଉ କାହିଁ ?
ମାନ, ଅପମାନ, ନିନ୍ଦା ପ୍ରଶଂସାର ଅର୍ଥ ତେବେ ମୂଲ୍ୟହୀନ କେତେ,
ଦୃଶ୍ୟମାନେ ମନେ ହେବେ ତୁମ ଲୀଳା, ଶବ୍ଦମାନେ ତୁମର ହିଁ ଧ୍ୱନି,
ସ୍ୱାତନ୍ତ୍ର୍ୟ ବିସ୍ମୃତ ହୋଇ ଦେଖୁଥିବି ତୁମରି ବଂଧନୀ ।

ସିଦ୍ଧାନ୍ତ ତୁମର କରି ଆପଣାର, ପଥପରେ ନିର୍ଦ୍ୱନ୍ଦ୍ୱରେ ଚାଲିବାର ସୁଖ
ଅବ୍ୟୟ ଓ ସମାପ୍ତ, ନିରର୍ଥକ ଉଦ୍‌ବେଗ ଓ କୌତୂହଳଁୁ ସଂପୂର୍ଣ୍ଣ ବିମୁଖ।

୫୯

ତୁମ କଥା କହୁ କହୁ, ମୁଁ ନିଜକୁ ଯେବେ ଖୁବ୍ କ୍ଳାନ୍ତ ମନେ କରେ,
ତେବେ ବୁଝେ ତୁମ ଗାଥା ଠିକ୍ ଗାଉ ନାହିଁ,
ଗୀତ ତବ ଗାଇବାର ଛଳେ ଦେଖୁଛି ମୁଁ ନିଜକୁ କେବଳ
ପ୍ରତିଷ୍ଠା ପ୍ରୟାସୀ, ନଚେତ୍ ତୁମ କଥା କହିବାରେ
ଅବସାଦ, କ୍ଳାନ୍ତି କ'ଣ କେବେ ହେଲେ ଆସେ।

ତେଣୁ ତ ଭାବୁଛି ଏବେ ନୀରବେ ମୁଁ ରହିବି ଉତ୍କର୍ଣ୍ଣ
ଶୁଣିବାକୁ ତୁମ କଥା ଅନ୍ୟ ମୁଖୁ, ଯେ ମୁହୂର୍ତ୍ତେ ଆସିବ ଯେପରି,
ପ୍ରତିଟି ଶବ୍ଦରେ ତେବେ ଅନୁଭବି ଧ୍ୱନିକୁ ତୁମର,
କ୍ରମଶଃ ମୁଁ ପାସୋରିବି ଅହଂଭାବ ଭାଷା ଆପଣାର।

ଧ୍ୱନି ତବ ଶୁଣୁ ଶୁଣୁ ଯେଉଁ ଦିନ ପାଲଟିବି ମୂକ,
ସେ ଦିନ ବାଙ୍ମୟ ହେବି ଅନ୍ତରେ ମୁଁ, ସେ ତ ତବ ଧ୍ୱନିର କୁହୁକ।

୬୦

ତୁମ ସଂପର୍କରେ ପ୍ରଭୋ, ଯେତେ ମୋ ଜିଜ୍ଞାସା, କିଏ ତା'ର ଦେବ ବା ଉତ୍ତର ?
କେଉଁ ଶାସ୍ତ୍ର ସମାଧାନ ଦେବ ତୁମ ସଂବନ୍ଧରେ ମୋର ସବୁ ସଂଶୟର ?
ଇତସ୍ତତଃ ହେବା ପରିବର୍ତ୍ତେ, ବ୍ୟାକୁଳତା ଯଦି ମୋର ତମ ପଦେ କରନ୍ତି ଅର୍ପଣ,
ତେବେ ତୁମେ ଦୁର୍ବୋଧ୍ୟ ରହନ୍ତ କି ଆଉ, ପ୍ରତିକ୍ଷଣେ ଶୁଣନ୍ତି ମୁଁ
ମୁରଲୀ ନିଃସ୍ୱନ, ତବ ନୂପୁର ନିକ୍ୱଣ।

୬୧

ଅନେକ ସମୟେ ରୁଷି ତୁମପରେ, ଠିକ କରେ, ତମ କଥା ଭାବିବିନି ଆଉ,
ତୁମ କଥା ଶୁଣିବିନି କେବେହେଲେ କାହାରି ତୁଣ୍ଡରୁ,

ତୁମ ସଂପର୍କରେ ଯେତେ ଆଗ୍ରହ ମୋ ପୋଛିଦେଇ ମନୁ
ତୁମକୁ ବିସ୍ମୃତ ହେବି, ଯେମିତି କି ତୁମ ସାଥେ
ଏତେଟିକେ ଚିହ୍ନା ବି ନଥିଲା।

ମାତ୍ର ଏତେ ଅଭିମାନ ମୋର ତୁମ ପରେ କାହିଁକି, କାହିଁକି ?
କି ଭୁଲ କରିଛ ତୁମେ ମୋ ନିକଟେ,
ଯା' ଲାଗି ମୋ ମନତଳେ ସୀମାହୀନ କ୍ଷୋଭର ତରଙ୍ଗ,
ସ୍ଥିର ମନେ ଚିନ୍ତା କଲେ କିନ୍ତୁ, ତୁମେ ତ ନିର୍ଦ୍ଦୋଷ ବୋଲି ଖୁବ୍ ମନେ ହୁଅ,
ତେବେ କ'ଣ ସବୁ ଭୁଲ ମୋର, ତମପରେ ଅଯଥାରେ କରିଛି ଆରୋପ।

କି ଭୁଲ ବା କର ତୁମେ, ଯେଉଁ ସବୁ ଅଳୀକକୁ ଆବୋରି ବସିଛି,
ସେ ସବୁକୁ ଗୋଟି ଗୋଟି ନିକଟୁ ମୋ ନେଉଛ ଛଡ଼ାଇ,
ପାଶେ ମୋର ରଖିବାକୁ ସ୍ଥିତି ତବ, ଅଥଚ ମୁଁ ନିର୍ବୋଧ ସେ ସତ୍ୟ
ଉପଲବ୍ଧି କରିବାର ପରିବର୍ତ୍ତେ,
ମିଛ ମାନଙ୍କର ମିଛ ବିରହରେ ନିରର୍ଥକ ଦୋଷୁଛି ତୁମରେ।

ସେତିକି ପାଉଛ ବୋଲି ଭଲ ସିନା, ବାରମ୍ବାର ତୁମେ ମୋର ଏତେ କ୍ଷତି କର,
ଅଥଚ ସେ ପ୍ରେମର ସଂଜ୍ଞାକୁ ନ ବୁଝି ମୁଁ ଭୁଲ ଅର୍ଥ କରେ ଆମ ନିତ୍ୟ ସଂବନ୍ଧର।

୬୨

ଅନେକ ଦୂରରେ ଥାଇ ମୁଁ ତୁମକୁ ପାରୁ ନାହିଁ ଦେଖି,
ଆଶ୍ଚର୍ଯ୍ୟ, ତୁମେ ତ ରହି ସମ ଦୂରେ ମୋତେ କିନ୍ତୁ ଦେଖୁଛ ନିରେଖି,
ପ୍ରତି ମୁହୂର୍ତ୍ତରେ ତୁମେ ମୋ ଲାଗି ଅଧୀର ହୁଅ,
ବ୍ୟସ୍ତ ହୁଅ, ମାତ୍ର ମୁଁ ଯେ ତୁମ ସଂପର୍କରେ
ଏତେ ଟିକେ ଆଗ୍ରହୀତ ନୁହେଁ, ଅଥଚ ସଂବନ୍ଧ ଆମ ଶୁଣାଯାଏ ଅନେକ ନିବିଡ଼।

ଜଣେ ତ ନିଷ୍କ୍ରିୟ, ମାତ୍ର ଅନ୍ୟ ଜଣେ ସଂପୂର୍ଣ୍ଣ ସକ୍ରିୟ,
ଏ କିପରି ପ୍ରେମର ସଂପର୍କ, ମୋ ଆନନ୍ଦ ଲାଗି ଚତୁର୍ଦ୍ଦିଗେ
ରୂପ, ରଙ୍ଗ, ରସ ତୁମେ କେତେ ମତେ ରଖିଛ ସଜାଇ,
ସେ ସବୁକୁ ପ୍ରାଣ ଭରି ଆସ୍ୱାଦନ କରି କିନ୍ତୁ, ଥରେ ବି ତ ଭାବେ ନାହିଁ,
ଅନ୍ତରାଳେ ମୋ ନିମିତ୍ତ ଏତେ କେ କରୁଛି ?

ଏପରି ଜଣକ ପାଇଁ, ତମ ବ୍ୟାକୁଳତା ମୋତେ ବାସ୍ତବିକ୍ ହତବାକ୍ କରେ,
କିଏ ସେ ମୋ ଏତେ ଆପଣାର, ତା' କଥା କି ଭାବିବିନି ଏ ଜୀବନେ ଥରେ ?

୬୩

ଏତିକି ମିନତି ପ୍ରଭୋ ! ଚିନ୍ତା ମୋର ନିରପେକ୍ଷ କର,
ନିର୍ଦ୍ୱନ୍ଦ୍ୱେ ଓ ନିରୁଦ୍‌ବେଗେ ମୁଁ ତେବେ ରହିବି ଶାନ୍ତ, ସଂପୂର୍ଣ୍ଣ ନିର୍ଲିପ୍ତ,
ସାମାନ୍ୟ ମୁଁ ଦ୍ରଷ୍ଟା ଜଣେ, ଘଟଣାର ଉତ୍‌ଥାନ, ପତନେ,
ମୁଁ ଯେ ନିତ୍ୟ ଅସଂପୃକ୍ତ, ଘଟିବାର ଘଟିବ ଯା' ପରିଣତି ପୂର୍ବରୁ ନିର୍ଦ୍ଦିଷ୍ଟ ।

ଜୟେ, ପରାଜୟେ ତେଣୁ ମୋ ବ୍ୟସ୍ତତା କାହିଁକି, କାହିଁକି ?
ଲୀଳା ଆସ୍ୱାଦନ ମାନେ ବର୍ତ୍ତମାନ ମୁହୂର୍ତ୍ତର ପ୍ରତି ସ୍ପନ୍ଦନକୁ
ଅନାସକ୍ତେ କରିବା ଗ୍ରହଣ, ସେ ସଂପର୍କେ ନିରର୍ଥକ ଭବିଷ୍ୟତ ଭାବନା ନକରି,
କର୍ତ୍ତାର ଆସନେ ବୃଥା ଆପଣାକୁ ରଖେ ସିନା, ଫଳ ପରେ କର୍ତ୍ତୃତ୍ୱ କି ଥାଏ ?

ତୁମ ପଛେ ଠିଆ ହୋଇ, ହତବାକ୍, ଅପଲକେ ଦେଖିବି ମୁଁ ତମ ଇନ୍ଦ୍ରଜାଲ,
ତୁମ କ୍ଷମତାକୁ ବୃଥା ମାପିବାକୁ ଯାଇ, କି ଲାଗି ମୁଁ ଆପଣାକୁ କରିବି କାଙ୍ଗାଳ ।

୬୪

ତୁମର କୃପାକୁ ପ୍ରଭୋ ! ସବୁବେଳେ ଖୋଜିଛି ମୁଁ ବସନ୍ତ ଉତ୍ସବେ,
ଅଥଚ ତମର ଦୟା ଘନୀଭୂତ ପ୍ରଳୟ ଗରଭେ,
ବିସ୍ମୃତ ବି ରହିଥାଏ, ଏଇ ଉପଲବ୍ଧି ବିନା ସଂପୂର୍ଣ୍ଣ ତା'
ସ୍ଥିତି କେବେ ଅନୁଭବ ପାରେ ନାହିଁ କରି,
ସେଥିଲାଗି ମନେହୁଏ ମୁଁ ତୁମର ପରିପୂର୍ଣ୍ଣ କୃପାରୁ ବଂଚିତ ।

ତୁମର କୃପାର ଅର୍ଥ ନିକିତିର ଦୁଇ ପାଖ ସମାନ ରହିବା,
ମୁଁ କିନ୍ତୁ ତା' ଅର୍ଥ କରେ ନିଜପାଇଁ ଗୋଟେ ପାଖ ତଳକୁ ନଇଁବା,
ମୋ ଇଚ୍ଛାର ହିସାବରେ ମୁଁ ତୁମର ଇଚ୍ଛାକୁ ମାପିଲେ
ସାନ୍ନିଧ୍ୟ ତା' ପାଇବି କି କେବେ ? ସେଥିଲାଗି ତମ ପରେ
ମନେ ମୋର କେତେ ଅଭିମାନ ।

ଭାଙ୍ଗିଯିବା, ହଜିଯିବା, ଯେତେ ଅଣ୍ଡାଳିଲେ ମଧ୍ୟ ଆଉ ନ ପାଇବା,
ଏ ସବୁ କି ନୁହେଁ ତୁମ କୃପାର ସଂକେତ ? ତୁମେ ମୋର ଖୁବ୍ ନିକଟରେ,
ମୁଁ କିନ୍ତୁ ବିବ୍ରତ ସଦା 'ତୁମେ ମୋତେ ଛାଡ଼ି ରହ ଅନେକ ଦୂରରେ।'

ଅକ୍ରୁର କୃଷ୍ଣଙ୍କୁ ନେଇ ଚାଲିଯିବା ମାନେ କ'ଣ,
ଶ୍ୟାମ ଗୋପୀମାନଙ୍କୁ ବି ଛାଡ଼ି ଚାଲିଗଲେ ?

୬୫

ତୁମକୁ ଭାବିଛି ଯେବେ ସୁଦୂରର, ତେବେ ତୁମେ ରହିଅଛ ଦୂରେ,
ପାଖେ ମୋର ଅଛ ବୋଲି ଯେବେ ମୁଁ ଭାବିଛି,
ଦେଖି ଅଛି ଖୁବ୍ ନିକଟରେ,
ନରକେ ରହିବି ତେଣୁ ତୁମ ଦେଖା ମିଳେ ଅନାୟାସେ,
ଗୋଲକରେ ସ୍ଥିତି ସତ୍ତ୍ୱେ, ସାକ୍ଷାତ ନ ମିଳେ ତବ ଅଜସ୍ର ପ୍ରୟାସେ।

୬୬

ତୁମକୁ ମୋ କହିବାର ଥିଲା ଯାହା, ଶେଷ ହେଲା,
ଏହା କ'ଣ କେବେହେଲେ ସତ୍ୟ ?
ସେ କଥାର ଇତି କାହିଁ ? ସମାପ୍ତି ତା'ଥିଲେ, ଶ୍ରୋତା ତୁମେ
କେଉଁ କାଳୁ ଚାଲି ଯା'ନ୍ତଣି,
ଉତ୍କର୍ଣ୍ଣେ ନ ବସିଥା'ନ୍ତ ପାଶେ ମୋର, ବକ୍ତା ଆଉ
ଶ୍ରୋତା ମଧ୍ୟେ ଏ ସଂବନ୍ଧ ଅନନ୍ତ କାଳର,
କଣ୍ଠ ଆଉ କର୍ଣ୍ଣ ଦେଇ ବୁଝୁ ଆମେ ପରସ୍ପରେ,
ନୟନେ ନୟନେ ପ୍ରୀତି ଅବ୍ୟକ୍ତ ଭାବର।

୬୮

ପ୍ରତି ମୁହୂର୍ତ୍ତରେ ଯାହା ଅକାତରେ ଦିଅ ମୋତେ, ମୁଁ ତାହାର ହିସାବ କି ରଖେ ?
ସେ ପ୍ରାପ୍ତିର ସ୍ୱରୂପ ମୋ ସୀମାବଦ୍ଧ ଚିନ୍ତାର ଗହନେ
ପ୍ରତିଭାତ ହୁଏ କେବେ ? ଅସ୍ଥିର ମୁଁ, ସେ ଐଶ୍ୱର୍ଯ୍ୟେ ପାରେ ନାହିଁ ଧରି,
ମନ ତଳେ ସେଥିଲାଗି ଶୂନ୍ୟତାର ହାହାକାର,
ଅଥଚ ମୋ ଶୂନ୍ୟତାକୁ ତୁମେ ସଦା ରଖିଅଛ ପରିପୂର୍ଣ୍ଣ କରି।

ଆମର ସଂପର୍କ କ'ଣ କେବେହେଲେ କ୍ଷୁଣ୍ଣ ହୋଇପାରେ ?
କ୍ଷୁଣ୍ଣ ହେବା ପରି ଯାହା ଜଣାଯାଏ, ସେ କେବଳ ମୋ ମନର ଭ୍ରମ,
ତୁମେ ତ ଚାହୁଁଛ ପ୍ରତି ମୁହୂର୍ତ୍ତରେ ମୋ ସହିତ ଏକତ୍ର ହେବାକୁ
ମାତ୍ର ମୁଁ ତୁମକୁ ଡାକି ନିକଟେ ମୋ ଦ୍ୱାର ପାଖୁ ନିର୍ବିକାରେ ଲେଉଟାଇ ଦିଏ ।

ମୋର ପ୍ରତ୍ୟାଖ୍ୟାନ ଲାଗି କିନ୍ତୁ କେବେ ରାଗି ନାହଁ, ରୁଷି ମଧ୍ୟ ନାହଁ,
ଅଧିକନ୍ତୁ, ବାହାରେ ଦରଜା ପାଖେ ଠିଆ ହୋଇ
ଉତ୍କଣ୍ଠିତ ଚିତ୍ତେ, ପୁନଶ୍ଚ ମୋ ଆହ୍ୱାନକୁ କରିଛ ଅପେକ୍ଷା,
ଡାକିଦେଲେ ଅବିଳମ୍ବେ ପହଞ୍ଚିବ ଆସି,
ମୋ ଉପେକ୍ଷା ଲାଗି କ୍ଷୋଭ, ତୁମ ମନରେ କି ଥାଏ ?
ଅଥଚ ଏ ଉପଲବ୍ଧି ସତ୍ତ୍ୱେ, ମୋର ଅସ୍ଥିରତା ଆଉ
ଚାଞ୍ଚଲ୍ୟରେ ପୂର୍ଣ୍ଣଚ୍ଛେଦ କାହିଁ ?

ମନେ ମନେ ସିଦ୍ଧାନ୍ତ ମୁଁ ନିଏ, ପ୍ରଭାତରେ ଶଯ୍ୟା ତ୍ୟାଗ ସଂଗେ ସଂଗେ;
ପ୍ରଥମେ ହିଁ ସ୍ମରିବି ତୁମକୁ,
ଅଥଚ ବିଷୟ ଅଳନ୍ଧୁମାନେ ମୋ ମନକୁ ଆଚ୍ଛନ୍ନ କରନ୍ତି,
ତା' ପରେ ସମଗ୍ର ଦିନ, ଚିନ୍ତାରେ ମୋ, ତବ ସ୍ଥିତି, କାହିଁ ?

ଅନୁଭବ କରିଛି ମୁଁ ଚାଲୁ ଚାଲୁ ରାସ୍ତାପରେ ଝୁଣ୍ଟିପଡ଼େ ଯଦି
ତୁମେ ମନେ ପଡ଼ିଯାଅ, ଝୁଣ୍ଟିବାର କ୍ଳେଶ କିନ୍ତୁ ଚାଲିଯିବା ପରେ
ମନ ତଳୁ ତୁମକୁ ଆଡ଼େଇ ଦିଏ, ଏଇ କ'ଣ ଆମ ମଧ୍ୟେ ପ୍ରୀତିର ସଂବନ୍ଧ ?
ଏତେ ସବୁ ସତ୍ତ୍ୱେ କିନ୍ତୁ ଆମ ଘନିଷ୍ଠତା ଚିରକାଳ ରହେ ଅବ୍ୟାହତ,
ମୁଁ ତୁମକୁ ଭୁଲିଲେ ବି, ତୁମେ କିନ୍ତୁ ମୋତେ କେବେ ହୁଅନି ବିସ୍ମୃତ ।

୬୯

କେତେ ମୁଁ ନ କରେ ଚେଷ୍ଟା ଜୀବନର ପ୍ରତି ମୁହୂର୍ତ୍ତରେ,
ପ୍ରତି କର୍ମ ମଧ୍ୟେ ପ୍ରଭୋ ! ତୁମକୁ ମୁଁ ସ୍ମରେ,
କର୍ମମାନେ ମୋତେ କିନ୍ତୁ ସେମାନଙ୍କ ଆସକ୍ତିର ଅଖଣ୍ଡ ପ୍ରଭାବେ
ସମ୍ମୋହିତ ରଖି, ତୁମ ସ୍ମରଣରୁ ମୋତେ ସଦା କରନ୍ତି ବଂଚିତ ।
କର୍ତ୍ତାର ଆସନେ ରଖି ଆପଣାକୁ, କେହିକେବେ ଆନନ୍ଦକୁ ପାଏ ?

ଯଶ, ମାନ, ପ୍ରତିଷ୍ଠାର ପରିସରେ ସୀମାବଦ୍ଧ ରଖିଲେ ନିଜକୁ
ତୁମକୁ ସ୍ମରିବା ସୁଖ ସ୍ୱପ୍ନ ସିନା, ସେଥିଲାଗି ଯେତେ ଚେଷ୍ଟା କଲେ
ଶାନ୍ତି ମୁଁ ତ ପାଏ ନାହିଁ, ତୁମଠୁ ବିଚ୍ଛିନ୍ନ ହୋଇ ରହେ ମୁଁ ନିଃସଙ୍ଗ।

ବନବାସେ, କୃଷ୍ଣ କ'ଣ ସଶରୀରେ ସବୁବେଳେ
ଉପସ୍ଥିତ ରହୁଥିଲେ ପାଣ୍ଡବଙ୍କ ପାଖେ ?
ତଥାପି ସେମାନେ କେଡ଼େ ସୁଖୀ ଥିଲେ, ସେମାନଙ୍କ ସ୍ମରଣରେ ଯେଣୁ
କୃଷ୍ଣ ଥିଲେ ସଦା ସ୍ଥିର, ପ୍ରତିକୂଳ ପରିସ୍ଥିତିମାନେ ତେଣୁ ଅକିଞ୍ଚିତକର।

ମୁଁ ନିଜର 'ମୁଁ'ତ୍ୱକୁ ସଦା ଯେଣୁ ଦେଇଛି ପ୍ରାଧାନ୍ୟ,
ମନତଳେ ତେଣୁ ତୁମେ ଆସି ମଧ୍ୟ ଆସି ପାରୁନାହଁ,
ସ୍ମରଣେ ଓ ଅଧ୍ୟୟନେ ତୁମ ନାମ ବାରମ୍ବାର ଆବୃତ୍ତି କଲେ ବି
ତୁମେ ମୋର ମନ ତଳେ କେବେହେଲେ ପାରୁନ ଆସନ।

ସୂର୍ଯ୍ୟକୁ ମୁଁ ସୂର୍ଯ୍ୟ ଦେଖେ, ଆକାଶକୁ ଦେଖିଛି ଆକାଶ,
ସାଗରକୁ ଚାହିଁ ଚାହିଁ ମୁଁ ଦେଖୁଛି ଫେନିଳ ତରଙ୍ଗ,
ଫୁଲକୁ ମୁଁ ଫୁଲ ଦେଖେ, ସ୍ଥାବର, ଜଙ୍ଗମେ ଦେଖେ ସ୍ଥାବର ଜଙ୍ଗମ,
ତୁମେ ତ ଅଦୃଶ୍ୟ ରହ, ସୃଷ୍ଟି ମଧ୍ୟେ କରେ ନା ମୁଁ ସ୍ରଷ୍ଟାରେ ଦର୍ଶନ।
ଧ୍ରୁବ ଆଉ ପ୍ରହ୍ଲାଦ, ଅନୁପସ୍ଥିତ ଯେଣୁ ମୋର ମନ ତଳେ,
ତୁମକୁ ବିସ୍ମୃତ ହୋଇ ଚିନ୍ତିତ ମୁଁ ସଦା କର୍ମଫଳ ପରେ।

୭୦

ତୁମକୁ ମୁଁ ଭଲ ପାଏ, ସବୁବେଳେ ତୁମ ପ୍ରତି ଆନୁଗତ୍ୟ ମୋର,
ଏହା ମୁଁ କରିବା ସତ୍ତ୍ୱେ, ନିଜ ଅହଙ୍କାରେ ସଦା ବୁଡି ରହିଥାଏ,
ସେଥିଲାଗି ଯଦି କିଛି ମୋ ଇଚ୍ଛାର ଘଟେ ବିପରୀତ,
ସେଥିରେ ମୁଁ କ୍ଷୁବ୍ଧ ହୁଏ, ଭାବେନି ତ ସେ ତୁମର ଲୀଳାର ପ୍ରତୀକ।

ବାରମ୍ବାର ଚେଷ୍ଟା କରେ ଇଚ୍ଛାକୁ ମୋ, ତୁମର ଇଚ୍ଛାର ସାଥେ କରିବି ସାମିଲ,
ସବୁ କିନ୍ତୁ ବ୍ୟର୍ଥ ଯାଏ, ଯେଣୁ, ତୁମ ସ୍ଥିତି ଭୁଲି,
ଆପଣାର ସ୍ଥିତିଟାକୁ ଦେଖେ ମୁଁ କେବଳ,

ହଜାଇ ପାରନ୍ତି ଯଦି ଥରେ ମାତ୍ର ଆପଣାକୁ ତୁମରି ଭିତରେ,
ସକଳ ଗ୍ଲାନିରୁ ଚିରମୁକ୍ତି ଲଭିବାଟା କେଡ଼େ ହୁଅନ୍ତା ସରଳ।
ଅଭିନ୍ନ ହେବାର ଲାଗି ତୁମ ସାଥେ, କୃପା ତବ ଭିକ୍ଷା ମୁଁ ନକରି,
ଆପଣା କ୍ଷମତା ପରେ ଆସ୍ଥା ରଖି, ତୁମ ସମୀପରୁ କ୍ରମେ ଆସେ ଅପସରି।

୭୧

ମୁଁ ଚାଲୁଛି ଅନ୍ୟମାନଙ୍କର ସାଥେ, ଏବଂ ତୁମେ ମଧ୍ୟ ଚାଲୁଛ ସାଥିରେ,
ଏତିକି ବୁଝିବା ପରେ, ନିଃସଙ୍ଗ ହେବାର ଭୟ ଆଉ ମୋର ନାହିଁ,
ତୁମରି କୃପାରୁ ଏବେ ଯେଉଁମାନେ ସଂଗୀ ମୋର,
ଭବିଷ୍ୟତେ ସଂଗ ମୋତେ ନ ଦିଅନ୍ତି ଯଦି,
ସେ ଲାଗି ମୋ ଦୁଃଖ ନାହିଁ, ତୁମେ ଥିଲେ ସବୁ ମୋର ଅଛି।

ସେମାନେ ନୁହନ୍ତି କେହି ଚିରଦିନର ମୋ ସାଥୀ ଚଲାପଥ ପରେ,
ତେଣୁ ସେମାନଙ୍କ ପ୍ରତି ଆକର୍ଷଣ, ତଦ୍‌ଜନିତ
ମିଳନର ସୁଖ ଅବା ଦୁଃଖ ବିରହର,
ତୁମରି ଚିନ୍ତାରୁ କ'ଣ ବିଚ୍ୟୁତ କରିବ ମୋତେ ? ତୁମେ ଥିବ ମୋର ସ୍ମରଣରେ,
ତୁମେ ଯାହା ଦେଇ ପୁଣି ଲେଉଟାଇ ନିଅ,
ସେ ସବୁ ଉଦ୍ଦିଷ୍ଟ ସଦା ଅବହିତ ରହିବାକୁ ତୁମ ସଂପର୍କରେ।

୭୨

ତମ କଥା ଭାବୁ ଭାବୁ ଅହଙ୍କାର ଅକସ୍ମାତ ଆସି,
ମୋ ସମଗ୍ର ଚେତନାକୁ ଚମତ୍କାର ଅଧିକାର କରେ,
ତା'ପରେ ମୁଁ ଦେଖେ ପ୍ରଭୋ ! ତୁମେ ନାହଁ, ମୁଁ ଅଛି କେବଳ,
ଦୃଷ୍ଟି ଅଛି, ଦୃଶ୍ୟ ନାହିଁ, ଅଧିକାରୀ ମୁଁ ଯେ ଏକ ଶୂନ୍ୟ ହୃଦୟର।

ତୁମକୁ ସମ୍ମୁଖେ ରଖି ଚୁପ୍‌ଚାପ୍ ଚାଲିଥିଲି ତମରି ପଛରେ,
ନିଶ୍ଚିତ ମୁଁ ଥିଲି ତେବେ, ନଥିଲା ମୋ ଭିନ୍ନ ପରିଚୟ,
ତୁମେ ହିଁ ମୋ ସଂଜ୍ଞା ଥିଲ, ହଠାତ୍ ସେ ସତ୍ୟ ଭୁଲି
ପରିଚିତ ହେବା ଲାଗି ଚାହିଁଲି ମୁଁ ନିଜର ସଂଜ୍ଞାରେ,

ତା'ପରେ ମୋ ସ୍ଥିତି କାହିଁ ? ପରିଚୟହୀନ ଜଣେ ଭାସୁଛି ମୁଁ ଶୂନ୍ୟ ସମୁଦ୍ରରେ,
ପ୍ରାର୍ଥନା ଏତିକି ପ୍ରଭୋ, ତୁମର ସ୍ମରଣେ ଯେହ୍ନେ ମଗ୍ନ ରହି ପ୍ରତି ମୁହୂର୍ତ୍ତରେ,
ବିସ୍ମୃତ ମୁଁ ହୁଏ ମୋର ପୃଥକ୍ ସତ୍ତାକୁ,
ଢେଉଟିଏ ନାଚିକୁଦି, ପରିଶେଷେ ଏକାକାର ସାଗର ଗର୍ଭରେ ।

୭୩

ମୁଁ ଆଉ ଅନ୍ୟମାନେ, ସବୁବେଳେ ସଂଶୟର ପ୍ରଶ୍ନ କରିଥାଉ,
ତୁମେ କିନ୍ତୁ ପ୍ରଶ୍ନହୀନ, ସେଥିଲାଗି ତୁମଠାରୁ ସମୁଚିତ ଉତ୍ତର ହିଁ ପାଉ ।

୭୪

ଅସଜଡ଼ା ବୋଲି ଯାହା ମନେହୁଏ, ସେ ସବୁ ନିର୍ଭୁଲ ଭାବେ ସଜଡ଼ା ରହିଛି,
ସେ ସଂପର୍କେ ଦ୍ୱିଧା, ଯେଣୁ, ନିଜର ଇଚ୍ଛାକୁ ତୁମ ଇଚ୍ଛାଠାରୁ ପୃଥକ ରଖିଛି ।

୭୫

ଫୁଲର ସୁବାସୁଁ ଯେହ୍ନେ ପରିଚୟ ମିଳିଥାଏ ନିର୍ଦ୍ଦିଷ୍ଟ ଫୁଲର,
ତୁମର ସୁଗନ୍ଧୁ ପ୍ରଭୋ, ସେଇପରି ଜାଣିହୁଏ, ଅନାୟାସେ ପରିଚୟ ମୋର ।

୭୬

ପ୍ରତ୍ୟେକର ଆନନ୍ଦକୁ, ଯଦି ମୁହିଁ ଆପଣାର ଆନନ୍ଦ ହିଁ ମଣେ,
ଆନନ୍ଦ ପ୍ରାପ୍ତିର ଲାଗି, ଭିନ୍ନ ସାଧନାର ତେବେ କିବା ପ୍ରୟୋଜନ ?
ବସ୍ତୁ ଆଉ ଅବସ୍ତୁରେ ପ୍ରତି ମୁହୂର୍ତ୍ତରେ ଯଦି ତୁମକୁ ହିଁ ଦେଖେ,
ପୃଥକ୍ ତପସ୍ୟା ମଧ୍ୟେ କି ଲାଗି ଲୋଡ଼ିକି ପ୍ରଭୋ ! ତୁମର ଦର୍ଶନ ।

୭୭

ଅନ୍ୟର ହସକୁ ନେଇ ଖୁସି ମୁଁ ରହିବା ଲାଗି ଚେଷ୍ଟା କରେ ଯଦି
ସେ ଖୁସିର ସ୍ଥିତି କେତେ କ୍ଷଣ ? ଦୋହଲିଲେ ସେମାନଙ୍କ ହସ,
ମୋ ଖୁସିବି ଚହଲିବ, ନିଜସ୍ୱ ମୋ ଆନନ୍ଦ ଉପରେ
ଅବିଚଳ ରହିବି, ତୁମ ଦତ୍ତ ସେ ଆନନ୍ଦ ଅନ୍ୟମାନେ ନେଇ
ଲଭନ୍ତୁ ଗ୍ଲାନିରୁ ମୁକ୍ତି, ସାଧନାର ଏହା ହିଁ ମୋ ଅଭିପ୍ରେତ ହେଉ ।

୭୮

ଅସମାପ୍ତି ରଖି ଯେହ୍ନୁ ସବୁ କର୍ମ, ଅକ୍ଳେଶରେ ଛାଡ଼ି ଦେଇ ଯାଇପାରେ
ତମ ଲାଗି, ସେ କେବଳ ତମକୁ ହିଁ ପାଏ।

୭୯

ଅନ୍ୟର କ୍ଳାନ୍ତି ଓ ଦୁଃଖ ବୁଝିବାକୁ ଅସମର୍ଥ ଯେହ୍ନୁ,
କେବେ ସେ ସମର୍ଥ ହେବ କରିବାକୁ ଉପଲବ୍ଧି ତମ ସ୍ୱରୂପକୁ,
ସମାଲୋଚନାରେ ଭୁଲି ସହାନୁଭୂତିରେ ଯେହ୍ନୁ ସଦା ବିଗଳିତ,
ସେ କେବଳ ଶୁଣିପାରେ କାନପାଖେ, ସୁଦୂରରୁ ତୁମର ସେ ଅମର ସଙ୍ଗୀତ।

୮୦

ପ୍ରତି ମୁହୂର୍ତ୍ତରେ ପ୍ରଭୋ, ତୁମ କଥା ନିର୍ବିଚାରେ ମାନି ନେବାଠାରୁ ବଳି
ଅଧିକ କି ଆନନ୍ଦ ବା ଅଛି ?

୮୧

ତୁମର ମୋହର ପ୍ରଭୋ ! ସମ୍ବନ୍ଧ କି ସବୁବେଳେ ତତ୍ତ୍ୱରେ ହିଁ ସୀମାବଦ୍ଧ ଥିବ ?
ବୌଦ୍ଧିକ ସେ ସମ୍ପର୍କର ମୂଲ୍ୟ କ'ଣ ? ସୂକ୍ଷ୍ମତମ ଚିନ୍ତାର ଚତ୍ୱରେ
ତୁମରେ ମୁଁ ବିଶ୍ଳେଷଣ କରି, ମନ ତଳେ କେବେ କ'ଣ ତୁମକୁ କି ପାଏ ?
ନିରବରେ ହସ ତୁମେ, ମୋର ଜ୍ଞାନ ଗାରିମାର ପ୍ରହସନ ଦେଖି।

ସମ୍ମୁଖେ ମୋ ସ୍ରୋତସ୍ୱତୀ, ଅଥଚ ମୁଁ ନଇ ପାଖେ ଯାଇ
ତୃଷ୍ଣା ନିବାରଣ କେବେ କରେ ନାହିଁ, ଦୂରେ ରହି ନଦୀ ସମ୍ପର୍କରେ
ତଥ୍ୟମାନ ସଂଗ୍ରହ ମୁଁ କରେ, ମୋର କୃତିତ୍ୱର ଶୁଷ୍କ ଯଶଗାନ ଶୁଣି
କୃତ୍ୟକୃତ୍ୟ ହୁଏ ତଦ୍ୱାରା କି କେବେ କ'ଣ ଛୁଏଁ ମୁଁ ତୁମକୁ ?

ଜାଣେ କିଛି ଜାଣି ନାହିଁ, ପଢ଼ିନାହିଁ, ବୁଝି ନାହିଁ ତୁମ ସମ୍ପର୍କରେ,
ଅଥଚ ସେ ତୁମ ନାମ ଗାଇ ଗାଇ ଦିନ ରାତି ବିଭୋର ରହୁଛି
ସେ ପରମ ପ୍ରାପ୍ତିପରେ ଅଧିକ କି ପ୍ରୟୋଜନ ଆଉ ?

ଅଥଚ ସେ ପ୍ରାପ୍ତି ଅଭାବରେ, ତତ୍ତ୍ୱଜ୍ଞ ମୁଁ ଜଳି ମରେ
ନିଃସଙ୍ଗ ଦୁଃଖର ଦାହେ, ମୋ ଜ୍ଞାନର ଗବେଷଣାଗାରେ
ବୃଥା ଏ ସଞ୍ଚୟ ମୋର ଫିଙ୍ଗିଦେଇ ପ୍ରଭୋ !

ମୋତେ ତୁମେ ନିଃସ୍ୱ କର, ନିଃସହାୟ କର,
ତେବେ ମୁଁ ତୁମରେ ପ୍ରଜ୍ଞା ମାଧ୍ୟମରେ ଖୋଜି ପାଇବାର
ବୃଥା ଅହଙ୍କାର ତେଜି,
ଅନୁଭବ କରିବି ମୋ ଅଙ୍ଗେ ଅଙ୍ଗେ ଶିହରଣ
ପ୍ରତିକ୍ଷଣେ ପ୍ରତିକ୍ଷଣେ ତମ ଆଶ୍ଳେଷର ।

୮୨

ଅନେକ କରିଛି ଭୁଲ, ତୁମେ କ'ଣ ସେଥିଲାଗି
ମୋ' ପ୍ରତି ବୀତସ୍ପୃହ କେବେ ?
ତୁମେ ଜାଣ, ଏ ଭୁଲର ସ୍ଥିତି କ୍ଷଣସ୍ଥାୟୀ, ଅନ୍ତରାଳେ ତା'ର
ଛପିଥିବା ତୁମ ପ୍ରତି ପୁଞ୍ଜିଭୂତ ଅନୁରାଗ ମୋର,
ପ୍ରକାଶିବ ଦିନେ ଯେବେ ଆପଣାର ଦ୍ୟୁତି,
ପଲକେ ସକଳ ଭୁଲ୍ ହଜିଯିବ, ଆମେ ଦୁହେଁ ମୁହୂର୍ତ୍ତକେ ଏକାକାର ହେବା ।

୮୩

ମୁଁ ଚାଲିଛି ଆଗେ ଆଗେ, ତୁମେ ମୋର ଚାଲିଛ ପଶ୍ଚାଦେ,
ଏ ସତ୍ୟ ବୁଝିବା ସତ୍ତ୍ୱେ, ମୁଁ କାହିଁକି ବାରମ୍ବାର ପଛକୁ ଅନାଏ,
ବିଶ୍ୱାସ ଏତିକି ଯଦି ତୁମ ପରେ ନ ପାରିଲି ରଖି,
ସାରା ଜୀବନଟା ସିନା ବୃଥା ଯିବ, ସଂଶୟରେ ପ୍ରତିକ୍ଷଣେ ତୁମରେ ପରଖି ।

ଆପ୍ରାଣ କରୁଛି ଚେଷ୍ଟା, ରଖିବାକୁ ତୁମ ପରେ ଅଟଳ ବିଶ୍ୱାସ,
ମାତ୍ର ରଖି ପାରୁଛି କେଉଁଠି, କାନ ପାଖେ ତୁମ ବିଷୟରେ ଯେତେ ବିରୁଦ୍ଧ ମନ୍ତବ୍ୟ,
ସେ ସବୁ ହୃଦୟେ ମୋର ଚାଞ୍ଚଲ୍ୟ ସୃଜିବା ଲାଗି ଯଥେଷ୍ଟ, ଯଥେଷ୍ଟ,
ବିକ୍ଷିପ୍ତ ଏପରି ଏକ ମନ ନେଇ, ତୁମ ସଙ୍ଗେ ପ୍ରୀତିର
ସଂବନ୍ଧ କ'ଣ ରଖିବା ସମ୍ଭବ ?

ମୁଁ ବୁଝିଛି ଏଥିଲାଗି ତୁମେ କିନ୍ତୁ ରୁଷ୍ଟ ନୁହେଁ, ଅଧିକନ୍ତୁ ସ୍ୱାଗତ କରୁଛ
ମୋର ଏଇ ସଂଶୟକୁ ପ୍ରତି ମୁହୂର୍ତ୍ତରେ, ଭିନ୍ନ ଭିନ୍ନ ପ୍ରକାଶ ମାଧ୍ୟମେ,
ପଛକୁ ମୁଁ ଅନାଇଲେ ଅଭିମାନେ ତୁମେ କେବେ ଅଟକିବ ନାହିଁ,
ବରଂ ଆସିବ ଲାଗି ଆଉ ଟିକେ ମୋ ପଛକୁ,
ସଂଶୟ ମୋ ସଙ୍କୁଚିତ କରି ଦେବାପାଇଁ।

ତୁମ ମନ ଏତେ ବଡ଼ ପ୍ରଭୁ ସିନା, ମନ ମୋର କେତେ ଛୋଟ ସତେ,
ତେଣୁ ତ ଆନନ୍ଦମୟ ତୁମେ ଚିରକାଳ, ନିରାନନ୍ଦେ ମୁଁ ବିଷଣ୍ଣ, ଅବସନ୍ନ ସଦା,
କିନ୍ତୁ ଏଇ ପାର୍ଥକ୍ୟକୁ କୃପାମୟ ତୁମେ କେବେ ସହ୍ୟ କରିପାରିବନି ଜାଣେ,
ସଂଶୟେ ମୋ ବିଶ୍ୱାସକୁ ରଖି, ନିରାନନ୍ଦେ ବୁଝାଇବ ଆନନ୍ଦର ମାନେ।

ଆଗ ପଛ ହୋଇ ଆମେ ଚାଲୁ ଚାଲୁ ଏହିପରି,
ଅନୁଭବ କରିବି ମୁଁ ତୁମରି ଅସ୍ତିତ୍ୱ ଦିନେ ମୋହରି ଭିତରେ,
ତୁମର ପୃଥକ ସତ୍ତା ହଜିଥିବ, ଉତ୍କର୍ଣ୍ଣେ ମୁଁ ଶୁଣୁଥିବି,
ତୁମର ସମସ୍ତ ସୁର ମୋର ସଙ୍ଗୀତରେ।

୮୪

ହେ ନିଷ୍ଠୁର ଦୟାମୟ! କିଏ ତୁମ ପରି ଅଛି ?
ପ୍ରତ୍ୟେକ ଆଘାତ ପଛେ, ପ୍ରଭୋ! ତୁମ କରୁଣା ରହିଛି,
ଏ ସତ୍ୟ ଆବୃତ୍ତି ସତ୍ତ୍ୱେ, ମୁଁ କାହିଁକି ଦୁଃସମୟେ,
ସ୍ଥିର ରଖି ପାରେନି ନିଜକୁ?
ତୁମକୁ ବିସ୍ମୃତ ହୋଇ ନିଃସହାୟେ ହାହାକାର କରେ ?
ତୁମ ନିକଟରେ ପୂର୍ଣ୍ଣ ଆତ୍ମସମର୍ପଣ ବିନା ଏ ଦୁଃଖରୁ ଅବ୍ୟାହତି କାହିଁ ?
ଜ୍ୱାଳା ମଧ୍ୟେ ତୁମ କଲ୍ୟାଣକୁ ବୁଝି, ବ୍ୟସ୍ତ ବା ବିବ୍ରତ ନ ହେବା
ଏତେ କି ସହଜ ସତେ ? ଦେହ, ବୁଦ୍ଧି, ଅହଙ୍କାର ରହିଥିବା ଯାଏ,
'ଦୁଃଖ ନୁହେଁ, ସେ ତୁମର କୃପା' ବାରମ୍ବାର କହୁଥିବି ସିନା,
ଦହନ ମଧ୍ୟରେ କେବେ ଉପଲବ୍ଧି କରିବିନି ତୁମ କରୁଣାକୁ।
ତୁମ କୃପା ବିନୁ ପ୍ରିୟ, ଏତେ ବଡ଼ ଭାଗ୍ୟ ମୋର କେବେହେଲେ ହେବ ?
-ପ୍ରଳୟ ତାଣ୍ଡବ ମଧ୍ୟେ, ତୁମର ମଧୁର ମୂର୍ତ୍ତି କେବଳ ଦିଶିବ।

୮୫

ମୁଁ କେବଳ ବ୍ୟସ୍ତ ହୁଏ ତୁମ ଲାଗି, ତୁମେ ବ୍ୟସ୍ତ ହୁଅନି ମୋ ପାଇଁ ?
ମୋ ଆଖିରୁ ଲୁହ ଝରେ ତୁମ ବିରହରେ,
ବିଚ୍ଛେଦେ ମୋ ତୁମ ନେତ୍ର କେବେ କ'ଣ ଅଶ୍ରୁ ଶୂନ୍ୟ ରହେ ?

ତୁମ ଆସିବାର ପଥେ ଅନାଇ ମୁଁ ରହିଥାଏ,
ତୁମେ କି ନ ବସିଥାଅ ଅପଲକେ ପଥ ମୋର ଚାହିଁ ?
ଫରକ ଭିତରେ, ମୋର ଆବେଗ ମୁଁ ବ୍ୟକ୍ତ କରିଦିଏ,
ମୋ ଲାଗି ତମର ଯେତେ ବ୍ୟାକୁଳତା ଅବ୍ୟକ୍ତ ହିଁ ରଖ।

ସେଥିଲାଗି ତୁମକୁ ମୁଁ ପାଇବାକୁ ଯାଇ, ଦେଖେ, ତୁମେ ରହିଅଛ ଅନେକ ଦୂରରେ,
ଅଥଚ ସମାନ ଦୂରେ ଥାଇ ମଧ୍ୟ, ତୁମେ କିନ୍ତୁ
ପାଅ ମୋତେ ପ୍ରତିକ୍ଷଣେ ପ୍ରତି ମୁହୂର୍ତ୍ତରେ।

୮୬

ତୁମକୁ ପାଇବା ଲାଗି ଭଲ, ମୋତେ କେହି କେବେ ଶିଖାଇ ତ ନାହିଁ,
ଅଥଚ ମୁଁ ଭଲପାଏ, ସେଇ ଭଲ ପାଇବାର କାରଣ ସଂପର୍କେ
ଅନେକ କରନ୍ତି ପ୍ରଶ୍ନ, କିନ୍ତୁ ସେଇ କୌତୂହଳୀ ପ୍ରଶ୍ନମାନଙ୍କର
ଉତ୍ତର ନଦେଇ ପାରି ଅକ୍ଷମ ମୁଁ ନିରୁତ୍ତର ରହେ।
ମୋର ଏଇ ନିର୍ବୋଧତା ନେଇ କେତେ ଉପହାସ ତେଣୁ,
ମୋର କିନ୍ତୁ ସେଥିରେ ବା କିବା ଯାଏ ଆସେ,
ରୁଦ୍ଧ ଦ୍ୱାର କକ୍ଷର ବାହାରେ ଅବ୍ୟାହତ କୋଳାହଳ,
ପ୍ରକୋଷ୍ଠର ଅନ୍ତରାଳେ, ନିଶ୍ଚିନ୍ତେ ମୁଁ ବସିଥାଏ ତୁମ ପାଦ ପାଖେ।

୮୭

ବିବିଧ ବୈଚିତ୍ର୍ୟ ମଧ୍ୟେ ଜୀବନର ଆନନ୍ଦକୁ
ଅବ୍ୟାହତ ରଖିବାକୁ ଚାହେଁ,
ବ୍ୟକ୍ତି ଓ ବସ୍ତୁର ସାଥେ ଆପଣାକୁ ବାରମ୍ବାର ଯୋଡ଼ି
କ୍ଲାନ୍ତ ହୁଏ, ଅବସନ୍ନ ହୁଏ, ସେମାନଙ୍କୁ ନେଇ

ପ୍ରତି ପଲକରେ, ଚିରନ୍ତନ ବିସ୍ମୟ ଓ ରୋମାଞ୍ଚର
ସମ୍ଭାବନା ସମ୍ଭବ କି କେବେ ?
ଏହି ଉପଲବ୍ଧି ସତ୍ତ୍ୱେ, ବିଚ୍ଛିନ୍ନ ମୁଁ ପାରେ ନାହିଁ କରି
ସେମାନଙ୍କ ସାନ୍ନିଧ୍ୟ ଆପଣାକୁ, ଡୁବି ରହି
ସୀମାହୀନ ବିଶୃଙ୍ଖଳା ତଳେ,
ପ୍ରଜ୍ଞା ଓ ବୁଦ୍ଧିର ମଧ୍ୟେ ଅସହାୟ ମୁଁ ତୁମକୁ ସ୍ୱପ୍ନ ଦେଖେ,
ସେହି ସ୍ୱପ୍ନ କିନ୍ତୁ ହାୟ ସ୍ୱପ୍ନ ହୋଇ ରହେ ।

ଭାବ, ଅନୁରାଗ, ସ୍ନିଗ୍ଧ ବୈରାଗ୍ୟ ଓ ସହାନୁଭୂତିର
ମୁକୁରରେ ପ୍ରୟାସ କରିନି କେବେ ଦେଖିବାକୁ ତୁମ ପ୍ରତିବିମ୍ବ,
ସେଇ ପ୍ରତିବିମ୍ବ କେତେ ନ ବୈଚିତ୍ର୍ୟଭରା, ପ୍ରତିକ୍ଷଣେ ପ୍ରତି ମୁହୂର୍ତ୍ତରେ
ସୁନ୍ଦର ସୁନ୍ଦରତର, କମନୀୟ, ରମଣୀୟ, ମନୋମୁଗ୍ଧକର ।

ଦୃଷ୍ଟି ମୋର ସଂଶୋଧନ ଲାଗି ତମ ଛଡ଼ା
କା'ପାଖେ ବା କରିବି ମୁଁ ଅଳି,
ମୋର ଅକ୍ଷମତା, ମୋର ବ୍ୟର୍ଥତାକୁ ଶୁଣିବ କେ ଆଉ ତମ ପରି ।

୮୮

ମୋତେ କିଛି ଖୁସି ଦିଅ, ହାତପାତି ଭିକ୍ଷା ମାଗେ, ଦିଅ କିଛି ଖୁସି,
ହଠାତ୍ ହରାଇ ଆଜି ବସିଛି ମୁଁ ସେ ସମ୍ପଦ, ଥିଲା ଯାହା ଏକାନ୍ତ ନିଜର,
ଯାର ସ୍ଥିତି ଯୋଗୁଁ ପୃଥିବୀର ସବୁ କ୍ଷତି, ସବୁ ଗ୍ଲାନି, ସବୁ ଅସୁନ୍ଦର,
ବିଚ୍ଛେଦ, ବିଭେଦ, ଦୁଃଖ କରି ନାହିଁ କେବେହେଲେ ଅବସନ୍ନ ମୋତେ ।

ଅଥଚ ଏବେ ଯନ୍ତ୍ରଣାମାନ ମୋ ଖୁସିର ଇନ୍ଦ୍ରଜାଲ ସ୍ପର୍ଶେ
ଭୁଲିଯାଇ ନିଜ ଧର୍ମ, ଆନନ୍ଦର ସ୍ୱରୂପରେ ଦେଖୁଥିଲି ନିଜର ସ୍ଥିତିକୁ,
ସେଇ ଖୁସି ତମେ କି ନେଇଛ କାଢ଼ି ସ୍ୱଇଚ୍ଛାରେ,
ଅଥବା ମୁଁ ହରାଇଛି ଆପଣା ଭ୍ରମରୁ ?

ସେ ବିଚାର ଏବେ ବନ୍ଦ ରଖି, ଆକୁଳେ ମୁଁ ହାତପାତେ ଦିଅ କିଛି ଖୁସି ।
ବଞ୍ଚିବାକୁ ଦିଅ ଆଗ ମୋତେ, ତା'ପରେ ଯଦି ବା ଥାଏ
ମୋ ବିରୁଦ୍ଧେ ଅଭିଯୋଗ କିଛି

ମାନି ନେବି ନତ ଶିରେ, ଏଇ ଯେ ବଞ୍ଚିତ ହେଲି
ଖୁସିରୁ ମୁଁ, ନୁହେଁ କି ତା' ଶାସ୍ତି,
ଅଧିକ କି ଶାସ୍ତି ଦେବ ମୋତେ ? ତମେ ତ ଆନନ୍ଦମୟ,
ଆନନ୍ଦର ଶାଶ୍ୱତ ଆଧାର,
ଯେହେତୁ ନିର୍ଭୁଲ ସଦା, କିପରି ଭାବୁଛ ତମେ
ସରି ହେବି ତମ ସାଥେ, ସମ୍ଭବ ତା' କେବେ ?
ତଥାପି ରହିବା ଆମେ ଅବିଚ୍ଛିନ୍ନ, ସହାବସ୍ଥାନର ସତ୍ୟେ,
ହାତେ ହାତ ରଖି ।

୮୯

ବାହାରେ ଭୀଷଣ, ଝଡ଼, ସେଥିରେ ମୋ ଯାଏ ଆସେ କେତେ,
ସେଇ ଝଡ଼େ ପ୍ରଭାବିତ ହେବି ମୁଁ କାହିଁକି ?
ତମ ପାଖେ ବସି ରହି, ପ୍ରଭାବିତ ଯଦି ହୁଏ, ତେବେ ତମ ନିକଟେ ବସିବା
ପ୍ରହସନ ଏକ, ଯୁଗ ଯୁଗ ଧରି ବସିଲେ ଏମିତି,
ଦୁହେଁ ଥିବା ପାଖାପାଖି, ବ୍ୟବଧାନ ରହିଥିବ କିନ୍ତୁ ଯୋଜନ, ଯୋଜନ ।

ମହାର୍ଘ ଏ ଉପଲବ୍ଧି ସତ୍ତ୍ୱେ, ଅନ୍ୟମନସ୍କତା ମୋର ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ,
ତମେ ଠିକ୍ ଧରିଥାଅ, ସତର୍କ ବି କରିଦିଅ ଆଖି ଇସାରାରେ,
ମୁଁ ମଧ୍ୟ ଚମକି ପଡ଼ି ନିଜ ଭୁଲ ବୁଝିନେଇ ଅପ୍ରସ୍ତୁତ ହୁଏ,
ମାତ୍ର ତାହା ମୁହୂର୍ତ୍ତକ, ପରକ୍ଷଣେ ପୁନଶ୍ଚ ସେ ଅକ୍ଷମତା, ଅନ୍ୟମନସ୍କତା ।

ତମ ସଙ୍ଗେ ଆଉ ଛଳନା ମୁଁ କରିବିନି ବୋଲି,
ନିଜ ପରେ ଅଭିମାନେ ଯାଉଥିଲି ଉଠି,
ତମେ କିନ୍ତୁ ହାତ ମୋର ଭିଡ଼ି ଧରି ଅଟକାଇ ଦେଇ,
ଓଠେ ତମ ମିଠା ହସ, "ମୋ ପାଖେ ବସିବା
ଲାଗି ତୋର ଯଦି ଅନୁରାଗ ଏତେ,
ତେବେ ତୋର ଅନ୍ୟମନସ୍କତା ବେଶୀ ଦିନ ସ୍ଥାୟୀ ନୁହେଁ,
ଝଡ଼ ତା'ର ନାଚୁଥିବ, ଅଥଚ ତୁ ରହିଥିବୁ ଶାନ୍ତ, ସମାହିତ ।"

ତୁମର ମଧୁର ଏଇ ନିର୍ଦ୍ଦେଶ କି ଏଡ଼ି ହୁଏ ? ଚୁପ୍‌ଚାପ ବସିଛି ମୁଁ,
ତମ ପାଦ ପାଖେ ତେଣୁ,

ତୁମର ତନ୍ମୟ ତତ୍ତ୍ୱ, ଆନନ୍ଦର ବିଶ୍ଳେଷଣ,
ଶୁଣୁଛି ମୁଁ ପ୍ରଚାରେ ଯା' ଓଠେ ତବ ବେଣୁ।

୯୦

ଭାବିବାକୁ ଯାଇ ପ୍ରଭୋ ! ତମ କଥା, ଅବାନ୍ତର
କେତେ କଥା ଆସୁଛି ମନକୁ,
ତେବେ କ'ଣ ସତ୍ୟ ନୁହେଁ ତୁମ ପ୍ରତି ଅନୁରାଗ ମୋର ?

ଚିନ୍ତାରେ ମୋ ଯେତେ ଗ୍ଳାନି ଆସୁ ପଛେ, ତୁମକୁ
ମୁଁ ମନ ତଳେ ଧରି ରଖିବାକୁ
ସତତ ପ୍ରୟାସ କରେ, ସେଇ ବ୍ୟାକୁଳତା
ମୋର ନଇବେଦ୍ୟ ଚରଣେ ତମର।

ତମକୁ ମୁଁ ଭଲପାଏ, ସତରେ ମୁଁ ଭଲପାଏ, ନାନାଦି ମୋ ଦୁର୍ବଳତା ସତ୍ତ୍ୱେ,
ଯେତେବେଳେ ଅକ୍ଷମ ମୁଁ, କରି ବସେ କିଛି ଗୋଟେ ଭୁଲ,
ତମ ପାଖେ କେଭେଁ ଗୋପନ ନ କରେ, ମୋର ନିଃସହାୟତାକୁ
ବିଦ୍ରୂପ ନ କରି ତମେ ଆଦରେ ଆଉଁଶି ଦେଇ କହିଥାଅ, "କିଛି ତ ହୋଇନି।"
ଏତେ ବଡ଼ ଭରସା ମୁଁ କାହାଠାରୁ ଲଭିବି ବା ଆଉ ?
ସେଥିଲାଗି ଭାଙ୍ଗି ନ ପଡୁଛି ପ୍ରଭୋ, ଅଧିକନ୍ତୁ ମୋ ଦୃଷ୍ଟିର ଆଲୋକ ଉଜ୍ଜ୍ୱଳ,
ମୋର ସବୁ ଅକ୍ଷମତା, ଦୁର୍ବଳତା ତେଣୁ, ମନେହୁଏ ଅକିଞ୍ଚିତକର।

୯୧

ସଂପଦ, ବିପଦ ଦୁଇ ଶବ୍ଦ ମୋର ଅଜ୍ଞତାର ସୃଷ୍ଟି,
'ବିପଦଭଞ୍ଜନ ପ୍ରଭୋ' ତୁମକୁ ଏ ସଂବୋଧନେ ତୁମରେ ମୁଁ ଛୋଟ କରିଥାଏ,
ବିପଦ କି ଦିଅ ତୁମେ ? ବିପଦ ମୋ କରିବ ଭଞ୍ଜନ,
ସଂପଦ କି ଦିଅ କେବେ, ସେଥିଲାଗି ତୁମର କି କରିବି ତାରିଫ,
ସବୁ ମୋର ନିର୍ବୋଧତା, ଇଛା ମୋର ଯେଣୁ ତମ
ଇଛା ସାଥେ ଏକୀଭୂତ ନୁହେଁ,
ତେଣୁ ଏ ଚାଞ୍ଚଲ୍ୟ ମୋର, ସଂପଦ, ବିପଦ ଦୁଇ

ମିଥ୍ୟାକୁ ମୁଁ ସତ୍ୟ ମନେକରି
ତୁମଠୁ ଦୂରେଇ ରହେ, ଅଥଚ ତୁମକୁ ଲୋଡ଼େ,
ଅଯଥା ଏ ଅହଙ୍କାର ମୋର,
ତେଣୁ ମୋ ବ୍ୟସ୍ତତା ଆଉ ବ୍ୟାକୁଳତା ସତ୍ତ୍ୱେ,
ତୁମକୁ କି କରିପାରେ କେବେ ଆପଣାର ?

୯୨

ତୀର୍ଥାଟନ ଲାଗି ଯେବେ ଉଦ୍ୟତ ମୁଁ ହୁଏ,
ତେବେ ତମେ ସାମ୍ନାରେ ମୋ ଠିଆ ହୋଇଯାଅ,
ପ୍ରଶ୍ନ କର, "କୁଆଡ଼େ ତୁ ବାହାରିଛୁ, ମୋତେ ଏଠି ଛାଡ଼ି ଦେଇ ଏକା ?

ତୋର ଏଇ କୁଟୀରରେ ମିଞ୍ଜିମିଞ୍ଜି ଜଳୁଥିବା ପ୍ରଦୀପ ଆଲୋକେ
ରହିଛେ ତ ବେଶ୍ ସୁଖେ, କେଉଁ ସୁଖ ଲାଗି ପୁଣି, କେଉଁ ତୀର୍ଥେ ଯିବୁ ?

ମୋତେ ଦେଖି ନିରୁତ୍ତର ପୁନର୍ବାର କହ ତୁମେ,
"ମୋର ନାମେ ମଣିଷର ଐଶ୍ୱର୍ଯ୍ୟ ଘଟା
ଦେଖିବାରେ ଲାଭ କ'ଣ ? ଚଞ୍ଚଳ ମନକୁ ନେଇ
ଅଧିକ ଚାଞ୍ଚଲ୍ୟ ଯଦି ପ୍ରୟୋଜନ ତୋର,
ତୀର୍ଥାଟନେ ଯାଇ ପାରୁ, ଅଶାନ୍ତି ଓ ଅସ୍ଥିରତା ସଂଗ୍ରହ ତୁ କରି
ଲେଉଟିବୁ, ଯେବେ, ତେବେ ଦେଖିବୁ ତୁ,
ମୁଁ ରହିଛି ଏଠି ଖୁବ୍ ଆରାମରେ, ଠିକ୍ ଆଗ ପରି ।"
ତୀର୍ଥାଟନ କରିବାର ବଳବତୀ ଇଚ୍ଛା ତେଣୁ ମୋର ଇଚ୍ଛାରେ ହିଁ ରହେ ।

୯୩

ତମେ ଯଦି ପ୍ରିୟତମ ଏତେ ମୋ ନିଜର,
ମୁଁ କିପରି ଭୁଲି ଯାଇ ନିବିଡ଼ତା ଆମ ସଂପର୍କର,
ନିଶ୍ଚିନ୍ତରେ ରହିପାରେ ପଦ୍ମପତ୍ରେ ଜଳ ସମ ସଂବନ୍ଧର ସାଥେ ?

ସବୁଠୁ ଆଶ୍ଚର୍ଯ୍ୟ ଲାଗେ ତମେ ମୋର ସବୁ ଭୁଲ ବୁଝୁଥିବା ସତ୍ତ୍ୱେ
ପ୍ରୟାସ କରିନ କେବେ ଟାଣି ନେବାଲାଗି ମୋତେ ସମୀପେ ତମର

ମୋ ଇଚ୍ଛାର ବିରୁଦ୍ଧରେ, ତୁଳନା ବା କାହିଁ ତମ ଧୈର୍ଯ୍ୟ ଆଉ ତମ ଅପେକ୍ଷାର,
ଚାହିଁଥାଅ ପଥ ମୋର, ଅପଲକ ନେତ୍ରେ,
ତମ ପାଶେ ଫେରିବାର ଆପଣା ଇଚ୍ଛାରେ ।

ମୁଁ ଯେବେ ଲେଉଟେ, ତେବେ ଥରୁଥାଏ ଛାତି ମୋର,
ମନ ତଳେ କେତେ ଭୟ, କେତେ ନ ଆଶଙ୍କା,
ଅଥଚ ଓଠରେ ତବ ଅକପଟ ହସ, ଆଉ ନୟନରେ ଭରା ଅନୁରାଗ,
କୈଫିୟତ ନ ମାଗି ମୋର ଭୁଲ୍ ଲାଗି, କହିଥାଅ ଚୁପ୍‌ଚୁପ୍ ଆଖିର ଲୁହରେ,
"ଜାଣିଥିଲି ନିଶ୍ଚୟ ଆସିବୁ ଫେରି ନିକଟେ ମୋ,
ମୋତେ ଛାଡ଼ି ରହି କେବେ ପାରିବୁନି ଦୂରେ ।"

୯୪

କୌଣସି ମୁହୂର୍ତ୍ତ କେବେ ବାଦ୍ ଯାଏ, ତୁମେ ଯେବେ ମୋ କଥା ନ ଭାବ
ନିଖିଳର ଅନନ୍ତ ଦାୟିତ୍ୱ ସତ୍ତ୍ୱେ, ଅଥଚ ମୁଁ ତମ କଥା ଭାବେନି ତ ଥରେ,
ଅକ୍ଷମତା ଲାଗି ମୋର କୈଫୟତ ମୁଁ ଦିଏ ଯେବେ-
ଅସଂଖ୍ୟ ଜଞ୍ଜାଳ ମଧ୍ୟେ ତମକୁ ସ୍ମରିବା ଲାଗି ସମୟ ମୋ କାହିଁ ?
ବେପରୱା ଉତ୍ତରେ ମୋ, ତୁମେ କିନ୍ତୁ ହସି ଦିଅ,
"ଆମ ମଧ୍ୟୁ କେହି ଜଣେ ଆନ ଲାଗି ଭାବିଲେ ହିଁ ହେଲା ।"

୯୫

ତୁମର ମୋହର ଯେଉଁ ସମ୍ପର୍କର ଘନିଷ୍ଠତା ଅବ୍ୟକ୍ତ ତା' ରହୁ,
ଏ କଥା ବୁଝିବା ସତ୍ତ୍ୱେ ପ୍ରଗଲଭ୍ ମୁଁ ହୁଏ,
ସେଥିଲାଗି କେତେ ତୁମେ ଦୁଃଖ ପାଉଥିବ,
ଦୃଶ୍ୟ, ସ୍ପର୍ଶ, ଧ୍ୱନି ମଧ୍ୟେ ତୁମକୁ ଲଭିବା ଲାଗି ପ୍ରୟାସ ମୋହର,
କେତେ ହାସ୍ୟାସ୍ପଦ ସତେ, ସେଥିଲାଗି ଆମ ମଧ୍ୟେ
ବ୍ୟବଧାନ ରହେ ଅବ୍ୟାହତ ।

ଏଇ ସବୁ ଜ୍ଞାତସାର ତ୍ରୁଟି ଆଉ ଦୁର୍ବଳତା,
ଅତିକ୍ରମ କରିବାର ବ୍ୟାକୁଳତା ମୋର

କି ଲାଗି ବା ସାର୍ଥକ ନ ହୁଏ ? ଇତସ୍ତତଃ ନ ହୋଇ ମୁଁ,
କାନ୍ଦି ଯଦି ଧରନ୍ତି ତୁମକୁ
ବାକି କି ରହନ୍ତା କିଛି, ଅଥଚ ନିଜର କହି, ତୁମଠାରୁ ରହୁଛି ଦୂରେ ।

ନିଃସଂଶୟେ ନିଜର ଯେ ବୁଝି ତାକୁ ସମୀପେ ତା' ପାରେ ନାହିଁ ଯାଇ,
ଏହାଠାରୁ ଅଧିକ ବା ଦୁଃଖ କ'ଣ ହୋଇପାରେ, ଏ ବ୍ୟଥାର ଅବସାନ କାହିଁ ?

୯୬

ଏତେ ଭାବାବେଗ ମୋର ତମ ଲାଗି, ଦେଖେ କେବେ କୁସୁମେ ତମକୁ ?
ଦେଖେ କେବେ ଯମୁନାର କୂଳେ ଭ୍ରମିବାର ? ଗୋଧନ ଚରାଇବାର ସବୁଜ ପ୍ରାନ୍ତରେ ?
ଶୁଣେ କେବେ ବୃକ୍ଷର ଡାଳରେ ବସି ବଜାଉଛ ବଂଶୀ ?
କଦମ୍ବର ତଳେ କେବେ ଦେଖେ ଶ୍ରୀମତୀ ଓ ତମେ
ଠିଆ ହୋଇ ରହିଛ ଏକତ୍ର ?

ଅଥଚ ଦେଖୁଛି ସଦା ଦିଗେ ଦିଗେ ଅଭାବ ଓ ଯନ୍ତ୍ରଣାର
ବିଭତ୍ସ ଚିତ୍ରକୁ,
ପୁତ୍ର ମୋର ବାଧ୍ୟ ନୁହେଁ, ସ୍ୱାମୀ ସ୍ନେହେ ନାହିଁ ଆଉ ଆଗର ସ୍ନିଗ୍ଧତା,
ବନ୍ଧୁମାନେ ସ୍ୱାର୍ଥପର, ପ୍ରତିବେଶୀମାନେ ମୋର ପରଶ୍ରୀକାତର,
ତୁମପାଇଁ ଏସବୁ ଦୈନ୍ୟକୁ କିନ୍ତୁ ପାରେ ନାହିଁ ଉପେକ୍ଷା ମୁଁ କରି,
ଅଧିକନ୍ତୁ ଏମାନଙ୍କ ପ୍ରଭାବରେ ତମେ କ୍ରମେ ମ୍ଳାନ ହୁଅ, ତୁମର ଶ୍ରେଷ୍ଠତ୍ୱ
ଅକ୍ଷମ ମୁଁ ଖର୍ବ କରିଦିଏ, ନିକିତିରେ ତଉଲି ମୁଁ ହରାଏ ତୁମକୁ ।
ଯେଣୁ ମୋର, ତମ ପ୍ରେମେ ଅଧିକାର ନେଇ,
ଆସ୍ଫାଳନ କରିବାର ଅର୍ଥ କିଛି ହୁଏ ?

୯୭

ବିବିଧ ଜଞ୍ଜାଳେ କ୍ଷିପ୍ତ ଏ ମନକୁ ନେଇ ଯେବେ
ମୁଁ ତୁମକୁ ଧ୍ୟାନ କରି ବସେ,
ତୁମେ କି ଧ୍ୟାନରେ ଆସ ପରିପୂର୍ଣ୍ଣଭାବେ ?

ଜଞ୍ଜାଳମାନେ ତ ଆସି କରିଥା'ନ୍ତି ଭିଡ଼,
ସ୍ମୃତି ତବ ଅକିଞ୍ଚିତକର, ସେମାନଙ୍କ ପ୍ରଭୁତ୍ୱରେ ହତାଶ ମୁଁ ହୋଇ
ହତୋତ୍ସାହେ ଭାଙ୍ଗି ପଡ଼େ ଯେବେ, ତମେ ତେବେ କହିଥାଅ
"ଏତେ ଟିକେ ହେଲେ ବି ତ ମୁଁ ତୋହର ମନରେ ରହିଛି,
ବ୍ୟସ୍ତ କେବେ ହେବୁ ନାହିଁ, ଅନୁଭବ କରିବୁ କ୍ରମଶଃ
ଯେ ଉଦ୍ଧତ କାମନା ସବୁ ତୋ ଚିନ୍ତାରେ କରିଛନ୍ତି ଶ୍ରେଷ୍ଠତ୍ୱ ଜାହିର
ନିଷ୍ପ୍ରଭ ହୁଅନ୍ତି କ୍ରମେ, ମୋ ଲାଗି ତୋ ଆକୁଳତା ପାଶେ
ସେମାନଙ୍କ ସ୍ଥାୟୀତ୍ୱ ବା କାହିଁ ?
ବିନ୍ଦୁଟିଏ ହୋଇ ଏବେ ରହିଛି ମୁଁ ତୋର ମନତଳେ,
ସିନ୍ଧୁ ହୋଇ ବ୍ୟାପିଯିବି ଦିନେ, ମୁଁ ତୋହର ସମଗ୍ର ସତ୍ତାରେ ।"

୯୮

ପୃଥିବୀର ଯେତେ ଧ୍ୱନି, ଯେତେ କୋଳାହଳ,
ସେମାନଙ୍କ ସକଳ ପ୍ରୟାସ ସତ୍ତ୍ୱେ ଯେବେ ହୁଅନ୍ତି ବିଫଳ
ସଙ୍ଗ ମୋତେ ଦେବା ଲାଗି, ତୁମେ ତେବେ ଆସ
ନିଃସଙ୍ଗତା ଦୁଃଖୁଁ ମୋତେ ମୁକ୍ତି ଦେବା ଲାଗି, ତୁମରି ନିଃଶ୍ୱାସ
ଅନୁଭବେ ତେବେ ମୋର କପାଳେ, କପୋଳେ,
ବିହ୍ୱଳ ମୁଁ ଆଖି ମୁଦେ ତୁମ ଆଲିଙ୍ଗନେ ।

ନିବିଡ଼ ଏ ଅନୁଭୂତି ସତ୍ତ୍ୱେ ତୁମ ସ୍ପର୍ଶ ସଂପର୍କରେ
ତଥାପି କି ନିଃସଂଶୟ ହୁଏ ?
ଆତ୍ମ ସମର୍ପଣ ଦୃଢ଼ ମନୋବୃତ୍ତି ପରକ୍ଷଣେ ଯେବେ ମୋର ହୁଏ ବିଚଳିତ,
ତୁମ ସ୍ମୃତି, ତୁମ ସ୍ପର୍ଶ ସମ୍ପର୍କରେ, ସବୁ ଆନନ୍ଦ ମୋ କ୍ଷଣେ ହୁଏ ଅନ୍ତର୍ହିତ,
ଯେଉଁ ଧ୍ୱନି, ଯେଉଁ କୋଳାହଳ କରିଛନ୍ତି ବାରମ୍ବାର ପ୍ରତାରିତ ମୋତେ,
ସେମାନେ ହୁଅନ୍ତି ମନେ ଖୁବ୍ ଆପଣାର ।

ମୋର ଏହି ବିକ୍ଷିପ୍ତତା କିନ୍ତୁ ତମ ପାଇଁ ନୂଆ ନୁହେଁ କିଛି,
ତେଣୁ ତୁମେ ହସୁଥାଅ, କରୁଥାଅ ଅପେକ୍ଷା ମୋହର
କେତେବେଳେ ଲେଉଟିବି ଆଖି ଲୁହେ ଭାସି,
ତୁମ ପଦ ପ୍ରାନ୍ତେ ପୁନର୍ବାର ।

୯୯

ସବୁ ଅସ୍ଥିରତା ମଧ୍ୟେ ତୁମେ ସ୍ଥିର, ତୁମେ ଅବିଚଳ,
ସେଥିଲାଗି ପ୍ରଭୁ ତୁମେ, ସେଥିଲାଗି ତୁମେ ଦୟାମୟ,
ଆମ ବ୍ୟସ୍ତତାକୁ ତେଣୁ ସାନ୍ତ୍ୱନାରେ ଶାନ୍ତ କର, ନିରର୍ଥକ ଅନେକ ଅଶ୍ରୁକୁ
ପୋଛି ଦିଅ କରୁଣାର ହସ୍ତେ, ହେ ଶାନ୍ତ, ହେ ଅନାସକ୍ତ, ତୁମରେ ପ୍ରଣାମ।

ତୁମକୁ ନିବିଡ଼ ଭାବେ ବୁଝିବା ସତ୍ତ୍ୱେ ବି, ମୁଁ କାହିଁକି ଏତେ ଇତସ୍ତତଃ ?
ବୁଝିଛି ତୁମରେ ଯେଣୁ ବୁଦ୍ଧି ମାଧ୍ୟମରେ, ନିଜ ପାଦେ ଠିଆ ହୋଇ ରହି
ତୁମରେ କରିଛି ଚେଷ୍ଟା ଭଲ ପାଇବାକୁ,
ପ୍ରଜ୍ଞାର ସୋପାନେ ଚଢ଼ି ପ୍ରେମ ରାଜ୍ୟେ ଯିବାର ପ୍ରୟାସ
ସତତ ବିଫଳ ତେଣୁ, ଆତ୍ମସମର୍ପଣ ଭୁଲେ ଆତ୍ମମ୍ଭରିତାରେ।

ଆବେଗେ ଓ ଅନୁରାଗେ, ଆତ୍ମ ବିସ୍ମୃତିରେ ରହି ବୁଝିପାରେ ଯଦି ମୁଁ ତୁମକୁ,
ଯେ କୌଣସି ବିପର୍ଯ୍ୟୟେ ଦେଖିବି ମୁଁ, ହସ ହସ ମୁହେଁ, ତୁମେ ବଜାଉଛ ବଂଶୀ।

୧୦୦

କେତେ ବିଚ୍ଛେଦର ଦୁଃଖ ନ ଆସିଛି ଏହି ଜୀବନରେ
ମନେ ତ ହୋଇଛି ଅବା ସେ ଦୁଃଖର ଅବସାନ ନାହିଁ,
ସମୟ କରିଛି କିନ୍ତୁ ମ୍ଲାନ ସବୁ, ଦୁଃଖ ସବୁ ଭୀଷଣ ଲଜାରେ
ଆବୋରି ଆପଣା ମୁହଁ ଲୁଚିଛନ୍ତି, ଶୁଣିଛନ୍ତି ସମୟର ବିଦ୍ରୂପ କେବଳ।

ମାତ୍ର ତୁମ ବିଚ୍ଛେଦର ଅବସାନ କାହିଁ ? ସମୟର କ୍ରମ ପ୍ରବାହରେ
ସେ ବିଚ୍ଛେଦ ଦୁଃଖ ହୁଏ ତୀବ୍ରୁ ତୀବ୍ରତର,
ତୁମର ବିରହ ଦାହେ ମୋର ଅସ୍ଥିରତା କ୍ରମେ ବଢ଼ି ବଢ଼ିଯାଏ,
ସମୟ ଲୁଚାଏ ମୁହଁ ସରମରେ, ତୁମର ନୂତନ ନାମ ଦିଏ ତେଣୁ, 'ସମୟମୋହନ'।
ତୁମର ବିରହ ରହୁ ଅବିଚ୍ଛିନ୍ନ; ଅବ୍ୟାହତ, ମୋର ମନତଳେ;
ତୁମର ଅନୁପସ୍ଥିତି, ତୁମର ସାନ୍ନିଧ୍ୟ ସୁଖ, ଦେଇ ମୋତେ ପ୍ରତି ମୁହୂର୍ତ୍ତରେ।

୧୦୧

ତୁମକୁ ମୁଁ ଭଲ ପାଏ ଯଦି, ଏତେ ଏକୁଟିଆ ମୋତେ ଲାଗୁଛି କି ଲାଗି ?
ଅନୁଭବ କରୁଥାନ୍ତି ଯଦି ପ୍ରତିକ୍ଷଣେ ମୁଁ ତୁମରେ,
ତେବେ କ'ଣ ଅନ୍ୟମାନଙ୍କୁ ମୁଁ
ଲୋଡୁଥା'ନ୍ତି ନିଃସଙ୍ଗତା ଦୁଃଖେ ସଦା ଜର୍ଜରିତ, ଶୂନ୍ୟତାର ଯନ୍ତ୍ରଣାକୁ ମୋର,
କିପରି ବା କରିବେ ଲାଘବ ?

ସେମାନଙ୍କ ସଙ୍ଗ ଯଦି ନିଛାଟିଆ ଭାବକୁ ମୋ
ଦୂର କରି ପାରୁଥାନ୍ତା, ତେବେ ମୁଁ ତମକୁ
କି ଲାଗି ସ୍ମରନ୍ତି ଆଉ ? ସେମାନଙ୍କ ଅକ୍ଷମତା ବୁଝିବା ସତ୍ତ୍ୱେ ବି
ସଜାଇ ରଖେ ମୁଁ ସ୍ଥାନ ସେମାନଙ୍କ ପାଇଁ,
ଅଖଣ୍ଡ କ୍ଷମତା ତବ ଅନୁଭବି ମଧ୍ୟ
ସ୍ୱାଗତ ଜଣାଏ ଆଗ ସେମାନଙ୍କୁ, ରହିଯାଅ ତୁମେ ପଛେ,
ତୁମ ପାଇଁ ପ୍ରେମର ମୋ ଏଇ ତ ନମୁନା ।
ତୁମେ କିନ୍ତୁ ପଛେ ଥାଇ ହସୁଥାଅ ଦିବ୍ୟହସ,
ଫେରି ଦେଖ, ସେ ହସରେ ମୋପାଇଁ କି କେତେ ଆଶ୍ୱାସନା ।

୧୦୨

ତୁମକୁ ମୁଁ ଠିକ୍ ଠିକ୍ ଭଲପାଇ ପାରୁଥା'ନ୍ତି, ଭୟ ମଧ୍ୟ କରୁଥା'ନ୍ତି ଯଦି,
ତେବେ ମୋର ଅନ୍ୟ ପ୍ରତି ପ୍ରୀତି ଆଉ ଭୟ କ'ଣ ଥାଆନ୍ତା କି କେବେ,
ଅଯଥା ଉଦ୍‌ବେଗ ଆଉ ଆତଙ୍କରେ,
ବ୍ୟର୍ଥ କ'ଣ ହେଉଥା'ନ୍ତା ସମୟ ମୋହର ?
ମୋ ପୁରୁଷାକାର ପରେ ତୁମେ ପାଦ ରଖ,
ତୁମ ପ୍ରୀତି ଲାଗି ଲୋଡ଼େ କରୁଣା ତୁମର ।

୧୦୩

ଜୀବନ ଜଞ୍ଜାଳେ ଯେବେ ଶ୍ରାନ୍ତ ଆଉ କ୍ଲାନ୍ତ ହୋଇପଡ଼େ,
ନିରୁପାୟେ ଲୋଡ଼େ ତେବେ ମୁଁ ତୁମର ସାନ୍ନିଧ୍ୟ ଟିକିଏ,

ପ୍ରସ୍ତୁତ ମୁଁ ହୋଇଥାଏ ମନେ ମନେ କରିବାକୁ ତୁମେ ପାଖେ ଅଳି
ଏଇ ସବୁ ଯନ୍ତ୍ରଣାରୁ ମୁକ୍ତିଦେବା ଲାଗି, ଅଥଚ ତୁମରି ପାଖେ ପହଞ୍ଚିବା ପରେ
ସବୁ କିଛି ଭୁଲିଯାଏ, ଆମେ ବସୁ ମୁହାଁମୁହିଁ, ଆଖି ଅପଲକ,
ଓଠରେ କାହାରି ନାହିଁ କଥା କିଛି, ତୁମେ ଚୁପ୍, ମୁଁ ମଧ୍ୟ ନିଶ୍ଚୁପ,
ସେତେବେଳେ ମନେହୁଏ, ଭାଷା ନୁହେଁ, ମୌନତା ହିଁ
ଭାବ ବିନିମୟ ଲାଗି କେବଳ ମାଧ୍ୟମ,
ଅଙ୍ଗେ ଅଙ୍ଗେ ମୋର ସେ କି ଶିହରଣ,
ମନ ତଳେ ମୋର ସେ କି ଉଦ୍ଦାମ ତରଙ୍ଗ;
ଆତ୍ମବିସ୍ମୃତ ମୁଁ ହୋଇ ଏହିପରି ବହୁ କ୍ଷଣ ବସିବା ଉତ୍ତାରେ,
ସଂବିତ୍ ମୋ ଫେରିପାଇ ଦେଖେ, ତୁମେ ନାହଁ ନିକଟରେ ମୋର,
ଅଥଚ ତୁମର ସେଇ ସ୍ପର୍ଶ ସୁଖ ଅନିର୍ବଚନୀୟ ସେଇ
ଗନ୍ଧ ଆଉ ଦେଇଥିବା ଅନେକ ଅନେକ ଆନନ୍ଦ,
ଘେରି ମୋତେ ରହିଛନ୍ତି, ହତ୍‌ବାକ୍ ଚାହିଁ ଦେଖେ ଆଶ୍ଚର୍ଯ୍ୟ ଆଖିରେ,
ଶାନ୍ତି ଆଉ କ୍ଳାନ୍ତିମାନେ ଫୁଲ ହୋଇ ଫୁଟିଛନ୍ତି ମୋର ଅଙ୍ଗନରେ ।

୧୦୪

କେତେ ନ ଗାଉଛ ଗୀତ, ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ,
ଅଥଚ ମୁଁ କେବେ ତାହା ଶୁଣିବାକୁ ଚେଷ୍ଟା କରୁ ନାହିଁ,
ସେଥିଲାଗି ତୁମେ କ'ଣ ମନେ କେବେ ପାଉନାହଁ ଦୁଃଖ ?
ଦୁଃଖ ପାଉଥିଲେ କ'ଣ ଅବ୍ୟାହତ ରଖିଥା'ନ୍ତ ସଙ୍ଗୀତ ତୁମର ?
ମୋ ଉପେକ୍ଷା ଏତେ ଟିକେ ପ୍ରତିକ୍ରିୟା ତୁମ ମନେ ସୃଷ୍ଟି କରି ନାହିଁ,
ମୋ ଲାଗି ଦରଦ ତୁମ ସତରେ ଆଶ୍ଚର୍ଯ୍ୟ ।

ତୁମେ ତ ବୁଝିଛ ଠିକ୍, ମୁଁ ଯେତେ ଶୁଣୁଛି ଗୀତ
ଚାରିପାଖେ ଅଜସ୍ର କଣ୍ଠରୁ
ସେ ସବୁର ଅବସାନ ହେବ ଦିନେ, ସେତେବେଳେ ମୋତେ
ଶୂନ୍ୟତାରୁ ମୁକ୍ତିଦେବାପାଇଁ
ତୁମର ଗୀତର ଗତି ଅବିଶ୍ରାନ୍ତ, କଣ୍ଠରେ ତୁମର ତେଣୁ ଏତେ ବିହ୍ୱଳତା ।

୧୦୫

ତୁମରି ପାଇଁକି ଯଦି ଠିକ୍ ଠିକ୍ ପାରୁଥାନ୍ତି କାନ୍ଦି,
ସାରା ଜୀବନଟା, କ'ଣ ବିତୁଥା'ନ୍ତା ହାହାକାରେ, ନିଷ୍ଫଳ ଅଶ୍ରୁରେ,
ସବୁଠୁ ଆଶ୍ଚର୍ଯ୍ୟ ଲାଗେ, ଯେଉଁମାନଙ୍କର ଲାଗି ମୋ ଆଖିରେ ଶ୍ରାବଣର ବନ୍ୟା,
ମୋ ପାଇଁ କି ସେମାନଙ୍କ ଆଖି ଏତେ ଟିକେ ଆର୍ଦ୍ର ତ ହୁଏନା।

ଏ ସବୁ ଜାଣିବା ସତ୍ତ୍ୱେ ମୋର ନିର୍ବୋଧତାର ସମାପ୍ତି ବା କାହିଁ ?
ଅଥଚ ମୋ ନେତ୍ରୁ ଯଦି ବିନ୍ଦୁଟିଏ ଝରୁଥାନ୍ତା ଅଶ୍ରୁ ତୁମ ଲାଗି,
ତେବେ ତୁମେ ଢାଳି ନିଜ ଲୁହ ଅଜସ୍ର ବିନ୍ଦୁରେ
ପୋଛି ଦେଉଥା'ନ୍ତ ଆସି ଆଖି ମୋର ହାତରେ ତୁମରି,
କାନ ପାଖେ କହୁଥା'ନ୍ତ ଚୁପ୍ ଚୁପ୍,
"ହେଇ ପରା, ମୁଁ ତୋହର ପାଖେ ପାଖେ ଅଛି।"
ଭାବୁଛି ମୁଁ ତେଣୁ ତୁମ ଲାଗି ଆଉ କାନ୍ଦିବି ବା କେବେ ?

୧୦୬

ତୁମ ସମ୍ପର୍କରେ ଆଉ କେତେ ଦିନ ପ୍ରଶ୍ନ ମୁଁ କରିବି ?
ତୁମେ ତ ଉତ୍ତର ହୋଇ ରହିଅଛ ଚିରକାଳ,
ଏ ସତ୍ୟକୁ ବୁଝିବି ମୁଁ କେବେ ?
ଦେଖି ଦେଇ ସେ ଉତ୍ତର କେବେ ହେବି ମୌନ ? ମୋର ପ୍ରଗଲ୍‌ଭ ହେବାଟା
କେଉଁଦିନ ଶେଷ ହେବ ? ମୋ ପୁରୁଷାକାର ପରେ କେବେ ତୁମ କୃପା ବରଷିବ ?
ନିଜ ଗୋଡ଼େ ଠିଆ ହେବା ଅହଙ୍କାର ମୋର ଯେଉଁ ଦିନ ଅନ୍ତର୍ହିତ ହେବ।

୧୦୭

ତୁମେ ଯଦି ଫୁଙ୍କିଦିଅ ଥରେ ତମ ମୋହନ ବଂଶୀରେ,
ତେବେ ମୋର ଚାରା କାହିଁ, ଯିବାପାଇଁ ତୁମଠାରୁ ଦୂରେ,
ବଜାଉନ ବଂଶୀ ତୁମେ, ଅଥବା ମୁଁ ପାରୁ ନାହିଁ ଶୁଣି ?
ଉଭୟଟା ଠିକ୍,
ମନେ ତୁମ, ମୋ ଲାଗି ଦରଦ ଥାଇ, କାନ ପାଖେ
ବଜାଇଲେ ବଂଶୀ ମୁଁ କି ଶୁଣି ପାରନ୍ତିନି ?

ଆଉ, ତମ ଲାଗି ବ୍ୟାକୁଳତା ଥିଲେ ମୋର, ଯେତେ ଦୂରୁଁ
ବଜାଇଲେ ବଂଶୀ ଠିକ୍ ପାଉଥାନ୍ତି ଶୁଣି।
ତୁମେ ତେବେ କ'ଣ ଚାହଁ ? ଏହିପରି ଏକ
ମଧ୍ୟବର୍ତ୍ତୀ ଅବସ୍ଥାରେ ରହିଥିବା ଦୁହେଁ,
ଏବଂ ଖୋଜୁଥିବା ପରସ୍ପରେ ପ୍ରତି ମୁହୂର୍ତ୍ତରେ ?

୧୦୮

ଯେଣେ ଇଚ୍ଛା ତେଣେ ଯାଏ, ଯାହା ଇଚ୍ଛା ତାହା କରେ,
ଦିନ ଶେଷେ ତୁମ ପାଖେ ଯଦି ଆସୁଥା'ନ୍ତି ଫେରି
ଏବଂ ଅକପଟେ ଯଦି ପାରୁଥା'ନ୍ତି ଦେଇ,
ମୋର ଭୁଲମାନଙ୍କର ଏକ ନିର୍ଭୁଲ ତାଲିକା,
ମୁହଁ ପୋତି ବସୁଥା'ନ୍ତି ତୁମ ପାଖେ, ତେବେ କ'ଣ ଆସନ୍ତା ଦିନକୁ
ମନ ମୋର ଏତେ ବେଶି ଭାରାକ୍ରାନ୍ତ ରହୁଥା'ନ୍ତ କେବେ ?
-ପୁନର୍ବାର ଭୁଲ୍ ଯେତେ କରିବା ସତ୍ତ୍ୱେ ବି, ଫେରିବି ତ ତୁମ ପାଖେ ପୁଣି।

ମାତ୍ର ଏ ସମ୍ପର୍କ ରଖି ପାରୁ ନାହିଁ ବୋଲି ଆଜି କେଡ଼େ
ନିଃସହାୟ ମୁହିଁ, ନିଃସହାୟତା ମୋ କ୍ରମେ ବଢ଼ି ବଢ଼ି ଯାଏ,
ବଢ଼ି ଯାଏ ଦୂରତ୍ୱ ଆମର, କିଛି ଟିକେ କରିବନି ମୋ ପାଇଁ କି,
ଦୟା ବା କରୁଣା ତୁମେ ଯାହା କୁହ, ମୁଁ ଜାଣେ ମୋ ଲାଗି
ସାମାନ୍ୟ ଏ କରିବାଟା, ତମପାଇଁ ଖୁବ୍ ଗୋଟେ ବଡ଼ କଥା ନୁହେଁ।

୧୦୯

ତୁମକୁ ନ ଦେଖି ମଧ୍ୟ କେତେ କଥା କୁହାଯାଏ,
କେତେ କଥା ଲେଖାଯାଏ ତୁମ ସମ୍ପର୍କରେ,
ତୁମକୁ ତ କେନ୍ଦ୍ରକରି ସଙ୍ଗୀତର ଅଜସ୍ର ଉଚ୍ଛ୍ୱାସ,
ତୁମର କେତେ ନ ଛବି ଅଙ୍କାହୁଏ ଶିଳ୍ପୀର ତୂଳୀରେ,
ମାତ୍ର ସେ ସବୁ କି ମିଥ୍ୟା କେବେ ? ସେ କହିବା ସେ ଲେଖିବା,
ସେ ସଙ୍ଗୀତ, ଶିଳ୍ପୀର ସେ ଛବି, ସବୁ ସତ୍ୟ,
ସ୍ଥିତି ଯେତେ କ୍ଷଣେ ଅତୀନ୍ଦ୍ରିୟ ଭାବ ଜଗତରେ।

୧୧୦

ତୁମେ ମୋତେ ଏତେ ଖୁସି, ଏତେ ତୃପ୍ତି ଯାଚି ଦେବା ସତ୍ତ୍ୱେ
ମୁଁ ଯଦି ସନ୍ତୁଷ୍ଟ ନୁହେଁ, ଶୁଖାଏ ମୋ ମୁହଁ, ତେବେ ତୁମେ,
ବିମୁଖ ହେବାଟା ଖୁବ୍ ସ୍ୱାଭାବିକ୍,
ଅଥଚ ତୁମେ କି ତା' ହୁଅ ? ଦେଖିନି ତ
ତୁମ ମୁହଁପରେ କେବେ ବିରକ୍ତିର ଚିହ୍ନ,
ତୁମର ଧୈର୍ଯ୍ୟକୁ ତେଣୁ ସାବାସ୍ ଦେବାର କଥା, ଯାଦୁକର ଭଳି
ତୁମର ପେଡ଼ିରୁ ପୁଣି ନୂଆ ନୂଆ ଖୁସି ଆଉ
ତୃପ୍ତିମାନ କାଢ଼ି ସମ୍ମୁଖେ ମୋ ରଖ,
ଇଚ୍ଛା ମୁତାବକ ମୁହିଁ ବାଛି ନେବା ଲାଗି,
ଯେ କୌଣସି ଗୋଟେ ନିଶ୍ଚେ ପସନ୍ଦ ତ ହେବ।

ତୁମେ ଠିକ୍ ଜାଣ, ଦୁଃଖ ମୋର, ତୁମର ଆନନ୍ଦ ପାଖେ ପରାଜୟ କରିବ ସ୍ୱୀକାର,
ମାତ୍ର ସେଇ 'ପରାଜୟ' କେବେ ପ୍ରଭୋ ? ସେଇ ସୁଦିନର
ଅପେକ୍ଷାରେ ଉତ୍କଣ୍ଠିତ ରହିଛି ମୁଁ,
ଯେଉଁଦିନ ଆସି ତୁମେ, ନତ ଆନତ ବଦନକୁ ମୋ ଟୋକି ଧରି,
ହସି ହସି ପଚାରିବ, "ହେଲା ଏବେ ?"
ସେ ପ୍ରଶ୍ନର କି ଉତ୍ତର ଦେବି କହ ଅବ୍ୟକ୍ତ ମୁଁ ରହି,
ଧୋଇ ଦେବି ପାଦ ତବ ଉଚ୍ଛ୍ୱସିତ ଆଖିର ଲୁହରେ।

୧୧୧

ଏହା କ'ଣ ସତ, ଆମେ ପରସ୍ପର ଠାରୁ ଅଛୁ ବହୁ ଦୂରେ ?
ଆମେ କେହି ପରସ୍ପରେ ଦେଖି ପାରୁ ନାହୁଁ,
ଶୁଣିପାରୁ ନାହୁଁ ଆମେ ପରସ୍ପର କଥା ?
ପୃଥକ ଅଞ୍ଚଳେ ରହି, ପ୍ରତିକ୍ଷଣେ ପ୍ରତି ମୁହୂର୍ତ୍ତରେ,
ପରସ୍ପରେ ପାଇବାକୁ ରହିଛୁ ଉନ୍ମୁଖ ?
ଏଇ ବ୍ୟବଧାନ ଏଇ ବିଚ୍ଛିନ୍ନତା ସତ ଯଦି, ମୋ ମତରେ ଖୁବ୍ ଶ୍ରେୟସ୍କର,
ଉଦ୍‌ବେଗ, ଉତ୍କଣ୍ଠା ଆଉ ଭାବାବେଗ ପରସ୍ପର ପାଇଁ
ଚିର ଅନିର୍ବାଣ, ଆଖିରୁ ଲୁହ ନ ସରେ, ଅଶ୍ରୁର ବନ୍ୟାରେ

ଆମେ କ'ଣ ଭାସିଯାଇ ଲଭୁ ନାହୁଁ ପରସ୍ପର ସାନ୍ନିଧ୍ୟକୁ ପ୍ରତି ମୁହୂର୍ତ୍ତରେ ?
ଅତଏବ, ପୃଥକ୍ କିପରି ଆମେ ? ସ୍ମରଣରେ ଏଇ ମିଳନର
ଇତି କାହିଁ ? ସ୍ଥାନ, କାଳ, ପାତ୍ର ଶୂନ୍ୟେ ସବୁ ଏକାକାର।

୧୧୨

ତୁମକୁ କି ଭାବୁ ନାହିଁ ? ଭାବୁଅଛି ପ୍ରତିକ୍ଷଣେ,
ମାତ୍ର ସେଇ ଭାବନାରେ ଅନୁରାଗ କାହିଁ ?
ତୁମର ଭାବନା ଯଦି ଆସୁଥାନ୍ତା ଠିକ୍ ଠିକ୍
ମନତଳେ ଅନୁରାଗେ ରସାଣିତ ହୋଇ
ତେବେ ମୋର ଜୀବନର ନିରର୍ଥକ ଅବସାଦ, ମନୋବ୍ୟଥା କ୍ଳାନ୍ତି ହାହାକାର
କେଉଁକାଳୁ ହଜନ୍ତେଣି, ଭାସୁଥାନ୍ତି ପ୍ରତିକ୍ଷଣେ ଆନନ୍ଦ ସାଗରେ।

କିନ୍ତୁ ସେ ଆନନ୍ଦ ମୋର କାହିଁ ? ତେଣୁ ମୁଁ ସ୍ମରଣ କରେ ସେମାନଙ୍କୁ
ଯେଉଁମାନେ ସଂସାରର ସବୁକ୍ଷୟ, କ୍ଷତି ସତ୍ତ୍ୱେ ଡୁବି ରହି ତୁମ ସ୍ମରଣରେ
ନାଚିଛନ୍ତି, ଗାଇଛନ୍ତି, ଆଖି ଲୁହ ଢାଳିଛନ୍ତି ଅବିରଳ ତମରି ପ୍ରେମରେ।
କିନ୍ତୁ ସେ ପରମ ପ୍ରାପ୍ତି ଅନ୍ତରାଳେ ହାହୁତାଶ
ନ ଥିଲା କି ସେମାନଙ୍କ ଆଦ୍ୟ ଅବସ୍ଥାରେ ?

ତମ ପ୍ରୀତି ଘନୀଭୂତ ହୋଇ ମନତଳେ ଆସୁ ନାହିଁ ବୋଲି,
ମୋ ପରି ସେମାନେ କ'ଣ ଛଟପଟ ହୋଇ ନାହାନ୍ତି କି ?
ସେମାନେ କେବଳ କ'ଣ ପୁରୁଷାକାରର ପରେ ଠିଆ ହୋଇ
ଲଭିଛନ୍ତି ରସଘନ ତୁମର ପ୍ରୀତିକୁ ?

ମୋର ମନେହୁଏ ଠିକ ଦ୍ରୌପଦୀଙ୍କ ଭଳି, ଯେତେବେଳେ ଦୁଇ ହାତ ଟୋଳି
ଲୋଡ଼ିଛନ୍ତି କୃପା, ସେତେବେଳେ ତୁମେ ଆସି,
ସେମାନଙ୍କ ପାଖେ ବଜାଇଛ ବଂଶୀ।
ସବୁ ମୋର ଅହମିକା, ଅକ୍ଷମତା ତୁମ ପଦେ କରି ସମର୍ପଣ,
ଭିକ୍ଷା ମାଗେ କୃପା କଣିକାଏ ତେଣୁ, କୃପଣ କି ହେବ ପ୍ରିୟତମ ?

୧୧୩

ପ୍ରତି ମୁହୂର୍ତ୍ତରେ ତୁମେ, ନିଶ୍ଚୟ ଭାବୁଛ ମୋତେ,
ନଚେତ୍ ମୁଁ ପ୍ରତିକ୍ଷଣେ ତୁମ ଭାବନାରେ
କି ଲାଗି ବିହ୍ୱଳ ହୁଏ ? ମୁହାଁମୁହିଁ ଆମର ସାକ୍ଷାତ
ସମ୍ଭବ ନ ହେଉ ପଛେ,
ଭାବ ଜଗତରେ ଏ ଯେଉଁ ସାନ୍ନିଧ୍ୟ ଲାଭ ଯଥେଷ୍ଟ ତା' ନୁହେଁ ?
ମିଳନ ଯଦି କୁହାଯାଏ, ଭୁଲ କିଛି ହେବ ?

୧୧୪

ନିଦ୍ରା ଯିବା ଆଗୁଁ ନିତି ସିଦ୍ଧାନ୍ତ ମୁଁ ନିଏ, ଶଯ୍ୟା ତ୍ୟାଗ ମାତ୍ରେ, ପ୍ରାତେ,
ପ୍ରଥମେ ତୁମରି ନାମ କରିବି ସ୍ମରଣ,
କିନ୍ତୁ ମୁଁ କି ପାରେ କେବେ ? ଆଦ୍ୟ ସେ ଚିନ୍ତାରେ,
ଥାଏ ବେଶ୍ କିଛି ବିଷୟର କଥା,
କ୍ଷତ, କ୍ଷତି,ଲାଭ,ମାନ, ସମ୍ମାନର କେତେ ବିଚିତ୍ର ଅଳନ୍ଧୁ,
ତା'ପରେ ହଠାତ୍ ଯେବେ ମନେ ଆସେ,
ନିଦ୍ରା ଯିବା ଆଗୁଁ ମୋର ଶପଥର ସ୍ମୃତି
ଅପ୍ରସ୍ତୁତ ହୋଇଯାଏ, ସଙ୍ଗେ ସଙ୍ଗେ ବିନା ଅନୁରାଗେ ଏବଂ ସିନା ଭାବାବେଗେ
ଆବୃତ୍ତି ମୁଁ କରିଥାଏ ତୁମ ନାମ, ଚମତ୍କାର ଛଳନା ମୁଁ କରେ ତୁମ ସାଥେ ।

ଏମିତି ଛଳନା କ'ଣ କରିବି ମୁଁ, ତୁମ ସାଥେ, ସାରା ଜୀବନଟା ?
ତଦ୍ୱାରା କି ଠକିବିନି ନିଜେ ମୁଁ ନିଜକୁ ?
ଏପରି କପଟାଚାରେ ତୁମର କି କ୍ଷତି ହେବ ?
ଗ୍ଲାନି, ଦୁଃଖ ଯନ୍ତ୍ରଣାରେ ପ୍ରତିଟି ମୁହୂର୍ତ୍ତେ
ମୁଁ ଜଳିବି ପଳେ ପଳେ, ଅଥଚ ତୁମରି ଦତ୍ତ
ସ୍ନେହ ପ୍ରୀତି, ଅନୁରାଗ ମହତ ଦାନରେ
ଅପମାନ ଦେବି ସିନା, ପରିଣାମେ ଜୀବନରେ ଅନ୍ତିମ ମୁହୂର୍ତ୍ତେ
ତୁମକୁ ନ ଖୋଜି, ଖାଲି ଖୋଜୁଥିବି ସେମାନଙ୍କୁ
ଯେଉଁମାନେ, ସାରା ଜୀବନକୁ ମୋର ରଖିଥିଲେ 'ଆବୋରି ଅନ୍ଧାରେ ।

ପ୍ରିୟ ମୋର ! ଅତି ଦୁଃଖେ, ଅତି ନିଃସହାୟ ଭାବେ, ମୋର ନିର୍ବୋଧତା,
ମୋର ଅକ୍ଷମତା, ଜଣାଇ ତୁମରେ,
ଏତିକି ମିନତି କରେ, ଅହମିକା ପରେ ମୋର ପାଦ ରଖି,
ଆସ ମୋ ଚିନ୍ତାରେ ତୁମେ ପ୍ରତି ମୁହୂର୍ତ୍ତରେ ।

୧୧୫

ମୋର ମନେହୁଏ, ଖୁବ୍ ବେଶୀ କଥା କହି
ତୁମ ସଂବନ୍ଧରେ, ତୁମକୁ ହରାଏ,
ତୁମ ସଂପର୍କରେ ସବୁବେଳେ ପ୍ରଗଲ୍‌ଭ ହେବାଟା,
ଆମ ଦୁହିଁଙ୍କର ମଧ୍ୟେ ବ୍ୟବଧାନ ଆଣେ,
ତୁମ କଥା କହିବାର ଛଳେ, ମୋ ଜ୍ଞାନର ଅହମିକା କରିଥାଏ ବ୍ୟକ୍ତ,
ପରିଣାମେ, ତୁମେ ଗୁହ ଅନ୍ତରାଳେ, ମୁଁ ସଂପୂର୍ଣ୍ଣ ଶୂନ୍ୟ ହୋଇ ଝୁଲେ ମହାକାଶେ ।

ତୁମ ସଂପର୍କରେ ଏତେ ବେଶୀ କଥା କୁହା ହୋଇଅଛି ଏବଂ ହୋଇଅଛି ଲେଖା,
ସେ ସବୁ ଆବୃତ୍ତି କରି ମୋର କି ଲାଭ ବା ହୁଏ ?
ବରଂ ହୁଏ ଭୟଙ୍କର କ୍ଷତି, ତୁମେ ପାଖେ ଥାଇ ମଧ୍ୟେ ଧରା ଦିଅ ନାହିଁ ।

ବୃଥା, ଏ ସବୁ ନ କରି ସମୟର ଅପଚୟେ,
ଖାଲି ଯଦି ଚୁପ୍‌ଚାପ୍ ବସନ୍ତି ଏକାନ୍ତେ,
ଏବଂ ତୁମକୁ ଭାବି, ଫୁଲିଫୁଲି କାନ୍ଦନ୍ତି ନୀରବେ
ତୁମେ କ'ଣ ଲୁଚି ରହି ପାରନ୍ତି କି ?
ପାଖେ ଆସି, ମୋ ଆଖିରୁ ଲୁହ ପୋଛି ଦେଇ
କୁହନ୍ତ, "ତୁ କେବଳ କାନ୍ଦୁଛୁ କି ମୋପାଇଁ କି ?
ତୋ ବିରହେ ମୁଁ ମଧ୍ୟ କାନ୍ଦୁଛି ।"
ଏଇ ଲୁହ ବିନିମୟେ, କେତେ ସୁଖେ
ଆମେ ନ ରହନ୍ତେ ଡୁବି ଅନୁକ୍ଷଣେ, ପରସ୍ପର ମଧ୍ୟେ ।

୧୧୬

ଆମ ଦୁହିଁଙ୍କର ମଧ୍ୟେ ତୃତୀୟର ସ୍ଥିତି ଥିଲେ,
ଆମ ମଧ୍ୟେ ମିଳନଟା କିପରି ସଂଭବ ?

ଅଥଚ ସେ ତୃତୀୟର ସ୍ଥିତି କେବେ ଉପେକ୍ଷା କି କରିହେବ ?
ରହିବେ ସେମାନେ,
ସେମାନଙ୍କ ସ୍ଥିତି ସତ୍ତ୍ୱେ ଆମ ମଧ୍ୟେ ସଂପର୍କଟା ଅବ୍ୟାହତ ରଖିବାକୁ ହେବ।

ସେମାନଙ୍କୁ ରଖିଛି କେ ଆମ ମଧ୍ୟେ ? ତୁମେ ତ ରଖିଛ,
ଏବଂ ରଖିଛ ନିଷ୍ଠେ ଆମ ସଂପର୍କର ନିବିଡ଼ତା ପାଇଁ,
ବ୍ୟବଧାନ ପାଇଁ ନୁହେଁ କେବେ,
ଯଦି ଆମ ବିଚ୍ଛେଦର ସେମାନେ କାରଣ ହୁଅନ୍ତି,
ସେଥିଲାଗି ସଂପୂର୍ଣ୍ଣ ମୁଁ ଦୋଷୀ, ତୁମେ ନୁହଁ, ସେମାନେ ନୁହନ୍ତି।

ମୋ ଭୁଲ୍‌ଟା କେଉଁପରି ମୋତେ ତାହା ବହୁବାର ବୁଝାଇ କହିଛ-
ବସ୍ତୁ ବା ବ୍ୟକ୍ତିରେ ନାହି, ସେ ଭୁଲ ଯାହା ଅଛି ମୋହରି ମନରେ,
କପଟ ଓ ଅସରଳ ମନ, ବିଶ୍ୱାସରେ ବିଭୂଷିତ ନୁହେଁ,
ଅନାସକ୍ତ ନୁହେଁ ମଧ୍ୟ, ତେଣୁ ସେ ତ ମନେହୁଏ ଅନ୍ତରାୟ ଭଳି।
ଅବଶ୍ୟ ଏ କଥା ସତ୍ୟ, ଏକାକାର ହେବା ପରେ ଆମେ, ସେତୁ ଲିଭିଯାଇଥିବ।

୧୧୭

ତୁମକୁ ମୁଁ ମନେକରେ କେତେବେଳେ ? ଯେତେବେଳେ ଦେଖେ,
ସ୍ନେହ, ଶ୍ରଦ୍ଧା ପାଉଥିବା ସ୍ଥାନମାନଙ୍କରୁ ସେଇ ସ୍ରୋତ ଆସୁ ନାହିଁ ଆଉ,
ବୁଲି ପଡ଼େ ସେତେବେଳେ ତମ ଆଡ଼େ ଏବଂ ଦେଖେ ଅଳ୍ପ ଅଳ୍ପ ହସୁଥାଅ ତୁମେ,
ଭୟଙ୍କର ଅପ୍ରସ୍ତୁତ ହୋଇଯାଏ, ତୁମର ସେ ହସ କ'ଣ ମୋ ଲାଗି ବିଦ୍ରୁପ ?

ମୋତେ ନୁହେଁ, କାରଣ ମୁଁ ଲକ୍ଷ୍ୟ କରେ ତମର ଦୃଷ୍ଟିରେ
କେତେ ସ୍ନେହ, କେତେ ଅନୁରାଗ ଝୁନ୍ଦି ହୋଇଥାଏ,
ସବୁଠୁ ଆଶ୍ଚର୍ଯ୍ୟ, ତୁମେ କିଛି କୁହ ନାହିଁ, ଅଥଚ ମୁଁ ଅନୁଭବ କରେ
ପ୍ରାଣଭରା ତମ ନିମନ୍ତ୍ରଣ, ତୁମର ସେ ନିମନ୍ତ୍ରଣ ରକ୍ଷା କରିବାରେ
ସଙ୍କୁଚିତ ହୋଇଥାଏ କିନ୍ତୁ।

ଏ କିପରି କଥା, ମୋର ସ୍ୱାର୍ଥପରତା ଓ ଅସୌଜନ୍ୟ ତମ ମନେ
ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି ନ କଲା କିପରି ?

ବୋଧହୁଏ ସେଥିଲାଗି ତମେ ଭଗବାନ, ଆଉ ମଣିଷ ମୁଁ, ଚେତନାର ସ୍ଥିତି ସତ୍ତ୍ୱେ,
ବହୁ ଭୁଲ୍‌ଭଟକାର ମିଶାମିଶି ଆକୃତି ଗୋଟିଏ।

୧୧୮

ତୁମ ସଂପର୍କରେ, କେତେ ମୁଁ ଚିନ୍ତା ନ କରେ, ତୁମ ସଂବନ୍ଧରେ
ଶାସ୍ତ୍ର କେତେ କରେ ଅଧ୍ୟୟନ, ତମ ମହିମାକୁ ବୁଝିବାପାଇଁକି
ନିର୍ଜନେ କେତେ ନ ଭାବେ, ଏ ସବୁ ସତ୍ତ୍ୱେ ବି
ତମ ପ୍ରତି ଅନୁରାଗ ମୋର, କି ଲାଗି ନ ବିକଶିତ ହୁଏ ?
ଅହମିକା ପରେ ଠିଆ ହୋଇ, ତୁମକୁ ମୋ ବୁଝିବାରେ ଚେଷ୍ଟା
ବୃଥାଯାଏ, ତୁମ ପାଖେ ଆତ୍ମସମର୍ପଣ ବିନା,
ତୁମ ପ୍ରତି ପ୍ରେମ ମୋର ଆସିବ କିପରି ?

ଏଇ ଉପଲବ୍ଧି ସତ୍ତ୍ୱେ, କେବେହେଲେ, ତୁମର କି ହୁଏ ଅନୁଗତ ?
ସେଥିଲାଗି ସଂସାରରେ ସଦା ମୁଁ ବିବ୍ରତ।
ନିଜ ଅକ୍ଷମତା ତେଣୁ ଖୋଲି କହେ ନିକଟେ ତୁମରି,
ଦୁର୍ବଳତା ପରେ ମୋର ପାଦ ରଖି, ଦୟାମୟ, ଥରେ କୃପା କରି।

୧୧୯

ଏ କଥା କି ସତ୍ୟ, ସଂସାର ଜଞ୍ଜାଳ ମଧ୍ୟେ,
ତୁମକୁ ମୁଁ ସ୍ମରେ ନାହିଁ କେବେ,
ସ୍ମରିଥାଏ ଅବସର ସମୟରେ ଖାଲି,
ଅଥବା ଆପଦେ ଯେବେ ଆପଣାକୁ ନିଃସହାୟ ମଣେ,
ଏପରି ସ୍ମରଣ ଯଦି ହୁଏ ମୋର ତୁମ ସଂପର୍କରେ,
ତେବେ ମୋତେ ଧିକ୍, ଧିକ୍ ମୋର ତୁମକୁ ପାଇବା ଭଲ, ଲୋକ ଦେଖାଣିଆ।

ସତ ମୁଁ କହୁଛି ପ୍ରଭୋ ! ଚେଷ୍ଟାକରେ ସବୁବେଳେ, ଜୀବନର ସବୁ ମୁହୂର୍ତ୍ତରେ
ରଖିବି ତୁମକୁ ମନେ, ଜୀବନରେ ସେଇ ମୁହୂର୍ତ୍ତଟା,
କ୍ଳାନ୍ତିକର, ଅବସାଦକର ଅବା ସୁଖକର ଯାହା ହେଉ ପଛେ,
ମନତଳେ ନିତ୍ୟ ତବ ସ୍ମୃତି ପ୍ରୟୋଜନ, ସମ୍ଭବ ତା' ହୁଏ ବା କେଉଁଠି,
ସକଳ ପ୍ରୟାସ ସତ୍ତ୍ୱେ, ତୁମକୁ ହରାଏ କିନ୍ତୁ ବହୁ ମୁହୂର୍ତ୍ତରେ।

ଆନ୍ତରିକ ଇଚ୍ଛା ଅଛି, ଅଥଚ ମୁଁ ପାରୁ ନାହିଁ,
ମୋପାଇଁକି ଗୋଟେ କଥା କରନ୍ତନି ପ୍ରଭୋ,
ତୁମକୁ ମୁଁ ଭୁଲୁଥିବା ମୁହୂର୍ତ୍ତରେ, ନିଜେ ଆସି ଉଭା ହୋଇଯାଇ,
ମୋର ଅକ୍ଷମତା ପରେ ଦିଅନ୍ତନି ଚନ୍ଦନ ପ୍ରଲେପ।

୧୨୦

ଖସି ଖସି ଯାଉଛି ମୋ ଗୋଡ଼, ଅଥଚ ରହିଚ
ତୁମେ ମନତଳେ, ଖସିଗଲା ପାଦ,
ତୁମ ନାମ ନେଇ ସୁଦ୍ଧା ପାରିଲିନି ରୋକି ଆପଣାକୁ,
ତା'ପରେ କି ହା ହୁତାଶ, କି ବିକଳ କାନ୍ଦଣା ସେ ମୋର,
ହସୁଥାଅ ତୁମେ କିନ୍ତୁ, ଯେପରି ବା ହୋଇ ନାହିଁ କିଛି,
ପିଠି ଥାପୁଡ଼ାଇ ମୋର ଚୁପ୍‌ଚାପ୍ କୁହ, "ଏମିତି ତ ହେବ,
ଏ ଦେହଟା ସ୍ୱାଭାବିକ୍, ମାତ୍ର ଏତେ ସବୁ ସତ୍ତ୍ୱେ,
ତୋ ଓଠରେ ନାମ ମୋର ରହେ ଅବ୍ୟାହତ, ତୋ ମୁଠାରେ ମୋର ବସ୍ତ୍ରାଞ୍ଚଳ,
ମୋ ମୁରଲୀ ତେଣୁ, ତୋ ନାମର ଧ୍ୱନିରେ ବିଭୋର।"

୧୨୧

ସବୁବେଳେ, କେଉଁଠି ବା ଧରି ରଖି ପାରୁଛି ତୁମକୁ ମୋର ମନ ତଳେ ?
କିବା କଥା, ସେତିକି ମୁଁ ପାରେ ନାହିଁ,
ମୋ ସମୀପେ ତୁମେ ସଦା ରହିବା ସତ୍ତ୍ୱେ ବି,
ଏତେ ବେଶୀ ସହଯୋଗ ତୁମ ପାଖୁ ପାଇ ମଧ୍ୟ, କେତେ ମୁଁ ଅଥର୍ବ ସତେ,
ଅପେକ୍ଷାର ପରିବର୍ତ୍ତେ, ଉପେକ୍ଷା ଥାଆନ୍ତା ଯଦି ଉଦ୍ଦିଷ୍ଟ ମୋ ଲାଗି,
ଚିନ୍ତା କରି ହୁଏନାହିଁ, କି ହୁଅନ୍ତା ସ୍ଥିତି ମୋର ତେବେ।

ଏତେ ଦୟାମୟ ତମେ, କେତେ ନ ଦରଦୀ ସତେ,
କେ ବୁଝିବ ମନ କଥା ତୁମ ପରି ଆଉ,
ତୁମ ପରି କିଏ ଏତେ ଆପଣାର, ଏଇ ଉପଲବ୍ଧି ପରେ,
ତୁମକୁ ମୁଁ କିପରି ସାଇତି ନ ପାରେ ମନ ତଳେ, ଏଇ ଅକ୍ଷମତା ମୋର
ତୁମେ କି ବୁଝନି ପ୍ରଭୋ ! ନା, ବୁଝି ମଧ୍ୟ, ଅବୁଝା ତୁମେ ହେଉଛ ?

ତୁମେ ବୋଧେ ଚାହଁ, ମୋର ଦୁର୍ବଳତା, ମୋର ଚଞ୍ଚଳତା ମଧ୍ୟେ,
ତୁମ ସଙ୍ଗେ ଘନିଷ୍ଠ ମୁଁ ହୁଏ, ମନ ତଳେ ରହୁଥିବ
କିଛି କ୍ଷଣ, ପର କ୍ଷଣେ ହଜି ଯାଉଥିବ,
ଆବିର୍ଭୂତ ହେଉଥିବ ପୁନର୍ବାର, ଏଇମିତି ଲୁଚକାଳି ଖେଳ ନେଇ
ମନ ମୋର ହେଉ ବୃନ୍ଦାବନ,
ଶ୍ରୀମତୀ ଓ ଗୋପୀମାନେ କୁଞ୍ଜ ପାଖେ ଠିଆ ହୋଇ,
ଅନୁଭବ କରୁଥିବେ ଆମ ରାସେ, ସେମାନଙ୍କ ରାସର କମ୍ପନ।

୧୨୨

ମୋର ସେଇ ଭ୍ରମ ହେବ କେବେ, ମହୋଦଧି ମନେହେବ ଯମୁନାର ଭଳି,
ଶ୍ୟାମଳ ସୈକତବନ୍ତ, ମନେହେବ ଗିରି ଗୋବର୍ଦ୍ଧନ,
ଅନ୍ଧକାରେ ତରୁ ଜଣାଯିବ, ବଂଶୀ ହାତେ କୃଷ୍ଣ ଠିଆ ତ୍ରିଭଙ୍ଗୀ ଠାଣିରେ,
ନଦୀର କଲ୍ଲୋଳେ ଶୁଣିବି ମୁଁ ତାଙ୍କରି ନୂପୁର ଧ୍ୱନି,
ଶ୍ରୀକ୍ଷେତ୍ରର ବଡ଼ ଦାଣ୍ଡେ ଦେଖିବି ମୁଁ, ଶ୍ରୀଚୈତନ୍ୟ ନୃତ୍ୟ କରେ ରଥ ସମ୍ମୁଖରେ,
ଦାସିଆ ବାଉରି ଯାଏ ନାରିକେଳ ହାତେ ଧରି,
ସାଲବେଗ ଗୀତଗାଏ ଭାବରେ ଉନ୍ମାଦ,
ପେଜ ନଳା ପାଖେ, ବନ୍ଧୁ ମହାନ୍ତି ସେ, ନଇଁପଡ଼ି
ଆଞ୍ଜୁଳା ଆଞ୍ଜୁଳା କରି ପେଜ ପିଏ ଭାବର ଅମୃତ।
ବଡ଼ ଦାଣ୍ଡେ, ଛୋଟ ମନ ନେଇ କିନ୍ତୁ କି ଦୃଶ୍ୟ ମୁଁ ଦେଖେ ?
ଦେଖେ, ସ୍ୱାର୍ଥର ଝଗଡ଼ାମାନ ଇତସ୍ତତଃ, ପଶାଖେଳ ପଥ ପାର୍ଶ୍ୱେ,
ରିକ୍ସାରେ ମାଇକ ଗୀତ, ବିଜ୍ଞାପନ ଚଳିତ ଫିଲ୍ମର,
ହିପପୀମାନଙ୍କର ବିଚିତ୍ର ସେ ବେଶ, କୌତୂହଳୀ ଦୃଷ୍ଟି ଅନ୍ୟମାନଙ୍କର,
ଇତ୍ୟାଦି, ଇତ୍ୟାଦି ଏମିତି ଅନେକ ଦୃଶ୍ୟ,
ମୋ ଦୃଷ୍ଟିର ଭ୍ରମ କିନ୍ତୁ ହୁଏ ନାହିଁ କେବେ
ନବଦ୍ୱୀପୁଁ ଆସୁଛନ୍ତି ଭକ୍ତଗଣ, 'ଗମ୍ଭୀରା'ରେ ଶ୍ରୀଚୈତନ୍ୟ ଦର୍ଶନ ପାଇଁକି।

ମୋର ଯେଉଁ ଭ୍ରମ ହୁଏ-ସ୍ୱାମୀ ମୋର, ପୁଅ ମୋର, ବାପ, ମାଆ ମୋର,
ସାଙ୍ଗ, ସାଥୀ, ଘରଦ୍ୱାର ସବୁ ମୋର, ସବୁ କିଛି ମୋର,
ଯଶ, ମାନ, ପ୍ରତିଷ୍ଠା ଓ ଅହଙ୍କାର ସେମାନେ ବି ମୋର,
ଜ୍ଞାନ, ବୁଦ୍ଧି ମୋର- ଏ ଭ୍ରମରେ ପଡ଼ି, ସେ ଭ୍ରମର ମାଧୁର୍ଯ୍ୟ ନ ଆସ୍ୱାଦନ କରେ,

ହେ କରୁଣାମୟ, ସେ ଭ୍ରମରୁ କଣିକାଏ ଦିଅ ମୋତେ, ଭାବରାଜ୍ୟେ ମୁହୂର୍ତ୍ତେ
ମୁଁ ଆସେ ହେଲେ ତୁମ ସଂପର୍କରେ।

୧୨୩

ସକାଳର ସକଳ ମୋ ବିଷଣ୍ଣତା ପୋଛି ଦେବା ଲାଗି,
କେତେକ୍ଷଣ ଅବା ଲାଗିବ ତୁମକୁ,
ଅଥଚ ତୁମକୁ ଆସିବା ଲାଗି ପ୍ରାର୍ଥନା ନ କରି, ସେମାନଙ୍କ ସାନ୍ନିଧ୍ୟ ମୁଁ ଲୋଡ଼େ,
ସ୍ୱାମୀଙ୍କୁ ମୁଁ କହେ, "ଆସ ଆମେ ଗପିବା ଟିକିଏ, ଚାହା ଖାଉ ଖାଉ,"
ପିଲାମାନଙ୍କର ଅର୍ଥହୀନ କୋଳାହଳୁଁ, ମୋ ମନର ଶାନ୍ତି ଖୋଜିଥାଏ,
ରେଡ଼ିଓରେ ଧ୍ୱନି ମଧ୍ୟେ ଖୋଜିଥାଏ ମୋ ମନର ସ୍ଥିରତାକୁ,
ନଚେତ୍ ମୁଁ ବାତାୟନ ଦେଇ, ପ୍ରକୃତିର ଦୃଶ୍ୟ କିଛି ଦେଖେ,
ଗଛରେ ଏକତ୍ର ଦୁଇ ପକ୍ଷୀ, ଆକାଶରେ ମେଘର ପ୍ରସ୍ତୁତି,
ଦିଗ୍‌ବଳୟେ ପୃଥିବୀ ଓ ଆକାଶର ମଧୁର ସଂପର୍କ,
ତଥାପି ନିରାଶ ହୋଇ, ରାଜପଥେ ବିଭିନ୍ନ ଦୃଶ୍ୟରୁ
ମନକୁ ମୋ ଭୁଲାଇବା ଲାଗି, ଉପାଦାନ ଖୋଜେ,
ନିରାଶ ମୁଁ ହୁଏ କିନ୍ତୁ, ତୁମେ ବୋଧେ ହସୁଥାଅ
ଅନ୍ତରାଳେ ମୃଦୁ ମୃଦୁ, ମୋର ପ୍ରତୀକ୍ଷାରେ,
ଅଥଚ ମୁଁ ତୁମ ପାଖେ ଯିବାପାଇଁ, କି ଲାଗି, ବା,
କ୍ଳାନ୍ତି ଆଉ ଅବସାଦ ଅନୁଭବ କରେ ?
ଏ ସବୁ ଅସ୍ୱସ୍ତି ମଧ୍ୟେ ମୋର କିନ୍ତୁ ମନେହୁଏ,
କେହି ଜଣେ ଡାକେ ମୋତେ ବାରମ୍ବାର ମୁରଲୀର ସୁରେ।

୧୨୪

ଇଚ୍ଛା କଲେ, ଯଦି ଗୀତ ଗାଇ ପାରୁଥାନ୍ତି,
ତେବେ ଗୀତ ଗାଇବା ଆଗରୁ, ତୁମର ଶରଣାପନ୍ନ ହେଉଥା'ନ୍ତି ବା କାହିଁକି ?
ଇଚ୍ଛା କଲେ, ଆନନ୍ଦ ଯଦି ମୋର କରଗତ ହେଉଥା'ନ୍ତା,
ତେବେ ଆନନ୍ଦ ପାଇବାକୁ ଆକୁଳ ପ୍ରାର୍ଥନା
କାହିଁକି ବା କରୁଥା'ନ୍ତି ତୁମ ପାଖେ ?,
ଜ୍ଞାନ ଦେଇ ଯଦି ଦେଖି ପାରୁଥା'ନ୍ତି ତୁମକୁ
ତେବେ ଅଶ୍ରୁ ଭିତରେ, ବ୍ୟାକୁଳ ହୋଇ ତୁମକୁ ଖୋଜୁ ଥା'ନ୍ତି କି ମୁଁ ?

ପୁରୁଷାକାର ପରେ ଠିଆ ହୋଇ ଯଦି ଦର୍ଶନ ମିଳୁଥା'ନ୍ତା ତୁମର,
ତେବେ ତୁମ ପାଖେ, ଆତ୍ମସମର୍ପଣର କି ପ୍ରୟୋଜନ ବା ଥା'ନ୍ତା, ?
ହେ ଧ୍ୱନି ! ମୁଁ ଯେ ପ୍ରତିଧ୍ୱନି ମାତ୍ର ।

୧୨୫

ମୋ ମନର ଅସ୍ଥିରତା ତୁମେ କ'ଣ ବୁଝିପାରୁ ନାହଁ ?
ବୁଝି କ'ଣ ପାରୁ ନାହଁ, ତୁମକୁ ପାଇବା ଲାଗି ବ୍ୟାକୁଳତା ଥିଲେ ମଧ୍ୟ ମୋର,
ବିଷୟର ଆକର୍ଷଣୁ ବିଯୁକ୍ତ ମୁଁ ହୋଇ ପାରୁ ନାହିଁ,
ମୋର ଏଇ ଅକ୍ଷମତା ଲାଗି, ତୁମେ ନ ବିରକ୍ତ ହୋଇ
ସହାନୁଭୂତିରେ ମୋତେ ଚାହିଁବନି ଥରେ ?

ସାଧନା ଓ ଯୋଗ ଯେତେ ଯାହା କଲେ ମଧ୍ୟ
ନିର୍ଦ୍ଦିଷ୍ଟ ରହିଛି ସୀମା ମୋର କ୍ଷମତାର,
ସେଇ ସୀମା ପାଖେ ଠିଆ ହୋଇ, ସଜଳ ନୟନେ,
ପ୍ରଭୋ, ତୁମକୁ ମୁଁ ରହିଛି ଅନାଇ,
ତୁମେ ଥରେ ଆସ ଅବତରି ଗୋଲକର ସ୍ୱର୍ଣ୍ଣ ସିଂହାସନୁଁ
ମୋ ନିକଟେ, ହସି ପଦେ କଥା କହ,
ଅକ୍ଷମତା ପରେ ମୋର ତୁମ ସ୍ପର୍ଶ ଦିଅ !

ଦେଖିବ ସେଇ ମୁଁ ନିର୍ବେଦ ଓ ସ୍ଥାଣୁ, କିପରି ସକ୍ରିୟ ହେବି,
ତୁମ ନାମ ଧରି ନାଚିବି, ଗାଇବି, ତାଳି ମାରି ହେବି ମୁଁ ଉନ୍ମାଦ,
ଏପରି ଉନ୍ମାଦ ହେବି ତୁମେ ମଧ୍ୟ ସ୍ଥିର ରହି ପାରିବନି କେବେ,
ହାତ ମୋର ଧରି ତାଳ ଦେଇ ନାଚିବ, ଗାଇବ ତୁମେ,
ମୋ ସାଥିରେ ପାଗଳ ବି ହେବ,
ମୁଁ ଯେପରି ଚେଷ୍ଟା କରେ, ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ
ତୁମକୁ ବୁଝିବା ଲାଗି, ସେଇପରି ତୁମେ ମୋତେ ବୁଝିବାକୁ ଚେଷ୍ଟା କର ଥରେ ।

୧୨୬

ତୁମ ଦତ୍ତ ଏତେ ସୁଖ, ଏତେ ଆନନ୍ଦକୁ ହାତେ ପାଇବା ସତ୍ତ୍ୱେ ବି
ଯେଉଁମାନେ ଅସନ୍ତୁଷ୍ଟ, ଅଭାବବୋଧର ସଦା ହାହାକାର ସେମାନଙ୍କ ମଧ୍ୟେ,

ବିଷଣ୍ଣତା ସେମାନଙ୍କ ଚିର ସହଚର, ସେମାନଙ୍କପାଇଁ କିଛି କରିପାରିବକି ପ୍ରଭୋ !
ବୁଝାଇ ପାରିବ ତୁମେ ସେମାନଙ୍କୁ 'ଆନନ୍ଦେ ସେମାନେ ସଦା ଅଧିଷ୍ଠିତ,
ଦୁଃଖ ଯାହା ସେମାନଙ୍କ ମନର ହିଁ ଭୁଲ।"

ବୁଝାଇ କହିଲେ ମଧ୍ୟ, ସେମାନେ ତ ବୁଝିବେନି କେବେ,
ସଂସାରର ଲାଭ,କ୍ଷତି ପାଇବା ଓ ହରାଇବା ନେଇ ଏତେ ବ୍ୟସ୍ତ ସଦା,
ତୁମ ଦତ୍ତ ଖୁସି ନେଇ, ତୁମକୁ ଭାବିବା ଲାଗି ସେମାନଙ୍କ ବେଳ ଆଉ କାହିଁ ?
କେହି ଯଦି କହେ ତୁମ କଥା, ଅଯାଚିତ ଆନନ୍ଦ ଦାନର କଥା,
ନିର୍ବୋଧଙ୍କ ଭଳି ଖାଲି ଚାହିଁ ରହି, ଅବାକ୍ ହୁଅନ୍ତି।
ପ୍ରଭୋ ! ଏମାନଙ୍କୁ କଣିକାଏ କୃପାଦିଅ, ଥରଟିଏ ସ୍ପର୍ଶ ଦିଅ ତୁମ କରୁଣାର,
ଥରଟିଏ ହସନ୍ତୁ ଏମାନେ, ଥରିଟିଏ ହେଲେ, ତମ ଭାବେ ହୁଅନ୍ତୁ ବିହ୍ୱଳ,
ବୁଝିବେ ତା' ହେଲେ ଯାଇ, ବିଷୟର ଊର୍ଦ୍ଧ୍ୱେ ଆଉ ଇନ୍ଦ୍ରିୟର ପର ପାରେ
ଯେ ସାମ୍ରାଜ୍ୟ ଅଛି ତାହା ନିତ୍ୟ ଆନନ୍ଦର।

୧୨୭

ତୁମେ ଠିକ୍ ମନେ ପକାଇ ଦିଅ, ମୁଁ ଯେତେବେଳେ ଯାହା ଭୁଲି ଯାଏ,
ଭୁଲ୍ ରାସ୍ତାରେ ପାଦ ବଢ଼ାଇଲେ, ବାଧା ଦେଇ,
ହାତ ଧରି, ନିର୍ଭୁଲ ରାସ୍ତାରେ ମୋତେ ନେଇଯାଅ ପ୍ରଭୋ,
ମୋର ଏ ଗଭୀର ଉପଲବ୍ଧି ସତ୍ତ୍ୱେ, କେଡ଼େ ଅକୃତଜ୍ଞ ମୁଁ,
ତୁମକୁ ଅବିଶ୍ୱାସ କରେ।
ମୋର ମାନସିକ ଏ ବିପର୍ଯ୍ୟୟରୁ ତ ମୁଁ ଦୁଃଖପାଏ,
ହାତ ଖୋଲି, କେତେ ଆନନ୍ଦ ନ ବିତରଣ କରୁଛ ତୁମେ ପ୍ରତି ମୁହୂର୍ତ୍ତରେ,
ଅଥଚ ତା' ଗ୍ରହଣ କରି ନ ପାରି, ସବୁବେଳେ ଭାବେ କେଡ଼େ ଦୁଃଖୀ ମୁଁ।

ଆନନ୍ଦ ଯଦି ଦେଉଛ ପ୍ରଭୋ ! ଆନନ୍ଦ ଗ୍ରହଣ କରିବାର କ୍ଷମତା ବି ଦିଅ,
ସେ କ୍ଷମତା ମୋର ପୁରୁଷାକାରରେ ନାହିଁ, ଅଛି ତୁମ କୃପାରେ, କରୁଣାରେ।
ଆତ୍ମସମର୍ପଣରେ ଯଦି ସେ କୃପା ମିଳିପାରେ,
ତେବେ ମୋର ସକଳ ଅହଙ୍କାର ଚୂର୍ଣ୍ଣକରି
ମୋତେ ତୃଣଟିଏ କରିଦିଅ ପ୍ରଭୋ !

୧୨୮

ସାରା ଜୀବନଟା ପ୍ରଭୋ, ତୁମକୁ ପରୀକ୍ଷା କରି ହାରିଛି ମୁଁ,
ଉତ୍ତୀର୍ଣ୍ଣ ହୋଇଛ ତୁମେ ହସି ହସି ପ୍ରତି ପରୀକ୍ଷାରେ,
ତଥାପି ମୋ ପରୀକ୍ଷାର ଶେଷ କାହିଁ ?
ପରୀକ୍ଷାର ଶେଷ ନାହିଁ ମାନେ, ଶେଷ ନାହିଁ ମୋର ସଂଶୟର,
ପରିଣତି କ'ଣ ହୁଏ ? ନିରାନନ୍ଦେ ପ୍ରତି କ୍ଷଣେ ଅବସନ୍ନ ମ୍ରିୟମାଣ ରହେ ।
ମୋର ଜ୍ଞାନ, ମୋର ବୁଦ୍ଧି ତୁମକୁ କି ଚିହ୍ନିପାରେ ?

ଯୁକ୍ତି ମୋର ତୁମ ସ୍ଥିତି ସଂପର୍କରେ,
ପ୍ରତି କ୍ଷଣେ ତୁମଠାରୁ ମୋତେ ରଖିଛି ଦୂରରେ ।
ତେଣୁ କରେ ଅନୁନୟ, ହେ କରୁଣାମୟ, କୃପା କରିବାରେ
ଯେହ୍ନେ, ସରଳ ମୁଁ, ନିଷ୍କପଟ ହୁଏ,
ଯେତେ ମୋର ଜ୍ଞାନ, ବିଦ୍ୟା, ବୁଦ୍ଧି ପଦେ ତବ ଜଳାଞ୍ଜଳି ଦେଇ,
ଭଲ ପାଇ ପାରେ ମୁଁ ତୁମକୁ, ଉଚ୍ଛ୍ୱସିତ ମୋ ଆଖିର ଲୁହେ ।

୧୨୯

ତୁମକୁ ପାଇବା ଲାଗି ଭଲ କ'ଣ ତୁମ ସଂପର୍କରେ ସବୁ କିଛି ଜାଣିବାକୁ ହେବ ?
ଗୋପୀମାନେ କ'ଣ ବୁଝି ତୁମ ସଂବନ୍ଧରେ, ମଜିଥିଲେ ତୁମ ପ୍ରେମେ ?
ତୁମ ବଇଂଶୀର ସ୍ୱର ସେମାନଙ୍କୁ କରିଥିଲା ଉନ୍ମାଦିନୀ,
ସେଇ ସୁରେ ବେଦର କି ବ୍ୟାଖ୍ୟା ଥିଲା ?
ଉପନିଷଦର କିଛି ବିଶ୍ଳେଷଣ ଥିଲା ତା' ମଧ୍ୟରେ ?
ସେ ଧ୍ୱନିର ଥିଲା ଖାଲି ଆସ ଗୋ, ଆସ ଗୋ ।

ସେଥିଲାଗି ସେମାନେ ସମସ୍ତ ଭୁଲି, ସଂସାର, ସନ୍ତାନ, ସ୍ୱାମୀ, ନିଭୃତ ନିକୁଞ୍ଜେ
ତୁମ ପାଦ ପାଖେ ବସି କାନ୍ଦୁଥିଲେ, କେବଳ ହିଁ କାନ୍ଦୁଥିଲେ ନ ଥିଲା ବଚନ,
ବଚନେ କି ପ୍ରୟୋଜନ, ଆଖିରେ ଆଖିରେ ଖାଲି ଭାବ ଆଉ ଭାଷା ବିନିମୟ,
ଏଇ ଯଦି ଶେଷ କଥା, ତୁମ ସଂପର୍କରେ ମୋର ଜ୍ଞାନ ଆହରଣେ
କିଛି ପ୍ରୟୋଜନ ଅଛି ?

ପ୍ରତି ମୁହୂର୍ତ୍ତରେ ତୁମକୁ ସ୍ମରିବି ଖାଲି, ତୁମ ଭାବେ ବିହ୍ୱଳ ମୁଁ ହେବି,
ତୁମ ନାମେ ତାଳି ମାରି ନାଚିବି ମୁଁ, କାନ୍ଦୁଥିବି ଅହିର୍ନିଶ ତୁମ ନାମ ନେଇ,
ଯଦି କେବେ ଲକ୍ଷ୍ୟକର, ଅଟକି ଯାଉଛି ବୋଲି ଅଧବାଟେ,
କୃପାମୟ ! ହାତ ଧରି ନେଇଯିବ, ସେ ବିଶ୍ୱାସ ଅଛି ।

୧୩୦

ସାରା ଜୀବନଟା ପ୍ରଭୋ, ଖୁବ୍ ସଚେତନ ରହେ,
ତୁମ ନାମ ସ୍ମରିବାରେ ପ୍ରତି ମୁହୂର୍ତ୍ତରେ,
ଖୁବ୍ ବେଶୀ ସତର୍କ ବି ରହେ, ଆସକ୍ତ ନ ହେବା ଲାଗି ପାର୍ଥିବ ସଂପର୍କେ,
ବେଶ୍ ଉଠ ପଡ଼ ପରେ, ସାଧନାର ଯେଉଁ ସ୍ତରେ ପହଞ୍ଚିଛି ଆସି
ତା'ପରେ କି ବିଚ୍ୟୁତିର ଭୟ ଅଛି ? ତଥାପି ବି
ଖୁବ୍ ଡର ଲାଗେ, ଜୀବନର ଅନ୍ତିମ ମୁହୂର୍ତ୍ତେ,
ଯେତେବେଳେ ଅକସ୍ମାତ ମୃତ୍ୟୁ ଆସି ସ୍ପର୍ଶଟାର ଦେବ
ଏ ପୃଥିବୀ ଛାଡ଼ିବାକୁ, ସେଇ ସନ୍ଧିକ୍ଷଣେ, ଦୋହଲି ଯିବନି ତ ମନ ମୋର,
ଏତେ ମୋ ସାଧନା, ଏତେ ଏକାଗ୍ରତା, ପଲକ ମଧ୍ୟରେ
ଭୂମିସାତ୍ ହେବନି ତ, ପରୀକ୍ଷାର  ସେଇ ଚରମ ମୁହୂର୍ତ୍ତେ
ହଠାତ୍ ତୁମକୁ ଭୁଲି, ମିଥ୍ୟାମାନଙ୍କର ବିଚ୍ଛେଦରେ ଯଦି ହୁଏ ମୁଁ ବିକଳ,
ସେମାନଙ୍କ ଲାଗି ମୋର ଆସକ୍ତିରୁ, ହାହୁତାଶ କରେ ଯଦି,
ଅଶ୍ରୁ ଢାଳି, ବୁକେ କରାଘାତ କରି,
ତୁମ ଲାଗି ଏତେ ମୋର ତପସ୍ୟାର ମୂଲ୍ୟ ଆଉ ରହିଲା ବା କ'ଣ ?

ପ୍ରଭୋ, ନିଜ ପରେ ଭରସା ମୁଁ ପାରେ ନାହିଁ ରଖି,
ମିନତି ମୁଁ କରେ ଆସି ମୋର ସମ୍ମୁଖରେ,
ଶିରରେ ମୟୂର ପୁଚ୍ଛ, ବେଣୁ ଓଷ୍ଠାଧାରେ,
ଲଭିଥିବ ଅଫୁରନ୍ତି ହସ ବେନି ନୟନରେ ।

୧୩୧

ସ୍ୱପ୍ନରେ ମୁଁ ଦେଖେ ଯଦି କୂଳେ ରଖି ବସ୍ତ୍ର,
ଯମୁନାର ଜଳେ ସ୍ନାନ କରୁଥିବା ବେଳେ,

ତୁମେ ତାହା ନେଇ ଯାଇ, କଦମ୍ବ ବୃକ୍ଷରେ ବସି ବଜାଉଛ ବଂଶୀ,
ମୁଁ ତେବେ ଲଜ୍ଜାରେ କ'ଣ କଣ୍ଠୁ ଯାଏ ବୁଡି ରହି ଯମୁନାର ଜଳେ,
ବେନି ହସ୍ତ ଉର୍ଦ୍ଧ୍ୱେ, ତୋଳି କାକୁତି କରିବି ବସ୍ତ୍ର ଫେରାଇ ଦେବାକୁ ?
ଅଥବା ତୁମର ବଂଶୀର ସ୍ୱନେ, ଯମୁନାର ଜଳ ତେଜି ଧାଇଁଯିବି କଦମ୍ବର ତଳେ,
ଦେହଜ୍ଞାନ ନ ଥିବ ମୋ, ନିଜକୁ ମୁଁ ଚିହ୍ନିଛି ଯେତିକି,
ତୁମ ପରୀକ୍ଷାରେ ପ୍ରିୟ ହାରିଯିବି, ମାତ୍ର ସେଇ ପରାଜୟ ମୋର,
ମୋତେ କ୍ରମେ କରିବ ଗୋପିକା, ରାଇ, ଉନ୍ମାଦିନୀ,
ତେବେ ମୋତେ କୋଳାଗ୍ରତ କରି,
ପ୍ରତ୍ୟେକ ଅଙ୍ଗକୁ ମୋର ସ୍ପର୍ଶିଯିବ, ଏତେ ସତ୍ତ୍ୱେ ଇନ୍ଦ୍ରିୟର ଉତ୍ତେଜନା ନାହିଁ।

ସମଗ୍ର ଶରୀରେ ମୋର କୃଷ୍ଣର ସଂଚାର,
ତେବେ ମୋତେ ଶିରେ ନେଇ ନାଚିବ ଓ ପରିଶେଷେ ଶିରରୁ ଓହ୍ଲାଇ ଦେଇ
ଜଡ଼ାଇ ଧରିବ ତୁମେ ଚରଣକୁ ମୋର,
ସେଇତ ଚରମ କଥା ଆମ ସଂପର୍କର।



୧

ପ୍ରତିଯୋଗିତାର ମନୋବୃତ୍ତିରେ
ନିଜର କଲ୍ୟାଣ ଅପେକ୍ଷା
ଅକଲ୍ୟାଣ ହୁଏ ହିଁ ବେଶୀ ।

୨

ପ୍ରତିବେଶୀ ଘରେ ପିଲାଟି କାନ୍ଦୁଥିବାରୁ
ଆମ୍ଭେମାନେ ଭୀଷଣ ବିରକ୍ତ,
ଆମ ଘରେ ଯଦି
ସେମିତି ପିଲାଟିଏ କାନ୍ଦୁଥା'ନ୍ତା... ।

୩

ମୋ ବଂଧୁଙ୍କର ଅଶୀତିବର୍ଷର ବୃଦ୍ଧ ପିତା
ରୋଗଶଯ୍ୟାରେ ମୋତେ ଚୁପ୍‌ଚୁପୁ କହିଲେ,
"ଜ୍ୟୋତିଷୀଙ୍କ ମତରେ
ଏ ଘାଟିଟା ମୁଁ ପାର୍ ହୋଇଗଲେ
ଫେର୍ ପାଞ୍ଚବର୍ଷ ।"

୪

ସର୍କସର ହାତୀ ଓ ବାନରମାନଙ୍କର
କ୍ରୀଡା ନୈପୁଣ୍ୟ ସଂଦର୍ଶନରେ
ଦର୍ଶକମାନଙ୍କର ଆନନ୍ଦର
ସେ କି ଉଚ୍ଛ୍ୱସିତ କରତାଳି ଧ୍ୱନି,
ଆହା, ନିର୍ବୋଧ ସେଇ ପଶୁମାନେ
କ'ଣ ଖୁସି ହୋଇପାରୁଛନ୍ତି
ଉପଲବ୍ଧି କରି ସେ ଉଲ୍ଲାସରୁ କଣିକାଏ !

୫

ସେ ଦିନ ପୁରୀ ସମୁଦ୍ର କୂଳ ବାଲିରେ
ଏକାଠି ଆମେ ପ୍ରଥମେ ବସିଥିଲେ,
ଆମ ବିବାହର ଦଶଦିନ ହୋଇଥାଏ ମାତ୍ର;
ତୁମ ମୁହଁରେ ତାରୁଣ୍ୟର ସେ କି ଦୀପ୍ତି,
ଆଉ ତୁମେ ମୋତେ ନିର୍ନିମେଷ ନୟନରେ ଚାହିଁ,
କ'ଣ ଦେଖୁଥିଲ କେଜାଣି,
ମୁହଁ ମୋର ଲଜ୍ଜାରେ ଲାଲ୍ ହୋଇଯାଇଥିଲା,
ସଂଧ୍ୟାର ସୂର୍ଯ୍ୟର ଲାଲ୍ ରଶ୍ମି
ଆମ ଉଭୟଙ୍କ ଉପରେ କ୍ରୀଡ଼ା କରୁଥିଲା ।
ଆଉ ଆଜି ?
ଚାକିରୀରୁ ତମେ ଅବସର ନେବା ପରେ
ଘରକୁ ଫେରି ଆସି ସମୁଦ୍ର ତୀରର ସେଇ ବାଲି ଉପରେ
ସେଦିନ ଭଳି ଆଜି ବି ଆମେ ପାଖାପାଖି ବସିଛେ,
ଆଉ ମୁଁ ଅଶ୍ରୁଳ ଆଖିରେ ତୁମ ବାର୍ଦ୍ଧକ୍ୟରେ
ତୁମର ସେ ଦିନର ସେଇ ତାରୁଣ୍ୟକୁ ଖୋଜୁଛି,
ଆଉ ତୁମେ ନିଷ୍ପ୍ରଭ ଆଖିରେ
ମୋର ଶୀର୍ଣ୍ଣ ମୁଖମଣ୍ଡଳକୁ ଚାହିଁ କ'ଣ ଭାବୁଛ ଏତେ ?

ହେ ସମୁଦ୍ର, ତୁମେ ଆମକୁ ସେଦିନ ଏକାଠି ଦେଖିଥିଲ,
ଆଉ ଆଜି ବି ଏକତ୍ର ଦେଖୁଛ,
ପାର୍ଥକ୍ୟଟା ଅନୁଭବ କରି
କିଛି ବାର୍ତ୍ତା ଅଛି କି ତମର ଆମ ଲାଗି ?
ମହାକାଳ ତୁମକୁ କିନ୍ତୁ ଅପରିବର୍ତ୍ତିତ ରଖିଛି ।
ତମର ସେଇ ଦିଗନ୍ତ ବିସ୍ତାରୀ ବାରିରାଶି,
ସେଇ ଉତ୍ତାଳ ତରଙ୍ଗ
ନାଚି ନାଚି ଆସି କୂଳରେ ଭାଙ୍ଗି ପଡ଼ି
ଭିତରକୁ ପୁଣି ଲେଉଟିବା,
ବଦଳିନି କିଛି,

ହେ ଶାଶ୍ୱତ,
ଆମର ଚିନ୍ମୟତା ସଂପର୍କରେ
ସାନ୍ତ୍ୱନା ଦେବା ଭଳି
ତମର ଆମକୁ କିଛି ବାର୍ତ୍ତା ଅଛି କି ?

୬

ସ୍ୱାମୀଜୀଙ୍କ ବେଦାନ୍ତ ସଂପର୍କିତ ଭାଷଣ ପରେ
ଟେବୁଲ ଉପରେ ସେ ରଖିଥିବା ପ୍ରଚକ୍ଷୁଟି
ତାଙ୍କ ହାତ ବାଜି ହଠାତ୍ ଟେବୁଲ୍ ତଳକୁ ଖସି ପଡ଼ିବାରେ
ସେ କି ବ୍ୟସ୍ତତା ତାଙ୍କର ।

୭

ଆକାଶରେ କଳାହାଣ୍ଡିଆ ମେଘ ଘୋଟି ଯିବାରେ
କାହିଁ, ମୋ ମନରେ କୃଷ୍ଣ ଭାବର ସ୍ଫୁରଣ ତ ନାହିଁ,
ଅଧିକନ୍ତୁ, ମଝି ରାସ୍ତାରେ ମୁଁ ବିବ୍ରତ ହୋଇ ପଡ଼ିଛି,
ହଠାତ୍ ବର୍ଷା ଅଜାଡ଼ି ଦିଏ ଯଦି,
ଧାଇଁଯାଇ ଆଶ୍ରୟ ନେବି କେଉଁଠି ?

୮

ମାଆର ଆତ୍ମହତ୍ୟା ପରେ
କୋଳ ଛୁଆଟାର ସେ କି ବିକଳ କାନ୍ଦଣା,
ସ୍ତନ୍ୟ ଦାନରେ ତାକୁ ଚୁପ୍ କରିଦେବା ଲାଗି
ମମତାମୟୀ ମାଆ ତାକୁ ଆଉ
କୋଳେଇ ନେଉନି ତ !

୯

ଦିନେ
ସକାଳୁ ସଂଜ ଯାଏ
ମୁଁ ମନରେ ଓ ଆଚରଣରେ କେତେ ଅନ୍ୟାୟ କରିଛି,
ତା'ର ଏକ ତାଲିକା ପ୍ରସ୍ତୁତ କରି
ସ୍ତବ୍ଧ ହୋଇଗଲି,
ସେଇ ତାଲିକାରେ ନିମ୍ନୋକ୍ତ ଏଇ କେତୋଟି -

ମୋ ପାଖରେ ଥିବା ଖୁଚୁରା ପାଞ୍ଚ ପଇସି ନଥିବାରୁ
ଭିକାରୀଟିକୁ କିଛି ନ ଦେଇ
ବିଦାୟ ଦେଲି ।

ମୋ ପ୍ରତିବେଶିନୀ ଦଶଟଙ୍କା ଧାର ମାଗିବାରୁ
କାଳେ ଫେରାଇବେନି ଏଇ ଆଶଙ୍କାରେ
ମୋ ପାଖେ ଟଙ୍କା ଥାଇ ବି ନାହିଁ କହିଦେଇ
ଦୁଃଖିତ ହେବାର ଚମତ୍କାର ଅଭିନୟ କରିଥିଲି ।

ସ୍ୱାମୀ ଯେବେ ସକାଳ ଆଉ କପେ ଚାହା ମାଗିଲେ,
ଚାହା କରିବାର ମୁଡ୍ ନଥିବାରୁ
ମିଛରେ କ୍ଷୀର ନାହିଁ କହି ଚୁପ୍ ରହିଗଲି ।

ଏସବୁକୁ
ଯେଉଁ ଦୃଷ୍ଟିରୁ ଯେପରି ଭାବେ ବିଚାର
ଓ ବିଶ୍ଳେଷଣ କରାଯାଉନା କାହିଁକି
ମୁଁ ନିରାପରାଧ କି ?
ଅଥଚ ବିନା ଅନୁତାପରେ
ଦିନ ଗୋଟିଏ ବେଶ୍ ଅତିବାହିତ ହୋଇଗଲା ।

୧୦

ପ୍ରେମ କରିବାର ବେଶ୍ କିଛି ଦିନ ପରେ
ସେମାନଙ୍କ ସଂବନ୍ଧଟା ଯେବେ
ବିବାହ ପର୍ଯ୍ୟାୟକୁ ପ୍ରାୟ ଆସି ଯାଇଛି,
ଗୌତମ ଦିନେ ହଠାତ୍ ଆବିଷ୍କାର କଲା
ପ୍ରଛନ୍ନ ଗୁରୁତର ହୃଦ୍‌ରୋଗରେ ଶୈବ୍ୟା ପୀଡିତା,
ତା' ସତ୍ତ୍ୱେ ସେ ଯେବେ ଏ ବିବାହରେ ସମ୍ମତି ଦେଲା
ତା'ର ବଂଧୁମାନେ ତାକୁ କହିଲେ ବୋକା ।

ଶୈବ୍ୟାକୁ ବିବାହ କରି ସେ କିନ୍ତୁ ସୁଖୀ,
ଯଦିଓ ତାର ସ୍ୱାସ୍ଥ୍ୟକୁ ନେଇ
ସେ ସଦା ବିବ୍ରତ,
ମେଡ଼ିକାଲ୍, ମେଡିସିନ୍, ଚେକ୍‌ଅପ୍‌ର ଆତଙ୍କରେ
ପ୍ରତି ମୁହୂର୍ତ୍ତରେ ସେ ଅତିଷ୍ଠ,
ତଥାପି ସେ ସୁଖୀ, ଖୁବ୍ ସୁଖୀ ।

ଶୈବ୍ୟାର ଦେହଟା ଆଜି ଅଛି,
କାଲି ହୁଏତ ନଥିବ,
ମାତ୍ର ଶୈବ୍ୟା ଚିରଦିନ ବଂଚି ରହିବ
ତା' ଭିତରେ ଜ୍ୟୋତି ହୋଇ,
ଯେଣୁ ସେ ତା'ର ବିଶ୍ୱାସକୁ
ତା'ର ପ୍ରେମକୁ
ଅସମ୍ମାନ କରିନି,
ଧୋକା ଦେଇନି ।

୧୧

ସମୟ ସମସ୍ତଙ୍କୁ ଜରାଜିର୍ଣ୍ଣ କରେ,
ଅଥଚ ନିଜେ ଅକ୍ଷୟ, ଅବ୍ୟୟ ସଦା
ଚିର ଶ୍ୟାମଳ ଓ ସୁନ୍ଦର ସେ ।

୧୨

ଶିଲିଂ ଫ୍ୟାନ୍ ଦ୍ରୁତ ଘୁରୁଛି,
ହଠାତ୍ ବାହାରୁ ଘର ଭିତରକୁ ପଶିଆସି
ଭଅଁରଟା ଘରଯାକ ଉଡି ବୁଲିଲା,
ଇସ୍ ଘୂର୍ଣ୍ଣୟମାନ ଫ୍ୟାନରେ
ଯଦି ସେ ବାଜିଯାଏ,
ସଂଗେ ସଂଗେ ସୁଇଚ୍‌ଟା ମୁଁ ବନ୍ଦ କରିଦେଲି,
ଠିକ୍ ପର ମୁହୂର୍ତ୍ତରେ ଠକ୍ କରି ଏକ ଆୱାଜ,
ଫ୍ୟାନ୍‌ର ପକ୍ଷର ଆଘାତରେ
ଭଅଁରଟା ଛିଟ୍‌କି ଆସି
ମୋ ପାଦ ପାଖେ ମରି ପଡିଛି,
ବିଦ୍ୟୁତ୍ ପଂଖାଟା ସ୍ଥିର ହୋଇ ଆସୁଛି ଧୀରେ ଧୀରେ !

୧୩

ମିତ୍ରାଙ୍କର ଶବ ଶୋଭାଯାତ୍ରାରେ
ସ୍ୱାମୀ ଆଗେ ଆଗେ ବୁଣି ବୁଣି ଚାଲିଛନ୍ତି
ଲିଆ କଉଡି,
ଆଉ ଏକମାତ୍ର ତରୁଣ ପୁତ୍ର ଶଶାଙ୍କ
ଶବାଧାର ସଂଗେ ସଂଗେ ଚାଲିଛି
କ୍ରିକେଟ୍ କମେଣ୍ଟ୍ରି ଶୁଣି ଶୁଣି
ତା'ର ବଂଧୁ ବିନୋଦର ହାତରେ 'ଟ୍ରାନ୍‌ଜିସ୍‌ଟର' ।

୧୪

ସ୍ୱପ୍ନରେ ବେଳେ ବେଳେ ଯେଉଁ ଅନ୍ୟାୟ ମୁଁ କରେ,
ଜାଗରଣରେ ସେପରି ଅନ୍ୟାୟ କରିବାର
ଦୁଃସାହସ ମୋର ହେବ କି ?

୧୫

ଭଜନ ଗାଉ ଗାଉ
ଗାୟକ ଯେତେବେଳେ
ତା'ର କଣ୍ଠ କୌଶଳ
ପ୍ରଦର୍ଶନ କରିବାରେ ପ୍ରୟାସ କରେ,
ଭଗବାନ ଚୁପ୍‌ଚାପ୍ ଉଠି ଚାଲିଯା'ନ୍ତି ସେଠାରୁ ।

୧୬

ହେ ଗାୟକ,
ଚମତ୍କାର ଭଜନ ତ ଗାଉଛ,
ହେଲେ ଜୀବନର ଅନ୍ତିମ କ୍ଷଣରେ
ଏ ଭଜନରୁ ପଦେ ଗାଇ ପାରିବ ତ ?

୧୭

ମୋ କୁନି ଝିଅଟି
ତା'ର ସାଂଗ ଝିଅମାନଙ୍କ ସଂଗେ
ଖେଳରେ ମଜ୍ଜିଥିବା ବେଳେ
ଯେତେ ଡାକିଲେ ବି ଶୁଣୁନି,
ଏଇ ଝିଅଟି କାଲି ଯେତେବେଳେ
ସ୍ୱାମୀ ସଂଗେ ତା'ର ସଂସାର କରିବ,
ମୋତେ କେତେଦୂର ସ୍ମରିବ ସେ ?

୧୮

"ସୁଖି ରୂପେ ଯାହା ଜନନେତ୍ରେ ଦିଶେ
ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ'
ସେଇ ପଡ଼ିବା ହିଁ ତ ଆମର ସୁପ୍ତ ଚେତନାକୁ
ଜାଗ୍ରତ କରିଥାଏ ।

୧୯

ଦର୍ପଣରେ ନିଜର ପ୍ରତିବିମ୍ବ ନିତି ଦେଖୁଛ,
ମାତ୍ର ବିବେକ ଦର୍ପଣରେ
ନିଜ ମନର ପ୍ରତିବିମ୍ବ କେବେ ଦେଖ କି ?

୨୦

ଈଶ୍ୱର ଅନାୟାସରେ
ତୁମର ସବୁ ଦୁଃଖ ଓ ସଂଶୟ ଦୂରେଇ ଦେଇ ପାରନ୍ତି,
ତାଙ୍କ ଲାଗି କାଣିଚାଏ
ବିଶ୍ୱାସ ଓ ବ୍ୟାକୁଳତା କେବଳ ପ୍ରୟୋଜନ ।

୨୧

ତୁମ ସଂଗେ ଯେ ବିଶ୍ୱାସଘାତକତା କରେ,
ତୁମେ ତା' ଉପରେ ଅଧିକ ବିଶ୍ୱାସ ରଖ,
ସେ ବିଶ୍ୱାସ ଯେବେ ଘନୀଭୂତ ହୋଇଯିବ,
ତା'ର ରୂପାନ୍ତର ହେବ ।

୨୨

ଏଇ ସମ୍ମୁଖସ୍ଥ ଜନଗହଳିରେ
ମୋ ଚିନ୍ତାରେ, ମୋ ଭାବନାର
ଲୋକ କ'ଣ କେହି ନାହାନ୍ତି ?
ହୁଏତ ଅଛନ୍ତି, ମାତ୍ର ସେମାନଙ୍କ ସଂଗେ
ଘନିଷ୍ଠ ହୋଇ ସେମାନଙ୍କୁ ଆବିଷ୍କାର କରିବାର
ସମୟ ଓ ସୁଯୋଗ ମୋର କାହିଁ ?
ଜୀବନର ଶେଷଦିନ ଯାଏ
ଯେତୋଟି ନିଜର ଲୋକ ଆମେ ପାଉ,

ତା'ଠାରୁ ଅଧିକଙ୍କୁ ଆମେ ପାଇ ପାରନ୍ତୁ
ସଂପ୍ରସାରିତ କରି ପାରିଲେ ନିଜକୁ,
ହୁଏତ ସେ ସବିଧା ଆସେନି,
ଅଥବା ନିଜକୁ ସୀମାବଦ୍ଧ କରିଦେଉ ଆମେ ।

୨୩

ଗେଟ୍ ବାହାରେ ଭିକାରିଟି ଭିକ ମାଗୁଛି,
ତାକୁ ଦେଖିଦେଇ, ଗେଟ ଭିତରେ
ଚେନ୍‌ରେ ବଂଧା ହୋଇଥିବା
ଆଲ୍‌ସେସିଆନ କୁକୁରଟି
ଉତ୍‌କ୍ଷିପ୍ତ ହୋଇ ଉଠିଛି,
ଏବଂ
ଦୋତାଲାର ବାଲ୍‌କୋନିରେ ଠିଆ ହୋଇ
କୋଟି ପତି "କମଳେଶ୍ୱର'ଙ୍କର
ଏକମାତ୍ର କନ୍ୟା 'ତିତିକ୍ଷା'
ଦୃଶ୍ୟଟି ବେଶ୍ ଉପଭୋଗ କରୁଛି ।

୨୪

ପୃଥିବୀ ପ୍ରତି ବୀତସ୍ପୃହ ହୋଇ
ଆତ୍ମହତ୍ୟା କରିବାକୁ ପ୍ରୟାସ କରୁଥିବା ଲୋକଟି
କୌଣସିମତେ ବଂଚିଯିବା ପରେ,
ଆଖିତା'ର ଉଜ୍ଜ୍ୱଳ ହୋଇ ଉଠିଛି,
"ଇସ୍ ଏ ପୃଥିବୀର ମମତା ଓ ଆସକ୍ତି ସତେ କିସୁନ୍ଦର !"

୨୫

ସମସ୍ୟାର ସନ୍ମୁଖୀନ ହେବାକୁ
ପରାଂମୁଖ ହେଉଥିବା ବ୍ୟକ୍ତିଟି

ଅଟକି ରହିଯାଏ, ଯେଉଁଠିଥିଲା
ସେଇଠି,
ହୁଏତ କେତେପାଦ ପଛକୁ ବି
ଘୁଞ୍ଚିଆସି ପାରେ ।

୨୬

ଅନ୍ୟର କ୍ରୋଧରେ ଅକ୍ରୋଧୀ ରହିଲେ
ଧୈର୍ଯ୍ୟ ତୁମର ଫୁଲ ହୋଇ ଫୁଟେ ।

୨୭

ଭାବ ମନକୁ ଆସିଯାଏ ତଡ଼ିତ ଭଳି
ତାକୁ ଅଚିରାତ ଧରି ରଖି ନ ନେଲେ
ହଜିଯାଏ ତା' ପଲକ ମଧ୍ୟରେ,
କବିର ସେତେବେଳେ ଅନୁଶୋଚନାର ଶେଷ କାହିଁ ?

୨୮

ଏତେ ଉଦ୍‌ବେଗ ଓ ଉତ୍କଣ୍ଠା କାହିଁକି ?
ନିଜର ଇଚ୍ଛାକୁ ସେ ପରମ ଇଚ୍ଛା ସହ ଯେଣୁ
ସାମିଲ କରି ପାରୁନି ।

୨୮

ଏତେ ଉଦ୍‌ବେଗ ଓ ଉତ୍କଣ୍ଠା କାହିଁକି ?
ନିଜର ଇଚ୍ଛାକୁ ସେ ପରମ ଇଚ୍ଛାସହ ଯେଣୁ
ସାମିଲ କରିପାରୁନି ।

୨୯

ଏକୁଟିଆ ରହିବାଠୁ ବଳି
ବଡ଼ ସାଧନା ଆଉ କ'ଣ ଅଛି ?
ଶୂନ୍ୟ ଶୂନ୍ୟ ଲାଗୁଛି ଲାଗୁ,
ଖାଁ ଖାଁ ମନେ ଯଦି ହେଉଛି ହେଉ,
କିନ୍ତୁ ପଳାଇ ଯାଅନି,
କେଉଁଠିକି ପଳାଇଯିବ ?
ଯେଉଁଠାକୁ ଯିବ ସେଠାରେ ବି ସେଇ ଶୂନ୍ୟତା,
ଶୂନ୍ୟରେ ଝୁଲୁଛନ୍ତି ଯେଉଁମାନେ
କେଉଁଠି ଆଶ୍ରୟ ଦେବେ ସେମାନେ ତୁମକୁ ?
ସୂର୍ଯ୍ୟ ଏକା, ଚନ୍ଦ୍ର ଏକା,ତାରାମାନେ ବି ଏକା
ପର୍ବତ ସେ ବି ଏକା
କିଏ କାହା ପାଖକୁ ଯାଏ
ନିଃସଙ୍ଗତାବୋଧରୁ ମୁକ୍ତି ପାଇଁ ?
ନିଜ ନିଜ ମଧ୍ୟରେ ସମାହିତ ସେମାନେ,
ଶାଶ୍ୱତ ଧ୍ୟାନରେ ଆତ୍ମ ବିସ୍ମୃତ ସଦା,
ତେଣୁ ସେମାନଙ୍କୁ ନିଃସଙ୍ଗତାବୋଧ କାହିଁ ?
ସେମାନେ ସମସ୍ତେ ନୁହନ୍ତି କି
ଦୃଷ୍ଟାନ୍ତ ତୁମ ପାଇଁ ?

୩୦

ସକାଳେ
ସ୍କୁଲ ଯିବାବେଳେ
ମଟର ଧକ୍କାରେ ଯେଉଁ ବାଳକଟି ....,
ଯାହାର ରକ୍ତରେ ରାସ୍ତା ଲାଲେ ଲାଲ୍;
ଯାହାର ବହି ବସ୍ତାନି ଏବେବି ପଡି ରହିଛି
ରକ୍ତରେ ଜୁଡୁବୁଡୁ,
ତାକୁ ନେଇ ଯାଇଛନ୍ତି ମେଡିକାଲ୍,

ସେ ବଂଚିବ ତ ?
ତା'ର ବାପା ମାଆ ଖବର ପାଇଲେଣି କି ?
କ'ଣ କରୁଥିବେ ଏଇନେ ସେମାନେ ?
ବାପା ବୋଧେ ସେଭିଂ ହୋଇ
ସକାଳର ଚାହା ଖାଉ ଖାଉ ଖବରକାଗଜ ଦେଖୁଥିବେ,
ଆଉ ମାଆ ସମ୍ଭବତଃ ବ୍ୟସ୍ତ ଥିବେ ରୋଷଘରେ,
ତା'ର ଛୋଟବଡ଼ ଭାଇ ଭଉଣୀ ଥିବେ ଯଦି...,
ଏ ଦୁଃସମ୍ବାଦ ଯେତେବେଳେ ଯାଇ ପହଂଚିବ...
ହେ ଭଗବାନ ସେ ବଂଚିଯାଉ ବଂଚିଯାଉ ।

ଅନାସକ୍ତ ସମବେଦନା ଓ ସହାନୁଭୂତି ହେତୁ
ପ୍ରଶ୍ନୋତ୍ତର ଅନେକ ଅନେକ,
ରାସ୍ତା ତା' ବୁକେ ତା'ର ରକ୍ତ ଧରି
ପ୍ରଚ୍ଛନ୍ନ ଅଶ୍ରୁରେ ମୌନ କିନ୍ତୁ ।

୩୧

ତୁମେ ଚାକିରୀରୁ ଅବସର ନେଇଛ,
ତେଣୁ ସରକାରୀ କ୍ୱାଟର୍ସ ଛାଡିବାକୁ ପଡ଼ିବ,
ଦୀର୍ଘ ପନ୍ଦର ବର୍ଷର ରହଣି ପରେ
ପ୍ରାୟ ଗୋଟିଏ ଯୁଗର ଅବସାନ ଉତ୍ତାରେ,
ଭାବିଲେ ଭାରି କଷ୍ଟ ଲାଗୁଛି,
କିନ୍ତୁ ଛାଡ଼ିବାକୁ ତ ପଡିବ !
ଅଥଚ ନିଜ ଗୃହ ଛାଡି ଏଠିକୁ ଆସିବାବେଳେ
କେତେ ଅନାତ୍ମୀୟ ମନେ ହେଉଥିଲା ଏ ବାସଗୃହ,
ଏଠାର ବାସିନ୍ଦାମାନେ ମନେ ହେଉଥିଲେ କେତେ ଦୂରର,
ଅଥଚ ଏ ଗୃହ ଓ ଏ ପରିବେଶ
ଛାଡି ଚାଲିଯିବାର ଚିନ୍ତାରେ
ଆଖିରେ ଲୁହ ଆସିଯାଏ ।
ଶ୍ରୀକ୍ଷେତ୍ରର ନିଜ ଗୃହ ଲାଗି ପୂର୍ବ ଆକର୍ଷଣ ଆଉ ନାହିଁ,
ନୀଳାଚଳ କାହିଁକି ମନେହୁଏ ପ୍ରବାସ ପରି ।

ଜନନୀ ହେବାର ସୌଭାଗ୍ୟରୁ ବଂଚିତା ମୁଁ,
ଅଥଚ କଲୋନୀର ଅପତ୍ୟମାନେ
ପ୍ରତିମୁହୂର୍ତ୍ତରେ ଘେରି ରହିଛନ୍ତି ମୋତେ,
ଏବେ ଛଳଛଳ ଆଖିରେ ପଚାରୁଛନ୍ତି,
"ମାଉସୀ, ଆମକୁ ଛାଡି ଚାଲିଯିବେ ସତେ ?"

ରକ୍ତର ସନ୍ତାନ କ'ଣ ସଦା ନିଜର ହୁଏ ?
ଅଥଚ ପରପିଲାଟିକୁ ନିଜର ପିଲାପରି
ଭଲପାଇ ବସିଲେ,
ମୁରୁକି ହସନ୍ତି କାହିଁକି ଅନ୍ୟମାନେ ?

ବାଡିର ସଜନା ଗଛ ପଚାରୁଛି,
"ମୋତେ ଛାଡି ଚାଲିଯିବ ସତେ ?"
ଘର ସାମ୍ନା ଡରାଟ ଓ କାଠଚଂପା ଗଛ
ଅଶ୍ରୁଳ ଆଖିରେ ମୋତେ ଚାହିଁ ରହିଛନ୍ତି ।

ଶୀତ ପଚାରୁଛି,"ମୁଁ ଥିବି ତୁମେ ଚାଲିଯିବ,
ଶ୍ରୀକ୍ଷେତ୍ରର ଶୀତ ତୁମକୁ ମୋ ପରି
ନିଜର କରିପାରିବ ତ ?"

ଜହ୍ନ କହେ,"ତମେ ପୁରୀ ଗଲେ ଦେଖା ହେବ ଯେ,
ହେଲେ ଏଠି ଏଇ ଦେବଦାରୁ ଗଛ ଫାଙ୍କ ଦେଇ
ଉଙ୍କିମାରି ଯେମିତି ଦେଖେ ତୁମକୁ ଝର୍କା ବାଟେ,
ଠିକ୍ ସେମିତି ତୁମକୁ ଦେଖିବି କି ଆଉ ସେଠି ?"

ତୁମମାନଙ୍କଠୁ ମେଲାଣି ମାଗୁଛି ହେ ରାମ ମନ୍ଦିର,
ରବିନ୍ଦ୍ର ମଣ୍ଡପ, ସୂଚନା ଭବନ, ରାଜମହଲ ଛକ,
ମୁଁ କେତେ ଭାବେ ଋଣୀ ତମମାନଙ୍କ ପାଖେ ।

ବସ୍‌ଷ୍ଟାଣ୍ଡ, ମାଷ୍ଟର କାଣ୍ଟିନ୍, କଳ୍ପନାଛକ
ମେଲାଣି ମାଗେ ତୁମମାନଙ୍କଠାରୁ ବି,

କେତେ ସ୍ମୃତି ଜଡ଼ିତ ରହିଛି ତୁମମାନଙ୍କ ସଂଗେ ।
ବିଦାୟ ପୋଷ୍ଟାଲ କଲୋନୀ,
ବିଦାୟ ପ୍ରଭୁ ଲିଙ୍ଗରାଜ,
ବିଦାୟ ବିନ୍ଦୁସାଗର, ବିଦାୟ କେଦାରଗୌରୀ,
ବିଦାୟ ଭୁବନେଶ୍ୱର, ବିଦାୟ ରାଜଧାନୀ,
ବିଦାୟ ବିଦାୟ ।

୩୨

ଜୀବନର ଅନେକ ନିଃସଙ୍ଗ ମୁହୂର୍ତ୍ତରେ
ଅବସନ୍ନତା ଓ ନିରାନନ୍ଦରେ
ବିଭୁ ସ୍ମରଣରେ ଯେଉଁ ସାନ୍ନିଧ ସୁଖ ତାଙ୍କର ମିଳେ,
ସ୍ଥାୟୀ ହୁଏ କି ତା' ?
ତାହା ସ୍ମୃତି ହୋଇ ରହେ କେବଳ
ତୃଷାର୍ତ୍ତ ଲାଗି ଜଳ ବିନ୍ଦୁଟିଏ ଭଳି ।

୩୩

ଅପତ୍ୟଶୂନ୍ୟା ନାରୀ
ଅନ୍ୟର ସନ୍ତାନମାନଙ୍କୁ ଅନାଇ ରହେ
ବାତ୍ସଲ୍ୟ ସ୍ନେହରେ,
ନା ଈର୍ଷାରେ ?

୩୪

କଲମରୁ କାଳି ନିଃଶେଷ ହୋଇଗଲେ
କାଗଜ ଉପରେ ଗତି ତା'ର ମୂଲ୍ୟହୀନ;
ଯୁଗ୍ମ ଜୀବନରେ
ଗୋଟିଏ ମନରୁ ପ୍ରୀତି ମରିଗଲେ
ସେଇ ମନର ଅଧିକାରୀର

ଅନ୍ୟର ଦେହ ଉପରେ ଚାଞ୍ଚଲ୍ୟ
ଠିକ୍ ସେମିତି ଅର୍ଥହୀନ ନୁହେଁ କି ?

୩୫

ବେଳେବେଳେ ମୋର ମନେହୁଏ
ମୋର ଚିନ୍ତା ହୁଏତ ଶେଷ ହୋଇଗଲା,
ଲେଖିପାରିବିନି ଆଉ,
ମାତ୍ର ପରେ ଚିନ୍ତା ପୁନର୍ବାର ସକ୍ରିୟ ହୋଇଉଠେ,
ଓ ପୁନଶ୍ଚ ମୁଁ ଲେଖେ,
ବିଚ୍ଛିନ୍ନ ହୋଇଯାଇଥାଏ,
ଯେଉଁ ମୁହୂର୍ତ୍ତରେ ତାଙ୍କ ନିକଟରୁ,
ଶୂନ୍ୟ ହୋଇ ଯାଇଥାଏ ।

୩୬

ଜୀବନର ପ୍ରତି ମୁହୂର୍ତ୍ତରେ
ଅନେକ ସଂପର୍କ, ଅନେକ ସାନ୍ନିଧ,
ମାତ୍ର ଆମ୍ଭମାନଙ୍କର ଅନ୍ୟମନସ୍କତା
ଓ ସେମାନଙ୍କ ପ୍ରତି ନିସ୍ପୃହତା
ଅନେକ ଅମୃତ ଲାଭରୁ
ବଂଚିତ କରେ ଆମ୍ଭମାନଙ୍କୁ ।

୩୭

ପୁଷ୍ପିତ କଳିକା ସଂଦର୍ଶନରେ
ତୁମର ଆଖି ଉଜ୍ଜ୍ୱଳ ହୋଇ ଉଠିଛି,
ମାତ୍ର ଅଫୁଟନ୍ତ କଳିକାଟି ଲାଗି
ସେଇ ଅନୁରାଗ ଥିଲା କି ତୁମର ?

୩୮

ସରଳ ଭାବରେ କାନ୍ଦିପାରିଲେ
ଅନୁଭବ କରିବ
ଜୀବନରେ ତୁମର ସମସ୍ୟା ବୋଲି କିଛି ନାହିଁ,
ତୁମ ଅଶ୍ରୁରେ କୃତ୍ରିମତା
ଭରିଥିବାରୁ ତ
ଜୀବନରେ ଏତେ ବେଶୀ ପରାଜୟ ।

୩୯

ପ୍ରତ୍ୟହ ଉଷା ସକାଳ ହୁଏ,
ସକାଳ ମଧ୍ୟାହ୍ନ ହୁଏ କ୍ରମେ,
ସେଇ ମଧ୍ୟାହ୍ନ ପୁଣି ଅପରାହ୍ନ ହୋଇ
ଲୀନ ହୋଇଯାଏ ସଂଧ୍ୟାରେ,
ସେଇ ସଂଧ୍ୟା ପରିଶେଷରେ
ଆତ୍ମଗୋପନ କରେ ରାତ୍ରିର ଅଂଧକାରରେ
ନିଃସହାୟ ଦୃଷ୍ଟି ମେଲି ଚାହିଁରହେ
ପ୍ରକୃତିର ଏଇ ରୂପାନ୍ତରମାନଙ୍କୁ
ତଥାପି ମୋର ନିଃସଙ୍ଗତାବୋଧର
ଶେଷ କାହିଁ ?
ପରିସମାପ୍ତି କାହିଁ ମୋ ମନର
ତୀବ୍ର ଅବସାଦର ।

୪୦

ମୋତେ ଜଣେ କିଏ ଭଲ ପାଇବ
ମୋ ରାସ୍ତାକୁ ଅନାଇ ରହିବ କେହି ଜଣେ,
ସେ ବସନ୍ତ ବୟସ ମୋର ଅତିକ୍ରାନ୍ତ ହୋଇଯାଇଛି,
ଜୀବନରେ ରଙ୍ଗିନ ପ୍ରେମ ସ୍ୱପ୍ନର ସ୍ଥିତି ଆଉ ନଥିବାରୁ
ଏତେ ମ୍ରିୟମାଣ ହୋଇପଡୁଛି କି ମୁଁ ?

୪୧

ତନ୍ମୟ ହୋଇ ଟି.ଭି. ଦେଖୁଥିବା ବେଳେ
ଛୋଟ ପିଲାଟିର ଦୁଷ୍ଟାମିରେ
ମୁଁ ବିରକ୍ତ ହୋଇ ଉଠିଥିଲି, "ଚୁପ୍ ହୋଇ ବସ୍ ।"
ହଠାତ୍ ରାଗିଯାଇ ପରମୁହୂର୍ତ୍ତରେ ଚମକି ପଡ଼ିଲି କିନ୍ତୁ-
ମୁଁ ମୋ ମନର ପ୍ରତି ମୁହୂର୍ତ୍ତର
ଦୁଷ୍ଟାମି ପ୍ରତି ସଚେତନ ତ ?

୪୨

ଅକପଟ ସାରଲ୍ୟ ହେତୁ,
ବୋକା ବୋଲି ମନେ ହୁଅନ୍ତି ଯେଉଁମାନେ
ଚତୁର ଜ୍ଞାନୀମାନଙ୍କ ଆଖିରେ,
ସେଇ ଜ୍ଞାନୀମାନେ ହିଁ ସବୁଠୁ ବେଶୀ
ନିର୍ବୋଧ ଓ ସବୁଠୁ ବେଶୀ ବୋକା ।

୪୩

ଅନୀତାର ବାଂଧବୀ ନିରୁପମା
'ସୁରଜିତ୍'କୁ ଭଲପାଇବା ପରେ,
'ଅନୀତା' ସଂଗେ ସେ ତା'ର ପ୍ରଣୟୀର
ପରିଚୟ କରାଇ ଦେଇଥିଲା,
ସେମାନେ ବିବାହ କରିବାକୁ ସ୍ଥିର କରିଥିଲେ ।

ଏହା ପୂର୍ବରୁ 'ଅନୀତା'ର 'ଅନୁପ' ସଂଗେ
ହୃଦୟର ସଂପର୍କ ଗଢ଼ି ଉଠିଥିଲା,
ଅନୁପ ସେଦିନ ହଠାତ୍ ଅନୀତାକୁ ପ୍ରଶ୍ନ କରି ବସିଲା,
"ଆଚ୍ଛା, କହ ତ, ସେମାନଙ୍କ ନା
ଆମ୍ଭମାନଙ୍କ ହୃଦୟର ସଂପର୍କ ଗଭୀର ?"

ଅନୀତା ବିସ୍ମିତ ଆଖିରେ ଅନାଇଲା ଅନୂପକୁ
ଓ ଆଶ୍ଚର୍ଯ୍ୟ କଣ୍ଠରେ ପ୍ରଶ୍ନ କଲା,
"ଏ ପ୍ରତିଯୋଗିତାର ମନୋବୃତ୍ତି ତୁମର କାହିଁକି ?
କୌଣସି ମାଆ ମନରେ ଏ ଚିନ୍ତା କେବେ ଆସେ କି
ସେ ତା'ର ସନ୍ତାନମାନଙ୍କୁ ଯେତେ ବେଶୀ ଭଲ ପାଉଛି,
ଅନ୍ୟ ନାରୀ ତାର ସନ୍ତାନଙ୍କୁ
ସେତେ ବେଶୀ ଭଲ ପାଉଛି କି ନାହିଁ",

ଅନୀତାର ଉତ୍ତରରେ ଅନୂପର ମୁହଁ
ଲଜ୍ଜାରେ ଲାଲ୍ ହୋଇ ଯାଇଥିଲା ।

୪୪

ଇୟେ କ'ଣ ସେଇ ଜହ୍ନ,
ମୁଁ ଯାରେ ଦେଖୁଛି ଏବେ ମୋର ପ୍ରୌଢ଼ ବୟସରେ,
ମୋର ପିଲାଦିନେ ମାଆକୋଳେ ଥିବାବେଳେ
ମା ଯା'ରେ ଡାକୁଥିଲା ହାତ ଠାରି
'ଆ ଜହ୍ନମାମୁଁ ଶରଦ ଶଶୀ
ମୋ ବାୟାଣୀ ହାତେ ପଡ଼ରେ ଖସି',
ସେଇ ମାଆ ମୋର ବୁଢ଼ୀ ଏବେ,
ଅଣନାତି ନାତୁଣୀଙ୍କୁ କୋଳେ ଧରି
ସେଇମିତି ଗାଉଅଛି ଗୀତ ।
ସେଇ ଗୀତ ଶୁଣୁଶୁଣୁ ଆଖି ମୋର ଛଳଛଳ ହୁଏ,
ମନେହୁଏ ମୁଁ ଯେପରି ଏବେବି ତା' କୋଳରେ ଶିଶୁଟିଏ ।

ମୋର ପରିଚୟ ଆଗୁଁ ମୋର ପ୍ରଣୟୀଙ୍କ ଓଠେ
ମୋ ରୂପର ସ୍ତୁତି ଥିଲା- ଏଇ ଜହ୍ନ,
ମୋ ମୁଖ ସୁଷମା ପାଖେ କ୍ଳାନ୍ତ, ଅବସନ୍ନ,
କାଳ ମ୍ଳାନ କରିପାରେ ସ୍ନିଗ୍ଧ ଏ ଶଶୀରେ,
ଅଥଚ ମୋ ମୁଖଶଶୀ ଶୋଭା
ଚିରକାଳ ମହାକାଳ କଳଙ୍କଠୁ ରହିଥିବ ଦୂରେ ।

ନିୟତିର ଅନିଚ୍ଛାରୁ ସେ ପ୍ରଣୟୀ
ଭବିଷ୍ୟତେ ସ୍ୱାମୀ ମୋର ପାରିଲେନି ହୋଇ,
ଏବଂ ସେଇଦିନୁ ଆମ ମଧ୍ୟେ ଅସାକ୍ଷାତ ଗୋଟିଏ ଯୁଗର ।
ତେଣୁ, ଏବେ ଯଦି ଅକସ୍ମାତ
ମୁହାଁମୁହିଁ ହୋଇଯାଉ ଆମେ,
ଚମକି ସେ ପଡ଼ିବେ ନିଶ୍ଚେ,
ସେ ଦିନର ତାଙ୍କର ସେ ଭାବାବେଗ
କେତେ ବେଶୀ ମିଥ୍ୟା ତାହା ପ୍ରମାଣିତ ହେବ ।

ଇଏ କ'ଣ ସେଇ ଚନ୍ଦ୍ର
ଅବୈଧ ସଂପର୍କ ଯେହୁ ରଖିଥିଲା
ଗୁରୁପତ୍ନୀଙ୍କର ସାଥେ, ସେଥିଲାଗି
ଦେହେ ତା'ର କଳଙ୍କର ଚିହ୍ନ ?

ନାରିକେଳ ବାହୁଙ୍ଗାର ଅନ୍ତରାଳେ
ଜହ୍ନ ଅଧେ ଦିଶି, ଅଧେ ଛପି ରହେ,
ତାକୁ ଚହିଁ କେତେ ଯେ ଭାବନା ମୋର,
ସେ କି ତାହା ବୁଝେ ?
ସମୟ କଟେନା ବୋଲି
ଚନ୍ଦ୍ରକୁ ମୁଁ କେନ୍ଦ୍ର କରି ଯାହାକିଛି ଲେଖେ
ସେ ସବୁ କବିତା ?

୪୫

ମୋର ବୟସ୍କା ନୂଆ ପ୍ରତିବେଶିନୀ
ଦିନେ ଆସି ମୋତେ କହିଲେ,
"ମୁଣ୍ଡର କେଶ ସବୁ ପାଚିଗଲା ଆପଣଙ୍କର
ଟିକିଏ ଯତ୍ନ ନେଲେନି ?"
ସେ ପ୍ରାୟ ମୋ ବୟସର ଥିଲେ,
ତାଙ୍କର ମୁଣ୍ଡର କେଶ ସବୁ ଚମତ୍କାର କଳା ଥିଲା,

ମାତ୍ର ସେ ସବୁ କଳା ଥିଲା କି ସତେ ?
ତାଙ୍କର ହେୟାର ଡାଇଙ୍ଗର ସତ୍ୟ
ମୋର ତୀକ୍ଷ୍ଣ ଦୃଷ୍ଟି ଆବିଷ୍କାର କରିଥିଲେ ବି
ମୁଁ ନୀରବ ରହିଥିଲି ।

୪୬

ମାନ୍ଦ୍ରାଜରେ
ସେଦିନ ଦିନିକିଆ ରିଲାଏନ୍ସ ବିଶ୍ୱକପ୍
କ୍ରିକେଟ ମ୍ୟାଚ୍‌ରେ
ଭାରତ ଗୋଟିଏ ରନ୍‌ରେ
ଅଷ୍ଟ୍ରେଲିଆ ଠାରୁ ହାରିଯିବା ପରେ
'ଅନାମିକା' ଟି.ଭି. ସାମ୍‌ନାରେ
କାନ୍ଦି ପକାଇଥିଲା ।
ସେ ଅଶ୍ରୁର ଅର୍ଥ କରିଥିଲେ ଅନ୍ୟମାନେ-
ବିଚାରୀ, ଭାରତର ପରାଜୟଜନିତ ଦୁଃଖ
ସହି ପାରିନି ।

ମାତ୍ର ସେ ଲୁହର ମାନେ ଭିନ୍ନ ଥିଲା,
ସକାଳେ 'ଅନିକେତ' ତାକୁ କହିଥିଲା,
"ଆଜି ଭାରତ ହାରିଯାଏ ଯଦି,
ମୋର ମନେହୁଏ ଆମ ପ୍ରେମର ପରିଣତି
ସାର୍ଥକ ନ ହୋଇପାରେ ।"

୪୭

ଯେ କୌଣସି ପ୍ରତିଯୋଗିତାର ଆସରରେ
କୌଣସି ପକ୍ଷ ସଂଗେ ସଂବନ୍ଧ ନଥିଲେ ବି
ମନ କାହିଁକି ଆପେ ଆପେ ଆଉଜିଯାଏ
ଗୋଟିଏ ପଟକୁ ?

୪୮

ଆକାଶକୁ ଯଦି କେବଳ ଆକାଶ ହିଁ ଦେଖୁ,
ସମୁଦ୍ରକୁ ଯଦି ଦେଖୁ ସମୁଦ୍ର କେବଳ,
ଅରଣ୍ୟ ଓ ପର୍ବତକୁ ଯଦି କେବଳ
ଅରଣ୍ୟ ଓ ପର୍ବତ ହିଁ ଦେଖୁ,
ତେବେ ସେ ଦେଖିବା ନିରର୍ଥକ,
ବିଭୁଙ୍କ ସ୍ଥିତି ଯଦି ସଂଦର୍ଶନ ନ କରୁ
ତାଙ୍କ ସୃଷ୍ଟିରେ,
ତେବେ ସେ ଦର୍ଶନ ଆମ୍ଭମାନଙ୍କର
ଅଦର୍ଶନ ହୋଇ ରହିଯାଏ ।

୪୯

ମୋ ଝିଅଟି କୁନି ଥିବାବେଳେ
ତାକୁ କୋଳ କରି, କେତେ ଖୁସି ହେଉ ନଥିଲି,
ସେ ଥିଲା ମୋର ଗଣ୍ଠିଧନ,
ସେଇ କୁନି ଝିଅଟି ଏବେ
ଅନ୍ୟ ଏକ କୁନିଝିଅର ମାଆ,
ଲବଣୀପିତୁଳା, ନାତୁଣୀଟି ତ
ମୋ ଜୀବନ-ଶଂଖାଳି,
ମୋ ମନତଳେ, ଉଭୟ ସ୍ନେହ ମଧ୍ୟରେ
କୌଣସି ତାରତମ୍ୟ ନାହିଁ ତ ?

୫୦

ପ୍ରୌଢ଼ତ୍ୱର ଉପକୂଳରେ ଠିଆହୋଇ
ହଠାତ୍ ଯଦି ଇଚ୍ଛା ଜାଗେ
ଯୌବନ ଫେରି ପା'ନ୍ତି କି,
ତେବେ ସେପରି ଇଚ୍ଛାଟା କ'ଣ ଅସ୍ୱାଭାବିକ ?

ପୁଅଝିଅମାନେ ଖୁବ୍ ଭଲପା'ନ୍ତି ଆମକୁ,
ମାତ୍ର ଯଦି ମୁଁ ସେମାନଙ୍କଠୁ କାମନା କରେ
ମୋର ପ୍ରୌଢ଼ତ୍ୱର ବଦଳରେ ସେମାନଙ୍କ ଯୌବନ
ସ୍ୱାର୍ଥ ତ୍ୟାଗ କରିବେ କି ସେମାନେ ?

ପୁଅ ବୋହୂମାନଙ୍କୁ ନେଇ
ଓ
ଝିଅମାନେ ଜ୍ୱାଇଁମାନଙ୍କ ସାଥିରେ
ସୁଖରେ ଥା'ନ୍ତୁ ଦୂରରେ,
ଆଉ ସେମାନଙ୍କ ସଂଗେ ଆମ ଦୁହିଁଙ୍କର
ସଂପର୍କ ରହିଥାଉ ପତ୍ର ମାଧ୍ୟମରେ,
ତାହା ହିଁ ଯଥେଷ୍ଟ ।

୫୧

ପ୍ରଭୋ !
ନିଜେ ଚେଷ୍ଟା କଲେ
ଧାଡ଼ିଏ ବି ଲେଖି ପାରେନା
ଅଥଚ ତୁମକୁ ସ୍ମରିବା ମାତ୍ରେ
ଲେଖନୀ ମୋର ଚଞ୍ଚଳ ହୋଇ ଉଠେ,
ମାତ୍ର ମୁଁ କବି ସମ୍ମାନ ପାଇବା ବେଳେ
ମନେ ମନେ ତୁମ ପ୍ରତି କୃତଜ୍ଞ ହୁଏ କି ?

୫୨

ପକ୍ଷୀ ଓ ନଦୀ ଗୀତ ଗା'ନ୍ତି ନିଜ ଆନନ୍ଦରେ,
ଅପେକ୍ଷା ରଖନ୍ତିନି କେବେ ଅନ୍ୟ ପ୍ରଶଂସାର,
ସେଥିଲାଗି ତ ସଦା ବିହ୍ୱଳ ସେମାନେ,
ଅଥଚ ମଣିଷ ନିଜ କଣ୍ଠର ଖ୍ୟାତି ଶୁଣିବା ଲାଗି
ଉନ୍ମୁଖ ରହି,
ସଦା ଉଦ୍‌ବିଗ୍ନ, ନିରାନନ୍ଦକୁ ଆମନ୍ତ୍ରଣ କରିଥାଏ ।

୫୩

ଗଛରୁ ଫଳଟିଏ ଖସି ପଡ଼ିଲା ହଠାତ୍,
ମୁଁ ତା' ଗୋଟେଇ ନେଇ ଅନାଇ ଦେଇ ଉର୍ଦ୍ଧ୍ୱକୁ
ଅବାକ୍ ହୋଇଗଲି, ମନେ ହେଲା
ଗଛ ଆଖିରେ ଲୁହ,
ପକ୍ଷୀଶାବକଟିଏ ଖସି ପଡ଼ିଲା ଯେପରି ନୀଡ଼ରୁ ।

୫୪

ତମ ପାଇଁ,
କେତେ ଦୁଃଖପୂର୍ଣ୍ଣ ମୁହୂର୍ତ୍ତ ସେ ସତେ,
ଯେବେ ତମକୁ ପ୍ରଶଂସା କରୁଥିବା
ଲୋକଙ୍କର ପ୍ରାଥମିକ ଉଚ୍ଛ୍ୱାସରେ
କ୍ରମେ ଭଟ୍ଟା ଆସିଯିବ,
ଯେଉଁ ଆସିବା ଖୁବ୍ ସ୍ୱାଭାବିକ,
ଯେତେବେଳେ ଶୂନ୍ୟତାର ନିରାନନ୍ଦରୁ
କିଏ ମୁକ୍ତି ଦେବ ତୁମକୁ ?

୫୫

ପୁତ୍ରକୁ ହରାଇ ମା,
ଓ
ସ୍ୱାମୀକୁ ହରାଇ ସ୍ତ୍ରୀ
ଶୋକରେ ମୁହ୍ୟମାନ,
ସମୟସ୍ରୋତରେ ସେମାନେ ଭାସିଭାସି ଯାଉଯାଉ
ଆଦ୍ୟ ହସ ହସିଥିବେ ଯେବେ,
ସେହି ହସର ମୁହୂର୍ତ୍ତ ଓ କାରଣ
ଉଭୟ ଅନିର୍ବଚନୀୟ ।

୫୬

ଆଜି ସକାଳୁ ନିଦ ଭାଜିବା ସଙ୍ଗେସଙ୍ଗେ
କାହା କଥା ହଠାତ୍ ମନେପଡ଼ିଯାଉଛି
ଭାସି ଉଠୁଛି କାହାର ସେ ମୁହଁ ଆଖି ସାମ୍ନାରେ ?
ସେ ମୁହଁ ରତନର ।

ବାରବର୍ଷବେଳେ ତାକୁ, ତାର ବାପା
ଛାଡ଼ିଦେଇ ଯାଇଥିଲା ମୋ' ପାଖେ
"ମା', ପେଟପୂରା ଗଣ୍ଡେ ଖାଇବାକୁ ପାଉନି,
ଥାଉ ତମପାଖେ ।"

ସେହିଦିନୁ ପାଞ୍ଚବର୍ଷ ମୋ' ପାଖେ ରହିଥିଲା ସେ,
ଅପତ୍ୟ ସ୍ନେହ ଦେଇ ରଖିଥିଲି ତାକୁ
ମା' ବୋଲି ମୋ' ଲାଗି କି ଆନୁଗତ୍ୟ ତା'ର !

'ଘର ଚଳୁନି' କହି ବାପା ଆସି ତା'କୁ ନେଇଗଲା,
ଯିବାବେଳେ ରତନର ସେ କି କାନ୍ଦ,
ମୋ' ଆଖିରେ ଲୁହ କ'ଣ ବାଧାମାନୁଥିଲା ?

ଗାଁରେ କ'ଣ କରୁଥିବ ରତନ୍ ଏବେ ?
ତା' ଚାଳଘର ଛୋଟ ମାଟିପିଣ୍ଡାରେ ବସି
ତା' ଆଖିଲୁହରେ ମୋତେ ସ୍ମରୁଥିବ କି ?

୫୭

ଦି' ଦିନର କଅଁଳିଆ ଛୁଆ ଦି'ଟାଙ୍କୁ
ଚାଲୁ କରିଦେଇ,
ଆହ୍ଲାଦରେ ଭୂଆଁ ଓଠ ଚାଟୁଛି,
ଅଥଚ ମ୍ୟାଉଁମ୍ୟାଉଁ କି ବିକଳ କାନ୍ଦଣା

ମା' ବିଚାରୀର
ଭୂଆଁର କଠୋର ବିଦ୍ରୁପ କିନ୍ତୁ
"ଏତେ ସକ କାହିଁକି ?
ତୁ ପୁଣି ମା' ହେବାର ଦାୟିତ୍ୱ ମୋର ।"

୫୮

ତରୁଣୀ ମା' ଶିଶୁପୁତ୍ରର ହାତଧରି
ଫୁଟ୍‌ପାଥ୍‌ରେ ଠିଆହୋଇ
ତା' ପୂର୍ବପ୍ରେମିକ ସଙ୍ଗେ
ତନ୍ମୟହୋଇ କଥା କହୁଥିବାବେଳେ
ପିଲାଟି ଅସ୍ଥିର ହେବାରୁ
ତା'କୁ ତାଗିଦ୍ କରୁଛି ସେ,
"ଠିଆ ହ', ଚୁପ୍ ହୋଇ ।"

୫୯

ରମା ଦୀର୍ଘଦିନ ହେଲା
ବିଦେଶରେ ଥିବା ତା ସ୍ୱାମୀଠାରୁ ଚିଠି ନପାଇ
ଉଦ୍‌ବିଗ୍ନ ଚିତ୍ତରେ
ନିତି ପୋଷ୍ଟ୍‌ମ୍ୟାନ୍‌କୁ ଅପେକ୍ଷା କରୁଥିଲା,
ଓ
ଡାକବାଲାଟି ଅସାଧାରଣ ମନେହେଉଥିଲା ତା'ଲାଗି
ମାତ୍ର ଆକାଂକ୍ଷିତ ଚିଠିଟା ମିଳିଯିବାପରେ
ମନତଳେ ତା'ର ସେଇ ଡାକପିଲାଟି ସଂପର୍କରେ
ପୂର୍ବ ଆବେଗର ସ୍ଥିତି ଆଉ ଅଛିକି ?

୬୦

ପ୍ରଭୋ !
ପ୍ରତିକ୍ଷଣର ନବନବ ସୃଷ୍ଟିରେ ସଦା ବିଭୋର ଯେଣୁ

ତେଣୁ ଚିରଆନନ୍ଦମୟ ତ ତୁମେ,
ମାତ୍ର ସିମୀତ ସୃଜନୀଶକ୍ତିର ଅଧିକାରୀ ହୋଇ
ଅଖଣ୍ଡ ଆନନ୍ଦ କିପରି ଲଭିବି ମୁଁ ?

୬୧

ଯୁଦ୍ଧର ସାହାଯ୍ୟ ଲାଗି
ଦୁର୍ଯ୍ୟୋଧନ ଓ ଅର୍ଜୁନ ଉଭୟେ
ଦ୍ୱାରସ୍ଥ ହୋଇଥିଲେ କୃଷ୍ଣଙ୍କର,
ଦୁର୍ଯ୍ୟୋଧନ ଲୋଡ଼ିଥିଲେ ନାରାୟଣୀ ସେନା
ମାତ୍ର ଅର୍ଜୁନ କୃଷ୍ଣଙ୍କୁ କେବଳ,

ସାରା ଜୀବନ ଆମେ
ମାନଗୋବିନ୍ଦର ଚିନ୍ତାରେ ପ୍ରମତ୍ତ ରହି,
ପରାଜୟର ଗ୍ଲାନିରେ ଚିର ଜର୍ଜରିତ,
କୃଷ୍ଣକେଶବଙ୍କୁ ଏକାନ୍ତଭାବେ ଆଶ୍ରୟ କରି
ଜୀବନର ପ୍ରତି ମୁହୂର୍ତ୍ତର ବିଜୟକୁ
ଆସ୍ୱାଦନ କରିବୁ କିପରି ?

୬୨

ଧର୍ମବକର ପ୍ରତ୍ୟେକ ପ୍ରଶ୍ନର
ନିର୍ଭୁଲ୍ ଉତ୍ତର ଦେଇ ପାରିଥିଲେ
ସ୍ଥିରମନା ଯୁଧିଷ୍ଠିର,
ଚଞ୍ଚଳ ଚିତ୍ତ ଅନ୍ୟ ଭାଇମାନେ ନୁହନ୍ତି,
ଯେ ସ୍ଥିତପ୍ରଜ୍ଞା,
ଧର୍ମର ପ୍ରକୃତ ସଂଜ୍ଞା
ନିରୂପଣ କରିପାରେ ସେ କେବଳ ।

୬୩

ତୁମେ ମୋ ବାର୍ଦ୍ଧକ୍ୟ ମଧ୍ୟରୁ
ଯେଉଁ ତନ୍ୱୀଟିକୁ ଖୋଜୁଛ ଛଳଛଳ ଆଖିରେ
ସେ କ'ଣ ମିଳିବ କେବେ ଆଉ ?

ମୋର ସେଇ ବସନ୍ତ ବୟସର ଛବିକୁ ଚାହିଁ
କାନ୍ଦ କାନ୍ଦ ହୋଇ କହୁଛ,
ସେଇ ଫଟୋ ଭିତରୁ
ମୁଁ ଡେଇଁ ପଡ଼ନ୍ତି କି ତୁମ ପାଖକୁ
ମାତ୍ର ତୁମର ଏ ଆବେଗ କ'ଣ
ବାସ୍ତବ ହେବ କେବେହେଲେ ?

ତୁମେ କ'ଣ ଭାବୁଛ
ଏ ଭାବାବେଗରୁ ମୁଁ ମୁକ୍ତ କି ?
ଆହା, ଜରା ଅବ୍ୟାହତି ଦେଇ ଦିଅନ୍ତା କି
ତୁମକୁ ତା' ଭ୍ରୂକୁଟିରୁ
ତୁମେ ଉଜ୍ଜ୍ୱଳ ତାରୁଣ୍ୟ ନେଇ
ପୁନଶ୍ଚ ଫେରିଆସନ୍ତ ମୋ ପାଖକୁ ।

ମାତ୍ର ପଛକୁ ଆମେ ଫେରିବାନି ଆଉ,
ସମୟ ସ୍ରୋତରେ ଆମେ ଯେ ଭାସି ଚାଲିଛେ
ଆଗକୁ ଆଗକୁ,
ମୃତ୍ୟୁର ଅସ୍ପଷ୍ଟ ପଦଧ୍ୱନି
ଶୁଣି ପାରୁନେ କି ଆମେ ?
ତଥାପି ଆମ ସ୍ୱପ୍ନର ଏତେ ବିହ୍ୱଳତା
କାହିଁକି, କାହିଁକି ?

୬୪

ଶିଶୁଟି କାନ୍ଦି କାନ୍ଦି ଥକି ଗଲାଣି,
ତଥାପି ତରୁଣୀ ମାଆ ତାକୁ
ସ୍ତନ୍ୟ ଦେବାକୁ ନାରାଜ,
ସେ ପୁଣି ମାଆ ।

୬୫

ରୋଗ ଶଯ୍ୟାରେ ଶାୟିତ
ସ୍ୱାମୀଙ୍କ ମୃତ୍ୟୁ ନିଶ୍ଚିତ ଏହା ଜାଣିଯିବା ପରେ
ରୁକ୍ମିଣୀ ଦେବୀ
କାନ୍ଦିବା ଆରମ୍ଭ କରି ଦେଇଥିଲେ,
କାନ୍ଦିକାନ୍ଦି ସେ ଯେବେ ଅବସନ୍ନ ଓ କ୍ଳାନ୍ତ
ଦିନେ ଅକସ୍ମାତ୍ କାଳ ହୋଇଗଲା ସ୍ୱାମୀଙ୍କର,
ଓ
ସେ କାନ୍ଦିବାକୁ ଯାଇ ହଠାତ୍ ଅନୁଭବ କଲେ
ତାଙ୍କର ସ୍ୱାଭାବିକ କ୍ରନ୍ଦନର ଆବେଗ
ଆଉ ନାହିଁ ।

୬୬

ପିତାର ପରିଚୟ ନ ନେଇ
ଏ ପୃଥିବୀକୁ ଯେ ଆସିଛି
ତାକୁ ସ୍ୱାଗତ କର,
କାରଣ ସେ ସନ୍ତାନ ଆମ ସଭିଙ୍କର ।

୬୭

ପ୍ରଭୋ !
ତୁମେ କେଡ଼େ ସରଳ ଓ ଅକପଟ,
ପୁଣି କେଡ଼େ କପଟୀ ଓ କ୍ରୁର,

ସତରେ ତୁମେ କ'ଣ ଏପରି ?
ନା, ଆମ ସ୍ୱଭାବ ଅନୁରୂପ
ରୂପାନ୍ତର ହୁଏ ତୁମର ?

୬୮

ରାମବାବୁଙ୍କ ସ୍ନେହୀ ବିଲେଇଟି
ଗତ ରାତିରେ ସାପ କାମୁଡ଼ାରେ ମରିଯିବା ପରେ
ସକାଳେ ତାକୁ ରାସ୍ତାକଡ଼ରେ
ଫୋପାଡ଼ି ଦିଆ ହୋଇଚି,

ଗତକାଲି ସକାଳେ ଖରା ପୋଉଁଥିଲା
ତାଙ୍କ ଅଗଣାରେ ସେ ଯେତେବେଳେ,
ତାକୁ ଦେଖାଇ ରାମବାବୁଙ୍କ ସ୍ତ୍ରୀ
ମୋତେ କହୁଥିଲେ,
"ଯେତେ ଛୁଆ ଦେଲା,
ସବୁ ଭୂଆଁ ଖାଇଗଲେ,
ଏଥର ଛୁଆ ଦେଲେ
ଟୋକେଇ ଘୋଡ଼େଇ ରଖିବି,
ଦେଖିବା କେମିତି ଭୂଆଁ ଖାଇଯିବ ସେମାନଙ୍କୁ !"

୬୯

ଧନେଶ୍ୱରବାବୁ ରାସ୍ତାପାଖ ସେଲୁନ୍‌ରେ ବସି
ସମ୍ବାଦପତ୍ର ପଢୁଥିଲେ,
ହଠାତ୍ ରାସ୍ତା ଉପରେ
ବୁଲା କୁକୁରଛୁଆଟିକୁ ଜିପ୍ ମାଡ଼ିଗଲା
ଓ ଅନ୍ତବୁଜୁଳା ବାହାରି ପଡ଼ିଲା ତାର ।
ଏ ମର୍ମନ୍ତୁଦ ଦୃଶ୍ୟ ଦେଖି ଦେଇ
ଧନେଶ୍ୱରବାବୁ ଖବରକାଗଜ ଫୋପାଡ଼ି ଦେଇ

ଧାଇଁଲେ ଘରକୁ,
ଓ ଘରେ ପହଞ୍ଚି ଚେନ୍‌ରେ ବଂଧା ହୋଇଥିବା
ନିଜ କୁକୁର ଛୁଆଟିକୁ
ବୁକୁ ଉପରକୁ ଟେକି ନେଇ
ବାରମ୍ବାର ଗେଲ କରୁକରୁ
କାନ୍ଦି ପକାଇଥିଲେ ।

୭୦

ଯାହାର କୌଣସି ଘର ନାହିଁ
ତା'ର ଘର ସବୁଠି,
ଯାହାର ନିଜର ବୋଲି କେହି ନାହାନ୍ତି
ସମସ୍ତେ ତା'ର ନିଜର,
ଏହା କେବଳ ସଂଭବ ହେବ,
ନିଜକୁ ସବୁରି ଭିତରେ
ସଂପ୍ରସାରିତ କରି ପାରିଲେ ।

୭୧

ସୁନ୍ଦରୀ ମଧୁମିତା
ରୋଷରେ ଜଳିଉଠି
ଅଭିଯୋଗ କଲା ଆସି ମାଧବୀଙ୍କ ପାଖେ,
"ଶୁଣୁଛ ଭାଉଜ, ମୋର ତ ବୟସ
ମୋଟେ କୋଡ଼ିଏ,
ଅଜିତ୍ ଭାଇ କହୁଛନ୍ତି କ'ଣ ନା ପଚିଶ,
ଭାରି କହିଲାବାଲା ହୋଇ ଗଲେଣି ।"

ଅପାଠୁ ସେ ଅଭିଯୋଗ ଶୁଣି
ଅଜିତ୍ ଓଠ ନେଫେଡ଼େଇ କହିଲା,
"ଇସ୍, ତାକୁ ଯେମିତି
ପଚିଶ କେବେ ଆଉ ହବନି ?"

୭୨

ପ୍ରତିବେଶିନୀଙ୍କ ଶିଶୁପୁତ୍ରଟି
ମୋ କୋଳରେ ମୁତିଦେବା ମାତ୍ରେ
ମନେମନେ ମୁଁ ଭୀଷଣ
ବିରକ୍ତ ହୋଇ ଉଠିଥିଲି-
ଇସ୍, ଶାଢ଼ୀଟା ଗଲା,
ଅଥଚ ବ୍ୟସ୍ତ ହୋଇପଡ଼ି ତା'ର ମାଆ
ଯେତେବେଳେ ତାକୁ ମୋ କୋଳରୁ
ତରତର ହୋଇ ଉଠାଇ ନେଲେ
ମୃଦୁ ହସି ମୁଁ କିନ୍ତୁ କହିଲି,
"ଆହା, ଏହା ତ ଗଙ୍ଗାଜଳ ।"

୭୩

ଅପେକ୍ଷାଠୁ ବଳି ଦୁଃଖ ନାହିଁ,
ଅପେକ୍ଷାଠୁ ବଳି ସୁଖ କାହିଁ ?

୭୪

ଏ ପୃଥିବୀରେ ବା ଆଉ କେତେ ଦିନ ?
ଜୀବନ ତ ଶେଷ ହୋଇ ଆସିଲା,
ଆମ ଦୁହିଙ୍କ ଭିତରୁ କେହି ଜଣେ
ଆଗ ଚାଲିଯିବ,
ସେତେବେଳେ ଅନ୍ୟଜଣକ
କେଡ଼େ ଏକା ହୋଇଯିବ ସତେ,
ଭାବି ହେଉନି ସେ, ବ୍ୟବଧାନର କଥା... ।

୭୫

ମୋର ତିରୋଧାନ ପରେ
ମୋ ଖାତା ଓ କଲମ,

ଯେମିତି ଥିବ, ସେମିତି ରଖି ଦେଇଥିବ
ମୋ ଟେବୁଲ ଉପରେ,
ହୁଏତ କେତେବେଳେ ଫେରିଆସି
କବିତାଟିଏ ଲେଖିଦେଇ ପାରେ ।

୭୬

ଶିଶୁମାନଙ୍କୁ ଦେଖି ଭାରି ଇଚ୍ଛା ହୁଏ
ସେମାନଙ୍କ ପରି ଅଳି କରିବାକୁ,
ଅଝଟ ହେବାକୁ,
ମାତ୍ର କାହା ପାଖେ ?
ତୁମ ପାଖେ ତ ପ୍ରଭୋ !

୭୭

ଆମ ବିବାହର ଦଶଦିନ ପରେ
ଆମେ ଯାଇ ବସିଥିଲେ ଜ୍ୟୋସ୍ନା ରାତିରେ
ଦିଗ୍‌ବାରଣ ଖୁଣ୍ଟି ପାଖେ
ସମୁଦ୍ର ବାଲିରେ,
ପୋଲିସ୍ ଆସି ଆମ ପରିଚୟ ପଚାରି
ସତର୍କ କରିଦେଲା-ରାତି ଅନେକ ହେଲାଣି
ଏଥର ଫେରିଯାଅ ଘରକୁ,
ଆମେ ଫେରି ଆସିଥିଲେ ।

ଚାକିରୀରୁ ତୁମେ ଅବସର ନେଇ
ପୁରୀ ଲେଉଟି ଆସିବା ପରେ
ଆଜି ଆମେ ଆସି ବସିଛେ
ଠିକ୍ ସେଇ ଦିଗ୍‌ବାରଣ ଖୁଣ୍ଟି ପାଖ ବାଲି ଉପରେ,
ଆକାଶରେ ଜହ୍ନ,
ବେଶ୍ ରାତି ହେଲାଣି,

ପୋଲିସ୍ ଆମ ପାଖଦେଇ
ଯିବାଆସିବା କଲାଣି କେତେଥର,
ଅଥଚ ଏଠୁ ଆମେ ଖସିଯିବା ପାଇଁ
ତା'ର କୌଣସି ତାଗିଦା ନାହିଁ ତ !

୭୮

ବାହାରେ ଭୀଷଣ ଖରା,
ବୁଲା କୁକୁରଟି ଆମ ପିଣ୍ଡାରେ
ଛାଇରେ ଶୋଇଚି,
ତାକୁ ତଡ଼ି ଦିଅନି,
ନିଶ୍ଚିନ୍ତରେ ଶୋଇବାକୁ ଦିଅ ।

୭୯

ରାସ୍ତାରେ ଠିଆ ହୋଇଥିବା ଗାଈଟିର
ଦି' ଆଖିରୁ ଧାରଧାର
ଲୁହ ବୋହି ଯାଉଛି,
କିପରି ବୁଝି ହୁଅନ୍ତାନି ତା'ର
ଅବ୍ୟକ୍ତ ବେଦନାକୁ !

୮୦

ଝିଟିପିଟିକୁ ପିଟିଦେବାରୁ
ମୁହଁରେ ଧରିଥିବା ପ୍ରଜାପତିଟିକୁ
ଛାଡ଼ିଦେଇ ପଳାଇଲା,
ବଂଚିଗଲା ପ୍ରଜାପତିଟି, ଆଃ,
ସଜନାଗଛରେ ଲାଗି ହୋଇଥିବା
ସାଁବାଲୁଆମାନଙ୍କୁ
ମୁଁ କାଲି ନିର୍ମମ ଭାବେ ପୋଡ଼ିଛି,

ସାଁବାଲୁଆ ଗର୍ଭରୁ
ପ୍ରଜାପତିର ଜନ୍ମ ।

୮୧

ମୋର ଅନେକ କବିତା ହଜିଯାଇଛି,
ଯାହା ଏବେ ଖୋଜିଲେ ମିଳୁନି ଆଉ,
କ'ଣ ଲେଖିଥିଲି ସେ ସବୁ କବିତାରେ ?
ଆହା; ସେଥିରୁ କେତୋଟି ହେଲେ
ମିଳିଯା'ନ୍ତା କି ।

୮୨

ଏବେ,
ପିଲାଦିନର ଅନେକ କଥା ମନେ ପଡୁଛି,
ରଜଦୋଳି, ପୁଚିଖେଳ, କଣ୍ଢେଇ ବାହାଘର,
ନାତୁଣୀକୁ କୋଳରେ ଧରି
ଝିଅମାନଙ୍କର ଖୁଦୁରୁକୁଣୀ ଗୀତ ଶୁଣୁଶୁଣୁ
ଲୁହରେ ଅଂଧ ହୋଇଯାଉଛି ମୁଁ ।

୮୩

କଥା ଦେଇଥିଲେ ବି,
ମୁଁ ଯେ କେତେ ଅସୁବିଧାରେ ପଡ଼ି
ତାଙ୍କ ପାଖକୁ ଯାଇ ପାରିଲିନି
ବୁଝାଇ କହିଲେ ବି
ସେ କ'ଣ ତା' ବୁଝିଲେ ?
ଅଭିମାନ ପାଖେ ବିଘ୍ନରର ସ୍ଥିତି କାହିଁ ?

୮୪

ଆମ ବଗିଚ୍ଚାରେ ଫୁଟିଥିବା
ଗୋଲାପ ଫୁଲଟିକୁ
ଆମ ପ୍ରତିବେଶିନୀ ମିସେସ୍ ମାଲହୋତ୍ରା
ହଠାତ୍ ଛିଣ୍ଡାଇ ନେଇ
ନିଜ ଗଭାରେ ଖୋସିଦେବାରେ
ମୁଁ ବିବର୍ଣ୍ଣ ହୋଇଗଲି,
ଅଥଚ ସୌଜନୀ ଖାତିର୍‌ରେ
ତାଙ୍କୁ କିଛି କହି ପାରିଲି କି ?

୮୫

ମନର ସକଳ ପ୍ରକାରର ଆଲୋଡ଼ନକୁ
ମୁଁ ଅକପଟ ଭାବେ
ବ୍ୟକ୍ତ ନ କରେ ବୋଲି ତ
ମୁଁ ଭଦ୍ର ।

୮୬

ଅନେକ ତ ତୁମକୁ
ଚିଢ଼େଇବେ, ରଗେଇବେ,
ମାତ୍ର ତୁମର ନ ଚିଢ଼ିବା, ନ ରାଗିବା ଉଚିତ୍,
ସେମାନଙ୍କର ମନ୍ଦ ପ୍ରକୃତି
ତୁମ ମଧ୍ୟରେ ସଂକ୍ରମିତ ହେବ କାହିଁକି ?

୮୭

ପ୍ରଭୋ !
ତୁମେ ଯଦି ମୋର ହାତ ନ ଧର,

ତେବେ, କେବଳ ନିଜ ଶକ୍ତିରେ
ଆଗେଇ ପାରିବି କି ?

୮୮

ଅନ୍ୟର ନିନ୍ଦା କରିବାରେ,
ଯଦି ତୁମେ ତୃପ୍ତି ପାଉଥାଅ,
ତେବେ ମନେ ରଖ,
ତୁମେ ଇଶ୍ୱରଙ୍କୁ ଉପହାସ କରୁଛ ।

୮୯

ରାସ୍ତାରେ ଚାଲୁଚାଲୁ
ଯଦି ପାଦରେ ତୁମର କଣ୍ଟାଟିଏ ଫୁଟିଯାଏ,
ତେବେ କଣ୍ଟାଟିକୁ ଘୃଣାରେ ଫିଙ୍ଗି ନ ଦେଇ
ଶ୍ରଦ୍ଧାରେ ତାକୁ ଚୁମାଟିଏ ଦିଅ ।

୯୦

ରୁକ୍ଷ ପର୍ବତରୁ ଯଦି
ନିର୍ଝର ଝରିପାରେ,
ତେବେ ମୋର ପାଷାଣ ହୃଦୟରୁ
ବିଭୁ ପ୍ରେମର ମନ୍ଦାକିନୀ
ନ ଝରିବ କାହିଁକି ?

୯୧

ଅନ୍ୟମାନଙ୍କୁ ଆନନ୍ଦର ରାସ୍ତା
ବତାଇ ଦିଏ ସତ,
ମାତ୍ର ନିଜେ ନିରାନନ୍ଦରେ ବୁଡି ରହିଥାଏ ।

୯୨

ଏକା ଥିବାବେଳେ ମୁଁ ସଂଗଲୋଡ଼େ,
ମାତ୍ର ସେ ସାନ୍ନିଧ ଲାଭପରେ
ଏତେ କ୍ଳାନ୍ତ ହୋଇପଡ଼େ ଯେ,
ଭାବେ ଏକୁଟିଆ ଥିଲି, ଭଲଥିଲି ।

୯୩

କ୍ୟାନ୍‌ସରରେ ଭୋଗୁଥିବା ସଦାନନ୍ଦବାବୁ
ଜୀବନର ଅନ୍ତିମ ମୁହୂର୍ତ୍ତରେ
ସଯତ୍ନେ ରଖିଥିବା ଟ୍ରେଜେରୀ ଚାବିଟି
ପତ୍ନୀଙ୍କ ହାତକୁ ବଢ଼ାଇ ଦେଉଦେଉ
କାନ୍ଦି ପକାଇଥିଲେ ।

୯୪

ସୁନ୍ଦର ଦିଶିବ ବୋଲି
ଫୁଲଟିକୁ ନ ତୋଳି
ଗଛରେ ରଖି ଦେଇଥିଲି,
କିଛି ସମୟ ପରେ ହଠାତ୍ ଲକ୍ଷ୍ୟ କରୁଛି
ଫୁଲଟି ଆଉ ନାହିଁ,
ଉତ୍ୟକ୍ତ ହେବି କି ?
ଉତ୍ୟକ୍ତ ନ ହୋଇ
ବରଂ ଭାବିବା ମୋର ଉଚିତ୍
ଫୁଲଟି ନେଇ ଜଣେ କେହି ତ ଖୁସି ହୋଇଚି,
ତା'ର ସେ ଖୁସି ମୋ ଖୁସି ନ ହେବ କାହିଁକି ?

୯୫

ପ୍ରତିବେଶିନୀଙ୍କର ଯେଉଁ କୁନି ଝିଅଟି
ମୋ ପାଖକୁ ଧାଇଁଆସି

ମୋତେ ମାଆ ମାଆ ଡାକି
ମୋ କୋଳରେ ପଶି ଗେହ୍ଲା ହେଉଥିଲା
ଏବେ ତା'ର ଆସିବା ଯେମିତି
ଅନେକ କମି ଯାଇଛି;
ଆଗ ପରି କୋଳରେ ପଶି ଗେହ୍ଲା ହେଉନି ।

ତା'ର ମାଆ ମୋ ମନର ଆଲୋଡ଼ନ ବୁଝିପାରି
ଦିନେ ହସି କହିଲେ,
"ଟିକେ ବଡ଼ ହୋଇଗଲାଣି ତ,"
ମୋ ଆଖିର ଲୁହ ମୁଁ ସଂବରଣ
କରିପାରି ନଥିଲି ।

୯୬

ମୋର ବୃଦ୍ଧା ମାଆ ରହିଗଲାଣି
ଆଉ ଉଠିପାରୁନି,
ଅଥଚ ତା'ର ଆମେ ତିନି ଝିଅ
ଦୂରରେ ରହିଥିବା ହେତୁ
ନିଜର ସଂସାର ଛାଡ଼ି,
ପାଳିକରି ଆସି
ଠିକ୍ ସେବା ତା'ର କ'ଣ କରି ପାରୁଛୁ ?

ଭାଇ ନାହାନ୍ତି ଆମ୍ଭମାନଙ୍କର,
ବୋଉ ଦିନେ କାନ୍ଦି ପକାଇ ମୋତେ କହିଲା,
"ବାପା ତୋର ଥା'ନ୍ତେ କି !"
ବାପାଙ୍କର ପ୍ରୟାଣ ବାଇଶିବର୍ଷ ହୋଇଗଲା ।

୯୭

ଫୁଲଟି କେଡ଼େ ସୁନ୍ଦର ଦିଶୁଛି ଗଛରେ,
ଆମେ ତାକୁ ତୋଳି ଆଣିବା
ନା, ତାକୁ ସେଇ ଗଛରେ ରହିବାକୁ ଦେବା ?

୯୮

ରାସ୍ତାରେ ଆଲ୍‌ପିନ୍‌ଟିଏ ପଡ଼ିଛି,
ତାକୁ ଆମେ ଦେଖି ନ ଦେଖିଲା ଭଳି
ଆଡ଼େଇ ହୋଇ ଚାଲିଯିବା,
ନା ଗୋଟେଇ ଆଣିବା ରାସ୍ତା ଉପରୁ ?

୯୯

ହଠାତ୍ ଗୋଡ଼ ଖସି ପଡ଼ିଗଲା ଜଣେ,
ହସି ପକାଅନି,
ସେ ହସ ତୁମର ଚେତନାକୁ ବିଦ୍ରୂପ କରିବ ।

୧୦୦

ଅଭିମାନ ଯେ ବୁଝେନା,
ତା' ଉପରେ ଅଭିମାନ କରି
ଆମ୍ଭେମାନେ, ନିରର୍ଥକ ଦୁଃଖ ପାଉଥାଉ ।

୧୦୧

କବିତାଟି ଲେଖିସାରି
ନିଜର ଅସାବଧାନତା ବଶତଃ
ତା' ହଜାଇ ଦେବା ପରେ,
ତାକୁ ଯେତେ ସ୍ମରିଲେ ବି
ଅଭିମାନେ ସେ ଫେରିନି କେବେ ଆଉ ।

୧୦୨

ଗଛଟିକୁ କାଟିଦେବା ପରେ,
ଯେଉଁ ଥୁଣ୍ଟା ଗଛଟି ରହିଯାଏ,

ନୀରବେ ସେ ସ୍ମରୁଥାଏ
ତା'ର ଅତୀତର ଐଶ୍ୱର୍ଯ୍ୟକୁ ।

୧୦୩

ଆଜିର ଜଣେ ଶୋକାକୁଳ
କାଲିର ଜଣେ ଶୋକାକୁଳକୁ
ସାନ୍ତ୍ୱନା ଦେଇଥାଏ ।

୧୦୪

ପ୍ରଭୋ !
ତମ ଉପରେ ଅଭିମାନ କଲେ
ଯେମିତି ବୁଝ ତୁମେ,
କିଏ ବୁଝେ ଆଉ ସେମିତି ?
ମାତ୍ର ସେ ଅଭିମାନ ଯେବେ
ଅହଙ୍କାରକୁ ଛୁଏଁ,
ତୁମେ ମୁହଁ ବୁଲାଇ ନିଅ ।

୧୦୫

ଆମର ଉଦ୍‌ବେଗ ଓ ଉତ୍କଣ୍ଠାର
କିଛି ମାନେ ହୁଏ ?
ହେ ପ୍ରିୟ,
ତୁମର ଇଚ୍ଛାହିଁ କେବଳ
ଫୁଲ ହୋଇ ଫୁଟେ,
ସେଇ ଫୁଲର ଶୋଭା ଓ ସୌରଭରେ
ଯେଉଁମାନେ ବିଭୋର,
କେତେ ନିରୁଦ୍‌ବିଗ୍ନ ଓ ଶାନ୍ତ ସେମାନେ !

୧୦୬

ଅନେକ ଦିନ ହେଲାଣି, କୌଣସି ଚିଠି ଆସିନି,
ଡାକବାଲାକୁ ମୁଁ ଅନାଇ ରହୁଚି ସବୁଦିନ,
କେଉଁଠୁ ଓ କାହା ପାଖରୁ ଚିଠି ଆସିବ
ସେ କଥା ଭାବୁନି,
ଚିଠିଟିଏ ଆସୁ !

୧୦୭

ପ୍ରଭୋ !
ମୁଁ ଯେବେ ନୀରବରେ ତୁମ ସଂଗେ କଥା କହୁଥାଏ,
ସେତେବେଳେ ବାହାରର କେତେ ବାଧା, କେତେ ପ୍ରତିବଂଧକ,
ଏକାଗ୍ରତା ମୋ ମନର ବ୍ୟାହତ ହେବା ସତ୍ତ୍ୱେ
କଥା ଦି'ପଦ ତ କହେ ତୁମ ସଂଗେ ।

୧୦୮

ତୁମେ କୃପା କଲେ
ଗୋଟିଏ ପଲକରେ ତ
ସବୁ ନିରାନନ୍ଦ ଦୂର ହୋଇଯିବ ମୋର,
ମାତ୍ର ତୁମ କୃପା ପାଇବାକୁ
ଯେଉଁ ବ୍ୟାକୁଳତାର ପ୍ରୟୋଜନ
ତା' କାହିଁ ମୋର ପ୍ରଭୋ !
ସମ୍ଭବତଃ ସେଥିଲାଗି
ତୁମର କୃପା କଣିକାଏ ବି
ମୁଁ ଲାଭ କରି ପାରୁନି ।

୧୦୯

ଭଗବାନ୍ ଏତେ ବଡ଼ ବିଶ୍ୱର ସ୍ରଷ୍ଟା
ଅଥଚ ନିରହଙ୍କାର ସେ ।

୧୧୦

ପର୍ବତ ବଂଧୁର ଏହା ଜାଣି ବି
ତା'ର ଶ୍ୟାମଳିମାରେ ମୁଗ୍ଧ ହେଉ ଆମେ,
ଦାମ୍ପତ୍ୟ ଜୀବନ ଅସମତଳ ଏହା ବୁଝି ବି
ନବ ଯୁଗ୍ମ ଜୀବନ ଲାଗି
ସ୍ୱପ୍ନ ଓ କଳ୍ପନାର ଶେଷ କାହିଁ ?

୧୧୧

ସ୍ୱାମୀ ମୋର ଚାକିରୀରୁ ଅବସର ନେବାପରେ
ମୁଁ ନିଜ ଘରକୁ ଫେରି ଆସି ଅନୁଭବ କରୁଛି
ଦୋତାଲା ପାହାଚ ଉଠିବାରେ
କେତେକଷ୍ଟ ହେଉଚି ମୋତେ,
ମୋର ବସନ୍ତ ବୟସରେ
ଶାଶୂ ମୋର ଯେବେ
ଆଣ୍ଠୁରେ ଭରାଦେଇ ଏ ପାହାଚ ଉଠୁଥିଲେ,
ସେଇ ଅକ୍ଷମତାର ମୁଁ ଯେ ଦିନେ ଶିକାର ହେବି
ସେ ସଂପର୍କରେ କେବେ ଚିନ୍ତା କରିଛି କି ?

୧୧୨

ନିରକ୍ଷର ସେ ବ୍ରାହ୍ମଣ,
ଅଥଚ ପଣ୍ଡିତଙ୍କ ମୁଖ ନିସୃତ ଗୀତା ଶ୍ରବଣରେ
ବିହ୍ୱଳ ହୋଇ କାନ୍ଦନ୍ତି,

ଅବାକ୍ ଚୈତନ୍ୟଦେବଙ୍କ
କୌତୂହଳୀ ପ୍ରଶ୍ନର ଉତ୍ତରରେ
ବିନୀତ କଣ୍ଠରେ ଦ୍ୱିଜ କହିଥିଲେ,
ଗୀତା ଶୁଣୁଶୁଣୁ
ଦର୍ଶନ କରନ୍ତି ସେ ଶ୍ରୀକୃଷ୍ଣଙ୍କୁ
କୁରୁକ୍ଷେତ୍ରରେ, ରଥପରେ
ଅର୍ଜୁନଙ୍କୁ ସେ ଉପଦେଶ ଦେଉଛନ୍ତି ।
କୃଷ୍ଣଚୈତନ୍ୟ ନିବିଡ଼ ଆଲିଙ୍ଗନରେ
ଆବଦ୍ଧ କରିଥିଲେ ବିପ୍ରଙ୍କୁ ।

୧୧୩

ଗରୁଡ଼ ସ୍ତମ୍ଭ ପାଖେ
ଚୈତନ୍ୟଦେବ ଜଗନ୍ନାଥଙ୍କୁ ଚାହିଁ ବିହ୍ୱଳ,
ବୃଦ୍ଧା ଜଣେ, ଲୋକାରଣ୍ୟ ମଧ୍ୟରେ
ଜଗନ୍ନାଥଙ୍କ ଦର୍ଶନ ନ ପାଇ
ମହାପ୍ରଭୁଙ୍କ ସ୍କନ୍ଧରେ ହାତ ଭରାଦେଇ
ଉହୁଙ୍କି, ଦେଖିବାକୁ ଉଦ୍ୟତ
ଭାବଗ୍ରାହୀଙ୍କୁ,
ପ୍ରଭୁଙ୍କ ଭକ୍ତମାନେ ତ ତା' ଆଚରଣରେ ଉତ୍‌କ୍ଷିପ୍ତ,
ବ୍ୟସ୍ତ ହୋଇପଡ଼ିଲେ ପ୍ରଭୁ,
"ଆହା, ଏ କ'ଣ କଲ ?
କାହାରି ଭାବ ଯେ ନଷ୍ଟ କରିବାର ନୁହେଁ !"

୧୧୪

ଏକଦା ମୁଁ ଏକାକିନୀ ମନ୍ଦିରକୁ ଯାଉଥିବା ବେଳେ
କଳା କୁକୁରଟିଏ ଅକସ୍ମାତ କୁଆଡୁ ଧାଇଁ ଆସି
ମୋ ସଂଗେ ଚାଲିବାକୁ ଲାଗିଲା,
ସାଥୀଟିଏ ଭଳି,

ମାତ୍ର ମନ୍ଦିର ପାଖେ ମୁଁ ପହଞ୍ଚିବା ମାତ୍ରେ
ହଠାତ୍ ସେ ମୋ ପାଖ ଛାଡ଼ି ଦେଇ
ଜନଗହଳି ଭିତରେ କୁଆଡେ ଲୁଚିଗଲା ।

ଅଳ୍ପକ୍ଷଣର ସାନ୍ନିଧ ସତ୍ତ୍ୱେ,
ସେ ଦିନ ସେ ଅପରିଚିତ ଶ୍ୱାନଟି
କେତେ ପରିଚିତ ଓ କେତେ ଆପଣାର
ନ ମନେ ହୋଇଥିଲା ମୋର,
ତେଣୁ ତା'ର ବ୍ୟବଧାନ ଖୁବ୍ ବାଧିଥିଲା ମୋତେ,
ପରେ ବ୍ୟାକୁଳ ହୋଇ କେତେ ନ ଖୋଜିଛି ତାକୁ,
ମାତ୍ର ଆଉ ପାଇନି ।

୧୧୫

ପ୍ରଭୋ !
ତୁମ ଆଶୀର୍ବାଦରୁ
କିଛି ଦିନ କବିତା ଲେଖୁଥିଲି,
ତା' ଲେଖି ନିଜେ ଆନନ୍ଦ ପାଉଥିଲି
ଏବଂ ତୁମେ ତାହା ଶୁଣି ଖୁସି ହେଉଥିଲ,
ମାତ୍ର ଆଜି ସେ ଆଶୀର୍ବାଦ ପ୍ରତ୍ୟାହାର କରି ନେଇଛ,
ତା' ବୋଲି ତୁମର ମୋର
ନିତ୍ୟ ସଂପର୍କ ବ୍ୟାହତ ହେବ କାହିଁକି ?

୧୧୬

ମୋତେ ଧନରେ ଦରିଦ୍ର କଲେ ବି
ଚିନ୍ତାରେ ଦରିଦ୍ର କରନି ପ୍ରଭୋ !
ନଚେତ୍ ତୁମ ସହ
ନିତ୍ୟ ସଂଯୁକ୍ତ ହୋଇ ରହିବି କିପରି ?

୧୧୭

କ୍ଷତି ଯାହା ହେବାର ହେଉଚି,
ତୁମେ ତାକୁ ରୋକି ପାରିବ କି ?
ତେଣୁ ଅନାସକ୍ତ ଭାବେ
ସେ କ୍ଷତିମାନଙ୍କର ବିଭିନ୍ନ ସ୍ୱରୂପ
ବିଶ୍ଳେଷଣ କରି
ତନ୍ମଧ୍ୟରୁ ଆନନ୍ଦ ଆହରଣ କର,
ସେଇ ଆନନ୍ଦ ଚୈତନ୍ୟକୁ ତୁମର
ଜାଗ୍ରତ କରିବ ।

୧୧୮

ଉତ୍ତୀର୍ଣ୍ଣ ଚାଳିଶ ପରେ
ପ୍ରଥମେ ମୁଁ ଯେବେ ପ୍ରଚକ୍ଷୁ ନେଲି,
ଅନାଗତ ବାର୍ଦ୍ଧକ୍ୟ ଚିନ୍ତାରେ
ହଠାତ୍ ମୋର ମନଟା
ଭାରାକ୍ରାନ୍ତ ହୋଇ ଯାଇଥିଲା ।

୧୧୯

ଯେବେ ମିଛ କହିଛି
ଅନୁତପ୍ତ ହୋଇଚି,
ମାତ୍ର ମିଥ୍ୟା କହିବା ତ୍ୟାଗ କରି ପାରୁନି ।

୧୨୦

ଅନ୍ୟର ଦୋଷ ପ୍ରତି
ଆଖି ମୁଦି ଦେବା କଥା,
ମାତ୍ର ମୁଁ ତାହା ପାରୁଛି କି ?

୧୨୧

ଦୁଷ୍ଟ ଶିଶୁଟି ଅପ୍ରତ୍ୟାଶିତ ଭାବେ
କେତେ ବେଶୀ ଶାନ୍ତ ହୋଇ ଯାଇଛି,
ତା'ର ଦୁଷ୍ଟାମି ପ୍ରତି ମନତଳେ ମୋର
ପୁଞ୍ଜିଭୁତ ବିରାଗ ହିଁ ଥିଲା,
ଅଥଚ ଆଜି ଏଇ ଶାନ୍ତ ଶିଶୁଟି ଭିତରେ
ମୁଁ ସେଇ ଦୁଷ୍ଟ ଶିଶୁଟିକୁ
ବ୍ୟାକୁଳ ହୋଇ ଏତେ ଖୋଜୁଛି କାହିଁକି ?

୧୨୨

ନିଜର ଯେତେ ପ୍ରିୟଜନ ହେଲେ ବି
ଈଶ୍ୱରଙ୍କଠୁ ସେମାନଙ୍କୁ
ଅଧିକ ପ୍ରିୟ ମନେ କରନି ।

୧୨

ସଦା ସତର୍କ ରୁହ
ତୁମର ବିଷଣ୍ଣତା ଦ୍ୱାରା
ଅନ୍ୟମାନେ ଯେପରି ସଂକ୍ରମିତ ନ ହୁଅନ୍ତି ।

୧୨୪

ସଦା ନିରାନନ୍ଦ ମୁଁ
ସଦା ହସ ଖୁସି
ଶିଶୁମାନଙ୍କୁ ଈର୍ଷା କରେ,
ଛି... ।

୧୨୫

କଲମ ନ ଧରିବା ଯାଏ,
କ'ଣ ଲେଖିବି, କ'ଣ ଲେଖିବି ହେଉଥାଏ,
ମାତ୍ର ଥରେ କଲମ ଧରିବା ମାତ୍ରେ
କୁଆଡୁ ଏତେ କଥା ଆସିଯାଏ
କାଗଜ ଉପରକୁ ?

୧୨୬

ଯେ ଅନ୍ୟମାନଙ୍କୁ ସଦା କ୍ଷମା ଦେଇଆସିଛି
ସେ ସାରାଜୀବନ କ୍ଷମା ହିଁ କରି ଚାଲିବ,
ଭୁଲ୍‌ରେ କେବେ କାହାକୁ ଆଘାତ କରି
ପରେ ପସ୍ତାଇବ କାହିଁକି ?

୧

ମୋର ଭାରି ଇଛା ହୁଏ ଦେଖିବାକୁ ମୋର ମୃତ୍ୟୁର ଛବିକୁ,
ଦେଖିହେବ, ନିଘୋଡ଼ ନିଦରେ ମୁହିଁ ଶୋଇଥିବାବେଳେ,
ମୋ ନିଦ୍ରାର ଭିନ୍ନ ଭିନ୍ନ ସମୟରେ କେତେଗୋଟି ଫଟୋ ତୋଳିନେଲେ
ମୁଁ ପାରିବି ବୁଝି, ମୃତ୍ୟୁ ପରେ ଠିକ୍ ଏଇ ଅବସ୍ଥା ମୋ ହେବ ।

ମୋର ମୃତ ଦେହ ପାଖେ କାନ୍ଦୁଥିବେ ପ୍ରିୟଜନମାନେ,
କୁହାକୁହି ହେଉଥିବେ ପୁଣି ମୋର ଗୁଣମାନ,
କାହା ସଙ୍ଗେ କେଉଁପରି ସମ୍ବନ୍ଧ ବା ଥିଲା,
ଜାଣି କିଛି ପାରୁ ତ ନ ଥିବି, ଶୋଇଥିବାବେଳେ
କେତେ କ'ଣ ଘଟିଯାଏ, ନିଦରୁ ମୁଁ ଉଠି ଶୁଣେ,
ମାତ୍ର ମୃତ୍ୟୁ ପରେ, ଉଠିବିନି, ଶୁଣିବିନି କିଛି ।

ନିଦ୍ରାଯିବା ଆଗୁଁ, ଚେଷ୍ଟା କରେ ଜାଣିବାକୁ
ଦେଖାଯାଉ କେତେବେଳେ ନିଦ୍ରା ମୋ ଆସୁଛି,
ଜାଣି କ'ଣ ପାରେ ? ଶୋଇଯାଏ ମୋ ଅଜ୍ଞାତସାରରେ,
ଜାଗ୍ରତର ମନଟାକୁ ଖୁବ୍ ଦୃଢ଼ କରିଥାଏ-
ନିଦ୍ରାରେ ମୋ ସ୍ୱପ୍ନଟାକୁ ସ୍ୱପ୍ନ ହିଁ ଭାବିବି,
କେବେ ବି ତା'ହୁଏ ? ସ୍ୱପ୍ନଟାକୁ ସତ୍ୟ ବୋଲି ଭାବେ ।

ନିଦ୍ରା ଆଉ ସ୍ୱପ୍ନ ଯେବେ ଆୟତ୍ତ ବାହାରେ,
ଜାଗ୍ରତରେ ସାଧନ, ଭଜନ କରି କି ଲାଭ ବା ହେବ ?
ତେଣୁ ମୁଁ ଭାବୁଛି, ନିଦ୍ରା ଆଉ ସ୍ୱପ୍ନ ପରେ
କିଛିଟା କର୍ତ୍ତୃତ୍ୱ ରଖିପାରେ ଯଦି,
ଜାଗରଣେ ମୋ ସାଧନା ହୁଏତ ବା
ଛୁଇଁପାରେ ତାଙ୍କର ପରିଧି ।

୨

ବୟସର ଅଗ୍ରଗତି ସଙ୍ଗେ
ମୋ ଆଖିର ସ୍ୱପ୍ନମାନେ

କ୍ରମେ ନିଷ୍ପ୍ରଭ ହୁଅନ୍ତି ।
ଏବେ ସ୍ୱପ୍ନମାନେ ଯଦି କେବେ କେବେ
ଉଙ୍କି ମାରନ୍ତି ମୋ ମନ ତଳେ,
ସେମାନଙ୍କୁ ଉପେକ୍ଷା ହିଁ କରିଥାଏ,
ଯେଣୁ, ସେମାନଙ୍କ ବିଶ୍ୱାସଘାତକତାକୁ
ଚିହ୍ନି ମୁଁ ପାରିଛି ।

ଅଥଚ ସେଇ ସ୍ୱପ୍ନମାନଙ୍କୁ ନେଇ
ଦିନେ ଯେବେ ବଞ୍ଚିଥିଲି,
ବଞ୍ଚିଥିଲି ବଞ୍ଚିଥିବା ଭଳି,
ହୃଦୟରେ ସେ କି ପରିପୂର୍ଣ୍ଣ ଆବେଗ,
ଦୃଷ୍ଟିରେ ବର୍ଣ୍ଣିଳ ଇନ୍ଦ୍ରଧନୁ,
ଜୀବନ ମୋର ରସୋଚ୍ଛଳ ଥିଲା ।

ଆଜି ଏ ପରିଣତ ବୟସରେ
ତୀକ୍ଷ୍ଣ ପ୍ରଜ୍ଞା ଓ ଦୀପ୍ତ ବିଚାରରେ
ସେଇ ସ୍ୱପ୍ନମାନଙ୍କୁ ମିଥ୍ୟାବୋଲି ଆବିଷ୍କାର କରି
ମୁଁ କେତେ ଶୂନ୍ୟ ହୋଇଯାଇଛି ।

ମାତ୍ର, ସ୍ୱପ୍ନରେ ବିଭୋର ଯେଉଁମାନେ
ସେମାନଙ୍କ ପ୍ରତି ଏତେ ଅସହିଷ୍ଣୁ
ହୋଇଉଠୁଛି କାହିଁକି ?

ନିଷ୍ପ୍ରଭ ଦୃଷ୍ଟିରେ ଶୂନ୍ୟ ଆକାଶକୁ ଚାହିଁ
ବସି ରହିଛି ଆବେଗହୀନା, ପକ୍ୱକେଶା
ଜଣେ ପ୍ରଜ୍ଞାବତୀ ନାରୀ,
କେତେ ନମସ୍କାର, କେତେ ଖାତିର ତା' ଲାଗି,
ଅଥଚ ସ୍ୱପ୍ନମାନଙ୍କୁ ହରାଇ
ଆଜି କେତେ ନିଃସ୍ୱ ସେ,
ମାତ୍ର ଏହି ନିଷ୍ଠୁର ସତ୍ୟକୁ ନିଜ ମଧ୍ୟରେ
ସେ ସନ୍ତର୍ପଣରେ ଗୋପନ ରଖେ
ଅନ୍ୟମାନଙ୍କ ଆଖିରେ ନ୍ୟୂନ ନ ହେବାକୁ ।

୩
ହୃଦୟ ଅନେକ ଦିନରୁ ବିଦାୟ ନେଇ ଚାଲିଗଲାଣି,
ବେଳେ ବେଳେ ଯେତେବେଳେ ସେ ଚାହେଁ
ଫେରି ଆସିବାକୁ, ବୁଦ୍ଧି ପଥ ରୋକେ ।

୪
ଦିନ ଯେବେ ଗଭୀର ରାତ୍ରିରେ
କିଛି କହିବାକୁ ଚାହେଁ,
ରାତ୍ରି ବାଧା ଦେଇ କେହ, "ଚୁପ୍,
ମୋ କୋଳରେ ଆତ୍ମବିସ୍ମୃତ ହେଲେ
କିଛି ହେଲେ ଶାନ୍ତି ପାଇବ ।"

୫
ଅନେକ ପ୍ରତିଶ୍ରୁତି ଇଚ୍ଛା ଥିଲେ ବି
ରକ୍ଷାକରି ହୁଏ ନାହିଁ,
ତଥାପି ପ୍ରତିଶ୍ରୁତିର ଶେଷ ନାହିଁ ?

୬
ନିର୍ଜନ ମୁହୂର୍ତ୍ତର ମୋର ଗୀତମାନେ ମୋ ମନର ଠିକ୍ ପରିଚୟ,
ଅଥଚ ମୁଁ ସେମାନଙ୍କୁ ଲିପିବଦ୍ଧ କରିବାକୁ ଯାଇ ଶବ୍ଦହୀନ ହୁଏ,
ବ୍ୟକ୍ତ ମୁଁ କରିବି ଅବା କରିବିନି ଆପଣାକୁ
ଭାବି ଭାବି ପରିଶେଷେ ଲୁଚାଏ ନିଜକୁ,
ମାତ୍ର ସେଇ ସଂଗୋପନେ ମୋ କବିତା ନୀରବରେ ହୁଏ ରସମୟ ।

ସେ କବିତାମାନେ ଯଦି କେବେ ମୋର ଲେଖନୀରେ ପ୍ରକାଶ ପାଆନ୍ତେ,
ସହ୍ୟ କରି ପାରନ୍ତେ କି ସ୍ୱାମୀ ମୋର ?
ସନ୍ତାନମାନେ ମୋ କେବେ ଦିଅନ୍ତେ କି ଜନନୀ ସମ୍ମାନ ?
ଆତ୍ମୀୟ ସ୍ୱଜନ ଏବଂ ପ୍ରିୟଜନ ଯେତେ ମୋର,
'ଛି, ଛି' କହି କରନ୍ତେ ଭ୍ରୂକୁଟି-
'ମୋର ରୁଚି ଓ ଇଚ୍ଛାମାନେ ଏତିକି ଅଶ୍ଳୀଳ,

ମୁଁ ପୁଣି ଏଡ଼ିକି ନିର୍ଲଜ୍ଜ' ।
ଅଥଚ ସେ ଆବେଗମାନେ କେତେ ସତ୍ୟ, କେତେ ଭାବମୟ ।

୭
ବେଳେ ବେଳେ ଏପରି ହୁଏ, ଦିନସାରା
ଛୋଟ ବଡ଼ ଉତ୍ତେଜନା, ଖଟ୍‌ଖାଟ୍ ଲାଗି ରହିଥାଏ,
କେତେ ଯେ ଅଶାନ୍ତି, ଅନେକ ସମସ୍ୟା, ଜ୍ୱଳନର ମଧ୍ୟେ ଦିନ ଶେଷ ହୁଏ,
ଏ ମନ୍ତବ୍ୟ କେବେ କ'ଣ ସତ୍ୟ, 'ସାରା ଦିନ ଯନ୍ତ୍ରଣାରେ ଗଲା ।'

ଟିକିଏ ତଳେଇ ଯଦି ଦେଖାଯାଏ, ସେଇ ବିପର୍ଯ୍ୟୟ ପଛେ
ଅନେକ ପ୍ରାପ୍ତି, ବହୁ ଅନୁଭୂତି,
ସମସ୍ୟାର ସମ୍ମୁଖୀନ ହୋଇ ଜିତିବାର ଟାଣ ପଣ, ଅନେକ ସାହସ,
ବିଚିତ୍ର ବହୁ ସ୍ପନ୍ଦନର ସାଥେ ପରିଚିତ ହେବା,
ପ୍ରଚ୍ଛନ୍ନ ମଣିଷ ମନର ବିବିଧ ଆଶ୍ଚର୍ଯ୍ୟ ଚିତ୍ର, ଦୃଷ୍ଟି ଅପଲକ ।
ତେଣୁ ଦିନଟା ଯେ ବୃଥା ଗଲା ଏତ ବଡ଼ ଡ଼ାହା ମିଛ କହିବା କିପରି ?
ଅଧିକନ୍ତୁ ମିଳିଲା ଅନେକ ବାରମ୍ବାର ପଡ଼ିବା ଓ ରକ୍ତାକ୍ତ ହେବାରେ,
କେତେ ଫଗୁଖେଳ, ମହାର୍ଘ ଅସରନ୍ତି ଆହରଣେ ଅଣ୍ଟି ଭରିଯିବା ।

ତେଣୁ ଏପରି ଗୋଟିଏ ଦିନ ସାରା ଜୀବନରେ ଅକସ୍ମାତ୍
କେବେ କେବେ ଆସେ,
ଅଥଚ ଅନେକ ପ୍ରଚେଷ୍ଟା ସତ୍ତ୍ୱେ ସେ ମହାନ ମୁହୂର୍ତ୍ତମାନ
ଜୀବନରେ କେବେ ଆଉ ସମ୍ଭବ ହୁଏନା ।

୮
ଆଜି ମୋର ପରିଣତ ବୟସରେ ଅତୀତର
ବହୁ ଦୋଷ ଦୁର୍ବଳତା
ବାରମ୍ବାର ମନେପଡ଼େ, ମନେପଡ଼ି ଲଜ୍ଜା ଲାଗେ,
ଲଜ୍ଜା ଲାଗେ କହିବାକୁ, ପଶ୍ନମାନ ଚମତ୍କାର ଏଡ଼ାଇ ମୁଁ ଯାଏ ।
ଅଥଚ ସେ ପୁଞ୍ଜୀଭୂତ ଅନ୍ଧାରର ଅଭିଜ୍ଞତା ନେଇ
ଆଜି ମୋର ଆଲୋକିତ ଜୀବନର ଦ୍ୟୁତି,

ଝଲସି ଯାଏ ଅନେକଙ୍କ ଆଖି, ଅଥଚ ମୁଁ ଅନୁଭବ କରେ
ମୋର ସରଳତା ଆଉ ସ୍ପଷ୍ଟବାଦିତାରେ ଅନେକ ଅଳନ୍ଧୁ ।

ସତ୍ୟ ବ୍ୟକ୍ତ କରିବାକୁ ମୁଁ ଯଦି ଏତେ ଇତସ୍ତତଃ,
ମୋର ଅଗ୍ରଗତି ସମ୍ପର୍କରେ କିପରି ମୁଁ ନିଃସଂଶୟ ହେବି ?
ମୋର ଏଇ ଲଜ୍ଜା, ଭୟ, ଅପମାନବୋଧ, ଦିନେ ମୋତେ ଆଣିବ ଓଟାରି
ଆଲୋକର ଅବସ୍ଥାନ୍ତୁଁ, ଦ୍ୱିଧାହୀନ ସତ୍ୟ କହିବାର ସାଧନା କେବଳ
ମୁକ୍ତ ମୋତେ କରିପାରେ ଅକ୍ଷୋପସ୍‌ପାଶ୍ରୁଁ,
ଯୁକ୍ତ କରି ଦେଇପାରେ ଅନନ୍ତ ସହିତ ।

୯
ଏକାକୀ ମୁଁ ଗୀତ ଗାଇ ଆନନ୍ଦରେ ତନ୍ମୟ ଥିବାବେଳେ
ଯଦି ହଠାତ୍ କେହି କହିଦିଏ, "ଆପଣ ତ ଚମତ୍କାର ଗାଉଛନ୍ତି,"
ଆନନ୍ଦ ମୋ ହଜିଯାଏ ଅକସ୍ମାତ,
କାରଣ ଏକୀଭୂତ ହୋଇ ରହିଥିବା ଆନନ୍ଦ ଓ ମୁଁ ରୁ
ମୁଁ ଛିଟ୍‌କି ଆସି, ଅହଙ୍କାରରେ ରୂପାନ୍ତରିତ ହୋଇଯାଏ ।

୧୦
ରାସ୍ତାରେ ମୁଁ ଚାଲୁଥିବାବେଳେ ଅନେକ ଦୃଶ୍ୟ ତ
ମୋ ସାମ୍‌ନାରେ ଓ ପାର୍ଶ୍ୱରେ,
ମାତ୍ର ଏଥିରେ ମୋର କ'ଣ ଯାଏ ଆସେ,
ଅଥଚ କୌଣସି ଦୃଶ୍ୟ ସହ ହଠାତ୍ ଯଦି ମୁଁ
ନିଜକୁ ସାମିଲ୍ କରିଦିଏ,
ତେବେ ଦୁଃଖ ବାହୁନିବାକୁ ଆରମ୍ଭ କରେ ।

୧୧
ଗ୍ରନ୍ଥର ଅକ୍ଷରଗୁଡ଼ିକ ସେତିକି ବେଳେ ଅକ୍ଷୟ ହୁଅନ୍ତି,
ଯେତେବେଳେ ସେମାନେ ମୋର ଚେତନାକୁ ସ୍ପର୍ଶ କରନ୍ତି,
ପୁନଶ୍ଚ ବହୁ ସମୟରେ ମୁଁ ଯେବେ ଚେତନାଚ୍ୟୁତ ହୁଏ,
ମୃତ ଅକ୍ଷରମାନେ ମୋ ଚେତନାକୁ ଜାଗ୍ରତ କରିଥାନ୍ତି ।

୧୨
ଏ ପରିଣତ ବୟସରେ ଚପଳ ବୟସର
ଅନେକ ଦୁର୍ବଳତାର କଥା ମନେପଡ଼ି
ଲଜ୍ଜା ଲାଗେ,
ମାତ୍ର ସେ ସବୁ ମୁହୂର୍ତ୍ତରେ ମୁଁ ଅନନ୍ୟୋପାୟ ଥିଲି ।

୧୩
ମୁଁ ଯାହାଙ୍କୁ ପ୍ରେମ କରିଥିଲି ଜୀବନ ସାଥୀ କରି
ପାଇ ପାରିଲିନି ତାଙ୍କୁ,
ମାତ୍ର ଯାହାଙ୍କୁ ନେଇ ସଂସାର କରୁଛି,
ମନେହୁଏ, ବିବାହ ଆଗରୁ ତାଙ୍କୁ ବି
ପ୍ରେମ କରାଯାଇ ପାରିଥାନ୍ତା ।

୧୪
ପ୍ରିୟଜନ ଲାଗି ଅପେକ୍ଷାର ମୁହୂର୍ତ୍ତମାନ
କି ଉଦ୍‌ବେଗପୂର୍ଣ୍ଣ ସତେ,
ମାତ୍ର ତାହା ଦୁଃଖର ନା ଆନନ୍ଦର ?

୧୫
ହାତରେ ଗୋଲାପଟିଏ ଧରି ମୁଁ ବିହ୍ୱଳ ଥିଲି ଅନେକ ବେଳ,
ଆତ୍ମସ୍ଥ ହେବା ପରେ ବିସ୍ମୟର ସହ ଲକ୍ଷ୍ୟ କଲି,
ଗୋଟିଏ ହେଲେ ପାଖୁଡ଼ା ଆଉ ନଥିଲା ଗୋଲାପରେ ।

୧୬
ବାଲ୍‌କୋନିରେ ଠିଆହୋଇ ଦେଖୁଛି
ରାସ୍ତାରେ ଫଳ ବିକାଳିଟିଏ ଯାଉଛି,
ପିଲାଟିଏ ରାସ୍ତାକଡ଼ରେ ପେଣ୍ଡୁ ଗଡ଼ାଉଛି,
ପଙ୍ଗୁ ଭିକାରିଟିଏ ତା'ର ଛୋଟ ଠେଲା ଗାଡ଼ିରେ ବସିଛି
ଓ ପଛରୁ ସେ ଗାଡ଼ିକୁ ଠେଲି ଗଡ଼ାଇ ନେଇ ଯାଉଛି
ତା'ର ସଙ୍ଗୀଟି,
କାଲି ଠିକ୍ ଏତିକିବେଳେ ଏ ଦୃଶ୍ୟ ଆଉ ନ ଥିବ,

ମାତ୍ର ସ୍ମୃତିରେ ସେମାନେ ରହିଥିବେ
ଅନିର୍ବାଣ ହୋଇ ।

୧୭
ଅନେକ ଦିନରୁ ତୁମକୁ କହିବି କହିବି ହୋଇ କହି ପାରି ନ ଥିଲି,
ମାତ୍ର କହିଦେବା ପରେ ମନେ ହେଲା ନିଃସ୍ୱ ହୋଇଗଲି ମୁଁ,
ଏବଂ ଲକ୍ଷ୍ୟ କଲି ତୁମ ଆଖିର ଉଜ୍ଜ୍ୱଳତା
ଜଳି ଉଠି ନିଷ୍ପ୍ରଭ ହୋଇଯାଇଥିଲା ।

୧୮
ଯେଉଁମାନେ କେବଳ ଉତ୍ତେଜନା ମଧ୍ୟରେ ଆନନ୍ଦ ଖୋଜିଥାନ୍ତି,
ଅଶେଷ କ୍ଳାନ୍ତି ଓ ଅବସାଦ ସେମାନଙ୍କୁ ଅଦୂରରେ ଅପେକ୍ଷା କରୁଥାଏ ।

୧୯
ଯେଉଁମାନେ ହସି ଜାଣନ୍ତି ନାହିଁ
ଅନ୍ୟର ହସ ଦେଖି ସେମାନେ ଅବାକ୍ ହୁଅନ୍ତି,
ସେମାନେ ଥରେ ଯଦି ହସି ଶିଖନ୍ତେ,
ତେବେ ବୁଝି ପାରନ୍ତେ ଜୀବନଟା ହସର ସମାହାର
ନିରାନନ୍ଦର ନୁହେଁ ।

୨୦
ଅନ୍ୟର ଆନନ୍ଦରେ ଈର୍ଷା ଯଦି ଆସୁଛି ମନରେ,
ତେବେ ନିଜର ଅହଙ୍କାରକୁ ଈର୍ଷା କରି ଶିଖ,
ସୁଖୀ ହେବ ।

୨୧
ବେଳେ ବେଳେ ଏମିତି ହୁଏ,
ବହୁ ଚେଷ୍ଟା ସତ୍ତ୍ୱେ କବିତା ଲେଖି ହୁଏନା,
ଲେଖା ହୁଏ ଯଦିବା ତା' କବିତା ନୁହେଁ
ନିଛକ ଛଳନା ମାତ୍ର, ଅର୍ଦ୍ଧରାତ୍ରରେ
ସୂର୍ଯ୍ୟୋଦୟ ଦେଖିବା ଭଳି ।

୨୨
ନିର୍ଦ୍ଦିଷ୍ଟ ଲୋକଟିର ମୁହଁ ସକାଳୁ ଦେଖିଲେ
ସାରା ଦିନଟି ଖରାପ ଯିବ, ଏଇ ଧାରଣାରେ
ସେଇ ନିରପରାଧ ଲୋକଟି ଉପରେ
ଅଯଥାରେ ବିରକ୍ତ ହୋଇଉଠେ ମନେ ମନେ
ହଠାତ୍ ତା' ସଙ୍ଗେ ମୁହାଁମୁହିଁ ହୋଇଗଲେ,
ଅଥଚ ସେ କେତେ ସରଳଭାବେ
ଅନାଇ ଥାଏ ମୋ ମୁହଁକୁ ।

୨୩
ପୂଜା ସଂଖ୍ୟାରେ ତାଙ୍କର ସେଇ ଗଳ୍ପଟି
ଉଚ୍ଚକୋଟୀର ହୋଇଛି, ମୋର ଏଇ ଭାବାବେଗ
ବ୍ୟକ୍ତ କରିବାକୁ ଉଦ୍ୟତ ହେଉଚି, ହଠାତ୍ ସେ
କହିଦେଲେ, 'ଅମୁକ କବିତାଟି ଆପଣଙ୍କର କିଛି ହେଲାନି',
ପରକ୍ଷଣରେ ତାଙ୍କର ଗଳ୍ପ ସମ୍ପର୍କରେ
ଅବ୍ୟକ୍ତ ପ୍ରଶଂସା ମୁଁ ବ୍ୟକ୍ତ କରିବାକୁ ଯାଇ
ଅନୁଭବ କଲି,
ମୋର ପୂର୍ବର ଆବେଗ ନିଷ୍ପ୍ରଭ ହୋଇଯାଇଛି ।

୨୪
ଏମିତି ଆସିବ ଦିନ ଯେଉଁଦିନ କବିତା ମୁଁ ଆଉ ପାରିବିନି ଲେଖି
ଏତେ ଭାବାବେଗ, ଏତେ ବିହ୍ୱଳତା ମୋର
ତେବେ ନଥିବ କି ସତେ ?
ଚିନ୍ତା ଓ କଳ୍ପନା ମୋର ସ୍ଥାଣୁ ହୋଇଯାଇଥିବେ
ଲେଖନୀ ମୋର ଭୁଲିଥିବ ଶକ୍ତି ଆପଣାର ।

ଶବ୍ଦମାନେ ଆସୁଛନ୍ତି କେଉଁପରି ? ଭାବମାନେ କିପରି ବା ପଡୁଛନ୍ତି ଝରି ?
ଚିନ୍ତାମାନେ ଚମତ୍କାର ଖଞ୍ଜି ହୋଇ ଯାଉଛନ୍ତି,
ଛନ୍ଦମାନେ ନିଜେ ନିଜେ ଗାଉଛନ୍ତି ଗୀତ
ବିନା ଆୟାସରେ ଫୁଲମାନ ଗୁନ୍ଥାହେବାଭଳି

କବିତା ବି ନେଉଛି ତା' ରୂପ,
ମନେହୁଏ ମୁଁ ଯେପରି ଲେଖୁ ନାହିଁ, ଅନ୍ୟ ଜଣେ
ହାତଧରି ଦେଉଛି ଲେଖାଇ ।

ସେ ଜଣକ ଏ ଦେହ ମାଧମେ ନିର୍ଦ୍ଦିଷ୍ଟ ଇଚ୍ଛାକୁ ତା'ର
ଚରିତାର୍ଥ କରିନେବା ପରେ
ପ୍ରସ୍ଥାନ କରିବ ଯେବେ, ମୁଁ ଆଉ ନ ଥିବି କବି
କୃଷ୍ଣ କଳା ନେଇଯିବା ପରେ ଅର୍ଜୁନ ଯେପରି,
ସେତେବେଳେ କି ଦାରୁଣ ମର୍ମଦାହ, ହାତେ ଆସେ
ହାତୁଁ ତେବେ ପଡ଼ିବା ପାଇଁ ସେ ?
ତାଙ୍କ କୃପା ମାନୁଛି ମୁଁ ଅଯାଚିତେ ଦେଲ ଯଦି
ପୁନଶ୍ଚ ଫେରାଇ ନେବା ଅର୍ଥ କିଛି ହୁଏ ?

ସେହି ଅଭିଶପ୍ତ ଦିନଟିକୁ ସ୍ମରିବାକୁ ଯାଇ
ଆତଙ୍କରେ ଶିହରି ମୁଁ ଉଠେ,
ଦେଖୁଛି ତ ସେମାନଙ୍କୁ ଯେଉଁମାନେ କବିତାରେ
ଝଡ଼ ସୃଷ୍ଟି କରିଥିଲେ ଦିନେ,
ଆକାଶେ ଆକାଶେ ଭରି ଦେଇଥିଲେ ସପ୍ତରଙ୍ଗ ଶତ ଇନ୍ଦ୍ରଧନୁ,
ମ୍ଳାନ ଦୃଷ୍ଟି ମେଲି ନିଃସ୍ପନ୍ଦ, ନିଷ୍କ୍ରିୟ ଏବେ,
ଅତୀତକୁ ଚାହିଁଛନ୍ତି ଅଶ୍ରୁଳ ନୟନେ ।
ମୋତେ ଦିନେ ସେହିପରି ଚାହିଁବାକୁ ପଡ଼ିବ କି ଆଶ୍ଚର୍ଯ୍ୟ ଆଖିରେ ?
ମୋ କବିତାମାନଙ୍କୁ ମୁଁ ପଢୁଥିବି ଏବଂ ଭାବୁଥିବି
ଏସବୁକୁ ଲେଖିଥିଲି ଦିନେ ?
ଏତେ ବିହ୍ୱଳତା ଏତେ ଭାବାବେଗ ଅନ୍ତରେ ମୋ ଥିଲା ?
ସେଇ କବି ଏବେ ମୁଁ ରହିଛି,
ମାତ୍ର ମୋର ଲେଖନୀରେ ସ୍ପନ୍ଦନ ସେ କାହିଁ ?
ରାସ୍ତାରେ ମୁଁ ଯିବାବେଳେ ଅଙ୍ଗୁଳି ନିର୍ଦ୍ଦେଶି ମୋତେ
କୁହାକୁହି ହେଉଥିବେ ଲୋକେ "ଯାଉଛନ୍ତି କବି,"
ଅଥଚ ମୁଁ ଶୂନ୍ୟ ତେବେ ବିବର୍ଣ୍ଣ ଓ ଜରାଜୀର୍ଣ୍ଣ,
ଅସ୍ତମିତ ରବି ।

୨୫

ରତିକାନ୍ତ ଭାବୁଛନ୍ତି ଶୈଶବକୁ ଫେରି ପାଇବେନି ଆଉ ?
ମାଆର ଛାତିରେ ମୁହଁ ଗୁଞ୍ଜି ଶୋଇବାର ସ୍ନିଗ୍ଧ ଅନୁଭୂତି,
ମାଆ କୋଳେ ବସିରହି ହାତୁ ତା'ର ଖାଇବାର ଅପୂର୍ବ ଆନନ୍ଦ,
ଅବାଧ୍ୟତା ହେତୁ ପୁଣି ଆପଣାର, ସ୍ନେହସିକ୍ତ ମଧୁର ଶାସନ,
ଆଖି ଆଢୁଆଳେ କେବେ ଚାଲିଗଲେ ପୁତ୍ର,
ଜନନୀର କି ବ୍ୟସ୍ତତା ସତେ,
ସବୁ କିଛି ଏବେ ମନେ ପଡ଼େ ରହି ରହି ।
ଭାବରେ ବିଭୋର ହୋଇ
ତୈଳଚିତ୍ର ସମ୍ମୁଖରେ ଠିଆ ହୋଇ ରହିଛନ୍ତି ଗର୍ଭଧାରିଣୀର,
ଯଦିଓ ସେ ବୁଝୁଛନ୍ତି ଫେରିବେନି କେହି-
ସ୍ନେହମୟୀ ମାଆ ଅବା ମଧୁର ଶୈଶବ ।

୨୬

ସେତେବେଳେ ସେ ବୟସ ଥିଲା,
ଅନ୍ୟ ସଙ୍ଗେ ବେଶୀ ମିଶିଲେ, କି ଗପିଲେ ମୁଁ,
ଓହଳି ପଡୁଥିଲା ତମ ମୁହଁ ।
ମାତ୍ର ଆଜି, ଏଇ ପରିଣତ ବୟସରେ
ସେ ଅସହିଷ୍ଣୁତା ତମର ଆଉ ନାହିଁ ।
କିନ୍ତୁ ଏବେ ଭାବୁଛି,
କେତେ ବେଶି ଭଲ ଲାଗୁଥିବା
ସେଇ ଭାରି ମୁହଁ ତମର
ଦେଖିବାକୁ ମିଳିବନି ଆଉ ?

୨୭

ରଙ୍ଗୀନ୍ ବୟସରେ ଆମର,
ତମର କେତେ ଉଦ୍‌ବେଳିତ, ସ୍ୱପ୍ନିଳ ଇଚ୍ଛାକୁ
ମୁଁ ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାତ ନ କରିଛି,
ଏବେ ତମ ସମ୍ପର୍କରେ ସହାନୁଭୂତିଶୀଳ ହେଲା ବେଳକୁ
ମୋ ବୟସ ଓ ତୁମର ସ୍ୱପ୍ନ ଉଭୟ ବିଦାୟ ନେଇଛନ୍ତି ।

୨୮

ଫଟା ଦର୍ପଣରେ ମୁହଁ ବିକୃତ ଦିଶିବା ଭଳି
ରୁଗ୍ଣ ମନ ନେଇ ନିଜକୁ ନିରୀକ୍ଷଣ କଲେ
ନିଜର ସୁନ୍ଦର ରୂପ ବି ବିବର୍ଣ୍ଣ ଦିଶେ ।

୨୯

ଅଠର ବର୍ଷ ବୟସର ଫଟୋ ମୋର
ଫଟୋ ପୁଣି ଚାଳିଶ ବର୍ଷର,
ପାଖାପାଖି ଦେଖୁଥିଲି, ଦେଖୁଥିଲି ମନ ମୋର
ଭରିଥିଲା ଅବ୍ୟକ୍ତ ଅଶ୍ରୁରେ,
ସେଇ ସ୍ନିଗ୍ଧ ବୟସର ଛବି ମୋର ପତ୍ର, ପତ୍ରିକାରେ
ଛାପା ହେଲା ବହୁବର୍ଷ ଧରି, ଏବେ କିନ୍ତୁ
ପତ୍ରିକାର ସମ୍ପାଦକମାନେ
ଫଟୋ ମୋର ମାଗୁଛନ୍ତି ଏଇ ବୟସର,
ବୟସର ଅଗ୍ରଗତି ସଙ୍ଗେ ଯେଣୁ
ଲେଖା ମୋର ଅନେକ ପୋଖତ,
ବର୍ତ୍ତମାନ ବୟସର ଫଟୋ ପ୍ରୟୋଜନ ତେଣୁ,
ମାତ୍ର ତାହା ଦେବା ଲାଗି ମୁଁ କାହିଁକି ଇତସ୍ତତଃ ହୁଏ ?

୩୦

ତମମାନଙ୍କୁ କେନ୍ଦ୍ରକରି ଏ ଯେଉଁ ଦୋଳ ମହୋତ୍ସବ,
ହେ ଧେନୁଗଣ, ତମେମାନେ କ'ଣ
ସେ ଉତ୍ସବର ଉଚ୍ଛ୍ୱାସକୁ ଅନୁଭବ କର ?
ରଙ୍ଗର ଆନନ୍ଦରେ ଉନ୍ମତ୍ତ ଆମେ
ତମମାନଙ୍କ କପାଳରେ ଅବିର ଦେଉ,
ପୂଜା କରୁ ତମମାନଙ୍କୁ,
ମାତ୍ର ସ୍ମରଣ କରୁ କି ଆମେ ଶ୍ୟାମଙ୍କୁ
ଯେ ତମମାନଙ୍କର ଅନ୍ତରଙ୍ଗ ଥିଲେ
ସୁଖରେ, ଦୁଃଖରେ ?
ଦୋଳ ଉତ୍ସବର ଆନନ୍ଦ ଆଜି ଆମର
ଯେଉଁମାନଙ୍କ ଲାଗି,

ସେମାନେ ନିଃସହାୟ ଭାବେ ଘୂରି ବୁଲୁଛନ୍ତି
ପଥପରେ, ପଥପ୍ରାନ୍ତେ, ଅର୍ଦ୍ଧାହାରେ, ଅନାହାରେ,
ନିଃସଙ୍ଗତାର ବ୍ୟଥାନେଇ ଅଶ୍ରୁଳ ନୟନେ
(ଗୋପପୁର ଗୋକୁଳର / ବଂଶଧରମାନେ)

୩୧
ନିର୍ଜନତା ନିରାନନ୍ଦ ସୃଷ୍ଟି କରୁଛି ଯଦି ମନରେ,
ଦେବେ ମନେରଖ କୋଳାହଳ ମଧ୍ୟରେ
ତୁମେ ଅଧିକ ଦୁଃଖ ପାଇବ ।

୩୨
କିଛି ଘଟିଯିବା ପରେ ଯଦି ତୁମେ ବିସ୍ମିତ ହୋଇଥାଅ,
ତେବେ ତା' ତୁମର ନିର୍ବୋଧତା,
କାରଣ ଯାହା ଘଟିବାର ଠିକ୍ ଘଟିଛି ।

୩୩
ଦାରିଦ୍ର୍ୟରେ ଦୁଃଖ ଅଛି,
ମାତ୍ର ତା'ର ଅନ୍ତରାଳସ୍ଥିତ ଐଶ୍ୱର୍ଯ୍ୟକୁ
ସମ୍ରାଟ ହିଁ କେବଳ ଉପଲବ୍ଧି କରିପାରେ ।

୩୪
ଯେ ନିଜକୁ ଠିକ୍ ଠିକ୍ ଭଲପାଇ ପାରେ,
ସେ କେବଳ ଭଲପାଇ ପାରେ ସମଗ୍ର ବିଶ୍ୱକୁ,
ନିଜକୁ ଭଲ ପାଇବାର ଅର୍ଥ ସ୍ୱାର୍ଥପରତା ନୁହେଁ ।

୩୫
ତୁମକୁ ଦୁଃଖ ଦେଇ କେହି ଯଦି ଆନନ୍ଦ ପାଉଛି,
ସେଇ ଆନନ୍ଦକୁ ଉପଲବ୍ଧି କରି ପାରିଲେ
ତୁମର ଦୁଃଖ ଆଉ କାହିଁ ?

୩୬
ସମଗ୍ର ଜୀବନ ଆମର
ଜୟ, ପରାଜୟର ବୃଥା ଉତ୍ତେଜନାରେ ହିଁ କଟେ,
ମୃତ୍ୟୁ ବେଳେ ତେଣୁ ନିଃସ୍ୱଭାବେ
ପୃଥିବୀରୁ ବିଦାୟ ନେବାକୁ ପଡ଼େ ।

୩୭
ନିଜ ପ୍ରଶଂସା ଶୁଣିବା ଉଲ୍ଲାସର
ସ୍ଥିତି କେତେ କ୍ଷଣ ?
ପରକ୍ଷଣରେ ହିଁ, ତୁମର ସଞ୍ଚିତ ଅନେକ ମହାର୍ଘ ଆନନ୍ଦକୁ
ସେ ନିଷ୍ପ୍ରଭ କରିଦିଏ ।

୩୮
ଜୀବନର ଅନେକ ଅନୁଭବକୁ ବ୍ୟକ୍ତ କରିବାକୁ ଯାଇ
ଭାଷା ହାର୍ ମାନେ,
ମାତ୍ର ନୀରବତା ହିଁ ଯେ ଏକ ବଳିଷ୍ଠ ଭାଷା
ତା' ଭୁଲି ଯାଉ ଆମେ ।

୩୯
ଶାନ୍ତ, ସମାହିତ ଜୀବନ
ଅଶାନ୍ତ ଓ ଅସମାହିତ ଜୀବନର ନିର୍ଯାସ ମାତ୍ର !

୪୦
ଯେଉଁଠି ଇଚ୍ଛା ମୋର ପରାଭୂତ
ସେଠାରେ ତୁମ ଇଚ୍ଛା ଫୁଲ ହୋଇ ଫୁଟେ ପ୍ରଭୋ ।

୪୧
ଯେ କୌଣସି ଜନ ସମାବେଶେ
ଆଖି ମେଲି, କାନ ଖୋଲି ଠିଆ ହେଲେ ଦଣ୍ଡେ,
କେତେ କଥା ଦେଖି ହୁଏ, ଶୁଣି ହୁଏ,
ମଣିଷ ମନର, କେତେ ବୈଚିତ୍ର୍ୟ ସତେ ଉପଲବ୍ଧ ନ ହୁଏ ?

ଆମେ କି ତା' କରୁ ? ତେଣୁ ହରାଉ ଅନେକ,
ଆମ ଅନୁଭୂତି, ଅଭିଜ୍ଞତା ସମୃଦ୍ଧ କି ହୁଏ
ନୂଆ ଆହରଣେ ?
ତେଣୁ, ଆମର ସାଧନା ହେଉ ଗହଳି ଭିତରେ
ମିଶିଯାଇ, ବୁଡ଼ିଯାଇ ଏକୀଭୂତ ହେବା ।

୪୨
କେବେ କେବେ ଇଚ୍ଛାହୁଏ ଅତୀତର ଜୀବନକୁ
ଫେରିଯିବା ପାଇଁ, କିନ୍ତୁ କ'ଣ ଫେରିହୁଏ ?
ମାତ୍ର ଭାସି ଯାଇହୁଏ କଳ୍ପନାରେ ସପନରେ
ଆବେଗରେ ଭରିଯାଏ ମନ, ଯଦିଓ ବା
ଫେରିବନି ବାଲ୍ୟ, କୈଶୋର, ଅବା ଉଚ୍ଛଳ ଯୌବନ ।

ପ୍ରୌଢ଼ତ୍ୱର ଉପକୂଳେ ଠିଆ ହୋଇ ଏବେ
ଲକ୍ଷ୍ୟ କରେ ବାର୍ଦ୍ଧକ୍ୟ ହଲାଏ ହାତ,
ଜରା ପରିସରେ ପହଞ୍ଚିଲେ ଯାଇ
ଶୁଣାଯିବ ଅଦୂରର ମୃତ୍ୟୁର ସଙ୍ଗୀତ,
ମେଲାଣି ନେବାର ଲାଗି ସୁସ୍ପଷ୍ଟ ଇଙ୍ଗିତ ।

ମାତ୍ର ମୃତ୍ୟୁ କ'ଣ ଜୀବନର ଶେଷ ?
ଜୀବନର ଏତେ ଭାବାବେଗ, ମୂଲ୍ୟବାନ ଅନୁଭୂତି ଏତେ,
ସବୁ କି ନିଶ୍ଚିହ୍ନ ହେବ ମୃତ୍ୟୁର ଗର୍ଭରେ ? କିଛି ହେବ ନାହିଁ ଶେଷ,
ସେ ସବୁ ସଞ୍ଚୟ ନେଇ ଲେଉଟିବି ପୁନର୍ବାର,
ପୁନଶ୍ଚ ଏ ପୃଥିବୀରେ ନେବି ମୁଁ ନିଃଶ୍ୱାସ
କେବଳ ଏତିକି ହେବ, ନୂଆ ଦେହେ
ପୁରାତନ ସ୍ମୃତି ଆଉ ପଡ଼ିବନି ମନେ ।

୪୩
କେତେକ ଲୋକ ଏକତ୍ର ହୋଇ
ନିଃସଙ୍ଗତାରୁ ମୁକ୍ତି ପାଇବାକୁ ଚେଷ୍ଟା କରୁଥିବାବେଳେ,
ମୋର ମନେହୁଏ, ସେମାନେ ଅଧିକରୁ ଅଧିକ
ନିଃସଙ୍ଗ ହୋଇପଡୁଛନ୍ତି ।

୪୪
ଗୀତ ଗାଇ ସାରିବା ପରେ କରତାଳି,
କରତାଳି ପରେ କିନ୍ତୁ ଶୂନ୍ୟତା,
ଆଉ ସେ ଶୂନ୍ୟତା ପରେ... ?

୪୫
ନିଜ ପ୍ରଶଂସା ଶୁଣି ମୁଁ ମସ୍‌ଗୁଲ ଥିବାବେଳେ
କେବେ କ'ଣ ଭାବିଥାଏ
ଅନେକ ନିନ୍ଦା ଶୁଣିବାର ଦୁଃଖଠାରୁ ବଳି ଦୁଃଖ
ମୋତେ ଅପେକ୍ଷା କରୁଛି ।

୪୬
ଅନ୍ୟର ସୁଖକୁ ଈର୍ଷା କରୁଛ ମାନେ
ନିଜର ଆନନ୍ଦ ସହ
ଛଳନା କରୁଛ ।

୪୭
ନିଜ ଆନନ୍ଦ ନିଜ ମଧ୍ୟରୁ ଆହରଣ ନ କରି,
ଆନନ୍ଦପାଇଁ ଯଦି ଅନ୍ୟକୁ ହାତ ପତାଅ,
ତେବେ ସେ ତା'ର ନିରାନନ୍ଦ ହିଁ ତୁମକୁ ଦେବ ।
୪୮
ଯେ ନିରାଶ୍ରୟ ସେ ଶୂନ୍ୟକୁ ବି ଏକ
ଆଶ୍ରୟ ଭାବି ତହିଁରେ ଝୁଲି ରହିବାକୁ
ଚେଷ୍ଟା କରେ ।

୪୯
ବ୍ରାହ୍ମ ମୁହୂର୍ତ୍ତରେ ଯଦି ସ୍ମରଣରେ ନ ଆସିଲେ ସେ
ତେବେ ଦିବସର ଜଞ୍ଜାଳ ମଧ୍ୟରେ
ତାଙ୍କୁ ସ୍ମରଣ କରିବି କେତେବେଳେ ?

୫୦

ମୁଁ ତୁମ ଲାଗି ଗୀତ ଗାଇ କ୍ଳାନ୍ତ ହେବାପରେ
ସେ ସ୍ୱପ୍ନ କ'ଣ ଆଉ ଦେଖିହୁଏ ?
ସେଥିଲାଗି ତ ସେ ସ୍ୱପ୍ନ ସୁନ୍ଦର ହୋଇ ରହେ ଚିରଦିନ ।

୫୧

ମୁଁ ତମ ଲାଗି ଗୀତ ଗାଇ କ୍ଳାନ୍ତ ହେବାପରେ
ତୁମର ଗୀତ ଆରମ୍ଭ ହୁଏ ପ୍ରଭୋ,
ମାତ୍ର ଆଶ୍ଚର୍ଯ୍ୟ, ତୁମର ସେ ଗୀତର ଅନ୍ତରାଳରେ
ମୋ ଗୀତର ଝଙ୍କାର ହିଁ ପ୍ରଚ୍ଛନ୍ନ ଥାଏ ।

୫୨

ଚାଲୁ ଚାଲୁ ହଠାତ୍ ପଡ଼ିଯିବା ପରେ,
ମୋ ଦୃଷ୍ଟି ସଙ୍ଗେ ସଙ୍ଗେ ଚାଲିଯାଏ
ଅନ୍ୟମାନଙ୍କଆଡ଼େ,
ମୋ ହୃଦୟର ଦ୍ୱାର ଅବରୁଦ୍ଧ ରହିଯାଏ ।

୫୩

ମୂଷାମାନଙ୍କ ପ୍ରାଦୁର୍ଭାବରେ ଅତିଷ୍ଠ ମୁଁ,
ଯନ୍ତାମାନଙ୍କୁ ଫାଙ୍କି ଦେଇ ପାରୁଛନ୍ତି ସହଜରେ,
ମାତ୍ର ଖାଦ୍ୟରେ ସେମାନଙ୍କୁ ବିଷ ଦେବାର ପ୍ରସ୍ତାବକୁ
ମୁଁ ସମର୍ଥନ କରି ପାରୁନି କାହିଁକି ?

୫୪

ରାସ୍ତାରେ ଯେଉଁ ଭିକ୍ଷୁକ ଶିଶୁଟି
କାନ୍ଦି କାନ୍ଦି ଏକା ଯାଉଛି,
ତା' ପାଇଁ ମନରେ ଅନେକ ଦରଦ ମୋର,
ମାତ୍ର ଧାଇଁଯାଇ ମୁଁ ତାକୁ କୋଳାଗ୍ରତ
କରି ପାରୁନି ତ !

୫୫
ବସ୍ ଭିତରକୁ ଆସିଥିବା ଭିକାରିକୁ
ଦଶ ପଇସିଟେ ଦେଲି,
ମୁହୂର୍ତ୍ତ କେତେକ ପରେ
ଅନ୍ୟ ଯେଉଁ ଭିକ୍ଷୁକଟି ଆସିଲା
ପାଞ୍ଚ ପଇସିଟେ ଦେଲି ତାଙ୍କୁ,
ମାତ୍ର ତୃତୀୟ ଭିକାରିପ୍ରତି
ଉଦାର ମୁଁ ହୋଇ ପାରିଲିନି ।

୫୬
ସବୁଜ ବୟସରେ ଦୁହେଁ ଏକତ୍ର ହେଲେ
କେତେ ଗପୁ ନଥିଲେ ସତେ,
ଅଥଚ ଆଜି ଅତିକ୍ରାନ୍ତ ଯୌବନର ବୟସରେ
କଥା କହିବାକୁ କଥା ମିଳେନା,
ପାଖାପାଖି ବସିଥିଲେ ବି
ଦୁହିଁଙ୍କ ମୁହଁ ପାଖେ ଦୁଇ ଖଣ୍ଡ ଉନ୍ମୁକ୍ତ ବହି ଥାଏ ।

୫୭
ବସନ୍ତର ବୟସରେ କେତେ ସ୍ୱପ୍ନ ନ ଥିଲା ଆମର,
ଆଜି ପ୍ରୌଢ଼ତ୍ୱରେ ସେ ସ୍ୱପ୍ନ ନାହିଁ ସତ,
ମାତ୍ର ସେ ସ୍ୱପ୍ନମାନଙ୍କର ସ୍ମୃତି
ଅଧିକ ମଧୁର ମନେହୁଏ ।

୫୮
ପ୍ରଭୋ !
ମୋ ସାଧନାରେ ଆନ୍ତରିକତା ନ ଥିବାରୁ
ଧରି ପାରୁନି କି ତୁମକୁ ?
ଅଥବା ମୋତେ ଧରା ନ ଦେବାକୁ
ବଦ୍ଧପରିକର ତୁମେ ?

୫୯

ଆମ ପ୍ରେମବେଳରେ ତୁମ ଲାଗି ଅପେକ୍ଷାରେ
ସ୍ୱପ୍ନର ଆନନ୍ଦ ଥିଲା,
ମାତ୍ର ଆମର ବିବାହ ପରେ ତୁମପାଇଁ
ମୋ ପ୍ରତୀକ୍ଷାର ଆନନ୍ଦ
କଠୋର ବାସ୍ତବତାରେ ଘନୀଭୂତ ।

୬୦

ପ୍ରଚଣ୍ଡ କ୍ରୋଧରେ ଓଠକୁ ଯଦି
ନିବୁଜ ରଖି ହୁଏ,
ତେବେ ଅନେକ ଜୟର ଆନନ୍ଦ
ଉପଲବ୍ଧ ହୁଏ ମନତଳେ ।

୬୧

କଥା ଦେଇ ତୁମ ପାଖେ ପହଞ୍ଚି ପାରି ନ ଥିଲି ବୋଲି
ଅଭିମାନ କରି ଚିଠି ଦେଇଥିଲ,
ମାତ୍ର ପହଞ୍ଚି ପାରିଥିଲେ, ଚମତ୍କାର ଚିଠିଟି
ତୁମ ନିକଟରୁ ପାଇବାର ସୌଭାଗ୍ୟ ତ ମୋର
ହୋଇ ନ ଥାନ୍ତା ।

୬୨

ବସ୍ ଭିତରେ
ଛୋଟ ପିଲାଟି ଭଦ୍ରମହିଳାଙ୍କ ଲୁଗାରେ
ବାନ୍ତି କରି ଦେବାରୁ
ସେ ଉତ୍କ୍ଷିପ୍ତ ହୋଇଉଠିଥିଲେ ।
ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲାରୁ
ସେ ଅଧିକ ଉତ୍କ୍ଷିପ୍ତ ହୋଇଉଠି କହିଲେ,
"ଆପଣଙ୍କର ହୋଇଥିଲେ ସହିଥାନ୍ତେ ତ ?"
ପିଲାଟିର ମାଆର ଛଳଛଳ ଆଖିକି ଅନାଇ
ମୁଁ ନିରୁତ୍ତରା ରହିଥିଲି ।

୬୩

ପ୍ରଭୋ !
ମୋର ସବୁ ଇଚ୍ଛାରେ ତ ତମର ସମର୍ଥନ ନ ଥାଏ
ସମର୍ଥନ ଥାଏ ଯହିଁରେ,
ତାହା ହିଁ କେବଳ ମୋ ପାଇଁ କଲ୍ୟାଣକର ହୁଏ ।

୬୪

ବୃଦ୍ଧ ପିତା ଯେ ବିଛଣାରେ ପଡ଼ିଥିଲେ ଦୀର୍ଘଦିନ ମୃତ୍ୟୁଯାଏ,
ତାଙ୍କର ସେବା କରିବାକୁ ସଦା କୁଣ୍ଠିତ ହୋଇଛନ୍ତି କବି,
ମାତ୍ର ତାଙ୍କର ଦେହାନ୍ତ ପରେ, 'ପିତୃପ୍ରୟାଣ' ଶୀର୍ଷକ
ଏକ କରୁଣ କବିତା ରଚନା କରିଥିଲେ ସେ ।

୬୫

ଭୁବନେଶ୍ୱରରୁ ଦିଲ୍ଲୀ ଫେରିଯିବାବେଳେ କହିଥିଲ
ଆମ ପାଖକୁ ପୁଣି ଫେରି ଆସିବ,
ଓଡ଼ିଶାରୁ ଫେରିବାର ପରବର୍ତ୍ତୀ ସକାଳେ
ମୃତ୍ୟୁ ତୁମକୁ ହଠାତ୍ ଡ଼ାକିନେଲା
ବିଶ୍ୱାସଘାତକମାନଙ୍କ ଜରିଆରେ,
ସେମାନଙ୍କର ଓ ସେମାନଙ୍କ ପ୍ରରୋଚକମାନଙ୍କର
ମନସ୍କାମନା ପୂର୍ଣ୍ଣ ହେଲା ତ ?
ହତ୍ୟା କରିପାରିଲେ କି ତୁମକୁ ସେମାନେ ?
ଅଥଚ ମୃତ୍ୟୁର ଅନ୍ଧକାର ଗହ୍ୱରରେ
ସେମାନଙ୍କ ଛଟପଟ ଦୃଶ୍ୟ କି କରୁଣ ସତେ ।
ଆଉ ତୁମେ ସୀମାବଦ୍ଧ ଜୀବନ ଭିତରୁ
ମୁକୁଳି ଯାଇ, ହସୁଛ ଯେ ହସୁଛ,
ପର୍ବତର ତୁଷାର ଶିଖରରେ,
ପାରାବାରର ଉତ୍ତାଳ ତରଙ୍ଗରେ
ଘଞ୍ଚ ଅରଣ୍ୟର ଶ୍ୟାମଳିମାରେ
ତୁମେ ଝଟକୁଛ, ଝଟକୁଛ ସର୍ବତ୍ର ।
ଏପରିକି ଆମେ ଘର ଭିତରକୁ ପଶିଯାଇ ଦେଖୁଛୁ
ଖଟ ଉପରେ ତୁମେ ବସି ଚୁପ୍‌ଚାପ୍ ହସୁଛ ।

ଆଛା, ତୁମ କଥା ଏତେ ଗୁରେଇ ତୁରେଇ ହୋଇ
ମନେ ପଡୁଛି କାହିଁକି କହିଲ ?
ଅନ୍ଧ ହୋଇ ଯାଉଛୁ ଲୁହରେ ।
'ଇନ୍ଦିରା'ର ଅନ୍ୟ ଅର୍ଥ କ'ଣ
'ନିଜଠାରୁ ଯେ ଅଧିକ ମନେହୁଏ ।'

୬୬
ସକାଳେ ଛାତକୁ ଉଠି ହଠାତ୍ ଲକ୍ଷ୍ୟ କଲି,
ସାମ୍ନା ଘର ଛାତରେ ନବ ବିବାହିତା ବଧୂଟି
ମୁକୁଳିତ ଆର୍ଦ୍ର ଘଞ୍ଚ କୃଷ୍ଣ କେଶ ତା'ର ଶୁଖାଉଛି,
ସହସା ମୁଁ ବିଷଣ୍ଣ ହୋଇଉଠିଥିଲି ।
ସେଇ ଐଶ୍ୱର୍ଯ୍ୟର ମୁଁ ବି ଅଧିକାରିଣୀ ଥିଲି ଦିନେ,
ଆଜି କିନ୍ତୁ ସେ ସବୁ ଶୂନ୍ୟ ମୋର ପ୍ରୌଢ଼ତ୍ୱର ଉପକୂଳରେ,
ହଠାତ୍ ମୋର ମନେହେଲା ନବବଧୂ ପରିବର୍ତ୍ତେ,
ତନ୍ୱୀ ମୁଁ ମୁକ୍ତକେଶୀ ଠିଆ ହୋଇ ରହିଛି
ସାମ୍ନା ଛାତ ଉପରେ ।

୬୭
କିଏ ଜଣେ ଲେଖେ ମୋର ହାତ ଧରି,
ଅନୁଭବେ ନିଃଶ୍ୱାସ ପ୍ରଶ୍ୱାସ ତା'ର ମୋର କାନ ପାଖେ,
କାଗଜରେ କ'ଣ ଲେଖା ହୋଇଚି ମୁଁ କ'ଣ ଜାଣେ ?
ସେତେବେଳେ ମୁଁ ତ ବିଭୋର ଥାଏ ତା'ର ସାନ୍ନିଧ ସୁଖରେ
ଆତ୍ମବିସ୍ମୃତ ହୋଇ ।
ସମ୍ବିତ୍ ଫେରିପାଇ ଦେଖେ
ସେ ନାହିଁ କି ତା'ର ସ୍ପର୍ଶ ଜନିତ ସୁଖ ବି ଆଉ ନାହିଁ,
ମାତ୍ର ଲେଖି ଦେଇ ଯାଇଛି କବିତାଟିଏ
ସେ କବିତାର ମୁଁ କବି ହେବି ବୋଲି ।

୬୮
କେବେ କେବେ ଏମିତି ମୁହୂର୍ତ୍ତ ଆସେ
ଯେତେବେଳେ ନା ପଢ଼ି ହୁଏ, ନା ଲେଖି ହୁଏ,

ଆଳାପରେ ସୁଖ ନ ଥାଏ, ସୁଖ ନ ଥାଏ
ପ୍ରକୃତି ଦର୍ଶନରେ ବି ।
ଟି.ଭି.ର ଦୃଶ୍ୟ, ରେଡ଼ିଓର ସଙ୍ଗୀତ
ବିସ୍ୱାଦ ମନେହୁଏ ସବୁ,
ଇତସ୍ତତଃ ଭ୍ରମଣ ବି ସେ ଯନ୍ତ୍ରଣାରୁ
ମୁକ୍ତି ଦେଇ ପାରେନା,
ଅଥଚ ସେଇ ଅସହ୍ୟ ମୁହୂର୍ତ୍ତ
କେମିତି ଓ କିପରି ଯେ ଚାଲିଯାଏ
ଜାଣିହୁଏନା,
ସେ ଉଭୟ ଅନୁଭବ ଦୁଇଟି ସୁନ୍ଦର କବିତା ।

୬୯

ଅନ୍ୟର ଭୁଲ ଦେଖାଇ ଦେବା ସମୟରେ
ଅଧିକ ଭଦ୍ର ଓ ନମ୍ର ହୁଅ,
ରୁକ୍ଷ ହୋଇ ଯୁଗ୍ମ ଦୁଃଖରେ
ଭାରାକ୍ରାନ୍ତ କର ନାହିଁ ତାକୁ ।

୭୦

ନିଜର ସମାଲୋଚନା ଶୁଣି
ଯେ ଅପମାନ ବୋଧକରେ,
ନିଜର ସ୍ତୁତିରେ ସଦା ତୁଷ୍ଟ ରହି
ଅସଂଶୋଧିତ ସେ ରହିଯାଏ ଚିରଦିନ ।

୭୧

ପ୍ରତି ମୁହୂର୍ତ୍ତରେ ଆମେ କେତେ ଅଭଦ୍ର, ଅଶ୍ଳୀଳ
ଏବଂ ଅମାର୍ଜିତ ତା କ'ଣ ଜାଣୁନା ?
ଅଥଚ ଅନ୍ୟ ତୁଣ୍ଡରେ ସେ ସତ୍ୟର ସାମାନ୍ୟ ଇଙ୍ଗିତରେ
ଆମେ ଏତେ ବେଶୀ ଅସହିଷ୍ଣୁ ହୋଇଉଠୁ କାହିଁକି ?

୭୨
ବାସରରାତ୍ରିରେ ଆମେ ଏକତ୍ର ହେବା ପରେ,
ମୋ ବିବାହ ପୂର୍ବରୁ ପ୍ରଣୟୀର ମୁହଁଟି
କ୍ରମେ ଫିକା ହୋଇ ଯାଉଥିଲା,
ପରେ ସମୟର ଅଗ୍ରଗତି ସଙ୍ଗେ ସେ ମୁହଁ ମନେ ହୋଇଥିଲା,
ଖୁବ୍ ଅପରିଚିତ ।

୭୩
ବିବାହ ଆଗରୁ ଶିଖିଥିବା ଅନେକ ଗୀତ
ଏବେ ଆଉ ମନେ ପଡୁନି,
ମୋର ଝିଅ ଦୁହେଁ ଏବେ ଗୀତ ଗାଇଲେ
ସେଇ ଗୀତ ଭିତରେ ମୁଁ ମୋ ଗୀତର ସ୍ୱାଦ
ଅନୁଭବ କରେ ।

୭୪
ଝିଅମାନେ ମୋର, ମୋତେ ଯେତେବେଳେ
ଝିଅ ବେଶରେ ସଜାଇବାକୁ ଅଳି କଲେ,
ତୁମେ ଅଦୂରରେ ଠିଆ ହୋଇ ହସୁଥିଲ,
ଆଉ ମୁଁ ତୁମର ପ୍ରୌଢ଼ତ୍ୱର ସେଇ ହସ ଭିତରେ
ତୁମର ତାରୁଣ୍ୟକୁ ହଠାତ୍ ଆବିଷ୍କାର କଲି ।

୭୫
ବୟସର ସୀମାରେଖା ଭୁଲି ତୁମେ କେବେ କେବେ
ମୋ ସଙ୍ଗେ ଚପଳ ହେବାର ଚେଷ୍ଟା କଲେ,
ମୁଁ ମିଛ ବିରକ୍ତିରେ ତୁମଠୁ ଘୁଞ୍ଚିଆସେ ସତ
ମାତ୍ର ମନର ସମ୍ମତି ଅନିର୍ବାଣ ଥାଏ ।

୭୬
ଜୀବନରେ ଅନେକ ପ୍ରତୀକ୍ଷାର
ବିଫଳତାରେ ଅନୁଭୂତି କେତେ ମୂଲ୍ୟବାନ ।

୭୭

ପର୍ବତର ବନ୍ଧୁରତା ସମ୍ପର୍କରେ ସବୁ ଜାଣି ବି
ତା'ର ଶ୍ୟାମଳିମାରେ ମୁଗ୍ଧ ହେଉ ଆମେ,
ଠିକ୍ ପ୍ରେମ ପରି ।

୭୮

କୁକୁରଟିକୁ ଟ୍ରକ୍ ମାଡ଼ିଗଲା,
'ଆହା' କହି ପିଣ୍ଡାରୁ ଓହ୍ଲାଇ ଯାଉ ଯାଉ
ମୋ ବଡ଼ ପୁଅ ଧାଇଁ ଆସିଲା ଘରଭିତରୁ,
"ମା, ମୁନ୍ନା ପାହାଚରୁ ପଡ଼ିଯାଇ ମୁଣ୍ଡ ଫାଟିଯାଇଛି,"
ଏଁ ଫେରିପଡ଼ିଲି ମୁଁ,
ମୁନ୍ନା ସବା ସାନପୁଅ ମୋର ।

୭୯

ସନ୍ଧ୍ୟାତାରା ନିଇରେ ତା'ର ମୁହଁ ଦେଖୁଛି,
ଆହା, ସେ ସନ୍ଧ୍ୟାତାରା ହୋଇଥାନ୍ତି କି ମୁଁ,
କୁନି ଝିଅ ମୋ ସଙ୍ଗେ ଅଳି କରୁଛି,
"ମା', ମୋତେ ଜହ୍ନମାମୁଙ୍କୁ ଆଣି ଦେ ।"

୮୦

ତୁମ କ୍ରୋଧ ସଙ୍ଗେ ମୁଁ ରାଗିଯାଏ ଯଦି
ମୁଁ ତେବେ ଜଣେ ପରାସ୍ତ ସୈନିକ ।

୮୧

ଏକ ନିର୍ଦ୍ଦିଷ୍ଟ ଅର୍ଥ ମୋ କବିତାର ସବୁବେଳେ,
ଯଦି ଏକାଧିକ ଅର୍ଥ କରିହୁଏ ତା'ର,
ତେବେ ସେ କବିତା ନୁହେଁ,
କବିତା କ'ଣ ଇନ୍ଦ୍ରଜାଲ ?

୮୨
କାନ୍ଦିବାଟା ମୋର ସରିଗଲେ,
ପୁନଶ୍ଚ କାନ୍ଦିବାକୁ ଚେଷ୍ଟା କଲେ ବି
ସଙ୍ଗେ ସଙ୍ଗେ ଆଖିରେ ଲୁହ ଆସେନା,
ମୋ ଅଶ୍ରୁର ସମ୍ବଳ କେତେ ସୀମିତ ସତେ ।

୮୩
ମୋ ସାମ୍ନାରେ ଦୁଇଟି କ୍ରୌଞ୍ଚ ମୈଥୁନରତ,
କୌଣସି ବ୍ୟାଧ ଏଇ ମୁହୂର୍ତ୍ତରେ ସେଥିରୁ
ଗୋଟିକୁ ହତ୍ୟା କରେ ଯଦି
'ବାଲ୍ମୀକି' ହୋଇ ପାରିବି କି ମୁଁ ?

୮୪
ମନତଳେ କ'ଣ କେବଳ ତୁମର ମୁହଁର ଛବି,
ଅନେକ ମୁହଁର ଛବି ତ ଦିଶିଯାଏ,
ତେଣୁ ତୁମ ଲାଗି ମୋର ଐକାନ୍ତିକତା ପ୍ରହସନ ମାତ୍ର ।

୮୫
ତୁମେ ନ ଥିଲେ ମୋତେ ଏକା ଏକା ଲାଗେ,
ଅଥଚ ତୁମେ ଆସିଗଲେ ତୁମ ନିକଟରୁ
ମୁଁ ମୁକ୍ତି ଲୋଡ଼େ ।

୮୬
ଜୀବନର ବହୁ ଛୋଟ ଛୋଟ ଅଭିଜ୍ଞତାକୁ
ଉପେକ୍ଷା କରି, ଆମେ ନିଜ ମହାର୍ଘ
ଅଭିଜ୍ଞତାର ପରିସରକୁ ସୀମିତ କରିଦେଉ ।

୮୭
ରିପୁମାନଙ୍କ ସହ ଆମର ପ୍ରତିଦ୍ୱନ୍ଦ୍ୱିତାରେ
ଗଜସମ ପ୍ରାର୍ଥନା କଲେ ସେ ଚକ୍ର ଧରନ୍ତି,
ମାତ୍ର ଅହଙ୍କାରକୁ ନେଇ ଆମର ପ୍ରତିଦ୍ୱନ୍ଦ୍ୱିତା ଯେ ଭଗବାନଙ୍କ ସଙ୍ଗେ ।

୮୮
ଆମ ଚେଷ୍ଟାର ଶେଷ କେଉଁଠି ଓ
ତାଙ୍କର କୃପା ପାଇବାଲାଗି ପ୍ରାର୍ଥନାର
ସମୟ ଠିକ୍ କେତେବେଳେ, ତା' ବୁଝି ନ ପାରିବାରୁ ତ
ଆମ ଜୀବନରେ ଏତେ ବ୍ୟର୍ଥତା ।

୮୯
ନିଃସଙ୍ଗତାବୋଧରୁ ମୁକ୍ତି ପାଇବାର ଉପାୟ କ'ଣ ?
ନିଃସଙ୍ଗତାର ଜ୍ୱାଳାରେ ଜର୍ଜରିତ ହେଉଥିବା
ଦୁଃଖୀମାନଙ୍କର ସାନ୍ନିଧ ଲାଭରେ,
ଅନୁଭୂତି ଓ ଅଭିଜ୍ଞତା ଅତିନ୍ଦ୍ରିୟତା ସମ୍ପର୍କରେ
କ୍ରମେ ସଚେତନ କରେ ।

୯୦
ଶଯ୍ୟାରେ ତୁମେ ମୋ ପାଖେ ଥିବା ସତ୍ତ୍ୱେ
ବେଳେ ବେଳେ ସ୍ୱପ୍ନରେ ତୁମପ୍ରତି ମୁଁ ଯେଉଁ
ବିଶ୍ୱାସଘାତକତା କରେ,
ନିଦ୍ରା ଭାଙ୍ଗିଯିବା ପରେ କ'ଣ କମ୍ ମର୍ମଜ୍ୱାଳା
ସେଥିଲାଗି ଅନୁଭବ କରେ ମୁଁ,
ମାତ୍ର ସତ୍ୟ ପ୍ରକାଶ କରିଦେଇ
ତୁମଠାରୁ କ୍ଷମା ମାଗି ପାରେନି ତ !

୯୧
ଆମ ସନ୍ତାନମାନଙ୍କର ଆମପ୍ରତି ଥିବା
ଭକ୍ତି ଓ ଆନୁଗତ୍ୟ ସତ୍ତ୍ୱେ,
ସେମାନେ ବେଳେବେଳେ କ'ଣ
ଆମ ବସନ୍ତ ବୟସର ଦୋଷ ଦୁର୍ବଳତା ସମ୍ପର୍କରେ
କିଛି କଳ୍ପନା କରୁ ନ ଥିବେ ?

୯୨
ତୁମେ ଦିନେ ଆବେଗରେ ମୋତେ କହି ପକାଇଥିଲ
"ଆମେ ପୁନଶ୍ଚ ଆମ ତାରୁଣ୍ୟକୁ ଫେରି ପା'ନ୍ତେ କି ?"
ମୁଁ ନିରୁତ୍ତରା ଥିଲି ଏବଂ
ତୁମ ଆଖି ଲୁହ ଓ ମୋ ଆଖି ଲୁହ ଏକ ହୋଇ ଯାଇଥିଲା ।

୯୩
ଏହା କ'ଣ ସତ୍ୟ ନୁହେଁ,
ଆମେ ଆମର ବସନ୍ତକୁ ନିବିଡ଼ ଭାବେ,
ଆସ୍ୱାଦନ କରିଥିଲେ ବି, ମନେହୁଏ ଯେପରି
ଅନେକ କିଛି ବାକି ରହି ଯାଇଛି ।

୯୪
ସେ ବୟସରେ କୋଇଲିଟିଏ ଗାଉଥିଲେ
ଆମେ ପରସ୍ପରର ସାନ୍ନିଧରେ ଶିହରି ଉଠୁଥିଲେ,
ଏ ବୟସରେ କୋଇଲିର କୁହୁରେ
ସେ ସ୍ମୃତି ହଠାତ୍ ଜଳି ଉଠି
ଆମକୁ ଅଶ୍ରୁରେ ଅନ୍ଧ କରିଦିଏ ।

୯୫
ମୋ ଅଙ୍ଗରେ ଯେବେ ପରିପୂର୍ଣ୍ଣ ବସନ୍ତ ଥିଲା,
ସ୍ୱପ୍ନର କେତେ କଥା ନ କହିଛ ତୁମେ,
ମାତ୍ର ମୋର ଆଜିର ଏ ପଳିତ ଅଙ୍ଗରେ
ତୁମ ଦୃଷ୍ଟିର ସେ ସ୍ୱପ୍ନ ହାୟ ହଜି ଯାଇଛି ।

୯୬
ଦୋତାଲାର ଝରକା ବାଟେ ଅନାଇ
ବର୍ଷାରେ ନିଃସହାୟଭାବେ ତିନ୍ତୁଥିବା
ଭିକାରିଟିକୁ ଦେଖି ମୋ ମନ କ'ଣ
କରୁଣାରେ ଆର୍ଦ୍ର ହୁଏ, ନା, ମୁଁ ତା'

ସମ୍ପର୍କରେ ଚମତ୍କାର କବିତାଟିଏ
ଲେଖିବାକୁ ଚିନ୍ତା କରୁଥାଏ !

୯୭
ନିଃସଙ୍ଗତା ଦୁଃଖରୁ ମୁକ୍ତି ପାଇବାକୁ
ମୁଁ ତମଆଡ଼େ ମୋ ହାତ ବଢ଼ାଏ,
ମାତ୍ର ତୁମ ସ୍ପର୍ଶର ଆନନ୍ଦ ପାଇବା ପରେ
ପୁନଶ୍ଚ ମୁଁ କିପରି ନିଃସଙ୍ଗତାର ଦୁଃଖକୁ ଫେରିଆସେ ?

୯୮
ପ୍ରେମରେ ପ୍ରତାରଣା ଭୀଷଣ ଯନ୍ତ୍ରଣାଦାୟକ,
ମାତ୍ର ସେ ଯନ୍ତ୍ରଣାର ଅଭିବ୍ୟକ୍ତି
ଛବିରେ, ଗପରେ, କବିତାରେ
ଚମତ୍କାର ଆର୍ଟ ।

୯୯
ମୋର ପ୍ରୌଢ଼ତ୍ୱର ସ୍ଥିର ଚିନ୍ତାର ସାମ୍ରାଜ୍ୟରେ
ବେଳେବେଳେ ମୋ ଚପଳ ବୟସର
ଅନେକ ଅସ୍ଥିରତାର ସ୍ମୃତି ଆସି ଭିଡ଼ କଲେ,
ସେମାନଙ୍କୁ ଫିଙ୍ଗିଦେଇ ହୁଏନା ।

୧୦୦
ବାହାରର କୋଳାହଳରେ କ୍ଳାନ୍ତ ହୋଇପଡ଼ି
ମୁଁ ନିର୍ଜନତାର ଆଶ୍ରୟ ନିଏ,
ମାତ୍ର କ୍ରମେ ଅନୁଭବ କରେ
ସେ ବି ମୋତେ ଆପଣାର କରିପାରୁ ନାହିଁ ।

୧୦୧
ସବୁ ଇଚ୍ଛା ପୂର୍ଣ୍ଣ ହୋଇ ପାରୁଥିଲେ,
ଜୀବନର ଅନେକ ସ୍ୱାଦ
ଅସମ୍ପୂର୍ଣ୍ଣ ରହି ଯାଉଥାନ୍ତା ।

୧୦୨

ସ୍ୱପ୍ନର ଆନନ୍ଦ ସ୍ୱପ୍ନରେ ହିଁ ଥାଉ,
ତାକୁ ବାସ୍ତବ ଜୀବନରେ ଆଣିବାକୁ
ଚେଷ୍ଟା କଲେ ହିଁ ଦୁଃଖ ।

୧୦୩

ମୋର ଶୁଦ୍ଧ ଚିନ୍ତା ଭିତରକୁ
ଅନେକ ଅଶ୍ଳୀଳ ଚିନ୍ତା ଧସେଇ ପଶି ଆସିଲେ
ନିଜକୁ ମୁଁ ଅପରାଧୀ ମଣେ,
ମାତ୍ର ଭୁଲିଗଲେ ଚଳିବନି
ମୁଁ ଭଲମନ୍ଦରେ ଫେଣ୍ଟାଫେଣ୍ଟି
ସୀମିତ ମଣିଷଟିଏ ।

୧୦୪

ପ୍ରକୃତି ସହ କଥା କହି ଶିଖିଲେ
ନିର୍ଜନତାରୁ ମୁକ୍ତି ମିଳେ,
ଏବଂ
ନିଜେ ନିଜ ସଙ୍ଗେ ଆତ୍ମୀୟତା କରିପାରିଲେ
ଚିନ୍ମୟାନନ୍ଦର ସ୍ୱାଦ ଅନୁଭୂତ ହୁଏ ।

୧୦୫

ରାସ୍ତାର ଗହଳିରେ ଅଚିହ୍ନା ତ ସମସ୍ତେ,
ଅଥଚ ଆଗେଇଗଲେ ପ୍ରତ୍ୟେକଙ୍କ ସହ ପରିଚିତ ହେବା,
କେଡ଼େ ସହଜ ସତେ !

୧୦୬

ରାସ୍ତାରେ ଯେଉଁ ନିଃସହାୟ ପିଲାଟି
ଏକା କାନ୍ଦି ଚାଲିଛି, ସମସ୍ତେ
ପଚରାପଚରି ହେଉଛନ୍ତି କାହାର ସେ ପିଲା ?
ସେ ପିଲା ସମସ୍ତଙ୍କର ନୁହେଁ କି ?

୧୦୭

ସ୍ମୃତିର ବସ୍ତୁ ଜଗତରେ କି ମୂଲ୍ୟ ଅଛି ?
ଭାବ ଜଗତରେ ମୂଲ୍ୟ ତା'ର ଅନିର୍ବଚନୀୟ ।

୧୦୮

ମୋର ସ୍କୁଲ ଦିନର ପଣ୍ଡିତ ମହାଶୟ,
ମୋତେ କହୁଥିଲେ, "ତମର କବିତା
ଭାରି ଭଲ ହେଉଛି ।"
ଆମକୁ 'ଧ୍ୱନି' ଓ 'ଜୀବନ ଚିନ୍ତା' ପଢ଼ାଉଥିବାବେଳେ
ତାଙ୍କର ସେ କି ଭାବବିହ୍ୱଳତା !

୧୦୯

ସ୍କୁଲରେ ଆମେ ପଢୁଥିବାବେଳେ
ସାନଭାଇ 'ସିତୁ' ଗଛରେ ଚଢ଼ି ମୋ ପାଇଁ
କୋଳି ତୋଳେ, ଗଛତଳେ ଠିଆ ହୋଇଥାଏ ମୁଁ ।
ଦିନେ ଏମିତି କୋଳି ତୋଳୁ ତୋଳୁ
ଖସି ପଡ଼ିଲା ତଳକୁ, ଥରଟିଏ ଆଖି ଖୋଲି
ଆଖି ମୁଦି ଦେଇଥିଲା ଚିରଦିନପାଇଁ ।
ଆଜି ଜୀବନ ସାୟାହ୍ନରେ
ସେ ଗଛ ପାଖକୁ ଯଦି କେବେ ଆସେ, ଦେଖେ
ସିତୁ ଗଛ ଡ଼ାଳରେ ହସହସ ମୁହଁରେ ବସି ରହିଛି
ଓ ପଚାରୁଛି, "ଅପା କୋଳି ନେବୁ ?"

୧୧୦

ବିବାହିତା ମୁଁ, ଅନ୍ୟ ସଙ୍ଗେ ଗୋପନରେ ପ୍ରେମ କଲେ
ସାମୟିକ ଆନନ୍ଦ ହୁଏତ ମିଳିପାରେ,
ମାତ୍ର ଢ଼ଳିଯିବା ବୟସରେ
ଅବ୍ୟାହତ ଅନୁତାପ କିନ୍ତୁ ମୋ ପାଇଁ ଥୁଆ ।

୧୧୧

ଆମ୍ଭମାନଙ୍କ ଗୋପନ ମନର
ପ୍ରତି ମୁହୂର୍ତ୍ତର ଫଟୋ ଉଠୁଥାନ୍ତା ଯଦି,
ଲଜ୍ଜାରେ ଆମେ କେହି କାହାରିକୁ ତ
ଅନାଇ ପାରନ୍ତେ ନାହିଁ ।

୧୧୨

"ଚାବିଟା ଟେବୁଲ୍ ଉପରେ ରଖିଥିଲି
କୁଆଡ଼େ ଗଲା" କହି ଘରେ ସମସ୍ତଙ୍କୁ
ଦୋଷାରୋପ କରୁଥିବାବେଳେ,
ହଠାତ୍ ମୋର ମନେ ପଡ଼ିଗଲା,
ଚାବିଟା ରୋଷେଇ ଘର ଥାକ ଉପରେ
ରଖି ଦେଇଛି ।
ଚିତ୍କାର ମୋର ବନ୍ଦ ହୋଇଯିବା ମାତ୍ରେ
ସ୍ୱାମୀ ପ୍ରଶ୍ନ କରିଥିଲେ, "ଚାବିଟା ମିଳି ଗଲା କି ?"
ମୁଁ ବାଆଁରେଇ ଚାଲିଗଲି ।

୧୧୩

ରାତ୍ରି,
ନିରର୍ଥକ ଦୁଃଶ୍ଚିନ୍ତାରେ ମୋ ଆଖିରେ ନିଦ ନାହିଁ,
ଦୋତାଲାର ଝରକାକୁ ଅନାଇ ଦେଖୁଛି
ନିର୍ଜନ ଫୁଟ୍‌ପାଥରେ ଭିକାରିଟି
ନିଘୋଡ଼ ନିଦରେ ଶୋଇଯାଇଛି ।

୧୧୪

ସପ୍ତାହେ ହେବ ଆସିଥିବା
ନୂଆ ଭଡ଼ାଟିଆ ପ୍ରତିବେଶୀଙ୍କ
ସାନଝିଅଟି ନିତି ରାତ୍ରିର
ଶେଷ ପ୍ରହରରେ
ରେଓ୍ୱାଜ କରୁଛି ।

ବିବାହ ପରେ ସେଇଟା
କ'ଣ ତା'ର ସ୍ମୃତି ହୋଇ ରହିବ କେବଳ,
ଯେପରି ମୋର
ସ୍ୱାମୀଙ୍କ ଅସହଯୋଗରୁ,
ମାତ୍ର ସମସ୍ତଙ୍କ ଭାଗ୍ୟ ତ ସମାନ ନୁହେଁ ।

୧୧୫
ମୋର ଚାରି ବର୍ଷର ସାନ ପୁଅଟି
ଛାତରୁ ଖସି ପଡ଼ି (ଏକା ଉଠି ଯାଇଥିଲା
କେତେବେଳେ) ପୃଥିବୀରୁ
ହଠାତ୍ ବିଦାୟ ନେଇଯିବାପରେ,
କୌଣସି ଛୋଟ ପିଲାଙ୍କୁ ଯେ କୌଣସି ସ୍ଥାନରେ
ନିଃସଙ୍ଗ ଦେଖିଲେ ମୁଁ ଆତଙ୍କିତ ହୋଇଉଠୁଛି,
ମୋର ଏ ଆତଙ୍କର ଶେଷ କେଉଁଠି ?

୧୧୬
ସ୍ଲିପିଂ ଟାବଲେଟ୍ ନିତି ନ ଖାଇଲେ
ରାତିରେ ଏବେ ନିଦ ହୁଏନା,
ଦୁଃଶ୍ଚିନ୍ତା,
କାହାପାଇଁ, କେଉଁଥିପାଇଁ ?
ବୟସର ଅଗ୍ରଗତି ସଙ୍ଗେ
ଜ୍ଞାନ, ବୁଦ୍ଧି ପରିପକ୍ୱ ହୁଏ,
ନା
ମଣିଷ ନିର୍ବୋଧ ହୁଏ କ୍ରମଶଃ ।

୧୧୭
ପଢ଼ି ପଢ଼ି ଦିକ୍‌ଦାର ହେଲେ, ଲେଖେ,
ଲେଖି ଲେଖି କ୍ଲାନ୍ତ ହେଲେ, ଗପେ,
ଅରୁଚି ଆସିଲେ ଗପିବାରେ, ବାହାରେ ଯାଇ ବୁଲିଆସେ,
ତା'ପରେ ପୁନରାବୃତ୍ତି ସେ ସବୁର ।

'ବୋର୍' ନ ହେବାପାଇଁ ଏମିତି ପ୍ରଚେଷ୍ଟା ମୋର,
ଏମିତି ଆଉ ଅନେକ ପ୍ରୟାସ ବି,
ତଥାପି 'କିଛି ଭଲ ଲାଗୁନି'ରୁ ପୂରା
ମୁକ୍ତି ମିଳେ କେଉଁଠି ?

୧୧୮

ସକାଳେ ବହି ଖୋଲିଦେଇ ହଠାତ୍ ଦେଖିଲି
ପିମ୍ପୁଡ଼ିଟିଏ ଚିପି ହୋଇ ମରିଯାଇଛି,
ଆଃ, କାଲି କେତେବେଳେ ?
କେତେ ଯନ୍ତ୍ରଣା ନ ହୋଇଥିବ ତାକୁ
ପୃଷ୍ଠା ଭିତରେ ଚିପି ହୋଇଯିବାବେଳେ
ଅଣନିଃଶ୍ୱାସୀ ହୋଇ,
ବିଚରାର ମୃତ୍ୟୁ ଲାଗି ମୋର
ଅସତର୍କତା ଦାୟୀ ?

୧୧୯

ରାସ୍ତାରେ ଯିବାବେଳେ କେତେ ଦୃଶ୍ୟ,
ସବୁ ଫଟୋ ହୋଇ ରହେ କି ମନତଳେ ?

୧୨୦

ଗୀତ ଗାଇବା ମୋର ଶେଷ ହେବାପରେ କ୍ଲାନ୍ତ ମୁଁ,
ଗୀତ ଆରମ୍ଭ କରିବାର ଉଦ୍ଦୀପନାକୁ ହିଁ ସ୍ମରୁଥିଲି ।

୧୨୧

ବୃନ୍ତରୁ ଫୁଲଟିକୁ ତୋଳିବାବେଳେ
ବୃନ୍ତର ଆକୁଳ 'ନାହିଁ, ନାହିଁ'
ଆମେ ଶୁଣୁ କି ?

୧୨୨

ସାମ୍ନାରୁ ଆସୁଥିବା ରୂପସୀ ତନ୍ୱୀଟିକୁ ଦେଖିଦେଇ
ଖୁବ୍ ଖୁସି ହୋଇଯିବାର ପରମୁହୂର୍ତ୍ତରେ
ହଠାତ୍ ବିମର୍ଷ ହୋଇଯାଇଥିଲି,
ତୀକ୍ଷଣ ଦୃଷ୍ଟି ମୋର ନିଷ୍ପଲକ ହୋଇଯାଇଛି,
ଲମ୍ବାଶାଢ଼ିର ଅନ୍ତରାଳରେ ପ୍ରାୟ ପ୍ରଛନ୍ନ ରହିଥିବା
ତା'ର ଉନ୍ନତ ବାମପାଦ ପାଖେ ।

୧୨୩

ବୃଦ୍ଧା ଧୀରେ ଧୀରେ ପାହାଚରେ ଉଠୁଛନ୍ତି ଦ୍ୱିତଳକୁ,
ପଛରୁ ଆଗେଇ ଯାଇ ତାଙ୍କୁ ଅତିକ୍ରମ
କରିଯିବା ଅର୍ଥ, ଅକ୍ଷମତାକୁ ତାଙ୍କର
ଉପହାସ କରିବା ।

୧୨୪

ବେଳେବେଳେ 'ବର୍ତ୍ତମାନ'ଟା ଦୁର୍ବିସହ ମନେହୁଏ,
ସେତେବେଳେ ଅତୀତକୁ ରୋମନ୍ଥନ କଲେ
କିଛିଟା ଶାନ୍ତି ମିଳିଥାଏ,
ସେ ଶାନ୍ତି ସ୍ୱପ୍ନର, ଯାହା ଲେଉଟିବନି ଆଉ,
ଲେଉଟୁଥିଲେ ବି କେତେବେଳେ ବା ଧରି
ରଖିହୁଅନ୍ତା ସେ ତୃପ୍ତିକୁ,
ସେତେବେଳେ ମନେହେବ 'ବର୍ତ୍ତମାନ' ହିଁ ଶ୍ରେୟସ୍କର ।

୧୨୫

ଗୃହଟିର ତିଆରିବେଳେ
କେତେ ଉତ୍ସାହ ନ ଥିଲା ମିସେସ୍ ପଣ୍ଡାଙ୍କର,
ନୂତନ ଗୃହଟି ଥିଲା ତାଙ୍କର ରୁଚି ଓ ଇଚ୍ଛାର ପ୍ରତିବିମ୍ବ,
ଅଥଚ ଗୃହ ପ୍ରତିଷ୍ଠା ଦିନ
ମିସେସ୍ ପଣ୍ଡାଙ୍କର ଲାସ୍ ସଯତ୍ନେ ରଖା ଯାଇଥିଲା
ଡ୍ରଇଂ ରୁମ୍‌ର ମଧ୍ୟ ଭାଗରେ,

ଦିନ ଏଗାରଟାବେଳର ହସହସ ମିସେସ୍ ପଣ୍ଡା
ଦିନ ବାରଟାରେ ଆଉ ନ ଥିଲେ ।

୧୨୬
ନମସ୍କାରର ପ୍ରତିନମସ୍କାର ନ ପାଇ
ତୁମେ କ୍ଷୁବ୍ଧ ହୋଇଚ,
ଯଦିଚ ବୁଝି ପାରିଛ,
ସେ ଲକ୍ଷ୍ୟ କରିପାରି ନାହାନ୍ତି ତୁମକୁ ।

୧୨୭
ତୁମ ସମର୍ଦ୍ଧନାର ପ୍ରାଥମିକ ଉଚ୍ଛ୍ୱାସ
କ୍ରମେ ଫିକା ପଡ଼ି ଆସିବ,
ପୂର୍ବରୁ ସେଥିଲାଗି ମାନସିକ ପ୍ରସ୍ତୁତି ନ ଥିଲେ,
ଦୁଃଖ ତୁମର ଅବଶ୍ୟମ୍ଭାବୀ ।

୧୨୮
ତିନି ଦିନ ପୂର୍ବେ ଏଇ ନୂଆ ସ୍ଥାନରେ
ଆସି ପହଞ୍ଚିବାବେଳେ, ନିଜକୁ
କେତେ ନିଃସଙ୍ଗ ମନେ ହେଉଥିଲା,
ଅଥଚ ତିନି ଦିନ ପରେ, ଏଠାରୁ
ବିଦାୟ ନେବାବେଳେ, ଏଠାର ମଣିଷ,
ଘରଦ୍ୱାର, ଗଛବୃଛ, ନଈ, ନାଳ, ପାହାଡ଼, ଅରଣ୍ୟ,
କେତେ ନିଜର ମନେ ହେଉଛନ୍ତି,
ମେଲାଣି ଅଶ୍ରୁରେ ଅନ୍ଧ ହୋଇ ଯାଉଛି ମୁଁ ।

୧୨୯
ମୋର ସାମାନ୍ୟ ବିଳମ୍ବ ହେତୁ,
ଷ୍ଟେସନରେ ମୁଁ ପହଞ୍ଚିବା ବେଳକୁ
ଟ୍ରେନ ଚାଲି ଯାଇଥିଲା,
ବନ୍ଧୁ 'ସୁଜାତା' ପ୍ରଥମେ ଖୋଜିଥିବ ମୋତେ

କମ୍ପାର୍ଟମେଣ୍ଟ ଉପରୁ ଦୃଷ୍ଟି ପହଁରାଇ,
ତା' ପରେ ଓହ୍ଲାଇ ଆସି ପ୍ଲାଟଫର୍ମର ଗହଳି ଭିତରେ
ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ
ସେ ତା'ର 'ବ୍ୟଥା' ଛାଡ଼ି ଦେଇ ଯାଇଛି
ପ୍ରାୟ ଶୂନ୍ୟ ପ୍ଲାଟଫର୍ମର ଏକ ପାର୍ଶ୍ୱରେ,
ଯେ ବସି ରହିଚି ଅଶ୍ରୁଳ ଆଖିରେ ।

୧୩୦

ଦ୍ୱାର ଖୋଲି 'ଟେଲିଗ୍ରାଫ୍ ମେସେଞ୍ଜର'କୁ ଦେଖିଦେଇ
ବିବର୍ଣ୍ଣ ହୋଇ ଯାଇଛନ୍ତି ରୀତା ରାୟ,
ତାଙ୍କ ସାନ ଝିଅର ଏକ ବିପଦପୂର୍ଣ୍ଣ ପରିସ୍ଥିତିରେ
ଡ଼େଲିଭରି ଆସନ୍ନ ଥିଲା ଶାଶୂଘରେ,
ସ୍ୱାମୀ କାଲି ଫ୍ଲାଇଟ୍‌ରେ ଜାପାନ ଯାଇଛନ୍ତି,
ମେସେଞ୍ଜର କ'ଣ କହୁଛି ?
'ଟେଲିଗ୍ରାମ୍ ଜି. ପାର୍ଥ ରାଓଙ୍କର',
ମିସେସ୍ ରାୟଙ୍କ ଆଖି ଉଜ୍ଜ୍ୱଳ ହୋଇଯାଇଛି,
"ସେ ପ୍ରତିବେଶୀ ଆମର" ଅଙ୍ଗୁଳି
ନିର୍ଦ୍ଦେଶ କରି ଦେଇଛନ୍ତି ସେ,
ଆଶ୍ୱସ୍ତିର ନିଃଶ୍ୱାସ,
ଏବେ ଟେଲିଗ୍ରାମ ସମ୍ପର୍କରେ
ତାଙ୍କର କିଛିଟା ଅନାସକ୍ତ କୌତୂହଳ କେବଳ ।

୧୩୧

ମନ ଖୁସି ଥିଲେ ନିର୍ଜନ ମୁହୂର୍ତ୍ତ ଏକୁଟିଆ
ବେଶ୍ କଟି ଯାଏ,
ଦୁଃଖରେ ମନ ଭରିଥିଲେ ନିର୍ଜନତା କିନ୍ତୁ
ଦୁର୍ବିସହ ମନେହୁଏ,
ସେତେବେଳେ ମନ ଖୋଜେ ସାଥୀଟିଏ,
ଯାହା ପାଖେ ଖୋଲି ଦେଇ ହେବ ମନର ପୁଞ୍ଜୀଭୂତ ବ୍ୟଥା,
ଅବ୍ୟକ୍ତ ଯନ୍ତ୍ରଣା ହୃଦୟର, ଆଖିର ଲୁହ

ଢ଼ାଳିଦେଇ ହେବ,
ସେ ଶୁଣି ଦୁଃଖ ତୁମର ଘେନି ଯିବ କି ?
ଉପଶମ କରି ଦେଇ ପାରିବ କି ଯନ୍ତ୍ରଣା ତୁମର ?
କେବଳ ଛଳଛଳ ଆଖିରେ ଅନାଇ ରହିବ ତୁମକୁ
ଓ ତୁମ ଲୁହ ତା' ଆଙ୍ଗୁଠିରେ ପୋଛି ଦେବ,
ଏବଂ ପରିଶେଷରେ ଦେବ ଏକ ବୁକୁଥରା ଦୀର୍ଘଶ୍ୱାସ,
ଜଣେ ଦୁଃଖୀ ଲାଗି ଏତିକି ଯଥେଷ୍ଟ ।

୧୩୨
ଫେରିପଡ଼ି ଅନାଇ ଦେଲି, କୁନି ଝିଅଟିଏ
ଦୌଡ଼ିଛି ମୋ ପଛେ ପଛେ,
ଆଉ ତା' ପଛରେ ଧାଇଁଛି ସମ୍ଭବତଃ ତା'ର ମାଆ,
ଝିଅଟି ଧାଇଁ ଆସି ମୋ ଲୁଗାରେ ତା' ମୁହଁ ଲୁଚାଇ ଦେଲା,
"ମୁଁ ଟିକିଏ ଅନ୍ୟମନସ୍କ ହୋଇ ଯାଇଚି,
ଘରୁ ପଳାଇ ଆସିଛି ରାସ୍ତାକୁ,"
ଭଦ୍ରମହିଳାଙ୍କ କଣ୍ଠରେ ଅଭିଯୋଗ,
"ଆପଣଙ୍କ ଝିଅ ?"
ମୋ ପ୍ରଶ୍ନରେ ମୁଣ୍ଡ ଟୁଙ୍ଗାରି ହସିଲେ ସେ,
ଝିଅର ହାତ ଧରି ସେ ଫେରି ଯାଉଛନ୍ତି,
ଲୁହ ଆଖିରେ ଅନାଇ ରହିଚି ମୁଁ ସେମାନଙ୍କୁ,
ମାଆ ହେବାର ସୌଭାଗ୍ୟ ନାହିଁ ଯେଉଁମାନଙ୍କର... ।

୧୩୩
'ସେମାନଙ୍କର ସମୟ କଟୁନି, ତେଣୁ
ଛଟ ପଟ ହେଉଛନ୍ତି ସେମାନେ,'
ଏପରି କହିବାବେଳେ ମୁଁ ଠିକ୍ ସେଇ ଦୁଃଖରେ
ଛଟପଟ ହେଉନି କି ?
ତଥାପି ଅନ୍ୟର ଯନ୍ତ୍ରଣା ଉପରେ
ଟିପ୍ପଣୀ ଦେବାର ଲୋଭ ସମ୍ବରଣ କରି ହୁଏନା,

ଅଥଚ ମୋ ସମ୍ପର୍କରେ ଠିକ୍ ସେମିତି ଅନ୍ୟ କେହି କହିଲେ
ମୁଁ କ୍ଷୁବ୍ଧ ହୁଏ କାହିଁକି ?

୧୩୪
କଲୋନୀର କ୍ୱାର୍ଟର୍ସର ଦୋତାଲାର ଶିଢ଼ି ତଳୁ
ପାଇଥିବା ସଦ୍ୟଜାତ ଶିଶୁଟିକୁ
କେତେ ଯତ୍ନରେ ବଡ଼ ନ କରୁଛି 'ଲଛମୀ',
ରିକ୍ସାବାଲାର ସ୍ତ୍ରୀ, ବିବାହର ଦଶ ବର୍ଷ ପରେ ବି
ନିଃସନ୍ତାନ ଏବେ,
ଶିଶୁପୁତ୍ରର ଦରୋଟିରେ ତେଲ୍‌ଗୁ 'ଆମା',
ନିଜ ଗର୍ଭଧାରିଣୀର ପାଖେ ସେ ଥିଲେ, କ'ଣ ହୋଇଥାନ୍ତା
ତା'ର ମାତୃଭାଷାର ସ୍ୱରୂପ ?

୧୩୫
ନିଜର ପ୍ରଶଂସା ଶୁଣି ଶୁଣି
କ୍ଳାନ୍ତ ଓ ଅବସନ୍ନ ହେବାର ଦୁଃଖ
କେବେ ଅନୁଭବ କରିଛ ?

୧୩୬
ରାସ୍ତାର ଦୁଇ ପାଖେ କେତେ ଦୃଶ୍ୟ,
ରାସ୍ତା ଉପରେ କେତେ ମୁହଁ, କେତେ ସାନ୍ନିଧ
ମନ ତଳେ କିନ୍ତୁ ସେ ସବୁ ସମ୍ପର୍କରେ ରେଖାପାତ କାହିଁ ?
ଜୀବନ ରାସ୍ତାରେ ଏଇ ସତ୍ୟର ଉପଲବ୍ଧି ହିଁ,
ଅନାସକ୍ତିର ନିରଙ୍କୁଶ ଆନନ୍ଦ ଦେଇପାରେ ।

୧୩୭
ନିଃସଙ୍ଗତାଜନିତ ଦୁଃଖରେ ମୁଁ ଯେବେ ମ୍ରିୟମାଣ,
ଆପଣାର ନିଃସଙ୍ଗତାର ଦୁଃଖ ନେଇ
ସେ ଆସିଛନ୍ତି ମୋ ପାଖକୁ,
ଆମେ ଅପନୋଦନ କରିବୁ କିଏ କାହାର ଦୁଃଖ ।

୧୩୮

ସକାଳ କ୍ରମେ ଅପରାହ୍ଣ ହେଲା,
ଭଲ କବିତାଟିଏ ଲେଖିବାର ପ୍ରୟାସ
ସଫଳ ହୋଇ ପାରିଲାନି ମୋର,
ହାତ ବଢ଼ାଇଲେ ହିଁ ଫୁଲଟିଏ ତୋଳି ଆଣି ହେବ
ଏ ଆତ୍ମବିଶ୍ୱାସ, ଅହମିକାରେ ରୂପାନ୍ତରିତ
ହୋଇଯିବା ହେତୁ, ମୁଁ ବାମନ ହୋଇଯାଇଛି,
ଇସ୍, ଫୁଲ କେତେ ଉର୍ଦ୍ଧ୍ୱରେ ।

୧୩୯

ଚିଠିକୁ ଅପେକ୍ଷା କଲେ କ'ଣ ଚିଠି ଆସେ ?
ମାତ୍ର ଅପ୍ରତ୍ୟାଶିତ ଭାବେ ପ୍ରତୀକ୍ଷିତ ପତ୍ର
ଯେବେ ଆସିଯାଏ,
ମନ କି ଉଦ୍‌ବେଳିତ ନ ହୋଇଉଠେ ଖୁସିରେ !

୧୪୦

ଜୀବନ ସାୟାହ୍ନରେ,
ଆଜି ଅଭିନନ୍ଦିତ କରାଯାଉଛି କବିଙ୍କୁ,
ଯେବେ ମନତଳେ ତାଙ୍କର,
କବିତାର ସ୍ଫୁରଣ ଆଉ ନାହିଁ ।

୧୪୧

ଜୀବନ ସମ୍ପର୍କରେ ସଦା ସତର୍କ
ଓ ଚିନ୍ତାନ୍ୱିତ ରହି ଆନନ୍ଦ ମୁଁ
ହରାଇ ବସିଛି,
ଜୀବନକୁ ସରଳ ଓ ନିଷ୍କପଟ ଭାବେ ଭଲପାଇ
ଯେ ସଦା ନିନ୍ଦିତ ଅକାରଣରେ
ମୁଁ ଈର୍ଷା କରୁଛି ତାକୁ ।

୧୪୨

ଜୀବନର ଅନ୍ତିମ କ୍ଷଣରେ
ମୁଁ ସ୍ମରଣ କରିବି ଈଶ୍ୱରଙ୍କୁ,
ନାଁ, ମୋର ଅପ୍ରକାଶିତ କବିତାମାନଙ୍କୁ ?

୧୪୩

ଦୀର୍ଘ ଦୁଇ ମାସ ଧରି
ଯେଉଁ ଇନ୍ଦୁରର ଅତ୍ୟାଚାରରେ
ମୁଁ ଅତିଷ୍ଠ ହୋଇଉଠିଥିଲି,
ଆଜି ମୁହୂର୍ତ୍ତୁ ସେଇ ମୂଷିକର ଶୁଶ୍ରୂଷାରେ ବ୍ୟସ୍ତ ମୁଁ
ଓ ଅନ୍ତରାଳରେ ଲୁଚାଇ ରଖିଛି ତାକୁ
କାଳେ କୌଣସି ମାର୍ଜାରର ହିଂସ୍ର ଦୃଷ୍ଟି
ପଡ଼ିଯିବ ତା' ଉପରେ ।

୧୪୪

ଅନ୍ୟ ତ୍ରୁଟିର ସମାଲୋଚନା କରିବାକୁ
ଉଦ୍ୟତ ହୋଇ ଅଟକି ଯାଏ,
ସେଥିରୁ ମୁଁ ମୁକ୍ତ ତ ?

୧୪୫

ପରୀକ୍ଷାରେ ପୁଅର ପାସ୍ ଶୁଣି
ସେତେ ଖୁସି ହୋଇଗଲେ ପରାଶର ବାବୁ,
ପ୍ରତିବେଶୀଙ୍କ ପୁଅର ଫେଲ୍ ଖବରରେ
ସେତିକି ସେ ଦୁଃଖ ପାଇଲେ କି ?

୧୪୬

ଏ ଦେହ ତ ଭଗବତ୍ ପ୍ରାପ୍ତି ଲାଗି ଉଦ୍ଦିଷ୍ଟ,
ଅଥଚ ସେଇ ଶରୀର ଅସଦୁପଯୋଗ ହେତୁ
ଈଶ୍ୱର ଓ ଆମ ମଧ୍ୟରେ
ବ୍ୟବଧାନ ବଢ଼ିଯାଏ ।

୧୪୭

କନ୍ୟା, 'କଲ୍ୟାଣୀ'ର ବିବାହ ପରେ,
ତାକୁ ବିଦାୟ ଦେବାକୁ ଯାଇ
ବିକଳ ହୋଇ କାନ୍ଦୁଥିଲେ ସୁମିତ୍ରା,
ଅଶ୍ରୁଳ ଆଖିରେ ସ୍ୱାମୀ ସୁବ୍ରତ କିନ୍ତୁ ଦେଖୁଥିଲେ ଭିନ୍ନ ଏକ
ବିଦାୟର ଦୃଶ୍ୟକୁ,
କଲ୍ୟାଣୀ କାହିଁ ? ଷୋଡ଼ଶୀ ସୁମିତ୍ରା ଯେ ।

୧୪୮

ନିକଟରେ ଚାକିରିରୁ ତୁମେ ଅବସର ନେବା ପରେ
ଏକାମ୍ର ଛାଡ଼ି ଆମେ ଫେରିଯିବା
ଶ୍ରୀକ୍ଷେତ୍ରର ଆମର ସେଇ ଦୋତାଲା ଘରକୁ,
ନିର୍ଦ୍ଦିଷ୍ଟ ସେଇ ପ୍ରକୋଷ୍ଠକୁ, ଯେଉଁଠି
ବାସରରାତ୍ରିରେ ଏକତ୍ର ହୋଇଥିଲେ ଆମେ,
ସେ କକ୍ଷର ସେଇ ଦୀର୍ଘ ଦର୍ପଣ ପାଖେ
ପୁଣି ଯାଇ ଠିଆ ହେବା,
ପ୍ରତିବିମ୍ବ, ସେ ଦିନର ସେଇ ତରୁଣ ତରୁଣୀଙ୍କର
ବିଚିତ୍ର ରୂପାନ୍ତର ଦୁଇଟି ପ୍ରୌଢ଼ ବିଗ୍ରହର,
ସେଇ କକ୍ଷରେ ଯେତେ ଖୋଜିଲେ ବି
ଆଉ ପାଇବାନି ଅତୀତର ସେ ଦୁହିଁକୁ,
ସେମାନେ ଲୁଚି ଯାଇଛନ୍ତି ଚିରଦିନପାଇଁ ।

ବୟସର କ୍ରମ ଅଗ୍ରଗତିରେ କ୍ରମେ
ଅକ୍ଷମ ଓ ଅଶକ୍ତ ହେବା ଆମେ
ଏବଂ ଆମେ ଲୋଡ଼ିବା ପରସ୍ପରକୁ ପ୍ରତି ମୁହୂର୍ତ୍ତରେ
ନିଘଞ୍ଚ ହୋଇ ରହିବା ଲାଗି ।

ଆମ ଘରର ଛାତ ଉପରେ
ନୀଳଚକ୍ରର ସ୍ପଷ୍ଟ ଦୃଶ୍ୟ,
ନେତ ଉଡୁଥିବ ଦୋହଲି ଦୋହଲି ପବନରେ,

ଆଉ ଆମେ ପାଖାପାଖି ଠିଆ ହୋଇ ଦେଖୁଥିବା
ତିନି ମୂର୍ତ୍ତିଙ୍କୁ ସାମ୍‌ନାରେ ।

ମୁଁ କ'ଣ ଭାବୁଛି ଜାଣ ?
ପ୍ରତ୍ୟେକ ସଧବା ସ୍ତ୍ରୀର ସେଇ ଗୋଟିଏ
ଅଭିଳାଷର କଥା-
ତୁମ କୋଳରେ ମଥା ରଖି ଚିରଦିନପାଇଁ
ଆଖି ବୁଜିବି ।

ସେଇ କକ୍ଷରୁ ବାହାରିଯିବ ଲାସ୍ ମୋର,
ବାହାରେ ପ୍ରସ୍ତୁତ ଥିବା କୋକେଇ ଉପରକୁ,
ମାଲଭାଇମାନଙ୍କ କାନ୍ଧରେ ଆଗେଇ
ଚାଲିଥିବି ମୁଁ ଓ ତୁମେ ଚାଲିଥିବ
ଲିଆ କଉଡ଼ି ବିଞ୍ଚି ବିଞ୍ଚି ମୋ ଆଗେ ଆଗେ ।
ସ୍ୱର୍ଗ ଦ୍ୱାରରେ ମୋତେ ଚିତାଗ୍ନିରେ ଥୋଇଦେଇ
ତୁମେ ଫେରି ଆସିବ ଯେବେ ଘରକୁ
ଶୂନ୍ୟତା ମୋର ଅନୁଭବ କରିବନି ?
ନିର୍ଜନ ମୁହୂର୍ତ୍ତରେ ଏକା ବସିଥିବା ବେଳେ
ଅଶ୍ରୁଳ ଆଖିରେ ଭାବିବନି
ସାଙ୍ଗ ହୋଇ ଲେଖୁଥିଲୁ,
ସାଥୀଟି ଚାଲିଗଲା ।
ଆମେ ଦୁହେଁ ଦୁହିଁଙ୍କ ସାନ୍ନିଧ୍ୟ ଲଭି
"କବି" ଓ "କଥାକାର",
ମୋ କବିତାରେ ତୁମର ପ୍ରତିବିମ୍ବ,
ଓ
ତୁମ ଗଳ୍ପରେ ମୋର ଛାଇ ।
ମୋର ଅବର୍ତ୍ତମାନରେ ତୁମେ ଆଗପରି
ଗପ ଠିକ୍ ଲେଖିପାରିବ ତ ?
ତୁମେ ଏକା ବସି ଲେଖୁଥିବାବେଳେ
ମୋ କଲମଟି ସ୍ଥିର ହୋଇରହିଥିବ,

ଠିକ୍ ସ୍ଥିର ଯେମିତି କାନ୍ଥରେ ଝୁଲୁଥିବା
ଫଟୋ ମୋର ।

ଅବଶ୍ୟ ମୋର ଏ ସ୍ୱପ୍ନକୁ
ମହାକାଳ ବିଦ୍ରୂପ ନ କଲେ ହେଲା ।

□□

( ୧ )

ତମେ ରୂପରେ ବ୍ରହ୍ମ ସତ,
ମାତ୍ର ଆଚରଣରେ ସୁଖ, ଦୁଃଖର ସାଥୀ ଆମର,
ଏମିତି ସାଥୀଟିଏ ଅଛି କିଏ ଆଉ ?

ଧନ୍ୟ କହିବ ତମର ଧୈର୍ଯ୍ୟକୁ,
କେତେ ଗାଳି ଆମର ତମକୁ
ଆମର ବୈଷୟିକ କ'ଣ ସବୁ କ୍ଷତିହୋଇ ଯାଏ ବୋଲି,
ତମେ ଚୁପ୍‌ଚାପ୍ ହସୁଥାଅ ।

ଆମର ଜାଗତିକ ଲାଭରେ
ଆମେ ପ୍ରମତ୍ତ ଯେବେ,
ତୁମେ ନିଶ୍ଚଳ, ନୀରବ କିନ୍ତୁ,
ଓଠରେ ତମର ଟୋପାଏ ହସଥାଏ କେବଳ ।

ହେ ଅଚଳ ମହାମେରୁ !
ଆମର ଏଇ ଚାଞ୍ଚଲ୍ୟକୁ
ତମେ କିନ୍ତୁ ସ୍ୱାଗତ କରିଥାଅ,
କାରଣ ଆମେ ଏମିତି ନିରାନନ୍ଦ ଓ ଆନନ୍ଦରେ
ଆଗ ପଛ ହେଉ ହେଉ
ଦିନେ ଠିକ୍ ପହଞ୍ଚି ଯିବୁ ତମ ପାଖେ,
ଠିକ୍ ତମେ ଯେମିତି ସିଂହାସନରୁ ଓହ୍ଲାଇ ଆସି
ପହଣ୍ଡିରେ ପହଞ୍ଚିଯାଅ ଆମ ସମୀପରେ,
ଜୀବ, ବ୍ରହ୍ମ ଅଭେଦ ତତ୍ତ୍ୱରେ ।

( ୨ )

ତମେ ଅସଂପୂର୍ଣ୍ଣ ଯେଣୁ ତୁମର ସାନ୍ନିଧ ସତ୍ତ୍ୱେ
ଆନନ୍ଦ ମୋ ଅସଂପୂର୍ଣ୍ଣ ରହେ ?
ଆଖି ପୂରାଇ ମୁଁ ଏତେ ଦେଖିବା ପରେ ବି
ମନେହୁଏ ତୁମକୁ ମୁଁ ଦେଖିବାରେ ବହୁ କିଛ ବାକି ରହିଗଲା,

ତୁମ ପାଖୁଁ ଘରକୁ ଲେଉଟି ତେଣୁ ବିବିଧ ଜଂଜାଳ ମଧ୍ୟେ
ମନେ ମନେ ତୁମକୁ ହିଁ ଖୋଜେ,
ତଥାପି କି ବାକିର ଭରଣା ହୁଏ ?
ବାକି ମୋର ବାକି ହୋଇ ରହେ ।

ମୋତେ ଲାଗେ, କାଲି ତୁମ ପାଖେ ପୁନର୍ବାର ଯିବି ଯେବେ,
ସେ ଶୂନ୍ୟତା ଭରିଯିବ ମୋର,
ମାତ୍ର ତୁମ ନିକଟେ ମୁଁ ବାରମ୍ବାର ଯାଇ ସୁଦ୍ଧା
ଅବଶୋଷ ରହିଯାଏ, ତୃପ୍ତି ମୋର ସଂପୂର୍ଣ୍ଣ ନ ହୁଏ ।

(୩)

ବସ୍‌ରୁ ଓହ୍ଲାଇ ଦେଖେ ତୁମେ ମୋର ଅପେକ୍ଷାରେ
ହୋଇଅଛ ଠିଆ,
ଏ କଥା ସଂପୂର୍ଣ୍ଣ ସତ, ଏ ଯାତ୍ରାର ଆରମ୍ଭରୁ
ଶେଷଯାଏ ଭାବୁଥିଲି ତୁମକଥା ନିମଗ୍ନ ମନରେ,
ଭାବୁଥିଲି କେତେ ଦିନ ଏମିତି ମୁଁ ବିଦେଶରୁ ଆସୁଥିବି
ମଧ୍ୟେ ମଧ୍ୟେ ତୁମରି ନିକଟେ,
ତୁମଠୁ ଦୂରରେ ରହି ସମୟ ମୋ କଟିବ କେମିତି ?

ତୁମକୁ ତ ଦେଖିଦେଇ ଆଶ୍ଚର୍ଯ୍ୟେ ମୁଁ
ସ୍ତବ୍ଧ ହୋଇଗଲି,
ତୁମେ ବୋଧେ ବୁଝିଗଲ ପ୍ରତିକ୍ରିୟା ମୋ ମନର,
ହସିଦେଇ କହିଲ ତ ତେଣୁ,
"କେତେ ବ୍ୟାକୁଳତା ନେଇ ତୁ ଆସିଛୁ ମୋ ନିକଟେ
ଏକଥା ମୁଁ ଜାଣିବା ପରେ ବି
କିପରି ବା ସ୍ଥିର ରହି ପାରିଥାନ୍ତି," ଲୁହରେ ମୁଁ ଅନ୍ଧ ହୋଇଗଲି ।
ବଡ଼ ଦାଣ୍ଡେ ପାଖାପାଖି ଚାଲିଛୁ ବେନିଏ,
ଅଥଚ କାହାରି ତୁଣ୍ଡେ ପଦେ କଥା ନାହିଁ,
ପଥ ପରେ କେତେ ଜନ, କେତେ ଭିଡ଼, କେତେ କୋଳାହଳ,
କେତେ ଆକର୍ଷଣୀ ଦୃଶ୍ୟ, କେତେ ଧ୍ୱନି, ଅଥଚ ମୁଁ

ଦେଖିପାରୁ ନାହିଁ କିଛି, ଶୁଣି ପାରୁ ନାହିଁ,
ଅନୁଭବ କରୁଛି ମୁଁ ତୁମରି ସାନ୍ନିଧ ସୁଖ,
ଦେହକୁ ମୋ ଲାଗି ତୁମେ ଚାଲିଛ ରାସ୍ତାରେ ।

ଆମ ମଧ୍ୟେ ଆଳାପ କି ପ୍ରୟୋଜନ ? ଆମେ ଦୁହେଁ
କହୁଥିଲେ କଥା
ପରସ୍ପରେ ନୀରବ ଭାଷାରେ, ଭାଷାରେ ଯା
ବ୍ୟକ୍ତ କେବେ ପାରନ୍ତାନି ହୋଇ,
ଦିଶୁଛି ମନ୍ଦିର, ତୁଙ୍ଗ ଚୂଳେ ଯା'ର ପତିତପାବନ ବାନା
ଉଡ଼େ ଫରଫର,
ତୁମଘର, ଯେଉଁଠୁ ଆସିଛ ତୁମେ
ମୋତେ ସଙ୍ଗେ ନେଇଯିବା ପାଇଁ ।

ମନ୍ଦିରକୁ ପ୍ରବେଶିବା ପରେ ମୋତେ ତୁମେ
ଗରୁଡ଼ ସ୍ତମ୍ଭର ପାଖେ ପହଞ୍ଚାଇ ଦେଇ,
ଚାଲିଗଲ ତରତରେ, ତା'ପରେ ମୋ ଦୃଷ୍ଟିର ସମ୍ମୁଖେ,
ଦାରୁ ବିଗ୍ରହର ମଧ୍ୟେ ଅନ୍ତର୍ହିତ ହେଲ
ବିସ୍ମୟେ ମୁଁ ହତବାକ୍, ନୟନେ ମୋ ଅଶ୍ରୁବନ୍ୟା
ଚାପି ରଖି ଉଚ୍ଛ୍ୱସିତ କୋହ,
ଚକା ନୟନକୁ ତବ ଚାହିଁ ରହି ଭାବୁଥିଲି
କେତେ ମୁଁ ନିର୍ବୋଧ ସତେ,
ସସୀମ ଚିନ୍ତାର ମଧ୍ୟେ ମାପୁଛି ତୁମକୁ ।

(୪)

ତୁମ ଦରଶନେ ପ୍ରଭୋ ! କ'ଣ ଅଛି, ଯେତେ
ଦେଖୁଥିଲେ ବି ତ ନୂଆ ଲାଗୁଥାଏ ।
ବସିଛ ମାଦଳ ପରି, ଚକା ଦୁଇ ଆଖିମେଲି ସଦା ଅପଲକ,
ସେ ଆଖିର ଭାଷା, ଯେ ଯେପରି ବୁଝେ, କହେ ସେ ସେପରି,
ଅଥଚ ସେ କହିବା ମଧ୍ୟେ ଚମତ୍କାର ସାମଞ୍ଜସ୍ୟ ଥାଏ ।

ତୁମେ କ'ଣ ଉତ୍ତର କି ପ୍ରତ୍ୟେକ ପ୍ରଶ୍ନର ?
ତମେ କ'ଣ ସମାଧାନ ସବୁ ସମସ୍ୟାର ?
ଭାରି ହୃଦୟରେ ଯାଇ ତମ ପାଖେ ଜଣେ
ଯେବେ ହସି ହସି ଫେରେ,
ଅନ୍ୟ ଜଣେ ଅହମିକା ମତ୍ତ, ତୁମ ନିକଟରୁ ଫେରେ
ଭାବେ ମତ୍ତ ଅଶ୍ରୁଳ ଆଖିରେ,
କ'ଣ ତୁମେ କରିଦିଅ, ନୀରବେ କି ମନ୍ତ୍ର ବା ଫୁଙ୍କ,
ହୁଏ ରୂପାନ୍ତର ।
ଜ୍ଞାନୀ, କର୍ମୀ, ଭକ୍ତ, ଯୋଗୀ ଭରପୂର ହୋଇ ଆସି
କେଉଁ ପରି ତୁମ ପାଖେ ହୁଅନ୍ତି ନିଃଶେଷ ?
ତୁମ ପାଖେ ସବୁ ସଞ୍ଚୟକୁ ଦେଇ ଜଳାଞ୍ଜଳି,
ଫେରିଯାନ୍ତି ଶୂନ୍ୟ ହାତେ, ମହା ଆନନ୍ଦରେ ।

କାହାଠାରୁ ନାରିକେଳ ନିଅ, କାହାଲାଗି
ତୁମ ସୁନା ଥାଳ ଭରି ଅନ୍ନ ବି ପଠାଅ,
ରଥ ପୁଣି ରୋକ ପଥେ, ତୁମ ଦରଶନ ଲାଗି,
କେହି ଜଣେ ଆସୁଆସୁ ଡେ଼ରି ହେଲା ବୋଲି,
ଏମାନେ ସମସ୍ତେ ନିଜକୁ କାଙ୍ଗାଳ କରି ତୁମ ପାଖେ,
ଦୋହଲାଇ ଦେଇଛନ୍ତି ତୁମର କୃପାକୁ ।
ବାଇଶି ପାହାଚ ଡେ଼ଇଁ ଥରେ ଯିଏ ଭିତରକୁ ଗଲା,
ନିଜକୁ ବୁଝିବା ଲାଗି ତା'ର ଆଉ କିଛି କ'ଣ ବାକି କି ରହିଲା,
ତୁମ ଡୋ଼ର ଲାଗିଗଲେ ଥରେ, ସବୁ ଦାୟିତ୍ୱରୁ ମୁକ୍ତି,
ତା'ପରେ ନିଶ୍ଚିନ୍ତ ହୋଇ ଆଖି ମୁଜି ତାଳି ମାରି
ନାଚିବା ଗାଇବା ।

(୫)

ତମର ପହଣ୍ଡି ଦେଖି ମନେହୁଏ, ଆଗପଛ ହୋଇ ତୁମେ ଡ଼ାକୁଛ ଆମକୁ
ଭୁଜ ତଳେ ଆଶ୍ରୟ ଦେବା ଲାଗି, ଏ ସତ୍ୟବି ଦେଇଛ ସୂଚାଇ
ଆଗପଛ ହୋଇ କ୍ରମେ ବଢ଼ିବା ଆଗକୁ,
ଯାଉ ଯାଉ ଏହିପରି ଆଗକୁ ଆଗକୁ

ଦିନେ ନା ଦିନେ ନିଶ୍ଚେ ଆମ ମଧ୍ୟେ ମିଳନ ସଂଭବ ।
ସାରାବର୍ଷ ସ୍ଥିର ହୋଇ ବସିବାର ପରେ,
ଅଣସର ଘରୁ ଝୁଲି ଝୁଲି ବାହାରକୁ ଆସୁ ଆସୁ,
କିଲିବିଲି କରନ୍ତି ତୁମକୁ
ଆକୁଳ, ବ୍ୟାକୁଳମନେ, ସେଥିରେ କି ଆନନ୍ଦ ତୁମର,
ତୁମର ସେ ଆନନ୍ଦକୁ ନେଇ କେତେ ଦୁଃଖୀ, ନିରାନନ୍ଦ
ଆଶ୍ୱସ୍ତ ହୁଅନ୍ତି ।

ଝୁଲି ଝୁଲି ଚାଲିଥିବ ତମେ, ନାଚୁଥିବି ତୁମରି ସାମ୍ନାରେ,
ଦେବଦାସୀ ଭଳି, ନ ଥାଉ ପଛକେ ମୋର ପାଦରେ ନୂପୁର,
କଟିରେ କିଙ୍କିଣୀ, ଜଣା ନଥାଉ ପଛକେ
ଭଙ୍ଗି ନାଚିବାର
ନାଚୁଥିବି ଘଣ୍ଟ ଓ ମର୍ଦ୍ଦଳର ଧ୍ୱନି ସାଥେ ଉନ୍ମାଦିନୀ ଭଳି,
ଦି' ନୟନୁ ଅଫୁରନ୍ତ ଅଶ୍ରୁର ପ୍ରବାହ ।

ବରଷକେ ଥରେ, ତମର ପହଣ୍ଡିମାନ
ଦେଖିବାର ଲୋଭ ପ୍ରିୟ ସଂବରଣ କରିବି କିପରି ?
ସିଂହାସନ ପରେ ତମେ ପୁନର୍ବାର ବିଜେ ହେବା ପରେ
ସେ ପହଣ୍ଡି ସବୁ ହେବେ ମୋର ସ୍ମୃତିର ଶଙ୍ଖାଳି ।

(୬)

ତମେ ଦି' ଆଖିରେ ପ୍ରଭୋ ! ଯେତେ କଥା କୁହ
ସେ କଥାରୁ କାଣିଚାଏ ଯଦି ପାରୁଥା'ନ୍ତି ବୁଝି,
ତେବେ ତୁମ ଦରଶନ କ'ଣ ବୃଥା ଯାଉଥାନ୍ତା ?
ଲୋଡ଼ା ପଡୁ ନଥାନ୍ତା ମୋ ଅଧ୍ୟୟନ ଗୀତା,
ଭାଗବତ, ବେଦ ଓ ବେଦାନ୍ତ ।

ମାତ୍ର ପ୍ରଭୋ ! ଦୃଷ୍ଟି ମୋର ଆହରଣ ପାରେ ନାହିଁ କରି
ତୁମର ଦୃଷ୍ଟିର ସେଇ ରତ୍ନରାଜି ମହାର୍ଘ ସଂପଦ,
ତେଣୁ ତୁମ ପାଖେ ଯାଇ ମଧ୍ୟ ଚିନ୍ତାରେ ଦରିଦ୍ର

ଏବଂ ଭାବେ ମୁଁ ଦରିଦ୍ର,
କ୍ଳାନ୍ତି ଆଉ ଅବସାଦ ଅହରହ ମୋତେ ଘେରିରହେ ।
ତା'ବୋଲି କି ତୁମ ପାଖେ ଯିବାମୋର ବନ୍ଦ ହେବ କେବେ,
ମନ ତଳେ ଯେତେ ଗ୍ଳାନି ଥାଉ,
ତୁମର ନିରବ ବକ୍ତବ୍ୟ ପଛେ ବୁଝି ନାହିଁ ପାରେ,
ତଥାପି ମୁଁ ଯିବି ତୁମ ପାଖେ,
ଆବେଗେ ନ ଆଲୋଡ଼ିତ ହେଉ ପଛେ ମନ ତଳ,
ତୁମକୁ ମୁଁ ରହିବି ଅନାଇ,
ଅପଲକେ ରହିବି ଅନାଇ ।

ତୁମକୁ ମୁଁ ଭଲପାଏ, ସତରେ ମୁଁ ଭଲପାଏ,
ମନ ସିନା ପାରୁ ନାହିଁ ତୁମ ସଙ୍ଗେ ଯୋଖି
ମାତ୍ର ମୁଁ ନୟାନ୍ତ ହେବି ଯେବେ,
ନୀରବେ ପାରିବ କେବେ ରହି ତୁମେ ଦୂରେ ?
ଆଖିରେ ତୁମର, ମୋ ପାଇଁକି ଆସିବନି ଲୁହ ?

ଅସଂପୂର୍ଣ୍ଣ ଭୁଜ ତବ, ଅଥଚ ମୁଁ ଲୋଡ଼େ ପ୍ରଭୋ !
ତୁମଠାରୁ ପୂର୍ଣ୍ଣ ଆଲିଙ୍ଗନ,
ତୁମର ଚରଣ ନାହିଁ, ମାତ୍ର ମୁଁ ତୁମରି ପଦେ
ମଥା ରଖିବାକୁ ଚାହେଁ ସମଗ୍ର ଜୀବନ ।

(୭)

ଅନେକ ସମୟରେ ଭାବେ
ଦିନ କ'ଣ ଏମିତି ସରିଯିବ,
ଅଥଚ ତୁମ ସଙ୍ଗେ ସାକ୍ଷାତ ହେବନି ।

ଏମିତି ପଢୁଥିବି ଗୀତା, ଭାଗବତ,
ଏମିତି ଯାଉଥିବି ନିତି ମନ୍ଦିରକୁ,
ସାଧୁସଙ୍ଗ କରୁଥିବି, ଶୁଣିଥିବି ପ୍ରବଚନ,
ଏ ଜନ୍ମରେ କିନ୍ତୁ ତମ ଦେଖା ମିଳିବନି ଆଉ ?

ବଳରାମ ଦାସ ପାଇଁ, ତୁମ ରଥ ଅଟକି ତ ଥିଲା,
ଶ୍ରୀକର ବଢ଼ାଇ ଦାସିଆ ବାଉରି ହାତୁ
ଶ୍ରୀଫଳ ତ ତୋଳି ନେଇଥିଲ,
ସୁବର୍ଣ୍ଣ ଥାଳିରେ ନିଜର ପ୍ରସାଦ
ପରଶି ତ ଦେଇଥିଲ ବଂଧୁ ମହାନ୍ତିକୁ,
ସେମିତି ଭାଗ୍ୟ କି ଥରେ ହେବନି ମୋହର ?

କ'ଣ କଲେ, କେମିତି ଡ଼ାକିଲେ ପ୍ରଭୋ ଶୁଣ ତୁମେ ?
କେତେ ବେଶୀ ଐକାନ୍ତିକତା ଥିଲେ ତୁମେ ଉଭାହୁଅ ଆସି,
ସେଇ ସୂତ୍ର ମୋତେ ଜଣା ନାହିଁ,
ତେଣୁ ତୁମ କୃପା ଭିକ୍ଷା କରେ ପ୍ରଭୋ !
ଆଡ଼ ଆଖିରେ କି ମୋତେ ଚାହିଁବନି ଥରେ ?
ମାତ୍ର ଥରଟିଏ,
ନିଜେ ଆସି ସାକ୍ଷାତ ନ ଦେଲେ
ତୁମକୁ ମୁଁ ଖୋଜି ପାରିବାରେ କେବେ ସକ୍ଷମ କି ହେବି ?

(୮)

ତୁମ ସମ୍ମୁଖରେ,
ହାତ ଯୋଡ଼ି ଠିଆ ହୋଇଥିବା ବେଳେ,
ହେ ଜଗନ୍ନାଥ ସଂସାରର କେତେ କଥା ନ ମନେପଡ଼େ,
ଅଥଚ ସଂସାର ଜଂଜାଳରେ ଥିବା ବେଳେ
କେତେ ନିବିଡ଼ ଭାବେ ନ ସ୍ମରୁଥାଏ ତୁମକୁ
ଓ ଉଦ୍‌ଗ୍ରୀବ ହୋଇ ରହିଥାଏ ତୁମ ସମୀପେ ଯିବାକୁ ।

ତୁମ ନିକଟକୁ ଆସିବା ସମୟରେ ଭାବୁଥାଏ
ତମ ଭିତରେ ଦେଖିବି ଶ୍ୟାମଙ୍କୁ ଓ
ତାଙ୍କର ବିଭିନ୍ନ ଲୀଳାକୁ,
ଯଥା-: ଗୋଧନ ସେ ଚରାଉଛନ୍ତି ମୁରଲୀ ବଜାଇ,
ଶ୍ରୀମତୀ ସହ ତାଙ୍କର ଯୁଗଳମୂର୍ତ୍ତିକୁ
ଘେରି ରହିଛନ୍ତି ଗୋପିକାଗଣ,

ବୃନ୍ଦାବନର ନିଭୃତ କୁଂଜରେ,
ଅପଲକ ଆଖି ସେମାନଙ୍କ ।

କୁରୁକ୍ଷେତ୍ରରେ ରଥପରେ
ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ଗୀତା ଶୁଣାଉଛନ୍ତି ସେ,
ଗିରି ଗୋବର୍ଦ୍ଧନ ଟେକି ଧରିଛନ୍ତି
ବାମେତରର କନିଷ୍ଠାରେ ।

ଲବଣି ଚୋରି କରି ଖାଉ ଖାଉ
ଧରାପଡ଼ି ଯାଇଛନ୍ତି ମା ଯଶୋଦାଙ୍କ ହାତରେ,
ଭୟରେ କି କାକୁସ୍ଥ ରୂପ ତାଙ୍କର !
ରଥରେ ବସାଇ ଅକ୍ରୁର ନେଇ ଯାଉଛନ୍ତି
ତାଙ୍କୁ ଓ ବଳରାମଙ୍କୁ ଗୋପ ଦାଣ୍ଡରେ,
ରଥ ଆଗୁଳି ଗୋପୀମାନଙ୍କର
ସେ କି ବିକଳ କ୍ରନ୍ଦନ,
ମାତ୍ର ଏ ସବୁଲୀଳା କ'ଣ ଦେଖେ ମୁଁ ?

ଅଥଚ ତୁମ ପାଖକୁ ଆସିବା ମୋର ଛଳନା ନୁହେଁ,
ତୁମକୁ ମୋର ଭଲପାଇବା ଆଦୌ ମିଛ ନୁହେଁ ପ୍ରଭୋ !
ସତ କହୁଛି ଏତେଟିକେ ଅବସରରେ ବି
ତୁମେ ଖୁବ୍ ମନେପଡ଼,
କିନ୍ତୁ ମୋର ଚଞ୍ଚଳ ମନ, ତୁମ ସମ୍ମୁଖରେ
ଅପ୍ରସ୍ତୁତ କରୁଛି ମୋତେ,
ତେଣୁ ନତମୁଖୀ ହୋଇ ରହିଚି ।

ମାତ୍ର ତୁମକୁ ଛାଡ଼ି ଦେବି କେବେ ଭାବିଚ ?
ମନ ସଙ୍ଗେ ଯୁଝୁଥିବି, ହାରୁଥିବି,
ଜଡ଼ାଇ ଧରିଥିବି କିନ୍ତୁ ତୁମକୁ,
ରିପୁ ଓ ଇନ୍ଦ୍ରିୟମାନେ ଦିନ ରାତି
କେତେ ବିକଳ ନ କରୁଛନ୍ତି ମୋତେ,

କାହିଁ ମୋ ଚିତ୍ତକୁ ତୁମଠୁ
ଦୂରେଇ ଦେଇ ପାରୁ ନାହାନ୍ତି ତ ।

(୯)
ସ୍ୱାମୀ ମୋର ଚାକିରିରୁ ଅବସରନେବା ପରେ
ମୁଁ ମୋର ଜନ୍ମସ୍ଥାନ ପୁରୀକୁ ଫେରିଆସିଛି,
ଏଣିକି ଏଠାରେ ସ୍ଥାୟୀ ଭାବେ ଦର୍ଶନ କରିବି ବୋଲି,
ଏବଂ ନିତି ତୁମକୁ ଦର୍ଶନ କରିବାର
ଅଭିଳାଷ ପୂର୍ଣ୍ଣ ହୋଇଚି,
ମାତ୍ର ନିତ୍ୟ ଦର୍ଶନରେ ମୁଁ ପାଇଛି କ'ଣ ?
ପୂର୍ବାପେକ୍ଷା ଚିନ୍ତାର ଅଗ୍ରଗତି
କିଛି ହୋଇଛି କି ମୋର ?
ଯଦିବା ହୋଇଚି, ତୁମ ଦର୍ଶନରେ ମୋର ବିହ୍ୱଳତା କାହିଁ ?
ମୋର ଆବେଗ ତ ସଂପ୍ରସାରିତ ହେଉ ନାହିଁ ।

ସତରେ ମୁଁ ହତାଶ ହୋଇ ପଡୁଛି ପ୍ରଭୋ,
ମନେହୁଏ ତୁମ ସଙ୍ଗେ ଛଳନା କରୁଛି,
ତୁମ ଲାଗି ଏତେ ଅନୁରାଗ ଅଛି ଯଦି
ତାହା ମୋର ଅଶ୍ରୁରେ ଓ ପୁଲକରେ
ବ୍ୟକ୍ତ ହେଉନି ତ,
ମୋର ଏଇ ନିଃସହାୟତା ପ୍ରତି
ସହାନୁଭୂତିଶୀଳ ହେବନି ପ୍ରଭୋ !

ରଘୁ ଅରକ୍ଷିତ,
ବଳରାମ ଦାସ,
ଦାସିଆ ବାଉରି,
ମନର କେଉଁ ଉଚ୍ଚ ପର୍ଯ୍ୟାୟରେ ପହଞ୍ଚି
ତୁମର କୃପା ଲାଭ କରିଥିଲେ ?
ମନର ସେ କେଉଁ ଅବସ୍ଥା,
କେଉଁ ଅବସ୍ଥା ପ୍ରଭୋ !

ହଠାତ୍ ମୋର ମନେହେଲା,
ମୋ ପ୍ରଶ୍ନର ଉତ୍ତର ଦେଇଛ ତମେ,
"ସେମାନଙ୍କ ସଙ୍ଗେ ତୁଳନା କରି
ତୁ ନିଜକୁ ନ୍ୟୂନ କରୁଛୁ କାହିଁକି ?
ଆତ୍ମସମର୍ପଣର ସେଇ ତୁରୀୟ ଅବସ୍ଥା
ଦିନେ ତୁ ବି ଲଭିବୁ,
ସେତେବେଳେ ମୁଁ ବସିଥିବି ତୋ ସାମ୍ନାରେ
ଆଉ ତୁ ଅନୁଭବ କରୁଥିବୁ ଅଭିନ୍ନ ଆମେ ଦୁହେଁ ।"

(୧୦)

ଶ୍ରୀକ୍ଷେତ୍ରରେ ଥାଇବି ସଂସାର ଜଂଜାଳ ଭିତରେ
ଲଗାଏତ କିଛି ଦିନ ତୁମ ପାଖକୁ ଯାଇ ନ ପାରିଲେ
ତମେ କାହାରି ନା କାହାରି ହାତରେ
ଖବର ପଠାଅ ମୋତେ ଯିବାକୁ-
ତାକୁ କହିବ ଟିକେ ଆସିବ
କେତେଦିନ ହେଲା ତାକୁ ଦେଖିନି ।

ଶୁଣିଦେଇ ଲାଜରା ହୋଇଯାଏ ମୁଁ,
ବଡ଼ ସଙ୍କୁଚିତ ଭାବେ ତମ ପାଖେ ଯାଇ
ଯେବେ ପହଞ୍ଚେ ତମେ ହସିପକାଇ କହ,
"କେତେଦିନ ହେଲା ତୋତେ ନ ଦେଖି
ଭାରି ଖରାପ ଲାଗୁଥିଲା, ଦେଖିଦେଲି,
କେତେ ଖୁସି ଲାଗିଲା ସତେ ।"

ତମର ଏ କଥାରେ ମୁଁ କାନ୍ଦି ପକାଏ,
ତମେ ମୋ ଆଖିରୁ ଲୁହ ପୋଛିଦେଇ କହ,
"ସତରେ ମୁଁ କ'ଣ ତୋର
ଅସୁବିଧାଟା ବୁଝୁନି, ହେଲେ
ମନ ବୁଝିଲାନି ବୋଲି ଖବର ଦେଇଥିଲି ତ ।"

ତମକୁ ଅନାଇ ଦେଇ ଚମକି ପଡ଼ିଲି,
ମୁଁ କାନ୍ଦିବି କ'ଣ ?
ଲୁହରେ ବି' ଆଖି ତୁମର ଛଳଛଳ ହେଉଚି ।

(୧୧)

ବଳ ଥାଇ ଭଦ୍ର, ପ୍ରଜ୍ଞା ଥାଇ ଭଦ୍ର, ତେବେ ଯାଇ
ଜଗନ୍ନାଥ ପ୍ରାପ୍ତି,
ବଳଭଦ୍ର, ସୁଭଦ୍ରାଙ୍କ ଥାପନାଟା "ଜଗନ୍ନାଥ" ପାଖେ
କେତେ ଯୁକ୍ତିଯୁକ୍ତ,
ଏ ସବୁ ତତ୍ତ୍ୱର କଥା, ଉପଲବ୍ଧି ବିନା ଜଗନ୍ନାଥ
ବୁଝିହୁଏ ନାହିଁ,
ଅଦ୍ୱୈତ ତତ୍ତ୍ୱକୁ ଏତେ ସ୍ପଷ୍ଟ ଭାବେ କିଏ ଆଉ ବୁଝାଇଛି କାହିଁ ?

ଏହାକୁ ବୁଝିବା ପରେ ଆସେ ଯେଉଁ ଭାବ ବିହ୍ୱଳତା
ସ୍ଥାୟୀ ହୁଏ ତାହା,
ଥିଲା ଯାହା ଚୈତନ୍ୟଙ୍କର, ଜଗନ୍ନାଥ ସ୍ତୋତ୍ର ଗାଇ
ଶଙ୍କର ବି ବିଗଳିତ ହେଲେ,
ଆଉ ଯେଉଁ ଯେଉଁ ମାନେ ଆସିଥିଲେ ସେମାନେ ସମସ୍ତେ
ଜଗନ୍ନାଥ ସାଗରରେ ବୁଡ଼ ଦେବା ପରେ -
ସେମାନଙ୍କ ରୂପାନ୍ତର ହେଲା ।

ଶ୍ରୀମୁଖକୁ ଚାହିଁ ଚାହିଁ ମୁଁ ଭାବୁଛି ସେଇ ସବୁ କଥା,
ଜଗନ୍ନାଥ ତତ୍ତ୍ୱ ମୁହିଁ ବୁଝିଅଛି ଜ୍ଞାନ ମଧ୍ୟେ ଯେଣୁ,
ଭାବ ମଧ୍ୟେ ନୁହେଁ, ମୋ ଭିତରେ ତେଣୁ ବିହ୍ୱଳତା ନାହିଁ,
ଗରୁଡ଼ସ୍ତମ୍ଭର ପଛେ, ମନ୍ଦିର ଗାତ୍ରରେ ଶ୍ରୀଚୈତନ୍ୟ ଟିପଚିହ୍ନ ପରେ
ଅଙ୍ଗୁଳିର ସ୍ପର୍ଶ ମୋର ଦିଏ,
ଗରୁଡ଼ସ୍ତମ୍ଭର ପାଖେ ସେ ଯେମିତି ଚାହୁଁଥିଲେ
ଜଗନ୍ନାଥେ, ସେମିତି ଅନାଏ,
ତଥାପି ଶୁଷ୍କ ମୋ ଆଖି, ଚକାନୟନର ଏତେ ଆକର୍ଷଣ ସତ୍ତ୍ୱେ
ଏତେଟିକେ ତନ୍ମୟତା ନାହିଁ ମୋର, ଅଭ୍ୟାସବଶତଃ

ମୁଣ୍ଡିଆ ମାରିବା ଖାଲି, ଅନ୍ୟମାନେ ମାରନ୍ତି ଯେପରି ।
ଜଗନ୍ନାଥ ମଧ୍ୟେ କୃଷ୍ଣଙ୍କୁ କି ଦେଖେ ? ଦେଖେ ମୁଁ କି
ବଂଶୀ ଧରି ହୋଇଛନ୍ତି ଠିଆ,
'ଜଗନ୍ନାଥ' ଅପଲକ ନୟନରେ ଚାହିଁ ମୋତେ
ମୃଦୁ ମୃଦୁ ହସୁଛନ୍ତି, ସେ ହସରେ ମନେହୁଏ
ମୋ ପାଇଁକି କୃପା କିଛି ଅଛି ।
ଦେଉଳେ ଦର୍ଶନ ଲାଗି ପିଲାଦିନୁ ଆସି ଆସି
ମୁଣ୍ଡବାଳ ପାଚିଗଲା ତଥାପି ଆସୁଛି,
ଆସୁଥିବି, ଏହି ଦେହ ସ୍ୱର୍ଗଦ୍ୱାରେ ଚିତାପରେ ଶୋଇବା ପର୍ଯ୍ୟନ୍ତ ।

ଆସିବା ମୋ ଅବ୍ୟାହତ ରଖିଥିବି, କରୁଣା ସେ
କରିବେନି ମୋତେ ?
ଜ୍ଞାନ, ବୁଦ୍ଧି, ଅହଙ୍କାର, ପ୍ରତିଷ୍ଠାରୁ ମୋହ ମୋର
ବିପର୍ଯ୍ୟସ୍ତ କରି,
ମୋ ଆଖିରେ ଦେବେ ନାହିଁ ଲୁହ ଟୋପେ,
ସେଇ ବିନ୍ଦୁ ହେବନିକି କ୍ରମଶଃ ପ୍ରବାହ ?

(୧୨)

ସଂସାରର ଅନେକ ସମସ୍ୟାରେ ବିବ୍ରତ ହୋଇ
ମୁଁ ତମ ପାଖେ ଧାଇଁ ଯାଇ ଥାଏ ଅଳି କରିବାକୁ
ସମାଧାନର ପଥ ଦେବା ପାଇଁ,
ମାତ୍ର ତୁମକୁ ଚାହିଁ ଦେଇ କିଛି କହି ପାରେ ନାହିଁ ।

କ'ଣ ଦେଖେ କେଜାଣି ତମ ଦି'ଆଖିରେ
ନିର୍ବାକ ହୋଇଯାଏ,
ତୁମ ପାଖରୁ ଲେଉଟିବା ବେଳେ
ମୋ ପିଠିରେ ହାତ ରଖି କୁହ
"ନିଜର ଇଛାକୁ ମୋ ଇଛାରେ ସାମିଲ୍ କରି
ମୋ ଲୀଳାକୁ ବୁଝିବାକୁ ଚେଷ୍ଟାକର ।"
ତା'ପରେ ହଠାତ୍ ମୋର ମନେହୁଏ ସତେ ତ

ସମସ୍ୟା ବୋଲିତ କିଛି ନାହିଁ,
ସମାଧାନର ପ୍ରଶ୍ନ ତେଣୁ କାହିଁ ?

(୧୩)

ହେ ଜଗନ୍ନାଥ !
ମୋର ତମ ଉପରେ ଟିକେ ଟିକେ କଥାରେ ଅଭିମାନ,
ଅଥଚ ତମର ତ ଅଭିମାନ ନାହିଁ ମୋ ଉପରେ,
ମୁଁ କେତେ ରୁଷେ, ଭାବେ ଯିବିନି ଆଉ ତମ ପାଖକୁ,
ତଥାପି ଯାଏ, ଆଉ ତମରି ବି' ଆଖିକୁ ଅନାଇ ଦେଲେ
କୁଆଡ଼େ ଭାସିଯାଏ ସବୁ ଅଭିମାନ ମୋର,
ମୁଁ କାନ୍ଦି ପକାଏ ।

ବାଇଶି ପାହାଚରେ ତମ ପାଖରୁ ଫେରୁଥିବା ବେଳେ
ମନେ ମନେ ଭାବୁଥାଏ, ଏତେ ସରଳ ଏତେ ଅକପଟ ଯେ,
ତାଙ୍କ ଉପରେ ଏମିତି ଅଭିମାନ କରିବା ମୋର ଠିକ୍ ହେଉନି ।
ଯେମିତି ଆସିଯାଏ ମୋ ମନକୁ ଏଇ କଥା,
ମୋ ପଛେ ପଛେ ଲୁଚି ଲୁଚି ଆସୁଥାଅ ତମେ
ମୋ ପିଠିରେ ହଠାତ୍ ହାତ ରଖିଦେଇ
ସଜଳ କଣ୍ଠରେ କହି ପକାଅ,
"ତୁ ଅଭିମାନ ଯଦି ନ କରୁ
ତେବେ ମୋ ଲାଗି ସୁଖ ଆଉ ରହିଲା କ'ଣ ?
ତୁ ରୁଷିଲେ କି ସୁନ୍ଦର ନ ଦିଶୁ ଏତେ ।"

ମୁଁ ଚମକି ପଡ଼େ,
ସବୁ ଭାବନା ମୋର ଓଲଟପାଲଟ ହୋଇଯାଏ,
ପଲକ ମଧ୍ୟରେ,
ବୁଲିପଡ଼ି ମୁଁ ଅନାଇଦେଇ ଦେଖେ,
ଫେରିପଡ଼ି ହସିହସି ଦୌଡ଼ିଦୌଡ଼ି
ପଳାଇ ଯାଉଛ ତମେ ।

( ୧୪ )

ଆଜି ସ୍ନାନମଣ୍ଡପରୁ ରାତିରେ ଫେରିବା ପରେ,
କାଲିଠୁ ଦର୍ଶନ ତ ତୁମର ଆଉ ମିଳିବନି ପ୍ରଭୋ,
ଦୀର୍ଘ ତେରଦିନ ଧରି,
ଅଣସରରେ ତୁମେ ଆତ୍ମଗୋପନ କରିବ ।
ତମର ଏଇ ଅଦର୍ଶନର ବିରହ ଭୁଲିବାକୁ
'ଚୈତନ୍ୟଦେବ' ଯେ ଛୁଟି ଯାଉଥିଲେ
'ଅଲାରନାଥ'ଙ୍କ ପାଖକୁ, ଅଭେଦ ଦର୍ଶନ,
ମାତ୍ର ସେ ସୌଭାଗ୍ୟ କାହିଁ ମୋର ?
କିଛି ଉପାୟ ଅଛି କି
ସଂସାର ଜଂଜାଳରୁ ମୁକ୍ତି ପାଇବାର ?
କେଉଁଠାକୁ ବା ଯିବି ତୁମର ଅଦର୍ଶନର ଦୁଃଖ
ଭୁଲିବା ଲାଗି ?

ତେଣୁ ନିରୁପାୟ ମୁଁ,
ନିତି 'ଜୟବିଜୟ ଦ୍ୱାର' ପାଖେ
କରଯୋଡ଼ି ଠିଆ ହୋଇ,
ସଜଳ ଆଖିରେ 'ଅନବସର ପିଢ଼ି'କୁ ଅନାଇ ରହିଥିବି,
ଯେଉଁଠି ଅଦୃଶ୍ୟ ହୋଇ ବସି ରହିଥିବ ତୁମେ,
ପ୍ରତ୍ୟହ ପ୍ରତୀକ୍ଷାରେ ଗୋଟିଏ ଗୋଟିଏ ଦିନ
ହ୍ରାସ ପାଉଥିବ
ଓ ନିକଟତର ହେଉଥିବ କ୍ରମେ
ତୁମ ସାକ୍ଷାତର ମୁହୂର୍ତ୍ତ,
ତୁମ ବିଚ୍ଛେଦର ଦୁଃଖ ଭୁଲିବା ଲାଗି
ସେଇ ଆବେଗ ହିଁ ତ ମୋର
ଏକମାତ୍ର ସଂବଳ ପ୍ରଭୋ !

( ୧୫ )

ରଥରୁ ପହଣ୍ଡି ହୋଇ
ମନ୍ଦିରକୁ ଯିବାବେଳେ ପ୍ରଭୋ,
ଶୁଣି ପାରୁଛ କି ରଥର କ୍ରନ୍ଦନ ?

ଗୁଣ୍ଡିଚାଘରୁ ବିଦାୟ ନେଇ
ଘରକୁ ଲେଉଟିବା ବେଳେ
ଶୁଣି ପାରୁଥିଲ କି ଶୂନ୍ୟ ମନ୍ଦିରର ହାହାକାର ?
ଅକ୍ରୂର ତୁମକୁ ଗୋପରୁ ନେଇ ଆସିବା ବେଳେ
ନନ୍ଦ, ଯଶୋଦା ଏବଂ ଗୋପୀମାନଙ୍କ ଲୁହରେ,
ଏତେ ଟିକେ ତ ବିଚଳିତ ହୋଇ ନ ଥିଲ ।

ତମେ ସବୁ ଶୁଣି, ସବୁ ବୁଝିବି ଏତେ ଅନାସକ୍ତ,
ଏ ଉପଲବ୍ଧି ସତ୍ତ୍ୱେ,
ଅଖଣ୍ଡ ପ୍ରେମ ଓ ଆନୁଗତ୍ୟ
ଯେଉଁମାନଙ୍କର ତୁମ ଲାଗି,
କହିପାରିବ ତା' କାହିଁକି କାହିଁକି ?

(୧୬)

ତୁମକୁ ମୁଁ ତନ୍ମୟ ହୋଇ ଦର୍ଶନ କରୁଥିବା ବେଳେ
ସାଂସାରିକ ଅନେକ ଦୁଃଶ୍ଚିନ୍ତା
ମନ ଭିତରକୁ ପଶିଆସି
ମୋ ଭାବର ଏକାଗ୍ରତା ନଷ୍ଟ କରିଦିଏ,
ସେଥିଲାଗି ମନେ ମନେ କ'ଣ
କମ୍ ଲଜ୍ଜିତ ହୁଏ ମୁଁ ।

ତୁମେ ମୋର ମନର ଆଲୋଡ଼ନ
ବୁଝିପାରି ହସିପକାଇ କହ,
"ସଂସାର ଜଂଜାଳରେ ବୁଡ଼ି ରହିବି
ତୁ ତ ମୋତେ ସ୍ମରିଥାଉ .... ।"

ତୁମର ଏ ଯୁକ୍ତିର
କି ପ୍ରତିଯୁକ୍ତି ବା ଅଛି ମୋର,
ମୋ ଆଖିର କେତେ ବିନ୍ଦୁ
ଅଶ୍ରୁ ବ୍ୟତୀତ ।

(୧୭)

ଜଗନ୍ନାଥ !
ମୁଁ ଏତେ ବ୍ୟସ୍ତ ଲୋକ ଯେ,
ଯାଉଛି ସିଂହଦ୍ୱାର ପାଖଦେଇ,
ଅଥଚ ବେଳ ନାହିଁ ବୋଲି
ପଶିଯାଇ ପାରୁନି ଟିକେ ମନ୍ଦିର ଭିତରକୁ
ତୁମକୁ ଦେଖିବା ଲାଗି,
କାମ ଆଳରେ ପତିତପାବନଙ୍କୁ
କେବଳ ଯୋଡ଼ହସ୍ତରେ ଅନାଇ ଦେଇ ... ।

ତୁମ ଲାଗି ମୋର ସବୁ ବ୍ୟାକୁଳତା କ'ଣ ଛଳନା କେବଳ ?
ହଠାତ୍ ମୋର କାନ ପାଖେ
ତୁମର କଣ୍ଠସ୍ୱର ଶୁଭିଯାଏ "ମୋତେ ନୁହେଁ ।"

(୧୮)

ତୁମର ଦର୍ଶନ ସାରି ଲେଉଟିବା ବେଳେ
'ଆନନ୍ଦ ବଜାର' ଦେଇ ଆସିବାର ଲୋଭ
କେବେ ସମ୍ବରଣ କରି ପାରେନି ।

ମହାପ୍ରସାଦର ସୁଗନ୍ଧର ପୁଲକରେ ବିଭୋର ମୁଁ
ହଠାତ୍ ଦେଖେ ତୁମକୁ,
ରନ୍ନବେଦୀରେ ନୀରବରେ ହସୁଛ ।

(୧୯)

ଯେଉଁ ଦିନ ତୁମପାଖକୁ ଯାଇ
ଦେଖେ ଦ୍ୱାର ପଡ଼ିଛି,
ଦର୍ଶନ ଡେରି ହେବ,
ମୋତେ କାହିଁକି ଲାଗେ
ମୋର କୌଣସି ଭୁଲ ଲାଗି
ତୁମେ ରାଗିଛ ମୋ ଉପରେ,
ରୁଷିଛ ।

(୨୦)

ତୁମ ଦର୍ଶନ ଲାଗି, ଆସୁଛନ୍ତି ଯେଉଁମାନେ
ସମସ୍ତଙ୍କର ତୁମ ପ୍ରତି କ'ଣ
ନିଷ୍କାମ ଅନୁରାଗ ଅଛିକି ?
କେତେ କୌତୂହଳ, କେତେ ଅଳି,
ସ୍ୱାର୍ଥଗତ କେତେ ପ୍ରାର୍ଥନା ।
ଏମିତି ଅନେକ କିସମର ସେମାନେ
ତୁମ ପାଖେ ଆସି ଉପସ୍ଥିତ,
ତୁମେ ସ୍ୱାଗତ କିନ୍ତୁ କରିଥାଅ ସଭିଙ୍କି
ଯେଣୁ ତୁମେ ଜାଣ ଦିନେ ନା ଦିନେ
ପୂର୍ଣ୍ଣ ବିକଶିତ ହେବେ ସେମାନେ ।

(୨୧)

ମୁଁ କେତେ ଜ୍ଞାନ ଓ ତତ୍ତ୍ୱର କଥା ନ ଜାଣେ,
ମାତ୍ର ତୁମ ପାଖକୁ ଗଲେ,
ସେ ସବୁ କ'ଣ କିଛି ମନେ ପଡ଼େ,
ତମର ଦି' ଆଖିକି ଅନାଇ ଦେଇ
ମୁଁ ଆତ୍ମବିସ୍ମୃତ ହୁଏ ।

(୨୨)

ଦିନେ ଦିନେ ମୁଁ ତୁମର ଦର୍ଶନ ସାରି,
ଫେରିବା ବେଳକୁ ତୁମେ ପଛରୁ ଡ଼ାକିଦିଅ,
"ଆଉ ଟିକିଏ ରହ ।"

ତୁମ ଦର୍ଶନରେ ମନବୋଧ ନ ହୋଇ ଥିଲେ
ମୁଁ ବି କେବେ କେବେ
ଫେରି ଯାଇ ଥାଏ ଅଧାବାଟରୁ
ତୁମ ପାଖକୁ ପୁଣି,

ଦୁହିଁଙ୍କ ମଧ୍ୟରେ ଏଇ ଅଭାବବୋଧ
ଦୁହିଁଙ୍କ ଭିତରେ ଥିବା ସାମଞ୍ଜସ୍ୟର ପ୍ରତୀକ ।

(୨୩)

ମୁଁ ତୁମ ପାଖକୁ ଗଲେ ଭଜନ ଗାଏନି
କି, ତାଳିମାରି ନାଚିକୁଦି
କୀର୍ତ୍ତନ ବି କରେନି,
ନୀରବରେ କେବଳ ଅନାଇ ରହିଥାଏ ତୁମକୁ ।
ବେଶ୍ କିଛି ସମୟ ପରେ,
ଯେତେବେଳେ ତୁମ ପାଖରୁ ଫେରେ
ଅନୁଭବ କରେ,
ତୁମେ ମୋ ସଙ୍ଗେ ସଙ୍ଗେ ଆସୁଛ,
ଓ ଚୁପ୍‌ଚୁପ୍ କହୁଛ, "କାଲି ଆସିବୁ,
ମୁଁ ତୋତେ ଅପେକ୍ଷା କରିଥିବି ।"

(୨୪)

ନିତି ଦେଖା ଆମ ଦୁହିଁଙ୍କର,
ଅଥଚ ମୋର ମନେହୁଏ ଆମର ପ୍ରତିଟି ସାକ୍ଷାତ
ଯେପରି ପ୍ରଥମ ସାକ୍ଷାତ ମୋ ପାଇଁ ।

ପ୍ରତ୍ୟହ କେତେ କଥା ନ ହଉ ଆମେ,
ମାତ୍ର ମୋର ମନବୋଧ ହୁଏ ନାହିଁ କାହିଁକି ?
ଲେଉଟିବା ବେଳେ ତମ ପାଖରୁ ମନେହୁଏ,
ଅନେକ କଥା ବାକି ରହିଗଲା,
କହି ହେଲାନି ।

ନୀଳାଚଳ 'ବୃନ୍ଦାବନ' ତୁମେ ବେଣୁଧାରୀ ଶ୍ୟାମ,
ମହୋଦଧି 'ସୁନୀଳ ଯମୁନା',
ଏ ଭାବରେ ବିଭୋର ଗୌରାଙ୍ଗ
'ଗମ୍ଭୀରା ଲୀଳା'ରେ
ତୁମ ସହ ନିତ୍ୟ ସଂଯୁକ୍ତ ହୋଇ
ରହୁଥିଲେ ତ,
ମାତ୍ର ସେ ସୌଭାଗ୍ୟ ମୋର କାହିଁ ?

ତୁମର ଦର୍ଶନ ସାରି ଘରକୁ ଫେରିବା ପରେ,
ସଂସାର ଜଞ୍ଜାଳ ଭିତରେ ବି
କମ୍ ତୁମେ ମନେପଡ଼,
ଏବଂ ନୀରବରେ ମୁଁ ଆଖି ପୋଛୁଥାଏ,
ଠିକ୍ ସେତେବେଳେ
ସାମ୍ନାରେ ଠିଆ ହୋଇ
ଚୁପ୍‌ଚୁପ୍ ହସୁଥାଅ ତୁମେ,
ଏଇ ଅଶ୍ରୁ ଓ ଏଇ ହସର
ସମନ୍ୱୟତ ରାସ,
ହେ ପ୍ରିୟତମ, ମୋତେ
ନିତ୍ୟରାସର ଅଧିକାରିଣୀ କର ।

(୨୫)

"ତୁମ ସହ ସେଦିନ ସାକ୍ଷାତ ସମୟରେ,
ତୁମେ ମୋ ଆଖିର କ୍ଳାନ୍ତି ଲକ୍ଷ୍ୟକରି
କହିଲ, "ତୋର ଯେ କୌଣସି
ଜାଗତିକ ଶୂନ୍ୟତା ମଧରେ ମୋତେ ରଖ,
ଦେଖିବୁ, ଅପୂର୍ଣ୍ଣତା ବୋଲି
ତୋର କିଛି ନାହିଁ ।"

(୨୬)

ମୁଁ ଯେବେ କୃଷ୍ଣଙ୍କୁ ସ୍ମରେ
ସଙ୍ଗେ ସଙ୍ଗେ ଦେଖେ ଜଗନ୍ନାଥ ହସୁଛନ୍ତି,
"ଶ୍ୟାମ ଓ ମୁଁ ଅଭିନ୍ନ"

ପରକ୍ଷଣରେ ଅନ୍ୟ ଏକ ଦୃଶ୍ୟ
ଗରୁଡ଼ସ୍ତମ୍ଭ ପଶ୍ଚାଦରେ ଶ୍ରୀଚୈତନ୍ୟ
ଅପଲକ ଆଖିରେ ଚାହିଁ ରହିଛନ୍ତି
ଚକାଡ଼ୋଳାଙ୍କୁ ଓ ନେତ୍ର ପିଚକାରିରୁ ତାଙ୍କର
ଅଶ୍ରୁଜଳ ଛିଟିକି ଆସି

ଆର୍ଦ୍ର କରୁଛି ଭକ୍ତମାନଙ୍କୁ
ଏବଂ
ସେମାନେ 'ହରିହରି ବୋଲ'ରେ
ଉଦ୍ଦଣ୍ଡ ନୃତ୍ୟ କରୁଛନ୍ତି,
ଜଗନ୍ନାଥ ହସି ପୁନଶ୍ଚ କହନ୍ତି,
"ସେ ଓ ମୁଁ ମଧ୍ୟ ଅଭିନ୍ନ ।"

"ତେବେ ଅଦ୍ୱୈତରେ ଏ ଅଶ୍ରୁ କାହିଁକି ?"
ମୋର କୌତୂହଳୀ ପ୍ରଶ୍ନରେ ହସି
ସେ ଉତ୍ତର ଦିଅନ୍ତି,
"ଦ୍ୱୈତାନନ୍ଦ ରସାସ୍ୱାଦନ ପାଇଁ,
ତେଣୁ ବ୍ରହ୍ମ ହୋଇବି ମୁଁ ନିତ୍ୟ ଲୀଳାମୟ ।"

(୨୭)

ମୁଁ ଯେବେ ତୁମକୁ ଦର୍ଶନ କରୁଥାଏ
ନାନାଦି ସାଂସାରିକ ଦୁଃଶ୍ଚିନ୍ତା
ଭରି ରହିଥାଏ ମୋ ମନରେ,
ଏକାଗ୍ରତା ଥାଏ କି ତୁମ ଲାଗି ?
ପୁନଶ୍ଚ ଅନେକ ଆର୍ତ୍ତିରୁ ମୋତେ ତ୍ରାଣ କରିବାକୁ
ତୁମ ପାଖେ ମୌନ ଅଳିବି
ଥାଏ ମୋ ମନତଳେ ।

ତେଣୁ ଅତି ସଙ୍କୋଚରେ, ଲଜ୍ଜାରେ
ନିଜକୁ ଦୋଷୀମଣି କରଯୋଡ଼ି
ଠିଆ ହୋଇଥାଏ ତୁମ ସାମ୍ନାରେ
ଏବଂ ମନେମନେ ଭାବୁଥାଏ,
ତୁମ ପାଇଁ ଶ୍ରୀଚୈତନ୍ୟଙ୍କର ଭାବବିହ୍ୱଳତା,
ବନ୍ଧୁ ମହାନ୍ତି, ଦାସିଆ ବାଉରି ଏବଂ
ସାଲବେଗଙ୍କର ଐକାନ୍ତିକତା ମୋର କାହିଁ ?
ତେଣୁ ନିତି ତୁମ ପାଖକୁ ମୋର ଏମିତି ଆସିବାଟା

ଛଳନା ନୁହେଁକି ?
ମନତଳର ଏଇ ପୁଞ୍ଜିଭୂତ ବ୍ୟଥା ନେଇ,
ତୁମର ଦର୍ଶନ ସାରି ସେଦିନ ଫେରି ଆସୁଛି,
ମୋତେ ଡ଼ାକିଦେଇ ପଛରୁ,
ଚମକି ପଡ଼ି ଫେରି ଅନାଇ ଦେଲି ତୁମକୁ
ମୁରୁକି ହସୁଛ,
କହିଲ, "ଭାବ ଜଗତରେ ଏ ତୁଳନାତ୍ମକ ବିଚାର କ'ଣ ମୁଁ କରେ ?
ମୋ ଲାଗି ତୋର କଣିକାଏ ଭଲପାଇବା
ସେମାନଙ୍କ ଘନୀଭୂତ ପ୍ରୀତିଠାରୁ କିଛି କମ୍ ନୁହେଁ ।

ରିପୁମାନଙ୍କ ଦ୍ୱାରା ତୁ କେତେ ଦୂର ଆକ୍ରାନ୍ତ,
ଇନ୍ଦ୍ରିୟମାନଙ୍କ ଦ୍ୱାରା ତୋ ମନ କେତେ ବେଶୀ ବିଚଳିତ,
ସେ ହିସାବ ମୁଁ କରେନା,

ସବୁ ଚିତ୍ତ ବିକୃତି ସତ୍ତ୍ୱେ
ପଲକଟିଏ ପାଇଁ ହେଉ ପଛେ
ତୁ ଯେ ମୋତେ ସ୍ମରୁ,
ସେ କ'ଣ କମ୍ ଆନନ୍ଦ ମୋ ପାଇଁ ?

ରଥ ଉପରେ ମୋ ଦର୍ଶନ ଲାଗି
ବଳରାମ ଦାସତ ପୁଣି ଛୁଟି ଆସିଥିଲା
ବେଶ୍ୟାଳୟରୁ,
ତା' ସ୍ମରଣ କଲେ ଏବେ ବି
ମୋ ଆଖିରେ ଲୁହ ଆସିଯାଏ ।
ତୁ ଏମିତି ନିତି ଆସୁଥା ମୋ ପାଖକୁ,
ତୋର ଚିତ୍ତଚାଞ୍ଚଲ୍ୟ, ତୋର ଦୋଷ ଦୁର୍ବଳତାରେ
ମୋର ଯାଏ ଆସେ କେତେ,
ତୁ ଯେ ମୋତେ ଭଲପାଉ
ସେଇ ତ ମୋର ସବୁ ।"

ଆହା କେତେବଡ଼ ଭରସାର କଥା ସତେ,
ଆବେଗରେ ମୁଁ କାନ୍ଦି ପକାଇବାରୁ
ମୋ ଆଖିରୁ ଲୁହ ପୋଛି ଦେଇ
ସ୍ନେହସିକ୍ତ କଣ୍ଠରେ କହିଲ,
"ଏଇ ଅବପଟ ଲୁହ ଟିକକ ହିଁ
ମୋର ପ୍ରୟୋଜନ ।"

(୨୮)

ପିଣ୍ଡରୁ ପ୍ରାଣ ମୋର ଚାଲିଯିବା ପରେ,
ମୋ ଶବ ଯେବେ
ଶ୍ରୀମନ୍ଦିର ସିଂହଦ୍ୱାର ସାମନା ରାସ୍ତା ଦେଇ ଯିବ
ସ୍ୱର୍ଗଦ୍ୱାର ଆଡ଼େ,
ମୋ ଜୀବହୀନ ଦେହର ଦି'ଆଖିରୁ
ଦି'ଧାର ଲୁହ ଗଡ଼ିପଡ଼ିବ,
"ହେ ଦୟିତ,
ଆଉ ତ ଆସି ତୁମକୁ ଦର୍ଶନ କରିବିନି ।"

(୧)
କିଛି କିଛି ସମୟ ଅନ୍ତରରେ
ତିନୋଟି ଦୁଃସଂବାଦ ପାଇଲେ ସୁପ୍ରୀତି ଦେବୀ ।

ପ୍ରଥମେ ଶୁଣିଲେ ତାଙ୍କ ବୃଦ୍ଧା ମାତା
ଶେଷ ଶଯ୍ୟାରେ, ତାଙ୍କୁ ଦେଖିବାକୁ ଚାହୁଁଛନ୍ତି,
ଶୁଣି କାନ୍ଦି ପକାଇଲେ ସେ ।

ଠିକ୍ ପରେ ପରେ ଅନ୍ୟ ଦୁଃସଂବାଦଟି ପହଞ୍ଚି
ସ୍ତବ୍ଧ କରି ଦେଇଛି ତାଙ୍କୁ -
ବଡ଼ପୁଅ ପ୍ରବୀର ଯେ ବୁର୍ଲା ମେଡ଼ିକାଲର ଛାତ୍ର,
ବାଥରୁମ୍‌ରେ ପଡ଼ିଯାଇ,
ବାମ ଗୋଡ଼ ଭାଙ୍ଗିଯାଇଛି ତା'ର ।

ମାଆ ଲାଗି ସୁପ୍ରୀତି ଦେବୀଙ୍କର
ମନର ଏତେ ଉଦ୍‌ବେଳନ
ହଠାତ୍ ଯେପରି ନିଶ୍ଚିହ୍ନ ହୋଇ ଯାଇଛି ଓ
ସେଇ ମନ ତଳେ ଏବେ ଖାଲି ପ୍ରବୀର ଓ ପ୍ରବୀର
'ଏ କ'ଣ ହେଲା ମୋ ଧନର, ହେ ଭଗବାନ !'

କିୟତ୍‌କ୍ଷଣ ଉତ୍ତାରେ
ତୃତୀୟ ଦୁଃସଂବାଦଟି, ଦାରୁଣ ବଜ୍ରପାତ -
ଟୁର୍‌ରେ ଯାଇଥିଲେ ସ୍ୱାମୀ ସୁବୋଧ ବାବୁ,
ମଟର ଆକ୍‌ସିଡ଼େଣ୍ଟରେ ଆହତ ହୋଇ
ସେ ଏବେ କଟକ ମେଡ଼ିକାଲରେ,
ଶୁଣିଦେଇ ଷ୍ଟାଚ୍ୟୁ ହୋଇ ଯାଇଛନ୍ତି
ସୁପ୍ରୀତି ଦେବୀ,
ପ୍ରବୀର କାହିଁ ଏବେ ମନତଳେ ଆଉ ?
ସମଗ୍ର ସତ୍ତାକୁ ତାଙ୍କର
ଆଚ୍ଛନ୍ନ କରିଦେଇଛନ୍ତି ସୁବୋଧ ବାବୁ ।

(୨)
ସୁଚେତା ଦେବୀ
କଲେଜର ଛାତ୍ରୀ ଥିବାବେଳେ
ତାଙ୍କ କଲେଜ ବଂଧୁ ସୁବ୍ରତ ସହ
ଘରୁ ପଳାଇ ଯାଇ
ରେଜେଷ୍ଟ୍ରି ବିବାହ କରିଥିଲେ,
ଯେଣୁ ଉଭୟ ପରିବାର
ଅନିଚ୍ଛୁକ ଥିଲେ ଏ ବିବାହ ଲାଗି ।

ଆଜି ବିବାହର କୋଡ଼ିଏ ବର୍ଷ ପରେ
ସେମାନଙ୍କ ଅତୀତ ସଂପର୍କରେ
ପିଲାମାନଙ୍କ ଗୋପନ ମନ୍ତବ୍ୟ ହଠାତ୍ ଶୁଣିଦେଇ
ସ୍ତବ୍ଧ ହୋଇ ଯାଇଛନ୍ତି ସେ ।

ବଡ଼ପୁଅ 'ସଂବିତ୍' କଲେଜର ଫୋର୍ଥ ଇୟରର
ଛାତ୍ର ଯେ, କହୁଛି "ବାପାମାଆଙ୍କ ଅତୀତ ରୋମାନ୍ସ
ସଂପର୍କରେ ମୋର ଜଣେ ଅଧେ ବଂଧୁ
ବେଳେବେଳେ ପରିହାସ ଛଳରେ ଯେଉଁ
ବକ୍ରୋକ୍ତି କରନ୍ତି, ଶୁଣି ମୁହଁ ଜଳିଯାଏ ।"

ସାନପୁଅ 'ସୁଜିତ୍' କଲେଜର ପ୍ରଥମ ବାର୍ଷିକୀ ଛାତ୍ର ଯେ
ପ୍ରତିବାଦ କରୁଛି, "ସେ ବୟସରେ ବାପାମାଆ
ପରସ୍ପର ପ୍ରତି କେତେ ବିଶ୍ୱସ୍ତ ନଥିଲେ,
କି ଗଭୀର ନଥିଲା ସେମାନଙ୍କର ଭଲ ପାଇବା ।"

ସାନ ଝିଅ ଇତି, ମାଟ୍ରିକ୍ କ୍ଲାସ୍‌ର ଛାତ୍ରୀ, ଯେ
ଏଯାଏ ଚୁପ୍ ଥିଲା, ଗମ୍ଭୀର କଣ୍ଠରେ କହିଲା,
"ବାପାମାଆଙ୍କ ସଂପର୍କରେ ଆମ୍ଭମାନଙ୍କ ମଧ୍ୟରେ
ଏପରି ଆଲୋଚନା ଯେ ଖୁବ୍ ଅନ୍ୟାୟ,
ଆମ୍ଭେମାନେ ଟିକେ ସଭ୍ୟ ହେବା ଉଚିତ୍ ।"

(୩)

ଫୁଟ୍‌ବଲ ପ୍ରତିଯୋଗିତା ପରେ
ଏବେ ସମସ୍ତ ଷ୍ଟାଡ଼ିୟମ୍ ନିଶ୍ଚୁପ୍,
ଧୀରେ ଧୀରେ ପରିବ୍ୟାପ୍ତ ହେଉଥିବା
ଅଂଧକାର ମଧ୍ୟରେ
ଆତ୍ମଗୋପନ କରୁଛି କ୍ରମଶଃ ।

ଜେତା ଓ ବିଜେତା ଉଭୟ ଦଳ କାହାନ୍ତି ଏବେ ?
କାହାନ୍ତି ବା ଉତ୍ତେଜନାରେ ଉଦ୍‌ବେଳିତ
ହେଉଥିବା ସେମାନଙ୍କ ସମର୍ଥକଗଣ ?
ଶୂନ୍ୟ କ୍ରୀଡ଼ା ପ୍ରାନ୍ତର
ତାରକାଗୁମ୍ଫିତ ଆକାଶକୁ ଚାହିଁ
ପଚାରୁଛି, "କ୍ରୀଡ଼ା ସମାରୋହରୁ
କି ସତ୍ୟ ଆବିଷ୍କାର କରିଛ ତମେ ?"

ଉତ୍ତର ଦେଉଛି ସ୍ଥିତପ୍ରଜ୍ଞ ଆକାଶ,
"କ୍ରୀଡ଼ାରୁ ତୃପ୍ତି ଆହରଣ ଲାଗି
ଆସିଥିଲେ ଯେଉଁମାନେ,
ଜୟ, ପରାଜୟ ଜନିତ ଉଚ୍ଛଣ୍ଡାରେ ଜର୍ଜରିତ ହୋଇ
ଫେରିଛନ୍ତି ସେମାନେ ଅଶାନ୍ତ ହୋଇ ।
ଉତ୍ତେଜନାର ଭିତ୍ତି ଉପରେ ପ୍ରତିଷ୍ଠିତ
ଆନନ୍ଦ ଓ ନିରାନନ୍ଦ
ଉଭୟେ ଉଦ୍‌ବେଗଭରା, ତେଣୁ ଦୁଃଖ ପିହିତ ।

(୪)

ହଲ୍ ମଧ୍ୟରେ ଭୀଷଣ ଗରମ,
ମଞ୍ଚ ଉପରେ ଉପବିଷ୍ଟ ଅତିଥିଗଣ ଘର୍ମାକ୍ତ,
ହଲ୍ ପ୍ରତିଧ୍ୱନିତ ହେଉଥିବାରୁ
ଅତିଥିମାନଙ୍କର ଭାଷଣ ବୋଧଗମ୍ୟ ନୁହେଁ,
ଅସହ୍ୟ ଉତ୍ତାପ ହେତୁ

ଶ୍ରୋତାଗଣ ବି ଅତିଷ୍ଠ, ଅସ୍ୱସ୍ତି, ତେଣୁ
ଅନ୍ୟମନସ୍କ ସେମାନେ,
ଅଥଚ ମଜାର ବ୍ୟାପାର
ପ୍ରତିଧ୍ୱନିତ ହେଉଥିବା ଭାଷଣମାନ
ବୁଝି ନ ହେଉଥିଲେ ବି
କରତାଳି ଅବ୍ୟାହତ ।
ଏ ସବୁ ନେଇ ସଭା ଚାଲିଛି, ଚାଲିବ
ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଅନୁଯାୟୀ ।

ଆଜିର ଜୀବନ ଏଇ ଅସ୍ୱସ୍ତିକର
ହଲ୍‌ର ପ୍ରତୀକ ନୁହେଁକି ?
ସଂପର୍କ ଓ ସଂବନ୍ଧ କେତେ ପ୍ରାଣହୀନ,
ନମସ୍କାର ଓ ପ୍ରତିନମସ୍କାର କେତେ ହାସ୍ୟାସ୍ପଦ,
ଗୋଟିଏ ଜୀବନ ଅନ୍ୟ ଜୀବନକୁ ନବୁଝି ବି
ମିଛ ସହାନୁଭୂତିରେ କେତେ ବିଗଳିତ
ମୁହୂର୍ତ୍ତକ ଆଗରୁ ଦେଖିଛ, କଥା କହିଛ,
ଅଥଚ ପର ମୁହୂର୍ତ୍ତରେ ଆଉ ମନେ ନାହିଁ ।
ରହସ୍ୟମୟ ଏ ଜୀବନ ତଥାପି ପ୍ରବହମାନ,
ଜୀବନର ପ୍ରକୃତ ଅର୍ଥ ନଥାଇ ବି ।

(୫)
ଏ ବୈଜ୍ଞାନିକ ଯୁଗରେ ଅବଲୀଳାକ୍ରମେ
ଆମ୍ଭେମାନେ ପରସ୍ପରର ନିକଟବର୍ତ୍ତୀ ହେଉଚେ ସତ,
ମାତ୍ର ଆମ୍ଭମାନଙ୍କ ମଧ୍ୟରେ ବ୍ୟବଧାନ
ବଢ଼ି ବଢ଼ି ଯାଉଛି ତା'ଠାରୁ ବେଶୀ
ଭାବାବେଗର ସଙ୍କୋଚନ ହେତୁ ।

(୬)
ଅଜ୍ଞାତସାରରେ କେତେକ ଭୁଲ୍ କରୁ,
କେତେକ ଭୁଲ୍ ବି କରୁ ଜ୍ଞାତସାରରେ,

ଉଭୟର ଦୁଃଖଦ ପରିଣତି କିନ୍ତୁ
ଅନ୍ୟେ ବହୁତେ ଭୋଗିବାକୁ ହିଁ ପଡ଼ିବ ।

(୭)
ସବୁ ବିଷୟରେ କୌତୂହଳ
ଶୁଭଙ୍କର ନୁହେଁ,
ତଦ୍ୱାରା ମନର ଶାନ୍ତି ବ୍ୟାହତ ହୋଇଥାଏ ।

(୮)
ପ୍ରଭୋ !
ମୁଁ ତମ ଗଳାରେ ମାଳା ଦେବାକୁ ଉଦ୍ୟତ ହେଲେ
ପଛକୁ ଯଦି ତୁମେ ଘୁଞ୍ଚିଯାଅ,
ମୁଁ ତେବେ ତାହା ନିଜ ଗଳାରେ
ପିନ୍ଧିନେଇ ରୁଦ୍ଧ ଅଭିମାନରେ କାନ୍ଦିବି ।
ପରମୁହୂର୍ତ୍ତରେ କିନ୍ତୁ ଅନୁଭବ କରିବି
ମାଳାଟିକୁ ମୋ ଗଳାରୁ ତମେ କାଢ଼ି ନେଇ
ନିଜ ଗଳାରେ ପିନ୍ଧି ମୃଦୁମୃଦୁ ହସୁଛ ।

(୯)
ପ୍ରିୟ !
ମୁଁ ନଈର ଏପାରିରେ ଥାଇ
ଗୀତ ଗାଇଲେ
ନଈର ସେ ପାଖୁଁ ତମେ ଉତ୍ତର ଦିଅ,
ସେ ଉତ୍ତର ହଠାତ୍ ବନ୍ଦ ହୋଇଗଲେ
ବ୍ୟାକୁଳ ମୁଁ ନଈର ସେ ପାଖେ
ଯାଇ ଦେଖେ ତୁମେ ନାହଁ,
କାନ୍ଦି କାନ୍ଦି ସେଠାରୁ ଫେରି
ହଠାତ୍ ଆବିଷ୍କାର କରେ
ନଈର ଏ ପାଖେ ମୋ ପ୍ରତୀକ୍ଷାରେ
ତମେ ବସି ରହିଚ ।

(୧୦)

ପ୍ରତି ମୁହୂର୍ତ୍ତରେ ପ୍ରକୃତି ରୂପରେ
ତମକୁ ଦେଖୁଛି ମୁଁ,
ଅଥଚ ନିଜ ମଧ୍ୟରେ ତମକୁ ଦର୍ଶନ କରିବାର
ସୌଭାଗ୍ୟ ଏଯାଏ ହୋଇନି ମୋର,
ସେ ଦିବ୍ୟ ଦର୍ଶନ ଉତ୍ତାରେ ସମଗ୍ର ପ୍ରକୃତି
ଏକାକାର ହୋଇଯିବ ମୋ ସହିତ ।

(୧୧)

ସେବେ ବୟସ ଥିଲା,
ମନୋବଳ ଓ ଦେହବଳ ନେଇ
ଜୀବନ ରାସ୍ତାରେ ଆଗକୁ ଆଗକୁ
ମାଡ଼ିଯାଇ ହେଉଥିଲା ।

ମାତ୍ର ଏବେ ଜୀବନର
ଚତୁର୍ଥାବସ୍ଥାରେ ପହଞ୍ଚିବା ପରେ
କ୍ଲାନ୍ତି ଅବସାଦରେ ମୁଁ ନଇଁ ପଡୁଛି,
ଯେମିତି ମନେ ହେଉଚି
ଆଗେଇ ହେବନି ଆଉ,
ଏଇଠି ପୂର୍ଣ୍ଣଚ୍ଛେଦ ।

ସ୍ୱପ୍ନମାନେ ବିଦାୟ ନେଇଛନ୍ତି
ଭାବର ଉଦ୍ଦୀପନା ବି ନାହିଁ ଆଉ,
ଲେଖି ବସିଲେ ପଇଟୁନି କିଛି,
ଅଥଚ ସ୍ୱପ୍ନ ଓ ଭାବର ବନ୍ୟାରେ
ଦିନେ ଭାସି ଯାଉଥିଲି ମୁଁ ।
ଜଣେ ସ୍ରଷ୍ଟା ଯେବେ ତା'ର
ସୃଷ୍ଟି କରିବାର ଶକ୍ତି ଥରେ ହରାଇ ବସେ,
ତା'ଠାରୁ ବଳି ବଡ଼ ଦୁଃଖ କ'ଣ ଅଛି ଆଉ ?

(୧୨)
ପୁରୀ ମୋର ଜନ୍ମସ୍ଥାନ ବୋଲି ନୁହେଁ,
ଏଠାର ବୋହୂ ହେଲି ବୋଲି ନୁହେଁ,
କେମିତି ଏକ ଅପୂର୍ବ ଆକର୍ଷଣ ରହିଚି
ଏ ସ୍ଥାନ ପ୍ରତି ମୋର,
ଏ ଆକର୍ଷଣ ଏ ଜନ୍ମର ନୁହେଁ କେବଳ,
ମନେହୁଏ ଯେପରି ପୂର୍ବ ଜନ୍ମର ।

ଶ୍ରୀମନ୍ଦିର ଓ ଶ୍ରୀଜୀଉଙ୍କ ସଂଗେ ମୋର ସଂପର୍କ
କେତେ ପୁରାତନ,
ବାଇଶି ପାହାଚ ଉଠିବାବେଳେ ମନେହୁଏ
ଆଗରୁ ଏମିତି ଉଠିଛି ଅଜସ୍ରଥର,
ନୂଆ ନୁହେଁ 'ମହୋଦଧି'ବି
ଯା'ର ତରଙ୍ଗାୟିତ ରୂପ ଦେଖିଛି ପୂର୍ବରୁ
ବହୁବାର ମୁଗ୍ଧ ହୋଇ ।

'ସ୍ୱର୍ଗଦ୍ୱାର' କେତେ ମୋର ଆପଣାର,
ଗତ ଜନ୍ମରେ ଯେଉଁଠି ମୋର ମୃତଦେହ ଚିତାଗ୍ନିରେ
ରୂପାନ୍ତରିତ ହୋଇଚି ମୁଠେ ପାଉଁଶରେ ।

ପୁରୀର ବାହାରର ଢାଞ୍ଚା ବଦଳି ଯାଇଛି ଯାହା,
ମାତ୍ର ଅପରିବର୍ତ୍ତିତ ରହିଚି ଆତ୍ମା ତା'ର ।
ଭାବମୟ ପୁରୀ ତେଣୁ
ମୋର ସମଗ୍ର ସତ୍ତାରେ
ପ୍ରତି ମୁହୂର୍ତ୍ତରେ ମୋର
ନିଃଶ୍ୱାସ ପ୍ରଶ୍ୱାସରେ ।

(୧୩)
ବିବାହ ଆଗରୁ
ମୋର କିଶୋରୀ ବୟସରେ

ମୁଁ ଆମର ଦୋତାଲା ବାଲ୍‌କୋନିରେ
ଠିଆ ହେଲେ ଅନ୍ୟ ଛାତମାନଙ୍କରେ ଓ
ରାସ୍ତାରେ ଭିଡ଼ ଜମି ଯାଉଥିଲା ମୋ ପାଇଁ ।

ମୋ ବିବାହର ଚାଳିଶ ବର୍ଷପରେ
ସେଇ ବାଲ୍‌କୋନିରେ
ସେଇ କିଶୋରୀର ରୂପାନ୍ତର ପକ୍ୱକେଶା
ପ୍ରୌଢ଼ାଟିଏ ନିଷ୍ପ୍ରଭ ଦୃଷ୍ଟି ମେଲି ବସିରହିଚି,
ଯାହାକୁ ଦେଖିବା ଲାଗି
କୌଣସି ଆଗ୍ରହ ତ ନାହିଁ କାହାର ।

(୧୪)
ମୋର ମାଆ ଉପରେ ହଠାତ୍ ରାଗିଯିବା
ଉଚିତ୍ ହେଲା କି ?
ଦୋଷ କ'ଣ ତା'ର ନା,
ତରକାରି ଥିଲା ମୋ ଥାଳିଆରେ
'ନାହିଁ' କରୁ କରୁ
ପୁଣି ତରକାରି ଆଣି ଅଜାଡ଼ି ଦେଲା
"ଆଉ ଟିକେ ଖାଆଲୋ",
ମୋର ନିର୍ବୋଧ ଆଚରଣରେ
ସେ କେତେବେଶୀ ଆହତ ହୋଇଚି
ବୁଝିପାରି ସ୍ତବ୍ଧ ହୋଇ ଯାଇଥିଲି,
ବିଚାରୀ ଫେରିଯାଉଥିଲା ରୋଷେଇ ଘରକୁ
ଲୁଗାପଣତରେ ଆଖି ପୋଛି ପୋଛି ।

(୧୫)
ନିକଟରେ ମୁଁ ଯେବେ ଗୁରୁତର
ବେମାର ପଡ଼ିଥିଲି,
ମୋର ବଂଚିବାର କୌଣସି ଆଶା ନଥିଲା,
ତମେ ମୋର କେତେ ନ କରିଚ,

ତୁମକୁ ଛାଡ଼ି ଚାଲିଯିବାକୁ
କେବେ କ'ଣ ଚାହୁଁଥିଲି ?
କେଉଁ ସ୍ଵର୍ଗକୁ ଯିବି ?
ତମର ଅବର୍ତ୍ତମାନରେ ମୋର
ସ୍ଵର୍ଗ ବା କେଉଁଠି ?

ରୋଗଶଯ୍ୟାରେ ଦେହରେ ମୋର
ହାତ ବୁଲାଇ ଦେଉ ଦେଉ
ଛଳ ଛଳ ହୋଇ ଯାଉଥିଲା ତମର ଆଖି,
କିଛି କହିବାକୁ ଯାଇ
ଥରି ଯାଉଥିଲା କଣ୍ଠ ତମର,
ମୋତେ ମେଲାଣି ଦେବା ଲାଗି ତ
ତମେ ପ୍ରସ୍ତୁତ ହୋଇ ଯାଇଥିଲ ।

ଯିବା କଥା ମୋର ଏତେ ନିଶ୍ଚିତ ଥିଲା ଯଦି
ରହିଗଲି କିପରି ?
ଏବେ ଭାବୁଛି ତମର ଆକର୍ଷଣର ନିଗଡ଼
କେତେ ନିବିଡ଼ ସତେ !

ମନେପଡ଼େ ଆଜକୁ ବର୍ଷକ ତଳେ
ଠିକ୍ ମୋ ପରି ତମେ ଯେବେ
ରୋଗଶଯ୍ୟାରେ ପଡ଼ିଥିଲ,
କି ସଂକଟାପନ୍ନ ଅବସ୍ଥା ତେବେ ତମର,
ପ୍ରତ୍ୟେକ ଆତ୍ମୀୟ ସ୍ଵଜନ
ମନେ ମନେ ବିଦାୟ ଦେଇଥିଲେ ତମକୁ,
ସେଇ ବିକଳ ମୁହୂର୍ତ୍ତରେ
ମୁଁ ଯେବେ ଚାହୁଁଥିଲି ପ୍ରତ୍ୟେକଙ୍କୁ ଅଶ୍ରୁଳ ଆଖିରେ,
ଛଳ ଛଳ ନେତ୍ରରେ ସେମାନେ
ନତମୁଖୀ ହୋଇ ରହୁଥିଲେ ।

ଅସ୍ଥି କଙ୍କାଳସାର ତମ ଦେହର ଶୀର୍ଣ୍ଣ ଦୁଇ ହାତରେ
ମୋର ବେନି ହାତ ଚାପିଧରି ଯେବେ କହିଲ,
"ନିଜର ଅଜ୍ଞାତସାରରେ କେବେ ଯଦି
ଦୁଃଖ ଦେଇଥାଏ ତମକୁ, କ୍ଷମା ଦେବ",
ଶୁଣି ଉଚ୍ଛ୍ୱସିତ କ୍ରନ୍ଦନରେ ଭାଙ୍ଗି ପଡ଼ିଥିଲି ମୁଁ ।

ଆମ ବ୍ୟବଧାନର ସେଇ ମର୍ମନ୍ତୁଦ ନାଟିକା
କିନ୍ତୁ ଅସଂପୂର୍ଣ୍ଣ ରହିଗଲା,
ଅଟକି ଗଲ ତମେ,
ଅଟକିଗଲ କେବଳ ମୋ'ରି ପାଇଁ ତ ।

ଦୁଇ ଦୁଇ ଥର,
ଜଣେ ଅନ୍ୟଜଣକୁ ହରାଇବାର
ଉଦ୍‌ବେଗଭରା ନାଟ୍ୟାଭିନୟ ପରେ
ଏବେ ଆଗକୁ ଆମ ଲାଗି କ'ଣ ଅଛି
କିଏ ଜାଣେ ?

ପୁଣି ସ୍ପନ୍ଦିତ ହୃଦୟ,
ପୁଣି ଆତଙ୍କିତ ମୁହୂର୍ତ୍ତର ଉତ୍କଣ୍ଠିତ ପ୍ରତୀକ୍ଷା
କିଏ ଆଗ ? କିଏ ପଛ ?

(୧୬)
ଯେଉଁ ମିଳନ ପରେ
ମିଳନ ସ୍ୱାଦର ପରିସମାପ୍ତି ଘଟେ
ସେ ମିଳନ ଠିକ୍ ମିଳନ ନୁହେଁ ।

(୧୭)
ଯେଉଁ ପ୍ରଜ୍ଞା ଆବେଗକୁ ଆଲିଙ୍ଗନ କରି
ତା'ର ଅନ୍ତରାଳସ୍ଥିତ ମନସ୍ତତ୍ତ୍ୱକୁ
ସ୍ପର୍ଶ କରେ ନାହିଁ, ସେ ପ୍ରଜ୍ଞା ବଂଧ୍ୟା ।

(୧୮)
ପତ୍ର ପ୍ରତୀକ୍ଷାରେ ଉତ୍କଣ୍ଠିତ ଚିତ୍ତରେ
ଠିଆ ହୋଇ ଥାଅ ତମେ,
ଡ଼ାକବାଲା ଅତିକ୍ରମ କରି ଚାଲିଗଲେ ତମକୁ,
କେମିତି ଲାଗେ ସେତେବେଳେ ?

(୧୯)
ବାହାରର ଧ୍ୱନି କେତେ ଅସ୍ୱସ୍ତିକର,
ଅଥଚ ନୀରବତାର ଧ୍ୱନି କେତେ ଶାନ୍ତିପ୍ରଦ ।

(୨୦)
ଭାଇ, ଭଉଣୀ
ଶ୍ରୀମନ୍ଦିରକୁ ବାହୁଡ଼ିଯିବା ପରେ
ରୁଦ୍ଧ ଦରଜାରେ କାନ ପାରି
ଶୂନ୍ୟ ଗୁଣ୍ଡିଚା ମନ୍ଦିରର ନୀରବ କ୍ରନ୍ଦନ
କେବେ ଶୁଣିଚ ?

ଶ୍ରୀଗୁଣ୍ଡିଚା, ଭାଇ, ଭଉଣୀ ଆସୁଛନ୍ତି
ତିନି ରଥରେ ତା'ର ପରିସରକୁ,
ତା'ର ରତ୍ନସିଂହାସନରେ ଶୋଭା ପାଇବେ ସେମାନେ,
ଆତ୍ମହରା ହେବ ସେ ସେମାନଙ୍କୁ ପାଇ,
ଆସ୍ୱାଦନ କରିବ ସେ
ସେମାନଙ୍କର ସାନ୍ନିଧ ସୁଖ ।

'ମହାପ୍ରସାଦ'ର ସୁଗନ୍ଧରେ
ମହକିବ ତା'ର ଚତୁର୍ଦ୍ଦିଗ,
ଭକ୍ତମାନଙ୍କର ପଦଧୂଳିରେ ସେ ଧନ୍ୟ ହେବ ।

ଘଣ୍ଟ, ମାର୍ଦ୍ଦଳ ଏବଂ ହରିହରି ଧ୍ୱନିରେ
ପରିସମାପ୍ତି ଘଟିବ ସବୁ ନିର୍ଜନତାର,

ସେ ପୂରି ଉଠିବ, ଜଳି ଉଠିବ,
ଆତ୍ମବିସ୍ମୃତ ହେବ ସେ ଅକୈତବ ପ୍ରେମରେ ।

ଏତେ ଆନନ୍ଦ ମଧ୍ୟରେ
ସେ କ'ଣ କେବେ ଭାବି ନଥିଲା
ବିଚ୍ଛେଦର ସେଇ ନିର୍ମମ ମୁହୂର୍ତ୍ତକୁ ?
କ୍ଷଣିକ ସୁଖରେ କାହିଁକି ସେ ବିହ୍ୱଳ ହେଉଥିଲା ?
ସେମାନେ ଆସିବେ ମାତ୍ର ଦିନ କେତୋଟି ପାଇଁ
ପୁନଶ୍ଚ ଲେଉଟି ଯିବେ,
ଏଇ ନିଷ୍ଠୁର ସତ୍ୟକୁ ସ୍ମରଣ କରି
ସ୍ଥିତପ୍ରଜ୍ଞ ନ ହେଲା କାହିଁକି ସେ ?
ପାଇବା ହରାଇବା ଓ
ହରାଇବାର ଦୁଃଖ ଭିତରେ
ପୁନଶ୍ଚ ପାଇବାର ସ୍ୱପ୍ନ ଦେଖିନାହିଁ ତ ଜୀବନ ।

ପୁଣି ଗୋଟିଏ ବର୍ଷର ଅପେକ୍ଷା,
ମାତ୍ର ଏଇ ଅପେକ୍ଷାର ବିରହରେ
ଭାବଜଗତରେ ପ୍ରତିକ୍ଷଣରେ ମିଳନକୁ
ଆସ୍ୱାଦନ କରିବନି କି ଏଇ ଶୂନ୍ୟ ମନ୍ଦିର ?

(୨୧)
ହଜି ନାହିଁ କା'ର ଯେବେ କିଛି ହିଁ ରତନ
ଏ ମର୍ତ୍ତ୍ୟ ସଂସାରେ ସେହୁ ଦୀନ ଅକିଞ୍ଚନ ।
-ଭକ୍ତକବି ମଧୁସୂଦନ ରାଓ

ହରାଉନି ପ୍ରିୟବସ୍ତୁ, ପ୍ରିୟବ୍ୟକ୍ତି ପୃଥିବୀରେ କିଏ,
ହାହାକାର କିଏ ବା କରୁନି
ମର୍ମାନ୍ତିକ ଏ ବିଚ୍ଛେଦ ଲାଗି,
ମାତ୍ର ସେଇ ବ୍ୟଥାର ଗର୍ଭରୁ
ଆହରଣ କରେ କି ସେ କେବେ ଅମୃତତ୍ୱ ?

କରେ ନାହିଁ, ଅଧିକନ୍ତୁ ସମୟର ସ୍ରୋତେ
ଭୁଲିଯାଇ ସେ ବ୍ୟଥାକୁ, ପୁନର୍ବାର ଡୁବଦିଏ
ନୂଆ ଆସକ୍ତିରେ,
ମ୍ଳାନ ହୁଏ କ୍ରମେ ସେଇ ପୁରାତନ ବ୍ୟଥା,
ନିଶ୍ଚିହ୍ନ କି ହୁଏ ।

ଯନ୍ତ୍ରଣା ମଧ୍ୟରୁ 'ମନ୍ତ୍ର'କୁ ପାଇବାର ପ୍ରୟାସ ବା କାହିଁ ?
ହରାଇବା ପରେ ରତ୍ନ, ମହାରତ୍ନ ଲଭିବାର ପାଇଁ ।
ତେଣୁ, ନିଃସ୍ୱ, ନିଃସହାୟ ହୋଇ, ଚିରକାଳ ରହିବାକୁ ପଡ଼େ ।
ପ୍ରଜ୍ଞା, ବୁଦ୍ଧି, ଚାତୁର୍ଯ୍ୟର ସହାୟତା ମୂଲ୍ୟହୀନ ହୁଏ ।
ଝଡ଼ପରେ ଝଡ଼ ଆସେ, ମାତ୍ର ପ୍ରତି ଝଡ଼ର ଆବର୍ତ୍ତୁ
ଫୁଲ ଖୋଜି ପାଇବାର ଅଭାବରୁ
ଏ ମଣିଷ ରହିଯାଏ ଦୀନ, ଅକିଞ୍ଚନ ।

(୨୨)
ଭଲ ଫୁଲଟିଏ ଦେଖିଲେ
ଭାରି ଇଚ୍ଛା ହୁଏ, 'ଏଇଟି
ଜଗନ୍ନାଥଙ୍କୁ ଦିଅନ୍ତି କି ।'
ଫୁଲରେ କେତେ ଆଗ୍ରହ ତାଙ୍କର,
କେତେ ଆନନ୍ଦ ତାଙ୍କର ତା'ର ସୁଗନ୍ଧରେ ।

ସେମିତି ଫୁଲଟିଏ ମୁଁ ହୋଇ ପାରନ୍ତିନି ?
ସୌରଭରେ ଭରପୂର,
ଲହୁଣି ଭଳି କୋମଳ ।

(୨୩)
ବରଂ ନିବାସ ଭଲ ରଣ କ୍ଷେତ୍ରରେ,
ଭୟରେ ସଦା ଯହିଁ ହୃଦୟ ଥରେ,
ମାତ୍ର ଏ ଭୀମସ୍ଥଳେ ରାଜ୍ୟ ପ୍ରାପତି
ଅଟଇ ମୋ ବିଚାରେ ଅଧମ ଗତି ।
- ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ (ମଧୁସୂଦନ ରାଓ)

ନିର୍ଜନତା ଓ ତଦ୍‌ଜନିତ ସଂଗଶୂନ୍ୟତାର
ସେ ଦୁଃଖ, ତା'ର ପଟାନ୍ତର କାହିଁ ?
ମାତ୍ର ସ୍ମୃତି ଯେବେ ସାନ୍ଦ୍ର ଗହଳି ଗର୍ଭରେ,
ପ୍ରଜ୍ଞା, ବୁଦ୍ଧି ଏବଂ ପ୍ରାଚୁର୍ଯ୍ୟ ଯେବେ
ହାତ ମୁଠାରେ,
ତେବେ କାହିଁକି ଏ ଅସୀମ ଶୂନ୍ୟତା ?
କାହିଁକି ଏତେ କ୍ଳାନ୍ତି ଓ ଅବସାଦ ?
ଗୃହ ବାହାରେ ବିବିଧ ଧ୍ୱନିର ସମାବେଶ,
ଗୃହ ମଧ୍ୟରେ ଅଖଣ୍ଡ କୋଳାହଳ,
ତଥାପି ତମ ଭିତରର ଅଭାବବୋଧକୁ
ସେମାନେ ନିଶ୍ଚିହ୍ନ କରିଦେଇ ପାରୁ ନାହାନ୍ତି କାହିଁକି ?
କାହିଁକି ତମ ଶୂନ୍ୟତାକୁ
ଆଶ୍ୱାସନାରେ ଆଉଁଶିଦେଇ ପାରୁନାହାନ୍ତି ସେମାନେ ?

ଯେବେ ମନତଳେ ପ୍ରଚଣ୍ଡ ଖାଁ ଖାଁ ଭାବ,
ଠିକ୍ ସେହି ସମୟରେ ହୁଏତ ଶୁଭିଗଲା
କୌଣସି ଏକ ଶିଶୁର ଦରୋଟି,
ନଚେତ୍ ଅକସ୍ମାତ କାହୁଁ ଭାସି ଆସିଲା
କେଉଁ ଏକ ଅପରିଚିତ ପକ୍ଷୀର ମଧୁର ସଂଗୀତ
ଏବଂ ହଠାତ୍ ପୋଛି ହୋଇଗଲା
ମନତଳର ସକଳ ଶୂନ୍ୟଭାବ,
ବିହ୍ୱଳ ହୋଇଗଲା ମୁହୂର୍ତ୍ତକ ଲାଗି,
କିନ୍ତୁ ପରକ୍ଷଣରେ
ନିଃସଙ୍ଗତାବୋଧର ଦାରୁଣ ଦୁଃଖରେ
ପୁନଶ୍ଚ ଭାଙ୍ଗି ପଡ଼ିଲ ତମେ ।

ବାହାରର ସ୍ୱର୍ଗରେ ସବୁ ସୁଖ ସଂଚିତ ଯଦି,
ତେବେ ସିଂହାସନାରୂଢ଼ ଇନ୍ଦ୍ର
ଏତେ ଦୁଃଖୀ କାହିଁକି ?
ପ୍ରତି ମୁହୂର୍ତ୍ତରେ ସେ ଅନ୍ୟମନସ୍କ ଓ ଭୀତତ୍ରସ୍ତ
ନିଜର ଇନ୍ଦ୍ରତ୍ୱ ହରାଇବାର ଆଶଙ୍କାରେ ।

ଭିତରର ସ୍ୱର୍ଗ,
ଯା' ପ୍ରତି ମୁହୂର୍ତ୍ତରେ ହାତଠାରି ଡ଼ାକୁଛି ଆମକୁ
ଅତି ଆପଣାର ଭଳି,
ତେଣୁ ହରାଇବାର ଦୁଃଖ ବି କାହିଁ ?
ସେଠାରେ ସଙ୍ଗୀତ ଧ୍ୱନି ଶୂନ୍ୟ,
'ବେଦାନ୍ତ' ନିର୍ବାକ୍ ସେଠାରେ ।

ସେଠାରେ ଆଲୋକ ନାହିଁ
ଅଂଧାର ବି ନାହିଁ,
ସଂଗ ନାହିଁ,
ସଂଗ-ଶୂନ୍ୟତା ବି ନାହିଁ,
ଏକ ଅଖଣ୍ଡ ନୀରବତାର ରାଜତ୍ୱ ।

ଅଥଚ ସେଇ ନୀରବତା ସଦା
ତମକୁ ଧ୍ୱନିମୟ କରି ରଖେ,
ସେଇ ଧ୍ୱନି କିନ୍ତୁ ଶବ୍ଦ ଶୂନ୍ୟ,
ସବୁ ଶୂନ୍ୟତାକୁ, ସବୁ ନିର୍ଜନତାକୁ
ନିଶ୍ଚିହ୍ନ କରିଦେବାର ଶକ୍ତିରେ
ସଦା ସକ୍ରିୟ ସେ ।

ତନ୍ମଧ୍ୟରେ ଥରେ ବୁଡ଼ ନ ଦେଲେ
ଏକୁଟିଆ ଏକୁଟିଆ ଶୂନ୍ୟଭାବରୁ
ମୁକ୍ତି କାହିଁ ?
ମୁକ୍ତି କାହିଁ ଉତ୍କଟ ବିଜନତାର ହାହାକାରରୁ !

(୨୪)
ମୋ ଭାବେ ଯା'ର ମନ ନାହିଁ,
ସଂସାରେ ଦରିଦ୍ରଟି ସେହି ।
-ଶ୍ରୀମଦ୍ ଭାଗବତ ।

କେତେ ଦୀନ ଓ ନିଃସ୍ୱ ସେ,
ଯା'ର ଚିନ୍ତନରେ ତମର ସ୍ଥିତି ନାହିଁ ।

ସେ ବୁଝେକି ତମେ କିଏ ?
ତମ ସଂଗେ ତା'ର ସଂପର୍କ କେତେ ନିବିଡ଼
ଓ ତମେ ଯେ ତା'ର ସର୍ବସ୍ୱ
ଏ ଉପଲବ୍ଧି ଅଛି କି ତା'ର ?
ଏଇ ଅନୁଭବର ଅଭାବରେ,
ସେ ତମର ଭାବକୁ ସ୍ପର୍ଶ କରିବ କିପରି ?

ଦେହଟାକୁ ତ ନେଇ ପ୍ରମତ୍ତ ସବୁବେଳେ,
ବସ୍ତୁ ଜଗତରୁ ଇଷ୍ଟପ୍ରାପ୍ତିର ପ୍ରୟାସରେ
ପ୍ରତି ମୁହୂର୍ତ୍ତରେ ଅନିଷ୍ଟ କରି ଚାଲିଛି ନିଜର,
ଅନ୍ତର୍ମୁଖୀ ହୋଇ ନିଜର ଚିନ୍ମୟ ସତ୍ତାକୁ
ନିରୀକ୍ଷଣ କରେନି ବୋଲି ତ
ଚିର ଅବସନ୍ନ ସେ ।

ଠାକୁର ଶ୍ରୀରାମକୃଷ୍ଣ ଶିଶୁଙ୍କ ଭଳି କାନ୍ଦୁଥିଲେ
ମାଆଙ୍କ ପାଇଁ, ଅହର୍ନିଶି କାନ୍ଦୁଥିଲେ ଶ୍ରୀଚୈତନ୍ୟ
କୃଷ୍ଣଙ୍କ ବିରହରେ,
ଗିରିଧାରୀ ଗୋପାଳଙ୍କ ସ୍ମରଣରେ
ମୀରା ବିଭୋର ରହୁଥିଲେ ଦିବାନିଶି ।

କିନ୍ତୁ କିଏ ସେଇ ମାଆ ?
କିଏ ସେଇ କୃଷ୍ଣ ?
ପୁଣି କିଏ ସେଇ ଗିରିଧାରୀ ଗୋପାଳ ?
ସେମାନେ ସମସ୍ତେ ଥିଲେ ଅଭିନ୍ନ ସତ୍ତା
ସେମାନଙ୍କର ।

ତେଣୁ ବସ୍ତୁ ଜଗତକୁ ଉପେକ୍ଷା କରି
ଦେହର ଦେହଳୀ ଡେଇଁ,

ପ୍ରତିକ୍ଷଣରେ ସେମାନେ ବିହ୍ବଳ ରହୁଥିଲେ
ଭାବଜଗତରେ,
ଅଦ୍ୱୈତ ଆନନ୍ଦରେ ଆତ୍ମବିଭୋର ହୋଇ ।
ନିଜେ ନିଜ ବିରହରେ
ଦଗ୍ଧୀଭୂତ ନ ହେବାଯାଏ
ଅଭାବବୋଧ, ନିଃସଙ୍ଗତାର ଦୁଃଖ
ଏବଂ ତଦ୍‌ଜନିତ କ୍ଲାନ୍ତି ଆଉ
ଅବସାଦରୁ ମୁକ୍ତି କାହିଁ ?

ଅଖଣ୍ଡ ବିରହର ମାନେ ହେଲା
ନିଜର ଚିନ୍ମୟ ସତ୍ତାସହ
ପ୍ରତି ମୁହୂର୍ତ୍ତରେ ନିଘଞ୍ଚ ହୋଇ ରହିବା ।

(୨୪)
ଦୀର୍ଘଦିନ ରୋଗଶଯ୍ୟାରେ ପଡ଼ି
ମୃତ୍ୟୁ ମୁଖରୁ ମୁଁ ଫେରିବା ପରେ
ତମେ ମୋର ରୁଗ୍‌ଣ ଓ ଶୀର୍ଣ୍ଣ ସ୍ୱାସ୍ଥ୍ୟକୁ ଚାହିଁ
ବାଷ୍ପରୁଦ୍ଧ କଣ୍ଠରେ ପ୍ରାୟ ପଚାରୁଛ,
"ତମର ପୂର୍ବ ସ୍ୱାସ୍ଥ୍ୟ ଫେରିବନି ଆଉ ?

ତମର ଆବେଗଭରା ପ୍ରଶ୍ନର
ଉତ୍ତର ଦେବାକୁ ଯାଇ ମୁଁ କହେ,
"ନିମ୍ନଗାମୀ ସ୍ରୋତସ୍ୱତୀ
ଗିରିଗୁହାକୁ ଲେଉଟେ କି କେବେ ?"

ଏବେ ଆଲବମ୍ ଖୋଲି
ମୋର ବସନ୍ତ ବୟସର ଫଟୋସବୁ
ଦେଖିବାର ତମର ଉତ୍ସୁକତା ଲକ୍ଷ୍ୟ କରେ ମୁଁ,
ଥରେ ମୋ ମୁହଁକୁ ଓ ଥରେ ମୋର
ଫଟୋମାନଙ୍କୁ ଦେଖୁ ଦେଖୁ
ନେତ୍ର ତମର ଅଶ୍ରୁସଜଳ ହୋଇ ଉଠେ ।

ତମର ଏଇ ଭାବାବେଗକୁ
ମନେ ମନେ ନମସ୍କାର କରେ ସିନା,
ବାଧା ଦିଏନା ।
ଆବେଗ ଓ ସ୍ୱପ୍ନକୁ ନେଇ ତ ଏ ଜୀବନ,
ସେମାନଙ୍କୁ ଉପେକ୍ଷା କଲେ
ଜୀବନର ସ୍ୱାଦ କାହିଁ ?

ତମ ବାର୍ଦ୍ଧକ୍ୟକୁ ନେଇ ମୁଁ
ଏତେ ବିଚଳିତ ନୁହେଁ ସତ,
ମାତ୍ର ତମର ଅଶ୍ରୁସିକ୍ତ ଆଖିକୁ ଚାହିଁଦେଲେ
ମନ ମୋର ଚହଲିଯାଏ ।

ଏବେ ବୁଝୁଛି କୃଷ୍ଣଙ୍କର
ତତ୍ତ୍ୱଦର୍ଶୀ ମୁନିମାନଙ୍କ ଅପେକ୍ଷା
ଗୋପୀମାନଙ୍କ ପ୍ରତି ଅଧିକ
ଆକର୍ଷଣ ଥିଲା କାହିଁକି ।

(୨୬)
ମୋର ଏ ପରିଣତ ବୟସରେ
ମୋ ଆଖିରୁ ସ୍ୱପ୍ନତକ କିଏ ପୋଛି ନେଇଛି,
ସେଥିଲାଗି ଏ ଜୀବନ
କେତେ ଦୁର୍ବିଷହ ସତେ !
ଏବେ ସବୁ କିଛି ପ୍ରଜ୍ଞାରେ ମାପୁଛି,
ସବୁ କିଛି ବୁଦ୍ଧିରେ ତଉଲୁଛି,
ଅନ୍ୟମାନଙ୍କୁ ନିର୍ବୋଧ ଭାବି
ନିଜକୁ ବୁଦ୍ଧିର ଶୀର୍ଷରେ ରଖି
ଅହଙ୍କାରରେ ପ୍ରମତ୍ତ ମୁଁ ।

ମୁଁ ଯେତେବେଳେ ଅନ୍ୟମାନଙ୍କୁ
ଉଚ୍ଚାସନ ଦେଇ ନିଜକୁ ନ୍ୟୂନ

ମନେ କରୁଥିଲି ତୃଣର ଆନନ୍ଦ ନେଇ,
ମୋର ସ୍ୱପ୍ନମାନେ କେତେ ସଜୀବ ଥିଲେ,
ଅମାନୀକୁ ମାନ ଦେଇ
ମୋର ସ୍ୱପ୍ନର ବିହ୍ୱଳତାକୁ ଅକ୍ଷୁଣ୍ଣ ରଖିଥିଲି ।

ଭିକାରିଟିଏ ଗୀତ ଗାଇଲେ
କାନେଇ ଶୁଣୁଥିଲି ମୁଗ୍ଧ ହୋଇ,
ପକ୍ଷୀର ଗୀତ ଶୁଣିଲେ
ମୋ କଣ୍ଠରେ ଗୀତ ଆସି ଯାଉଥିଲା,
ମେଘର ପାହାଡ଼କୁ ସତ ପାହାଡ଼ ମଣି
ଆତ୍ମବିସ୍ମୃତ ହେଉଥିଲି ମୁଁ ତା'ର ସୌନ୍ଦର୍ଯ୍ୟରେ ।

କୁଆଡ଼େ ଗଲା ସେ ସବୁ
ସୁନାର ସ୍ୱପ୍ନ ମୋର, କୁଆଡ଼େ ଗଲା ?
ମୋ ନିକଟରୁ ମୋର ଶୁଷ୍କ ପ୍ରଜ୍ଞା
ଓ କ୍ଳିଷ୍ଟ ମୋତେ ପୁନର୍ବାର ମୋର
ସ୍ୱପ୍ନମାନଙ୍କୁ ଫେରାଇ ଦିଅନ୍ତାନି ?

(୨୭)
ଦୀର୍ଘଦିନ ଶଯ୍ୟାଶାୟୀ ରହିବା ପରେ
ବୃଦ୍ଧା ମାଆ ଆମକୁ ଛାଡ଼ି ଚାଲିଯାଇଛି,
ରୋଗରେ ପଡ଼ିଥିବା ବେଳେ
ସବୁବେଳେ କହୁଥିଲା, "ତମମାନଙ୍କୁ
କେତେ ଭୋଗାଉଛି ଲୋ, ଚାଲି ଯା'ନ୍ତିକି !"

ସେ ନିଜର ମୃତ୍ୟୁ କାମନା କରୁଥିଲା,
ଆଉ, ଆମ୍ଭେମାନେ ମଧ୍ୟ ଚାହୁଁଥିଲୁ
ସେ ଚାଲିଗଲେ ତରିଯା'ନ୍ତା ।

ମାତ୍ର ଆମ୍ଭମାନଙ୍କର ଏଇ କାମନା
ନିଷ୍କଳୁଷ ଥିଲା କି ?

ମନେ ମନେ ଖୁବ୍ ବିରକ୍ତ ହେଉ ନଥିଲୁ କି
କେତେ ତା'ର ଆଉ କରିବୁ ?
ସେ ଏକା ଘାଣ୍ଟି ହେଉନି,
ସମସ୍ତିଙ୍କି ଘାଣ୍ଟୁଛି ।

ଆମେ ତିନି ଝିଅ ତା'ର ଯେତେ
ସେବା କଲେବି, ଗୋଟିଏ ଶୂଳର
ଋଣ କ'ଣ ତା'ର ଶୁଝି ପାରିବୁ ?
ସର୍ବଂସହା ମାଆର
ଋଣ ଶୁଝିଲାଣି କେହି ?

ଖୁବ୍ ଜାକଜମକରେ ତା'ର
ଶୁଦ୍ଧାଦି କାର୍ଯ୍ୟ ହେଲା,
ସମସ୍ତଙ୍କ ତୁଣ୍ଡରେ ଗୋଟିଏ ପ୍ରଶଂସା
'ବୁଢ଼ୀଙ୍କର ପୁଅ ନଥିଲେ କ'ଣ ହେଲା ।'
ଝିଅମାନେ ଖୁବ୍ କଲେ ।
ଏ ପ୍ରଶଂସା ଶୁଣି ଅନୁତାପରେ
ଜଳୁଥିଲୁ ଆମେ ମନେମନେ
ଭଗବାନଙ୍କୁ କାତର ପ୍ରାର୍ଥନା କରୁଥିଲୁ,
"ପ୍ରଭୋ ! କ୍ଷମାକର, କ୍ଷମାକର ଆମ୍ଭମାନଙ୍କୁ ।"

(୨୮)
ବାଲ୍‌କୋନିରୁ ଅନାଇ ଦେଖେ
ପ୍ରାୟ ପ୍ରତିଦିନ ସେଇ ଅଂଧୁଣୀଟିକୁ
ଯେ ରାସ୍ତାରେ ଭିକ ମାଗିମାଗି ଯାଏ
ସାଂଗରେ ଛୋଟ ପିଲାଟିଏ ।

କେଉଁଠାରେ ରହେ ସେ ଅଂଧୁଣୀଟି ?
ସେ ସାନ ପିଲାଟି ତା'ର କ'ଣ ହୁଏ ?
ପୁଅ ?

ବିଚାରୀ ରହେକି ଫୁଟ୍‌ପାଥରେ ?
ନଚେତ୍ ଝୁମ୍ପୁଡ଼ିରେ,
କେହି ଅଛିକି ତା'ର ଆଉ ?
ପେଟପୂରା ଆହାର ପାଏକି ସେ ?

ମୁଁ ଯଦି ଏମିତି ଅଂଧୁଣୀ ହୋଇଥା'ନ୍ତି,
ମୋର ଝୁମ୍ପୁଡ଼ି ନଥା'ନ୍ତା କି
ଫୁଟ୍‌ପାଥରେ ଆଶ୍ରୟ ବି ନଥା'ନ୍ତା,
ଖରା, ବର୍ଷା, ଶୀତର ପ୍ରକୋପର
କିପରି ସମ୍ମୁଖୀନ ହୁଅନ୍ତି ମୁଁ
ଶିହରି ଉଠେ ଆତଙ୍କରେ ।

ସକାଳେ ଚା' ଖାଇବାରେ ଟିକିଏ
ଡ଼େରି ହୋଇଗଲେ ଅସ୍ୱସ୍ତି
ଅନୁଭବ କରେ,
ଦି'ବେଳା ଖାଇବାର ସମୟ
ଏତେଟିକେ ଗଡ଼ିଗଲେ
ବ୍ୟସ୍ତ ହୋଇପଡ଼େ,
ଫ୍ୟାନ୍ ବନ୍ଦ ହୋଇଗଲେ
ଖୁବ୍ କାଉଳା ଲାଗେ,
ସଂସାରର ଛୋଟଛୋଟ ଦୁଃଖ,
ମାନ, ଅଭିମାନ, କ୍ଷୋଭମାନଙ୍କର
ସମ୍ମୁଖୀନ ହେବାକୁ ଯାଇ
ରୁଦ୍ଧଶ୍ୱାସ ହୋଇଯାଏ ।

ଏପରି ଜଣେ ମୁଁ ଭାବୁଛି
'ତା'ପରି ଯଦି ଅଂଧୁଣୀ ହୋଇଥା'ନ୍ତି',

ଜଣେ ସ୍ୱାର୍ଥପର, କଳ୍ପନାବିଳାସୀ
କବିର ଏ ଅବାସ୍ତବ ଚିନ୍ତା
କେତେ ହାସ୍ୟାସ୍ପଦ ସତେ ।

(୨୯)

ତମେ ଦି'ଜଣ ଯେଉଁଦିନ
ମୋତେ ଆସି କହିଲ ବାପାମାଆମାନଙ୍କର
ଅନିଚ୍ଛା ସତ୍ତ୍ୱେ ଆମେ ରେଜେଷ୍ଟ୍ରି ବିବାହ
କରିଛୁ, ଆମକୁ ଆଶୀର୍ବାଦ କରନ୍ତୁ,
ଶୁଣି ମୁଁ ଆକାଶରୁ ଖସି ପଡ଼ିଥିଲି,
ଖୁବ୍ ଦୁଃଖ ପାଇ କହିଥିଲି,
କଲେଜର ଦୁଇବନ୍ଧୁ ତମେମାନେ
ଦୁହିଁଙ୍କର ବନ୍ଧୁତ୍ୱକୁ ମୁଁ ସମ୍ମାନ କରେ,
ତା'ବୋଲି ତୁମମାନଙ୍କର ସ୍ୱୈରାଚାରକୁ
ମୁଁ ସମର୍ଥନ କରିବି କିପରି ?
ଦାଂପତ୍ୟ ଜୀବନରେ ପିତାମାତାଙ୍କର
ଆଶୀର୍ବାଦ ଯେ ପରମ ସଂବଳ,
ଦୁଃଖ ଦେଲେ ସେମାନଙ୍କୁ
ତା' ବୃଥା ଯିବ କିପରି ?

ଆଜି ବିବାହର ତିନିବର୍ଷ ପରେ
ମୋତେ ଆସି ଦୁହେଁ କହୁଛ
ବିବାହରେ ସୁଖୀ ହୋଇ ପାରିନ,
ଉଭୟଙ୍କର ଉଭୟଙ୍କ ବିରୁଦ୍ଧରେ
ନାନାଦି ଅଭିଯୋଗ, ଯଦିଓ
କୋଳରେ ବର୍ଷକର ପୁଅଟିଏ ।

ଏହାର ଏକମାତ୍ର ପ୍ରତିକାର
ମନର ସବୁ ଦ୍ୱିଧାକୁ ଫିଙ୍ଗିଦେଇ
ପିତାମାତାଙ୍କର ଶରଣାପନ୍ନ ହେବା,
ଉପେକ୍ଷିତ ହେବନି କେବେ,
ସୁଖୀ ହେବ ଯୁଗ୍ମ ଜୀବନରେ ।

(୩୦)
ରାସ୍ତାରେ ଅନ୍ୟମନସ୍କ ଭାବେ ଚାଲୁ ଚାଲୁ
ନିଜ ଭୁଲ୍ ଯୋଗୁଁ
ଅନ୍ୟ ସଂଗେ ଧକ୍କା ହୋଇଗଲା,
ଅଥଚ ମୁଁ ତାଙ୍କୁ ସତର୍କ
କରିଦେଲି "ଟିକେ ଦେଖି ଚାହିଁ
ବାଟ ଚାଲନ୍ତୁ ।"

(୩୧)
'ଅରୁଅପା'ର ଚାରିଝିଅ ପରେ,
ପୁତ୍ର ସନ୍ତାନ ହେଲା ସତ,
ମାତ୍ର ବାମନଟିଏ ଓ କି କଦାକାର, ବିକୃତ ମୁହଁ ତା'ର ।
ଏତେବଡ଼ ମୁଣ୍ଡ, ଚେପ୍‌ଟା ନାକ, ଢ଼ିମା ଆଖି,
ସେ ମୁହଁକୁ ଚାହିଁ ଦେଲେ ଚମକି ପଡ଼ିବ ଜଣେ,
'ଅସୁର ଛୁଆଟେ ନା କ'ଣ ?'

ଓଠରୁ ଓଠକୁ କଥା ଚାଲେ,
ପିତା ସୁବ୍ରତ ବାବୁ ମୁଣ୍ଡରେ ହାତ ଦେଇ
ବସି ପଡ଼ିଛନ୍ତି, "ଏ କି ଅଭିଶାପ ପ୍ରଭୋ !"

ଅରୁଅପା ପୁଅ ମୁହଁକୁ ଅନାଇ ପାରୁନି ।
କଇଁ କଇଁ ହୋଇ କାନ୍ଦୁଛି,
କାନ୍ଦୁଛନ୍ତି ଭଉଣୀମାନେ ମା' ସଂଗେ ।

ତେବେ ଏ ପୁଅ କ'ଣ ଉପେକ୍ଷିତ
ହୋଇ ରହିଯିବ ଚିରଦିନ ?

ନା, ସେ ସବୁ କିଛି ହେଲାନି,
ସମୟ ସ୍ରୋତରେ ସବୁ କ୍ଷୋଭ, ସବୁ ଦୁଃଖ
ଯେପରି ନିଶ୍ଚିହ୍ନ ହୋଇ ଯାଇଛି ।

ସେଇ ବିକୃତ ମୁହାଁ ଶିଶୁଟି
କ୍ରମେ ଖୁବ୍ ଆଦରର ହୋଇ ଯାଇଛି ସଭିଙ୍କର ।

ଏଇଟା ତା'ପ୍ରତି କ'ଣ ଭଲ ପାଇବା ?
ନା, କରୁଣା ପ୍ରଦର୍ଶନ, ନା, ସହାନୁଭୂତି କେବଳ ?
ନାମ ତା'ର ରଖାଗଲା 'ଦୁଲା' ।
ବୟସ ତା'ର ବଢ଼ିବାକୁ ଲାଗିଲା,
ମାତ୍ର ଯେଉଁ ବାମନ ଥିଲା, ସେଇ
ବାମନ ହୋଇ ରହିଗଲା ସେ ।

ସେ ସ୍କୁଲକୁ ଗଲା,
ମାତ୍ର ସବୁବେଳେ ଉଦାସ, ଚୁପ୍‌ଚାପ୍ ।
ବେଶୀ କଥା କହେନି ସ୍କୁଲର
ସାଂଗମାନଙ୍କ ସଂଗେ,
ଘରେ ବି ଠିକ୍ ସେଇ ଅଭ୍ୟାସ,
ବାପ, ମାଆ, ଭଉଣୀମାନଙ୍କ ପାଖେ
ପ୍ରାୟ ମୌନ ସେ ।
ଆତ୍ମୀୟ ସ୍ୱଜନଙ୍କଠାରୁ ସଦା
ଦୂରେଇ ରହିବାର ପ୍ରଚେଷ୍ଟା ।

'ଦୁଲା'କୁ ତା' ରୂପ ସଂପର୍କରେ
ତା' ସ୍କୁଲର ସାଂଗମାନେ କେହି କେମିତି
ଥଟ୍ଟା କଲେ, ସେ ନୀରବରେ କାନ୍ଦେ,
କାନ୍ଦି କାନ୍ଦି ଘରକୁ ଫେରେ ।
ସବୁ ଶୁଣି ବାପାମାଆ ଭଉଣୀମାନେ
ତାକୁ ବୁଝାଇ ସାନ୍ତ୍ୱନା ଦେବାକୁ
ଚେଷ୍ଟା କଲେ, ସେ ରାଗିଯାଏ,
ନିଜ ମୁଣ୍ଡବାଳ ଟାଣି
ଦାନ୍ତ କଡ଼ମଡ଼ କରେ,
ତା' ମନର ପ୍ରତିକ୍ରିୟା ବୁଝନ୍ତି କି କେହି ?
ଅବୋଧ ସେ ରହିଯାଏ ।

ଦିନ ଯେତିକି ଯାଏ,
କ୍ରମେ ବଢ଼ି ବଢ଼ି ଚାଲେ ତା'ର ଗାମ୍ଭୀର୍ଯ୍ୟ,
ତା'ର ପରିବାର ଓ ପ୍ରିୟଜନଙ୍କଠୁ
ଯେପରି ଦୂରେଇ ଯାଉଛି ସେ ।

ନବମ ଶ୍ରେଣୀର ଛାତ୍ର ସେ ଯେତେବେଳେ
ସମସ୍ତଙ୍କ ସଂଗେ କଥା କହିବା
ପ୍ରାୟ ବନ୍ଦ କରି ଦେଇଛି ।

ଘରେ ତାକୁ ଡ଼ରୁଛନ୍ତି ସମସ୍ତେ
ସବୁବେଳେ କ'ଣ ବସି
ଭାବୁଛି ତ' ଭାବୁଛି ।

ସେଦିନ ସ୍କୁଲ ଗଲାନି,
ଭିତରୁ ଦ୍ୱାର କିଳି ଘର ଭିତରେ
ଚୁପ୍‌ଚାପ୍ ରହିଲା ସେ ।

ଅନେକ ସମୟରେ ଏମିତି ଘଟେ,
କିଛି ନୂଆ କଥା ନୁହେଁ ।
ମାତ୍ର ଅପରାହ୍ନ ସୁଦ୍ଧା
ଦ୍ୱାର ଖୋଲିଲାନି ଯେବେ
ପରିବାରର ପ୍ରତ୍ୟେକେ
ଆତଙ୍କିତ ହୋଇ ଉଠିଲେ ।

ରୁଦ୍ଧ ଦ୍ୱାରରେ କରାଘାତ କଲେ ବି
ଭିତରୁ ଜବାବ୍ ନାହିଁ ।
ଏ ମୌନତାର ଅର୍ଥ କ'ଣ ?
ତେବେ ?
ଧକ୍କାମାରି କବାଟ ଭଙ୍ଗାଯାଇ
ଘର ଭିତରକୁ ପଶିଯାଇ ଦେଖାଗଲା

ଖଟ ଉପରେ ଚୁପ୍‌ଚାପ୍ ସେ ଶୋଇ ରହିଚି,
ଶୋଇ ଯାଇଛି ଚିରନିଦ୍ରାରେ ।

ବିଛଣା ଉପରେ ପଡ଼ି ରହିଚି
ସ୍ଲିପିଂ ଟାବ୍‌ଲେଟ୍‌ର ଖୋଲା ଶିଶି,
ଖାଲି ।

ଚିଠିଟିଏ ଲେଖି ଯାଇଛି, "ମୋର
'ଅତୀତ' ବୋଲି କିଛି ନଥିଲା,
'ବର୍ତ୍ତମାନ' ବି ନାହିଁ ଏବଂ
'ଭବିଷ୍ୟତ' ଅଂଧକାର,
ତେଣୁ ବିଦାୟ ନେଉଛି ।

ବାପାଙ୍କର ନିଦ୍ରାର ମହୌଷଧି
ଆଜି ମୋ ପାଇଁ
କେତେବଡ଼ ଆଶୀର୍ବାଦ ।"

(୩୨)
ଦ୍ୱାରରେ ଚାପି ହୋଇ ଛଟପଟ ହେଉ ହେଉ
ମରିଗଲା ଝିଟିପିଟିଟି,
ଦରଜାକୁ ଆଉଜାଇ ଆଣିବାକୁ ଯାଇ
ଏ ଦୁର୍ଘଟଣା ।
ମୋ ଜ୍ଞାତସାରରେ ଏହା ଘଟିନି,
ତଥାପି ମନ କାହିଁକି ବୁଝୁନି ?
ମୋର ଉଚିତ ନଥିଲା କି
ବନ୍ଦ କରିବା ଆଗରୁ
ଦରଜା ଉପରେ ଦୃଷ୍ଟି ବୁଲାଇ ନେବା ?

ଏହିପରି ଶୋଚନୀୟ ମୃତ୍ୟୁ ଯଦି
ଘଟିଯା'ନ୍ତା ମୋର କୌଣସି ପ୍ରିୟଜନଙ୍କର

ଟ୍ରକ୍ ଚାପାରେ,
ତେବେ ସଂଗେ ସଂଗେ ଦୋଷୀ ସାବ୍ୟସ୍ତ
କରି ନଥା'ନ୍ତି କି ଟ୍ରକ୍ ଡ୍ରାଇଭରକୁ,
ସେ ନିର୍ଦ୍ଦୋଷ ହୋଇଥିଲେ ବି ?

ନିର୍ବିକାର ଚିତ୍ତରେ ମୁଁ ନିର୍ଦ୍ଦୟ ହୋଇ
ମଶାମାନଙ୍କୁ ମାରିପାରେ,
ପିମ୍ପୁଡ଼ିମଳା ଉପରେ
ଗାମାକ୍ସିନ୍ ପକାଇ ପାରେ ନିଃସଙ୍କୋଚରେ ।

(ଅଥଚ ମଜାର ବ୍ୟାପାର, ପାଣି ଗ୍ଲାସରେ
ପିମ୍ପୁଡ଼ିଟିଏ ପଡ଼ି ଛଟପଟ ହେଉଥିଲେ
ଅହିଂସାର ଅବତାର ହୋଇ
ତାକୁ ସଯତ୍ନେ ବାହାର କରି ଦେଇଥାଏ)

ଏପରି ବିଚିତ୍ର ଜଣେ ମୁଁ
ଝିଟିପିଟିର ମୃତ୍ୟୁ ଲାଗି
ବାଧିତ ହେବା ଓ ଅନୁଶୋଚନା କରିବା
ହାସ୍ୟାସ୍ପଦ ନୁହେଁ କି ।

(୩୩)
ଅନ୍ନ ବିହୁନେ ହଂସ ହାନି
ଯୋଗ ସାଧିବୁ କାହା ଘେନି ।
-ଶ୍ରୀମଦ୍ ଭାଗବତ ।

କଠିନ ଉପବାସ କରି,
କେତେ କ୍ଲେଶ ନ ଦେଉଛ ନିଜକୁ,
ତାଙ୍କର ନିକଟବର୍ତ୍ତୀ ହେଉଚ କି ?
କ୍ରମେ ଦୂରେଇ ଯାଉଛ ତାଙ୍କ ଠାରୁ,
କ୍ଷୁଧାରେ ଛଟପଟ ତମ ଅନ୍ତରର ନାରାୟଣ

ମୁଠେ ଅନ୍ନ ଯେବେ ମାଗେ,
ତମର ଅହଙ୍କାର ଧମକାଇ
କହେ "ନା" ।

ଉପବାସର ଦ୍ୱାହି ଦେଇ
କ୍ଷୁଧାରେ କାତର ତମେ
ଅବିଚଳିତ ରହିବାର ଛଳନା କରୁଛ,
ଏ ପେଖନା ନିଜ ସଂଗେ ନୁହେଁ,
ଈଶ୍ୱରଙ୍କ ସଂଗେ ।

ବାହାନା କରି କେହି ପାଇଲାଣି ତାଙ୍କୁ ?
ଏଇ ଭ୍ରମର ଉପଲବ୍‌ଧିରୁ ହିଁ
ବୁଦ୍ଧଦେବଙ୍କ ବାଣୀ ହେଲା,
'ସକାମ ତାପସବ୍ରତ ସୁ-କଠୋର ହେଲେହେଁ
ଆତ୍ମାର ଶାନ୍ତି ସଂପାଦନ
କରିପାରେ ନାହିଁ ।'
ଅଶାନ୍ତ ଆତ୍ମା ପରମାତ୍ମାଙ୍କୁ
ଲଭିବ କିପରି ?

ଶରୀର ପ୍ରତି ସଜାଗ ରହି
ଅନ୍ତରଙ୍ଗ ସହ ପ୍ରତି ମୁହୂର୍ତ୍ତରେ
ଯୁକ୍ତ ରହିବାରେ ହିଁ
ଉପବାସର ସାର୍ଥକତା ।

(୩୪)
ବୟସର ଅଗ୍ରଗତି ସଂଗେ
ମୋ ଆଖିର ସ୍ୱପ୍ନମାନେ କ୍ରମେ ନିଷ୍ପ୍ରଭ ହୁଅନ୍ତି ।
ଏବେ ସ୍ୱପ୍ନମାନେ ଯଦି କେବେ କେବେ
ଉଙ୍କି ମାରନ୍ତି ମୋ ମନତଳେ,
ମୁଁ ସେମାନଙ୍କୁ ଉପେକ୍ଷା କରିଥାଏ,

କାରଣ ସେମାନଙ୍କ ନଶ୍ୱରତାକୁ
ମୁଁ ଚିହ୍ନି ପାରିଛି ।

ଅଥଚ ସେଇ ସ୍ୱପ୍ନମାନଙ୍କୁ ନେଇ
ଦିନେ ଯେବେ ବଞ୍ଚୁଥିଲି,
ବଞ୍ଚୁଥିଲି ବଞ୍ଚିବା ଭଳି,
ହୃଦୟରେ ସେ କି ପରିପୂର୍ଣ୍ଣ ଆବେଗ,
ଦୃଷ୍ଟିରେ ବର୍ଣ୍ଣିଳ ଇନ୍ଦ୍ରଧନୁ,
ଜୀବନ ମୋର ରସୋଚ୍ଛଳ ଥିଲା ।

ଆଜି ଏ ପରିଣତ ବୟସରେ
ତୀକ୍ଷ୍ଣ ପ୍ରଜ୍ଞା ଓ ଦୀପ୍ତ ବିଚାରରେ
ସେଇ ସ୍ୱପ୍ନମାନଙ୍କୁ ମିଥ୍ୟା ମଣି
ମୁଁ କେତେ ଶୂନ୍ୟ ହୋଇ ଯାଇଛି ।
ମାତ୍ର ସ୍ୱପ୍ନରେ ବିଭୋର ଯେଉଁମାନେ
ସେମାନଙ୍କ ପ୍ରତି ଏତେ ଅସହିଷ୍ଣୁ
ହୋଇ ଉଠୁଛି କାହିଁକି ?

ନିଷ୍ପ୍ରଭ ଦୃଷ୍ଟିରେ ଶୂନ୍ୟ ଆକାଶକୁ ଚାହିଁ
ଆବେଗହୀନା ପକ୍ୱକେଶା ପ୍ରଜ୍ଞାବତୀ
ନାରୀ ଜଣେ ବସି ରହିଛି,
କେତେ ନମସ୍କାର ତା'ଲାଗି,
କେତେ ଖାତିର ତାକୁ,
ଅଥଚ ସ୍ୱପ୍ନମାନଙ୍କୁ ହରାଇ
କେତେ ନିଃସ୍ୱ ସେ,
ମାତ୍ର ଏଇ ନିଷ୍ଠୁର ସତ୍ୟକୁ ନିଜ ମଧ୍ୟରେ
ସନ୍ତର୍ପଣରେ ଗୋପନ ରଖେ,
ଅନ୍ୟମାନଙ୍କ ଆଖିରେ
ନ୍ୟୁନ ନ ହେବାକୁ ।

(୩୫)
ନିର୍ଲିପ୍ତ ହୁଅ,
ନିରପେକ୍ଷ ହୁଅ,
ଅନୁଭବ କରିବ
କୌଣସି ଦୁଃଖ ତମର ନାହିଁ ।

(୩୬)
ଏବେ କେହି ଜଣେ ଆସି ଗପନ୍ତା କି
ଏତେ ବେଶୀ ଏକୁଟିଆ ଲାଗୁଛି ଯେ,
କହିବାର ନୁହେଁ ।
ଶୂନ୍‌ଶାନ୍ ଦି' ପହରେ
ପଡ଼ିଶାଘର କୁକୁରଟା ଭୁକୁଛି,
ମୋତେ ମୋ ଶୂନ୍ୟତାରୁ
କିଛିକ୍ଷଣ ଲାଗି ମୁକ୍ତି ଦେଉଛି ତ ।
ମାତ୍ର ବନ୍ଦ ହୋଇଗଲା ଅକସ୍ମାତ
ସେ ଭୁକିବାଟା ।
ପୁଣି ସେଇ ଖାଁ ଖାଁ,
ପୁଣି ସେଇ ଶୂନ୍ୟତାର ହାହାକାର ।

ମୋର ଅସ୍ୱସ୍ତିକୁ ଠେଲି ଦେଇ
ହଠାତ୍ ଚିର୍‌ଚିରେଇ ଉଠିଲା କେଉଁଠି ଶିଶୁଟିଏ,
ତା'ପରେ ରାହାଧରି କ୍ରମାନ୍ୱୟ କ୍ରନ୍ଦନ ।
ମାତ୍ର ତା' କେତେକ୍ଷଣ ?
ମୁହୂର୍ତ୍ତ କେତେକ ପରେ ମୋତେ
ନିଃସ୍ୱ କରିଦେଇ
ଚୁପ୍ ହୋଇଗଲା ଶିଶୁଟି ।

ଅପ୍ରତ୍ୟାଶିତ ଭାବେ ମାଇକ୍‌ଟେ
କେଉଁଠି ଗର୍ଜି ଉଠନ୍ତାନି,
କୌଣସି ଝଗଡ଼ାର ବିସ୍ଫୋରଣ

ହୁଅନ୍ତାନି ଅକସ୍ମାତ,
ଏବେ କେହି ଜଣେ ଆସି
ଅଯଥା ଗପି
ମୋତେ ହେଲେ ବିରକ୍ତ କରନ୍ତା,
ଅତୀତରେ ମୁଁ ଉପେକ୍ଷା କରିଥିବା
ସେଇ ବିରକ୍ତି କେତେବେଶୀ
ପ୍ରୟୋଜନ ଏବେ ମୋର ।

(୩୭)
ଏପଟୁ ମୁଁ ଯାଉଥିବି
　　　　ସେ ପଟରୁ ଆସୁଥିବ ତମେ,
ଯେଉଁଠାରେ ଦେଖାହେବ,
　　　　ସେଠି ହାତ ମିଳାଇବା ଆମେ,
ମୋତେ କ'ଣ ପଚାରିବ ମୋର
　　　　ଅତୀତର ଅପକୀର୍ତ୍ତିମାନ ?
ପୁଛିବନି କେବେ ମୁଁ ତା' ଜାଣେ
　　　　ମୋତେ କରି ଦୃଢ଼ ଆଲିଙ୍ଗନ
ମୋ କପାଳେ, ମୋ କପୋଳେ
　　　　ଆଙ୍କିଦେବ ଚୁମା,
ଏତେ ବେଶୀ କ୍ଷମାଶୀଳ, ଅନୁରାଗେ ଆର୍ଦ୍ର କିଏ
　　　　ତମପରି ଭୂମା ।

(୩୮)
ପ୍ରଭୋ !
ମୋ ମନତଳେ ତମ ଲାଗି
ଅନେକ କବିତା,
ମାତ୍ର ଯାହା ମୁଁ ପ୍ରକାଶ କରେ
ସେ କବିତା କ'ଣ ତମ ପାଇଁ,
ନା, ମୋର ପ୍ରତିଷ୍ଠା ଲାଗି ?

(୩୯)
ମୋର ଜଣେ ନାରୀ ବନ୍ଧୁ,
ମୋ ଠାରୁ ଶହେଟଙ୍କା ଧାର ନେଇ
କାଲି ଫେରାଇଦେବି କହି
ଦୀର୍ଘ ଛଅମାସ ପରେବି ନ ଫେରାଇବାରୁ
ଦିନେ ସସଂଭ୍ରମେ ମୁହଁ ଖୋଲି
ମାଗିଥିଲି ତାଙ୍କୁ,
ତା'ପରେ ମାଗିଛି ଅନେକଥର ବିନୀତ ଭାବେ,
ମାତ୍ର ଫେରାଇବାର କୌଣସି ଲକ୍ଷଣ ତ
ନାହିଁ ତାଙ୍କର,
ବିଶ୍ୱାସ ବ୍ୟାହତ ହେବା ଯୋଗ
କି ଦାରୁଣ ମାନସିକ ବିପର୍ଯ୍ୟୟ ମୋର !
ଟଙ୍କା ଦେଇ ନ ପାରି ସେ ଲଜ୍ଜିତ ହେବେ କ'ଣ,
ମୁଁ ତାଙ୍କୁ ଦେଖିଦେଲେ ସଙ୍କୋଚରେ
ବାଟ ଭାଙ୍ଗିଯାଏ,
କାଳେ ତାଙ୍କର ମୁହାଁମୁହିଁ ହୋଇଯିବି ।

(୪୦)
ନର୍ଦ୍ଦମାର ପାଣିରୁ ଛାଣି
କ'ଣ ଖୋଜୁଥା'ନ୍ତି ସେମାନେ ?
ଅକସ୍ମାତ ମହାର୍ଘ କିଛି
ମିଳିଯାଏ ଯଦି ।

ମାତ୍ର ସେମିତି କେବେ କିଛି ମିଳେ କି ?
ନିଜର ଚିର ଦାରିଦ୍ର୍ୟ ସହ,
ଏପରି ନିଷ୍ଫଳ ପ୍ରୟାସ କିନ୍ତୁ
ସେମାନଙ୍କର ଅବ୍ୟାହତ ରହେ ।

(୪୧)
ଜଣେ ସଂପାଦକଙ୍କ ଅନୁରୋଧରେ
କବିତାଟିଏ ପଠାଇଥିଲି ତାଙ୍କ ପତ୍ରିକାକୁ,

ତା'ପରେ ଚିଠିଟିଏ ପାଇଲି ତାଙ୍କଠୁ
ପରବର୍ତ୍ତୀ ନିର୍ଦ୍ଦିଷ୍ଟ କେଉଁ ସଂଖ୍ୟାରେ
ତା' ପ୍ରକାଶ ପାଉଛି ।

ଅଥଚ ଗୋଟିଏ ବର୍ଷ ଅତିକ୍ରାନ୍ତ
ହୋଇଯିବା ପରେ ବି
ଲେଖାଟି ପ୍ରକାଶିତ ନ ହେବାରୁ
ସଂପାଦକଙ୍କୁ ଚିଠି ଲେଖିଥିଲି ।
ସେ କିନ୍ତୁ ମୋତେ ଅବାକ୍ କରିଦେଇ
ଉତ୍ତର ଦେଲେ, କୌଣସି କବିତା ତ
ସେ ମୋର ପାଇ ନାହାନ୍ତି !

ତାଙ୍କୁ ଅପ୍ରସ୍ତୁତ କରିଦେବା ଭଳି
ତାଙ୍କ ଚିଠିର ପ୍ରମାଣ ମୋ ପାଖେ
ରହିଥିବା ସତ୍ତ୍ୱେ,
ମୁଁ ନିରୁତ୍ତର ରହିଥିଲି ।

(୪୨)
କିଛି ଲେଖି ପାରୁନି ବୋଲି
ଆକାଶକୁ ଅନାଇଲେ
ଲେଖା କ'ଣ ଆସେ ?
ସେଇ ଶୂନ୍ୟ ମୁହୂର୍ତ୍ତରେ
ବିବଶ ନ ରହି
ଚିନ୍ତାରେ ସକ୍ରିୟ ହୋଇଥିଲେ
ପଳାତକ ସମୟ
ସମ୍ଭବତଃ କିଛି ଦେଇ ପାରିଥା'ନ୍ତା ମୋତେ ।

(୪୩)
ଈଷତ୍ ହାସ୍ୟ, ଦୃଷ୍ଟି ବିନିମୟ ଏବଂ
ସ୍ୱପ୍ନର ସଂବଳରେ

ପ୍ରେମ ପରିପକ୍ୱ ହେଉଥା'ନ୍ତା ଯଦି,
ବହୁ କ୍ଷେତ୍ରରେ ପ୍ରେମ ବିବାହମାନ
ଏତେବେଶୀ ବିଫଳ ହେଉ ନଥା'ନ୍ତା ।

(୪୪)
'ରୁଚିରା'ର ବନ୍ଧୁ ମିସ୍ ଅରୁଣା
ତା' ବନ୍ଧୁର ବିବାହ ଉତ୍ସବରେ
ଯୋଗ ଦେଇ ପାରି ନଥିଲେ ବି
ଦୂରରେ ଥାଇ କେତେ ଖୁସି ହୋଇ ନଥିବ,
ଅଥଚ ରୁଚିରା ହଷ୍ଟେଲକୁ ଫେରିବା ପରେ
ତା' ସୀମନ୍ତରେ ସିନ୍ଦୂର ଦେଖିଦେଇ
ସେ ବିବର୍ଣ୍ଣ ହୋଇଗଲା କାହିଁକି ?

(୪୫)
ପ୍ରତ୍ୟହ ମୁଁ ସକାଳୁ ଉଠି ଭାବେ
ଆଜି ଦିନଟି କେମିତି ଯିବ,
କୌଣସି ପ୍ରକାରେ ଦିନ କଟିଯାଏ
ସକାଳ ସଂଜ ହୁଏ, ରାତି ହୁଏ,
ସେଇ ଗତାନୁଗତିକ ଜୀବନ,
ବୈଶିଷ୍ଟ୍ୟ ଥାଏ କି କିଛି ?
ଅବଶ୍ୟ କେବେ କେବେ
ମନେ ରଖିବା ଭଳି ଦିନଟିଏ ଅତିକ୍ରାନ୍ତ ହୁଏ,
ମାତ୍ର ତା' କ୍ୱଚିତ୍ ।

ଏମିତି ଗୋଟିଏ ଦିନ,
ସକାଳେ ଚାହା କରୁଥିଲି
ହଠାତ୍ ଚମତ୍କାର ଚିନ୍ତାଟିଏ ଆସିଗଲା
କବିତା ଲାଗି,
ଭୁଲିଯିବି କାଳେ,
ଧାଇଁ ଯାଇଥିଲି ମୋର ଷ୍ଟଡ଼ିରୁମ୍‌କୁ,

ମାତ୍ର ମୋ ଟେବୁଲ୍ ଉପରେ
ମୋ କଲମ କାହିଁ ?
ତା' ଖୋଜି ପାଇଲା ବେଳକୁ
ଚିନ୍ତାଟି ଫାଙ୍କିଦେଇ ଚାଲିଯାଇଥିଲା ମୋତେ,
ମନେ ପକାଇବାକୁ ଯେତେ ଚେଷ୍ଟା କଲେବି,
ସେ ଲେଉଟିଲାକି ଆଉ ?

ପଡ଼ିଶା ଘରର "ବୋହୂ" କଲ୍ୟାଣୀ
ସକାଳେ ଯାଇଥିଲା ଡ଼େଲିଭରି ପାଇଁ
ମେଡ଼ିକାଲ୍‌କୁ,
ସନ୍ଧ୍ୟାରେ ଶାଶୂ ଶ୍ରୀମତୀ ଦାସ
ମୋତେ ଆସି କ୍ଷୋଭଭରା କଣ୍ଠରେ
କହିଲେ, "ଫେର୍ ଝିଅ ।"
କଲ୍ୟାଣୀର ତୃତୀୟ ଝିଅ ଏଇଟି,
ତାଙ୍କ ଆଖିରେ ବୋହୂ ପ୍ରତି
ପ୍ରଚ୍ଛନ୍ନ ବିରକ୍ତି ମୁଁ ଲକ୍ଷ୍ୟକଲି,
ଅଥଚ ଶ୍ରୀମତୀ ଦାସ
ପାଞ୍ଚୋଟି କନ୍ୟାର ମାଆ ହେବା ପରେ
ତାଙ୍କର ଷଷ୍ଠ, ଓ ଶେଷ ସନ୍ତାନ
ଥିଲା ଅଜିତ୍, କଲ୍ୟାଣୀର ସ୍ୱାମୀ ।

(୪୬)
ରାଜେନ୍ଦ୍ର ବାବୁ ବାଲ୍‌କୋନୀରେ ବସି
ରାସ୍ତାକୁ ଅନାଇଥିଲେ--
କୋଢ଼ି ସ୍ୱାମୀ ବସିଥିବା ଗାଡ଼ିକୁ
ସ୍ତ୍ରୀ ଲୋକଟି କେମିତି
ଠେଲି ଠେଲି ଚାଲିଛି ।

ରାଜେନ୍ଦ୍ର ବାବୁ ତାଙ୍କ ପାର୍ଶ୍ୱରେ
ଠିଆ ହୋଇଥିବା ପତ୍ନୀ ସୁଲକ୍ଷଣାଙ୍କୁ

ଚାହିଁ ପଚାରିଲେ, "ଏଇ ଦଶା ମୋର ଯଦି ହୁଏ
ଏମିତି ସେବା ପାଇବି କି ତୁମଠୁ ?"

କୌଣସି ଉତ୍ତର ନ ଦେଇ ମୁହଁ ମୋଡ଼ିଦେଇ
ଫେରିପଡ଼ି, ଦୁମ୍ ଦୁମ୍ ହୋଇ ଚାଲିଗଲେ ସୁଲକ୍ଷଣା,
ସୁଲକ୍ଷଣାଙ୍କର ଏ ବିରକ୍ତି ଅବଶ୍ୟ ବିଶ୍ଳେଷଣ ସାପେକ୍ଷ ।

(୪୭)
ଗରମ ଚାହା ହାତରେ ଧରି
ଛିଙ୍କି ଦେଲେ ସୁରେଶ ବାବୁ,
ଚାହା ଚହଲି ପଡ଼ିଗଲା ଟେବୁଲ୍ ଉପରେ,
ହଠାତ୍ ରାଗିଗଲେ ପତ୍ନୀ ପାର୍ବତୀ,
"କେତେ ବେହୁସିଆର ଲୋକ ତମେ !"

ଅଥଚ ଦୁଇଦିନ ତଳେ
ରୋଷଘରେ ହିଟର୍‌ରେ କ୍ଷୀର ବସାଇଦେଇ
ଏ ଘରେ ଆସି ପ୍ରତିବେଶିନୀଙ୍କ ସଂଗେ
ଗପୁଛନ୍ତି ପାର୍ବତୀ,
ଉତୁରିଗଲା କ୍ଷୀର ହିଟର ଉପରେ,
ଉତ୍କଟ ପୋଡ଼ାଗନ୍ଧ,

ବିବ୍ରତ ପାର୍ବତୀ ଧାଇଁଯିବା ବେଳକୁ
ହିଟର ପାଖେ ଠିଆ ହୋଇ ରହିଛନ୍ତି
ସୁରେଶ ବାବୁ, ସହାନୁଭୂତିଭରା ଶାନ୍ତ
କଣ୍ଠସ୍ୱର ତାଙ୍କର, "ବ୍ୟସ୍ତ ହୁଅନି,
ଅଫ୍ କରି ଦେଇଚି ସୁଇଚ୍,
କ୍ଷୀର ସାମାନ୍ୟ ଉତୁରି ପଡ଼ିଛି ।"

(୪୮)
ସ୍ୱାମୀ ଶଙ୍କରାନନ୍ଦ ଧ୍ୟାନରୁ ଉଠିବା ପରେ
ହଠାତ୍ ଅନୁଭବ କଲେ,

ସେ ନିଃସଙ୍ଗତାବୋଧରୁ ଠିକ୍
ମୁକ୍ତି ପାଇ ପାରି ନାହାନ୍ତି,
ଇଚ୍ଛା ହେଉଚି ଶିଷ୍ୟମାନଙ୍କୁ ଡାକି
ଟିକେ ଗପନ୍ତେ,
ସେମାନେ ତାଙ୍କୁ ଘେରିରହି
ସାତ୍ତ୍ୱିକ କୋଳାହଳ କରନ୍ତେ କିଛି,
ମାତ୍ର ସେମାନଙ୍କୁ ଡାକି ପାରୁଛନ୍ତି କି
ସଙ୍କୋଚରେ ?
ଅଦ୍ୱୈତ ଆନନ୍ଦ ପ୍ରାପ୍ତି ପରିବର୍ତ୍ତେ
ମନତଳର ଏତେବଡ଼ ଶୂନ୍ୟତା ପାଖେ
ସେ ହାରିଯାଇଛନ୍ତି ଯେପରି ।

(୪୯)
ନିର୍ବୋଧ ମଣିଷ,
ଆତ୍ମସମର୍ପଣର ମନୋବୃତ୍ତି ନେଇ
ଈଶ୍ୱରଙ୍କ କୃପା ଭିକ୍ଷା କରୁ କରୁ
ଆତ୍ମପ୍ରବଞ୍ଚନାର ଶିକାର ହୋଇ ଯାଇ
ନିଜର ଅହଙ୍କାରର ସ୍ୱରୂପକୁ
ଈଶ୍ୱର ବୋଲିହିଁ ମନେ କରିଥାଏ ।

(୫୦)
କବି ଶେଷଶଯ୍ୟାରେ ଶୋଇରହି
ଅଶ୍ରୁଳ ଆଖିରେ ତାଙ୍କର
ଅନ୍ତିମ ଇଚ୍ଛା ପ୍ରକାଶ କଲେ,
"ମୋର ପ୍ରକାଶିତ ଓ ଅପ୍ରକାଶିତ
ଯେତେ ଲେଖା ମୋ ପାଖେ
ଆଣି ରଖ,
ସେ ସବୁ ଉପରେ ହାତ ରଖି
ମୁଁ ଶେଷନିଶ୍ୱାସ ତ୍ୟାଗ କରିବି ।"

(୫୧)
ମୋତେ ଆଉ ବିଷଣ୍ଣତା ଓ
ନିରାନନ୍ଦର କଥା ଶୁଣାଅନି ବନ୍ଧୁ,
କିଛି ଆନନ୍ଦର କଥା କହ,
ଯେବେ ଦେଖେ ତମକୁ,
ଆଖିରେ ତମର କ୍ଳାନ୍ତି ଓ ଅବସାଦ
ଭରିଥାଏ ।

କଣ୍ଠରେ ତମର ସଦା
ଅପୂର୍ଣ୍ଣତା ଓ ବେଦନାର ବାଣୀ
କୃଷ୍ଣକଥା, ହରିକଥା କିଛି ଶୁଣାଅ ।
ଫୁଲଟିଏ ଫୁଟି ଯେବେ
ହସିବାକୁ ଯାଏ
ତମର ବିଷଣ୍ଣତାର ପ୍ରତିମୂର୍ତ୍ତିକୁ ଦେଖି ଦେଖି
ମ୍ଳାନ ହୋଇଯାଏ ସେ ।

ନଈଟିଏ କୁଳୁ କୁଳୁ ଗୀତ ଗାଇ ଗାଇ
ବହି ଯାଉ ଯାଉ,
ତମର ବିବର୍ଣ୍ଣ ଛବି ଦେଖିଦେଇ
ସ୍ତବ୍ଧ ହୋଇଯାଏ,
ଗୀତ ତା'ର ବନ୍ଦ ହୋଇଯାଏ ଆପେ ଆପେ,
ତମର ନିରାନନ୍ଦରେ ସଭିଙ୍କି
ସଂକ୍ରମିତ କାହିଁକି କରୁଛ ବନ୍ଧୁ ?
ଶିଶୁର ଦରୋଟିର କଥା କିଛି କହ ?

କ୍ରମେ ଶେଷ ହୋଇ ଆସୁଛି ଆୟୁ,
କେତେଦିନ ବା ଆଉ ଏ ଧରଣୀରେ,
ଓଠରେ 'ନାମ', ଓ ଅନ୍ତରରେ
ଅଖଣ୍ଡ ତୃପ୍ତି ନେଇ
ଯଦି ବିଦାୟ ନେଇ ନ ପାରିଲି ଏ ପୃଥିବୀରୁ

ତେବେ ଧରିତ୍ରୀରେ ଏତେ ଦିନର ସ୍ଥିତି ମୋର
ବୃଥା ସିନା !

(୫୨)
ଆମ୍ଭେମାନେ ଫୁଲ ତୋଳିବା ବେଳେ
ଫୁଲର ସୁଗନ୍ଧ ଓ ତା'ର କୋମଳତା ସଂପର୍କରେ
କେବେ ଭାବୁ ?
ଆମ ଭିତରର ଦୁର୍ଗନ୍ଧ ଓ କଠୋରତା
ଅପରିବର୍ତ୍ତିତ ରହେ ।

(୫୩)
ମୁଁ କେବେ ଝୁଣ୍ଟି ପଡ଼ିଲେ
ସତର୍କ ହୋଇଯାଏ ଭବିଷ୍ୟତରେ
ଆଉ ନ ଝୁଣ୍ଟିବି ବୋଲି,
ମାତ୍ର ବାରମ୍ବାର ଝୁଣ୍ଟିଥାଏ,
ମନେହୁଏ ଯେପରି
ଜୀବନର ଶେଷଯାଏ
ଏ ଝୁଣ୍ଟିବାରୁ ଅବ୍ୟାହତି ନାହିଁ ।

(୫୪)
ଆଜି ଟି.ଭି.ରେ ମହାଭାରତ ସିରିୟାଲ
ଶେଷ ହୋଇଯିବା ପରେ,
ମନ ଏତେ ବିଷଣ୍ଣତାରେ ଭରିଗଲା କାହିଁକି ?
ପରବର୍ତ୍ତୀ ରବିବାର ଲାଗି
ଉତ୍କଣ୍ଠିତ ପ୍ରତୀକ୍ଷା ଆଉ ରହିବ କି ?
ଯେଉଁ ଚରିତ୍ରମାନଙ୍କ ସଂଗେ,
ଏ ଯାଏ ନିବିଡ଼ ସଂବନ୍ଧ ଥିଲା ମୋର,
ସେମାନେ ଆଉ ଦିଶିବେନି,
ମାତ୍ର ମୋର ସ୍ମୃତିରେ ଶଙ୍ଖାଳି ହୋଇ
ରହିବେ ସେମାନେ ଭାବଜଗତରେ
ମୋ ସହ ଏକୀଭୂତ ହୋଇ ।

(୫୫)

ରାତିରେ ଶୋଇ
ସକାଳେ ନିଦରୁ ଉଠୁଛି,
ମାତ୍ର ସେ ଦିନ କ୍ରମେ ପାଖେଇ ଆସୁଛି,
ଶୋଇଗଲେ ନିଦ
ଭାଙ୍ଗିବନି ଆଉ ।

(୫୬)

ମୁଁ ଯେ ଦିନେ ସୁନ୍ଦରୀ ଥିଲି
ଏହା ମିଥ୍ୟା ନୁହେଁ,
ମାତ୍ର ମୋର ଏ ପରିଣତ ବୟସରେ ବି
ବୋଉ କହୁଛି, "ତୋ'ପରି ସୁନ୍ଦରୀ
ଆଉ କିଏ ହେବ ?"

(୫୭)

ବିବିଧ ବିପର୍ଯ୍ୟୟ ମଧ୍ୟରେ
ନିଜର ଆନନ୍ଦ ଅକ୍ଷୁଣ୍ଣ ରଖିପାର ଯଦି
ଅବସାଦ ଓ କ୍ଲାନ୍ତିରେ ଅବଶ ହେବ ନାହିଁ କେବେ
ଏବଂ ଅନୁଭବ କରିବ
ଅଗ୍ରଗତି ତମର ଅବ୍ୟାହତ ଅଛି ।

(୫୮)

ଅନୁକୂଳରେ କେହି ଯାଉଥିଲେ,
ନ ଜାଣି ପଛରୁ ତାଙ୍କୁ ଡ଼ାକିଦେଲେ
ସେ ଫେରିପଡ଼ି ଭଦ୍ରାମିର ହସ ଟିକିଏ
ହସି ଦିଅନ୍ତି ସତ,
ମାତ୍ର ସେ ହସର ଅନ୍ତରାଳରେ
ପ୍ରଚ୍ଛନ୍ନ ବିରକ୍ତି ନଥାଏ କି ?

(୫୯)
ଦୁହିତା ବାସର ଘରେ ଯେବେ
ସ୍ୱାମୀ ସୁହାଗରେ ଆତ୍ମବିସ୍ମୃତା,
ସେହି ସମୟରେ ହୁଏତ
କନ୍ୟାର ବ୍ୟବଧାନ ଜନିତ
ଦୁଃଖରେ ମ୍ରିୟମାଣ ମାଆ
ତକିଆ ଭିଜାଇ
ଫୁଲି ଫୁଲି କାନ୍ଦୁଛି ।

(୬୦)
ପ୍ରବଚନ ଶେଷ ହେବା ପରେ
ମଣ୍ଡପରୁ ଓହ୍ଲାଇ ଆସୁଛି
ହଠାତ୍ ଲକ୍ଷ୍ୟ କଲି
ଜଣେ ଭଦ୍ର ମହିଳା ମୋ ଚପଲ ପିନ୍ଧି
ତରତର ହୋଇ ବାହାରି ଯାଉଛନ୍ତି,
ମାତ୍ର ଧାଇଁଯାଇ ତାଙ୍କୁ ଅଟକାଇ
ପଚାରି ପାରିଲିନି ତ !

(୬୧)
ଗାୟକ ଜଣେ ଶ୍ରୋତାଙ୍କଠୁ
ନିଜ କଣ୍ଠର ପ୍ରଶସ୍ତି ଶୁଣି
ହସି ଦେଇ କହିଲେ, "ମୁଁ
କିନ୍ତୁ ଲକ୍ଷ୍ୟ କରିଛି, ଆପଣ ଢୁଳାଉଥିଲେ ।"

(୬୨)
ସତ୍ୟ କହିବାର ମାନସିକ ଦୃଢ଼ତା
ଥରେ ଆସିଗଲେ,
ଅନ୍ୟାୟ କରିବାର ହାତ
ସଙ୍କୁଚିତ ହୋଇଯିବ ଆପେଆପେ ।

(୬୩)
କ୍ରୋଧକୁ ଦାନ୍ତ ଚିପି ସଂବରଣ କରିନିଅ,
ଦେଖିବ, ଅଦ୍ଭୁତ ରୂପାନ୍ତର ହେବ ତମର,
ଆନନ୍ଦର ପ୍ରତିମୂର୍ତ୍ତି ହେବ ତମେ ।

(୬୪)
ମୁଁ ଭଲ କବିତା ଲେଖେ ବୋଲି
ସେମାନେ ମୋର ଅଟୋଗ୍ରାଫ
ନେବାକୁ ଆସିଥିଲେ,
ମୁଁ ତମର ନାମ ଲେଖିଦେଲି ପ୍ରଭୋ !

(୬୫)
କ୍ଲାନ୍ତ ଓ ଅଶାନ୍ତ ମନ ନେଇ
ବାଲ୍‌କୋନିରେ ଠିଆ ହୋଇ
ଅକସ୍ମାତ ଶିଶୁଟିର ସରଳ ହସ
ଦେଖି ଦେଇ ସ୍ତବ୍ଧ ହୋଇଗଲି,
ପର ମୁହୂର୍ତ୍ତରେ ଅନୁଭବ କଲି
ମୋ ମନର ସବୁ ବିଷଣ୍ଣତା
ଅନ୍ତର୍ହିତ ହୋଇ ଯାଇଛି ।

(୬୬)
ମୁଁ ବିନୋଦିନୀ ନନ୍ଦ
ଶାସ୍ତ୍ରୀୟ ସଙ୍ଗୀତ ଗାଏ,
ସେଥିଲାଗି ପାରିଶ୍ରମିକ ବି ନେଇଥାଏ ।

ଗତକାଲି 'ସବୁଜ ସଂସଦ'ରେ
ଗୀତଗାଇ ପାରିଶ୍ରମିକ ଆଣିଛି ସତ,
ମାତ୍ର ଗାଇବାରେ ମୋର ମନଃପୂତ ହୋଇନି,
ତେଣୁ ସେ ଅର୍ଥ ଗ୍ରହଣ କରିବା ଉଚିତ୍ କି !

(୬୭)

ପ୍ରଭୋ !
ତମେ ଯଦି ଧୈର୍ଯ୍ୟ ନ ଦିଅ,
ଧୈର୍ଯ୍ୟ ଧରିବାର ଶକ୍ତି ମୋର କାହିଁ ?
ନିଜର ଧୈର୍ଯ୍ୟ ବୋଲି ଯାହା ଭାବେ,
ସେ ତ ମୋର ଅହଙ୍କାର !

(୬୮)

ପ୍ରତିବେଶିନୀ ଦୀପ୍ତି ରାୟ
ଏତେ ବେଶୀ ଜାତି ଭେଦର ବିଚାର କରନ୍ତି ଯେ
କଲୋନୀରେ ସେଥିପାଇଁ ସେ
ସମାଲୋଚିତ ହୁଅନ୍ତି ।
ଦିନେ ମୁଁ ତାଙ୍କ ସଂପର୍କରେ
ପ୍ରତିକୂଳ ମନ୍ତବ୍ୟ ଦେବାରୁ
ମୋ ପୁଅ ସୁକାନ୍ତ କହିଲା,
"ମା, ମୁଁ ଯଦି ଭିନ୍ନ ଜାତିରେ ବିବାହ କରେ
ତମେ ସୁଖୀ ହେବ ତ ?"
ଶୁଣି ସ୍ତବ୍ଧ ହୋଇଗଲି ମୁଁ ।

(୬୯)

ସବୁବେଳେ ସମସ୍ତଙ୍କୁ ବଡ଼ କରି ଦେଖ,
ଅନୁଭବ କରିବ
ଅନ୍ତରରେ ସଦା ବଡ ହୋଇ ରହିଚ ତମେ ।

(୭୦)

ମୋର ବହୁ ବଡ଼ ଅପରାଧ ପାଇଁ
ଯେଉଁ ଶାସ୍ତି ମୋତେ ମିଳେ,
ତା' ନଗଣ୍ୟ,
ସମ୍ଭବତଃ ମୋ ନିମିତ୍ତ ତାଙ୍କର ଅନିର୍ବଚନୀୟ
ଅନୁରାଗ ହେତୁ,

ଏହି ଲଘୁ ଆଘାତମାନଙ୍କ ମାଧ୍ୟମରେ
ଭବିଷ୍ୟତ ଲାଗି ମୋତେ ସାବଧାନ କରି ଦିଅନ୍ତି ସେ ।

(୭୧)
ବେଳେ ବେଳେ ନିଜର ଅଶାନ୍ତି ଓ
ଅସନ୍ତୋଷ ହେତୁ
ଅନେକ ନିରପରାଧଙ୍କୁ
ଆମର ଅନ୍ୟାୟ କ୍ରୋଧର
ଶିକାର ହେବାକୁ ପଡ଼ିଥାଏ,
ପରେ ସେଥିଲାଗି ଅନୁତପ୍ତ ହେଉକି ଆମେ ?

(୭୨)
ସ୍ୱାମୀଙ୍କର ଅତ୍ୟାଚାର ସହି ନ ପାରି
ତପତୀ ଦେବୀ କେତେ ଦୁଃଖରେ
ଆତ୍ମହତ୍ୟା କରିଥିଲେ
ଆମେ ଜାଣୁ,
ଅଥଚ ତାଙ୍କର କୋଳପୁତ୍ର ପବିତ୍ର
ଏବେ ଯେ ବାଇଶ ବର୍ଷର ଯୁବକ
ତାଚ୍ଛଲ୍ୟ କରେ ମାଆକୁ
"ବେକରେ ଦଉଡ଼ି ଦେବା ବେଳେ
ପିଲାମାନଙ୍କ କଥା ଭାବିଥିଲା କି ?"

(୭୩)
ପୁରୀର ଦରିଦ୍ର ବ୍ରାହ୍ମଣ
ଶିବ ରଥଙ୍କର ଏକମାତ୍ର ପୁତ୍ର 'ଈଶ୍ୱର'
ଆଇ. ଆଏ. ଏସ୍. ପାଇବାପରେ
ଦିଲ୍ଲୀରୁ ପୁରୀ ଫେରି
ଉଠିଥିଲା ହୋଟେଲ 'ସୁଭଦ୍ରା'ରେ
ଅପ୍ରଶସ୍ତ 'ରଥସାହି'ରେ
ନିଜର ନୁଆଁଣିଆ ଚାଳଘରେ

ରହିବାକୁ ଲଜ୍ଜା ଲାଗିଥିଲା ତାକୁ,
ବାତ୍ସଲ୍ୟ ସ୍ନେହରେ ଆର୍ଦ୍ର
ନିରଭିମାନୀ ପିତାଙ୍କ ମନରେ କିନ୍ତୁ
ଏଥିଲାଗି କୌଣସି କ୍ଷୋଭ ନଥିଲା ।

(୭୪)
ଦୀର୍ଘ ଦୁଇବର୍ଷକାଳ
ପକ୍ଷାଘାତ ରୋଗଗ୍ରସ୍ତ ସ୍ୱାମୀଙ୍କ
ସେବା କରି କରି ସାବିତ୍ରୀଙ୍କ ମନ
ଯେତେବେଳେ ତିକ୍ତ ହୋଇ ଯାଇଛି,
ବିରକ୍ତି ଆସି ଯାଇଛି ମନରେ,
"ଏମିତି ଆଉ କେତେ ଦିନ ?
ଭଗବାନ ମୁକ୍ତିଦିଅ ତାଙ୍କୁ ।"

ବିକଳ, ଅଶ୍ରୁଳ ଆଖିରେ ତାଙ୍କୁ
ଅନାଇ ରହିଥିବା ସ୍ୱାମୀଙ୍କୁ
ହଠାତ୍ ଚାହିଁ ଦେଇ
ସଙ୍କୁଚିତ ହୋଇଗଲେ ସେ,
"ପ୍ରଭୋ ! ମୋତେ ଶାସ୍ତି ଦିଅ,
ମୋର କ୍ଳେଦାକ୍ତ ସ୍ୱାର୍ଥପର ଚିନ୍ତା ପାଇଁ
କ୍ଳାନ୍ତ ଓ ଅବସନ୍ନ ନ ହୋଇ
ଅନୁରାଗସିକ୍ତ ମନରେ ତାଙ୍କର ସେବା କରିବାକୁ
ଧୈର୍ଯ୍ୟ ଓ ଶକ୍ତିଦିଅ ମୋତେ ।"

(୭୫)
ବଙ୍କା ରାସ୍ତାରେ ଚାଲୁଚାଲୁ
କ୍ରମେ ସିଧା ରାସ୍ତାର ପରିଚୟ ମିଳେ
ଏବଂ ଚିହ୍ନି ହୁଏ ନିଜ ସ୍ୱରୂପକୁ ।

(୭୬)
ନୀରବ ରହି ଯଦି ଶାନ୍ତି ମିଳୁନି,
ପ୍ରଗଲ୍‌ଭ ହେଲେ ଶାନ୍ତି ପାଇ ପାରିବ କେବେ ?

(୭୭)
ଦମ୍ ଦେବାକୁ ଭୁଲି ଯାଇଥିଲି,
ଘଡ଼ି ବନ୍ଦ ହୋଇଯାଇଛି,
ମାତ୍ର ମୋ ଜୀବନ ଘଡ଼ି ବନ୍ଦ ହୋଇଗଲା ପରେ
ଚାଲିବ କି ଆଉ ?

(୭୮)
ପିଲାଦିନେ ମୋର ଭୂତ ଡ଼ର ଥିଲା,
ମନେହୁଏ ଏ ପରିଣତ ବୟସରେ
ସେ ଭୟ ଆଉ ନାହିଁ,
ମାତ୍ର ଏବେ ରାତିରେ
ଗାଁ ମଶାଣିବାଟ ଦେଇ ଏକା ଯିବାବେଳେ
ଛାତି ଥରି ଉଠେ କାହିଁକି ?

(୭୯)
ରଘୁ ସାହୁର ମୃତ୍ୟୁପରେ
ସମବେଦନା ଜଣାଇବାକୁ ଯାଇଥିଲି
ସାହୁଆଣୀକୁ,
ମୋତେ ଦେଖିଦେଇ
ସେ କାନ୍ଦି ପକାଇ କହିଲା,
"ସେ ଗଲା ତ ଗଲା,
ଦୁଇଶହ ଟଙ୍କାର ଓଷଦ
ସେମିତି ଥୁଆ ହୋଇଚି ।"

(୮୦)
ତମେ ନିଦ୍ରିତ ଥିବାବେଳେ
ତମ ସମୀପରେ ହେଉଥିବା

ତମର ନିନ୍ଦା ଓ ପ୍ରଶଂସା
ଶୁଣି ପାର କି ?
ଜାଗ୍ରତରେ ସେଇ ନିଦ୍ରିତ ଅବସ୍ଥାର ସ୍ଥିତି
ଯଦି ଅକ୍ଷୁଣ୍ଣ ରଖିପାର,
ତେବେ ତ ଚିରଶାନ୍ତ ଓ
ଆନନ୍ଦମୟ ତମେ ।

(୮୧)
ପରିଣତ ବୟସରେ ଆଜି
ଅତୀତର କଥାମାନ କେତେ ମନେପଡ଼େ ।
ଶୈଶବର ସ୍ମୃତି, ବାଲ୍ୟସ୍ମୃତି କୈଶୋର
ଓ ଯୌବନର ସ୍ମୃତି ।

ପ୍ରୌଢ଼ତ୍ୱର ଶେଷ ପର୍ଯ୍ୟାୟରେ ପହଞ୍ଚି
ପଛକୁ ଅନାଇ ଆଖି ମୋର
ଛଳଛଳ ହୁଏ ।

ସମ୍ମୁଖକୁ ଅନାଇ ଦେଖେ
ଜରା ମୋତେ ଡ଼ାକେ ହାତଠାରି,
ତା' ଓଠରେ କୌତୂହଳୀ ହସ,
ସେ ହସର ପଶ୍ନ ହେଲା ସମ୍ଭବତଃ-
ଅତୀତ ଜୀବନ ମୋର କେତେ ଦୂର
ସାର୍ଥକ ଓ ଅର୍ଥପୂର୍ଣ୍ଣ ଥିଲା ।

ସେ ଜୀବନ ସାର୍ଥକ ଥିଲା କି ନାହିଁ
ମୁଁ ବୁଝେନା, ମାତ୍ର ଯେଉଁ ମୂଲ୍ୟବାନ
ଅନୁଭୂତିମାନ ସଂଗ୍ରହ ମୁଁ କଲି,
ସେ ସବୁ କି ନିରର୍ଥକ କେବେ
ସ୍ମୃତି ଚାରଣରେ ଯେ ଆନନ୍ଦ ଅଛି
ତା' ବୁଝାଇ କି ହୁଏ ?

ଅତୀତର ସେ ସମୟ ଫେରିବନି କେବେ,
ମାତ୍ର, ସେଇସବୁ ସମୟର ହସ, କାନ୍ଦ
ଦୁଃଖ, ସୁଖ, ମାନ, ଅଭିମାନ
ଅର୍ଥ ଶୂନ୍ୟ କେବେ ?
ଏବେ ମୋର ମନେପଡ଼େ ବୋଉ ମୋତେ
କାଖେ ନେଇ ଜହ୍ନକୁ ଦେଖାଇ କହେ,
'ଆ, ଆ, ଜହ୍ନମାମୁ ଖସିପଡ଼
ମୋ କାହ୍ନୁ ହାତରେ ।"

ବୋଉ ରାଗିଯାଇ,
କେବେ, ମୋତେ ଯଦି ମାରେ,
ରୁଷ୍ଟ ହୋଇ ବାପା ତେବେ,
ଛଡ଼ାଇ ନିଅନ୍ତି ମୋତେ, ତା' ନିକଟରୁ,
ବାପାଙ୍କର ବୋଉ ଉପରେ ରାଗିଯିବା
ଏବଂ ସେଥିଲାଗି, ବୋଉର ରୁଷିବାର ଅନ୍ତରାଳେ,
ମୋ ପାଇଁକି କେତେ ସ୍ନେହ, କେତେ ଅନୁରାଗ,
ସେ ସ୍ନେହକୁ ମାପି ହୁଏ ?
ହିସାବ କି କରିହୁଏ କେବେ ?

ବାଲ୍ୟ ବୟସରେ, 'ଅନୁପମା' ଅନ୍ତରଙ୍ଗ
ବଂଧୁ ଥିଲା ମୋର,
ସ୍କୁଲରେ ବି ସାଥୀ ଥିଲା,
ମାତ୍ର ବିଚିତ୍ର ତା' ମନସ୍ତତ୍ତ୍ୱ - ମୃତ୍ୟୁ ଭୟ
ସବୁବେଳେ ମନତଳେ ତା'ର
ସଦା ଭୟ ମରିଯିବି କାଳେ,
ଡ଼ରି ଡ଼ରି କହେ ମୋତେ, "ଯମଦୂତମାନେ
ଯଦି ଆସିଯିବେ, ସେମାନଙ୍କ ମୁକାବିଲା
କରିବି କିପରି ?"

ମୃତ୍ୟୁର ଆତଙ୍କେ ସଦା ସଂତ୍ରସ୍ତ ସେ,
ମୃତ୍ୟୁ ଚିନ୍ତା ତା'ର ପ୍ରତି ମୁହୂର୍ତ୍ତରେ ।

ସେଇ ଅନୁପମା, 'ଜେଜେମା' ଏବେ,
ନାତି ନାତୁଣୀଙ୍କୁ ଧରି କୋଳେ,
ଆତଙ୍କିତ ଏବେବି ସେ ମୃତ୍ୟୁର ଭୟରେ ।
ହସି ଦିନେ କହିଲି ମୁଁ ତାକୁ, "ପ୍ରତିକ୍ଷଣେ
ମରୁଛୁ ତୁ ଯେଣୁ, ସମ୍ଭବତଃ ଯମ ତୋତେ
ମରଣରୁ ମୁକ୍ତି ଦେଇପାରେ ।"
ମୋର ପରିହାସ କିଛି ବୁଝିଲା କି ?
ମୃତ୍ୟୁର ଶଙ୍କାରେ ତା'ର ଛଳଛଳ ଆଖି ।

ପରିଣୟ ନେଇ,
ଯେଉଁ ଭଦ୍ରବ୍ୟକ୍ତି ଆସିଥିଲେ ଦେଖିବାକୁ ମୋତେ
ମୋ ଉଦ୍ଦେଶ୍ୟେ ତାଙ୍କ ପ୍ରଶ୍ନ ଥିଲା
'ରାମାୟଣେ, କେଉଁ ଚରିତ୍ରଟି, ଅତି ପ୍ରିୟ ମୋର,'
'ରାମ', ମୋ ଓଠରେ ସଂକ୍ଷିପ୍ତ ଉତ୍ତର ।

'ପତ୍ନୀଙ୍କୁ ସଂଦେହ, ତେଣୁ ଅଗ୍ନିପରୀକ୍ଷା ବି,
ପରିଶେଷେ ଅନ୍ତଃସତ୍ତ୍ୱା ପତ୍ନୀଙ୍କୁ ସେ
ନିର୍ବାସନ ଦେଲେ, ଏ ସବୁ ସତ୍ତ୍ୱେ ବି
ତମର ସେ ପ୍ରିୟ ?' ପ୍ରଶ୍ନରେ ପ୍ରଚ୍ଛନ୍ନ ଶ୍ଳେଷ,
"ତଥାପି ସେ ଚିନ୍ତାମଣି ମୋର"
କ୍ଷୁଦ୍ର ମୋ ଉତ୍ତର ।

ମୋ ନିମିତ୍ତ ପରବର୍ତ୍ତୀ ପ୍ରଶ୍ନ କିଛି ନଥିଲା ତାଙ୍କର,
ପରିଣତି, ସ୍ତ୍ରୀ ହେବାର ସୌଭାଗ୍ୟ ମୁଁ ଲଭିଥିଲି
ସେଇ ସୂକ୍ଷ୍ମଦର୍ଶୀଙ୍କର ।

ସ୍ୱାମୀ ମୋର ଜରାଗ୍ରସ୍ତ ଏବେ, ସେଦିନର ଦୀପ୍ତି କାହିଁ ?
କ୍ଳାନ୍ତି ଆଖିତଳେ ।
ବୟସର ଭାରେ ମୁଁ ବି ଅବସନ୍ନ,
ଅଥଚ କେତେ ନ ନିଘଞ୍ଚ ଆମେ ହୃଦୟ ସ୍ତରରେ ।

ଛାଡ଼ି ଆସିଥିବା ମୋର ଭିନ୍ନ ଭିନ୍ନ ବୟସର
ସ୍ମୃତିମାନେ ଆସି, ବିହ୍ୱଳ କରିନ୍ତି ମୋତେ,
ଅନ୍ୟମନସ୍କ ମୁଁ ହୁଏ,
ଆର୍ଦ୍ର ହୁଏ ଆଖି ମୋର ଆବେଗର ଲୁହେ

(୮୨)

ପ୍ରଭୋ !
ତମେ ଯେବେ ମୋ ଭିତରେ କଥା କହ,
କେତେ ତନ୍ମୟ ତେବେ ଶ୍ରୋତାମାନେ,
ଅଥଚ ମୁଁ ଯେବେ ତମକୁ ଉହ୍ୟ ରଖି
ବାଙ୍ମୟ ହୁଏ
ଶ୍ରୋତାଗଣ ଏତେ ଅନ୍ୟମନସ୍କ କାହିଁକି ?

(୮୩)

ପ୍ରଭୋ !
ତମେ ମୋତେ ପ୍ରତିମୁହୂର୍ତ୍ତରେ ପରୀକ୍ଷା କରୁଛ,
ଏହା କ'ଣ ସତ୍ୟ ?
ପରୀକ୍ଷା କରିବ କାହିଁକି ମୋତେ,
ତମେ ତ ଅନ୍ତର୍ଯ୍ୟାମୀ,
ପ୍ରତି ପଲକରେ ଆଘାତ ଦେଇ ମୋତେ
ପ୍ରସ୍ତୁତ କରୁଛ, ମସୀମୁକ୍ତ କରି
ତୁମର ସମୀପବର୍ତ୍ତୀ କରିବାକୁ ।

(୮୪)

ତମେ ପୂଜା କରୁଥିବା ସମୟରେ
ଅବୋଧ ଶିଶୁଟିଏ ଅଝଟ ହୁଏ ଯଦି
ତମ କୋଳକୁ ଯିବାଲାଗି,
ତେବେ ତମେ ବିରକ୍ତ ହେବ, ନା,
କୋଳେଇ ନେବ ତାକୁ ?

(୮୫)

କେହି ଜଣେ ପ୍ରତିକୂଳ ମନ୍ତବ୍ୟ ଦେଲା,
କ୍ରୋଧରେ ମୁଁ ଜଳିଗଲି,
ଅନ୍ୟକେହି ଜଣେ ପ୍ରଶସ୍ତି ଗାଇଲା ମୋର
ହଠାତ୍ ସ୍ୱର୍ଗ ପାଇଗଲି ହାତରେ,
ନିର୍ବୋଧଙ୍କ ଭଳି ମୋର ଏ ଆଚରଣରେ
କେବେ ମୁଁ ଲଜ୍ଜିତ କି ?

(୮୬)

ମନକୁ ଊର୍ଦ୍ଧ୍ୱକୁ ନେବା ଭଳି
ଅନେକ ସ୍ୱଚ୍ଛକଥା ମୁଁ ଭୁଲିଯାଏ,
ଅଥଚ ମନକୁ କ୍ଲେଦାକ୍ତ କଲାଭଳି
ଅନେକ ଗ୍ଲାନିର କଥା ସାଇତି ରଖେ ମୋ ସ୍ମୃତିରେ ।
ଆତ୍ମସମୀକ୍ଷା କେବେ କରେକି ଏଥିଲାଗି ?

(୮୭)

'ଦୁଇ ଝିଅ ପରେ ଫେର୍ ଝିଅ ।'
ବିବର୍ଣ୍ଣ ହୋଇ ଯାଇଥିଲା ଜଗଦୀଶ-
'ପୃଥିବୀର ଆଲୋକ ସେ ହେଲେ
ଦେଖି ନଥା'ନ୍ତା' !
ଅଥଚ ମାତ୍ର ସାତମାସ ପରେ
ସେଇ ଦୁହିତାର ଆକସ୍ମିକ ମୃତ୍ୟୁରେ
ପିତାର ସେ କି ବୁକୁଫଟା କ୍ରନ୍ଦନ !

(୮୮)

ଆଜି ଯେ ଅଛି,
କାଲି ହୁଏତ ସେ ନାହିଁ,
ରହିଯାଏ ସ୍ମୃତି କେବଳ ।

ମୋର ପ୍ରତିବେଶିନୀ ସୁରବାଳା
ପ୍ରାୟ ଦୁଃଖ କରି କହୁଥିଲେ
ତାଙ୍କ କୋଷ୍ଠୀରେ ବୈଧବ୍ୟ ଅଛି !

ସେ ଦିନ ଦି' ପହରେ
ସେଇ କଥା ବି କହୁଥିଲେ,
ଅଥଚ ଅପରାହ୍ଣରେ
ହଠାତ୍ ହାର୍ଟଆଟାକ୍‌ରେ
ଦେହାନ୍ତ ହୋଇଗଲା ତାଙ୍କର,
ସ୍ୱାମୀ ସେତେବେଳେ ଅଫିସରେ,
ପିଲାମାନେ ସ୍କୁଲରେ ।

ଏବେ ମୋର ମନେହୁଏ
ସେ ଯେପରି ଆସି ମୋତେ କହୁଛନ୍ତି,
'ଏକ ମିଛ ଆଶଙ୍କାରେ
ମୋ ଜୀବନର ପ୍ରତିଟି ମୁହୂର୍ତ୍ତ
ନିରାନନ୍ଦ ଓ ବିଷାଦରେ ବ୍ୟର୍ଥ ହୋଇଚି ।'

(୮୯)
ଆମ ବାଡ଼ିପଟ
ଅଶ୍ୱତ୍ଥ ଗଛର ଛୋଟ ନୀଡ଼ରେ
ମଧୁର କିଚିରି ମିଚିରି ଶୁଣାଯାଉନି ଆଉ,
ସରୀସୃପ ଚଳୁ କରିଦେବା ପରେ ଶାବକମାନଙ୍କୁ,
ବାପ, ମା' ଦୁହେଁ କାନ୍ଦିକାନ୍ଦି
ଉଡ଼ିଯାଇଛନ୍ତି ।

(୯୦)
ଆଜି ଆକାଶରେ ଉଡୁଥିବା ଶଙ୍ଖଚିଲ
କାଲି ଦେଖିବାକୁ ମିଳିବ କି ?

ସେ ଛାତରେ ପାଖାପାଖି ବସିଥିବା ପାରା ଦୁଇଟି
ନଥିବେ ଆଉ,

ଅଥଚ ଏମାନେ ସମସ୍ତେ ରହିବେ
ସ୍ମୃତିରେ ମୋର ଅଧିକ
ଉଜ୍ଜ୍ୱଳ ଓ ଅର୍ଥପୂର୍ଣ୍ଣ ହୋଇ ।

(୯୧)
ଟ୍ରକ ଚାପାରେ ମୋତେ ଛାଡ଼ି ଚାଲିଯାଇଛି
ମୋର ପ୍ରିୟ ଶ୍ୱାନ 'ଟାଇଗର',
ଶୂନ୍ୟ ଚେନ୍‌କୁ ଚାହିଁଲେ ମୋର ମନେ ହେଉଚି
ସେ ସମ୍ଭବତଃ ବାହାରେ ବୁଲୁଛି,
ଫେର୍ ଫେରି ଆସିବ ଯେ !
କେବେ କେବେ ଶୁଣି ପାରୁଛି ତା'ର ଭୁକିବା,
ଭାସି ଆସୁଛି ପବନରେ,
ଲୁହରେ ଅନ୍ଧ ହୋଇ ଯାଉଛି ମୁଁ ।

(୯୨)
ସାରାଦିନ ଚେଷ୍ଟାକରି
କବିତାଟିଏ ଲେଖି ପାରିନି,
କଲମ ଧରି ବସିଛି ତ ବସିଛି,
ଅଥଚ ବିନା ପ୍ରୟାସରେ
ମହାର୍ଘ ଚିନ୍ତାଟିଏ ଆସିଗଲା ଅକସ୍ମାତ,
ଲେଖି ହୋଇଗଲା ଚମତ୍କାର କବିତାଟିଏ,
ତାରାଟିଏ ଖସି ପଡ଼ିଲା କି ଆକାଶରୁ ?

(୯୩)
ଶିଶୁ ଦୁଷ୍ଟ ହେଲେ
ମାଆ ଶାସନ କରୁଛି,
ଅଥଚ ସେଇ ଦୁଷ୍ଟ ଶିଶୁକୁ

ଶାସନ କଲେ ଅନ୍ୟ କେହି,
ବରଦାସ୍ତ କାହିଁକି କରିପାରୁନି ମା' ?

(୯୪)
ମୋ କବିତାର ପ୍ରଥମ ପ୍ରସ୍ତୁତିକୁ
ସାଇତି ରଖିବା ଲାଗି ଏତେ ଆଗ୍ରହ
କାହିଁକି ମୋର ?
ସଂଶୋଧନ ଉତ୍ତାରେ ତ୍ରୁଟିମୁକ୍ତ ହୋଇ
କବିତାଟି ସଂପୂର୍ଣ୍ଣ ହୋଇଯିବା ପରେ
କଟାକଟିରେ ଚିତ୍ର ବିଚିତ୍ର
ମୂଳ ଲେଖାଟିର ପ୍ରୟୋଜନ କ'ଣ ଆଉ ?
ଅଥଚ ଫିଙ୍ଗିଦେଇ ପାରୁନି ତାକୁ,
ପରମ ଆଗ୍ରହରେ ସାଇତି ରଖୁଛି,
କାରଣ ସେ ଯେ ପ୍ରସୂତି ମୋର
ଏଇ ପୂର୍ଣ୍ଣାଙ୍ଗ କବିତାର ।

□□

(୧)
ଅନ୍ୟମାନଙ୍କର ଏକାଧିକ
ଗ୍ଲାନି ସମ୍ପର୍କରେ ମୁଁ ତ ସଂପୂର୍ଣ୍ଣ ଅଜ୍ଞ
ଏବଂ ମୋ ଜୀବନର ବହୁ
ପ୍ରଚ୍ଛନ୍ନ ତିମିର ସମ୍ବନ୍ଧରେ
ଅନେକଙ୍କର କି ଧାରଣା ବା ଅଛି,
ତଥାପି ଆମମାନଙ୍କର
ଅନନ୍ୟୋପାୟ ସହାବସ୍ଥାନ ।

(୨)
ପ୍ରସ୍ତୁତି ପରେ ଧ୍ୟାନସ୍ଥ ହେବା
ସେ ତ ଅଭ୍ୟାସର କଥା,
କୃପା କର ପ୍ରଭୋ !
ଜୀବନର ପ୍ରତିଟି କ୍ଷଣରେ
ତମ ସ୍ମରଣରେ ଯେପରି
ବିହ୍ୱଳ ରହେ ।

(୩)
ଅନ୍ୟର ସ୍ତୁତି ଶୁଣି
ଭଳିଯାଅନି,
ପୁରୁଷକାର ମ୍ଳାନ ହୋଇଯିବ ତମର ।

(୪)
କବିତା ଆବେଗଧର୍ମୀ ନ ହୋଇ
ଯଦି ପ୍ରଜ୍ଞାଧର୍ମୀ ହୁଏ,
ତେବେ ସେ କବିତା, କବିତା ନୁହେଁ ।

(୫)
ହାରିଗଲ ଖେଳରେ,
ସେଥିଲାଗି ଏତେ ମନୋବେଦନା କାହିଁକି ?

ପ୍ରତିପକ୍ଷ ଯେ ଜିତିଛି
ତା' ଖୁସିରେ ଖୁସି ହୁଅ ।

(୬)
'ବଡ଼ଲୋକି' ଭିତରେ
ମୁଁ ରୁଦ୍ଧିହୋଇଯାଏ,
ଅଥଚ ଦୀନ ପରିବେଶ ମଧ୍ୟରେ
ମୋର ନିଃଶ୍ୱାସ ପ୍ରଶ୍ୱାସ
କେତେ ସ୍ୱଚ୍ଛନ୍ଦ ମନେହୁଏ ।

(୭)
ପଥ ଶେଷ ହୋଇଯିବା ସଙ୍ଗେ ସଙ୍ଗେ
ସ୍ତବ୍ଧ ହୋଇ ଠିଆହୋଇଗଲି ମୁଁ,
ପରକ୍ଷଣରେ ଆଚମ୍ବିତେ କିନ୍ତୁ
ଲକ୍ଷ୍ୟ କଲି, ସେଇ ପଥ
ଲମ୍ବିଯାଇଛି ଆଗକୁ, ଆଗକୁ,
ଏବଂ କେହି ଜଣେ
ହାତ ବଢ଼ାଇ ଦେଇଛି ମୋ ଆଡ଼କୁ ।

(୮)
ଶବ୍ଦମାନଙ୍କର କୋଳାହଳରେ
ସଦା ଅତିଷ୍ଠ ମୁଁ,
ବିଜନତାର ପରମ ସଂଗୀତ ଶୁଣିବାର
ସୌଭାଗ୍ୟ ମୋର କାହିଁ ?

(୯)
ଯେ ଅନ୍ତର୍ମୁଖୀ ନୁହେଁ,
ଜୀବନରେ ଅଧିକରୁ ଅଧିକ ଦୁଃଖ
ତା' ପାଇଁ ସଂଚିତ ରହେ ।

(୧୦)
ନିତିନିତି ଶାଶ୍ୱତ ଚିନ୍ତାରେ
ମନ ଯା'ର ଉଜ୍ଜ୍ୱଳ,
ଚିରସବୁଜ ସେ ।

(୧୧)
ମଣିଷ କିଛି ଗୋଟେ ହୋହଲ୍ଲା ଭିତରେ
ବଂଚି ରହିବାକୁ ଚାହେଁ,
ଅଥଚ ଯା'ର ପରିଣତି
ଘୋର କ୍ଳାନ୍ତି ଓ ଅବସାଦକୁ
ଆମନ୍ତ୍ରଣ କରିଥାଏ ।

(୧୨)
ମଣିଷକୁ ଶ୍ରଦ୍ଧା କରି ଶିଖ,
ତମର ଅନେକ ସମସ୍ୟା
ସଂକୁଚିତ ହୋଇଯିବ ।

(୧୩)
ତମର ଯେତେ ବଡ଼ ଶତ୍ରୁ ହେଉ ପଛେ
ତା'ର କୃତିତ୍ୱକୁ ସ୍ୱୀକାରକର ।

(୧୪)
ଘରକୁ ଫୋନ ଆସିବା ପରେ
ଚିଠି ଆସିବା କମିଯାଇଛି,
ମାତ୍ର ପତ୍ର ଅପେକ୍ଷାର ଆନନ୍ଦ ଯେ
ଅନିର୍ବଚନୀୟ !

(୧୫)
ଜୀବନର ପ୍ରତିଟି ମୁହୂର୍ତ୍ତ ଆମର
ଅଭିନୟ କେବଳ ।

(୧୬)
ଅହଂମ୍ମନ୍ୟ ଯେ ପଣ୍ଡିତ
ଅଳୀକ ଅକ୍ଷରମାନଙ୍କ
ପ୍ରୀତିରେ ପ୍ରମତ୍ତ ରହି
ପରମ ଅକ୍ଷରଙ୍କୁ ବିସ୍ମୃତ ହୋଇଥା'ନ୍ତି ।

(୧୭)
ମଣିଷଠୁ ସ୍ନେହ ପାଇବାର
ଆମର ଅଜସ୍ର ପ୍ରଚେଷ୍ଟାର
କାଣିଚାଏ ଯଦି ଥା'ନ୍ତା ଭଗବାନ୍‌ଙ୍କ ପ୍ରତି !

(୧୮)
ଚିନ୍ତାରେ ତାମସିକ,
ଅଥଚ ଓଠରେ ସାତ୍ତ୍ୱିକ
ଭାଗବତ ଓ ଗୀତାର ଆବୃତ୍ତି,
ଆହା ଲୋକଟି କେତେ ଦରିଦ୍ର ସତେ !

(୧୯)
ନିଜ ପ୍ରଶଂସା ଶୁଣିବାର ଅପେକ୍ଷାଠୁ
ଅଧିକ ଦୁଃଖ ଆଉ କିଛି ନାହିଁ ।

(୨୦)
କଥା ଦେଇ ଆସିଲନି ସତ,
ମାତ୍ର ପ୍ରତିକ୍ଷଣର ଉଦ୍‌ବିଗ୍ନ ପ୍ରତୀକ୍ଷାରେ
ତମର ଉପସ୍ଥିତି
ଅତି ନିବିଡ଼ ଥିଲା ମୋ ପାଇଁ ।

(୨୧)
ଭାବଜଗତର ସ୍ଥିତି
ଦୀର୍ଘସ୍ଥାୟୀ ହେଲେ,

ବସ୍ତୁଜଗତର ଦୁଃଖ
ଦୁଃଖ ବୋଲି ମନେହେବନି ।

(୨୨)
ସ୍ଥୁଳକୁ ନେଇ ସଦା
ଏତେ ବ୍ୟସ୍ତ ରହେ ଯେ,
ସୂକ୍ଷ୍ମ ସମ୍ପର୍କରେ ଭାବିବାକୁ
ବେଳ କାହିଁ ?

(୨୩)
ନିର୍ବୋଧ ମୁଁ
ସ୍ୱପ୍ନମାନଙ୍କୁ ବୁଝି ନଥିବା ହେତୁ
ସେମାନଙ୍କୁ ନେଇ ମତ୍ତଥିଲି,
ମାତ୍ର ଏବେ ସେମାନଙ୍କ ସ୍ୱରୂପର
ଉପଲବ୍ଧି ପରେ
ଆକାଶରୁ ଖସିପଡ଼ିଛି ।

(୨୪)
ଯଦି ଭଲପାଇବ
କେବଳ ଭଗବାନ୍‌ଙ୍କୁ ହିଁ ଭଲପାଅ,
କାରଣ ଆକୁଞ୍ଚନ ଓ ପ୍ରସାରଣ ରହିତ
ପ୍ରେମମୟ ସେ ।

(୨୫)
ବନ୍ଧୁ,
ତମେ ସବୁବେଳେ
ଅସ୍ଥିରତାର କଥା କହୁଛ,
କିଛି ପ୍ରଶାନ୍ତିର କଥା କହ,
ଯାହା ମୋ ଜୀବନକୁ କାନ୍ତିମୟ କରିବ ।

(୨୬)
ବୟସର ଭାରରେ
ନଇଁ ପଡ଼ିଛି ସତ,
ଚିନ୍ତାର ଔଜ୍ଜ୍ୱଲ୍ୟରେ
କିନ୍ତୁ ଦୀପ୍ତ ମୁଁ ।

(୨୭)
ବିଶ୍ୱାସ ବ୍ୟାହତ ହେବାଠୁ ବଳି
ବଡ଼ କ୍ଲାସିକ୍ ଆଉ କିଛି ନାହିଁ ।

(୨୮)
ପ୍ରଭୋ !
କେଉଁ ସମୟରେ
କାହା ମାଧ୍ୟମରେ
ଇଚ୍ଛା ତବ ଚରିତାର୍ଥ ହେବ,
ତା' କେବଳ ତମେ ହିଁ ଜାଣ ।

(୨୯)
ପ୍ରତି ମୁହୂର୍ତ୍ତରେ
ମୃତ୍ୟୁର ଅପେକ୍ଷା ରଖ,
ଅତିଥି ସେ,
ହଠାତ୍ କେତେବେଳେ
ଆସି ପହଞ୍ଚିଯିବ ।

(୩୦)
ଲୁହଠୁ ବଳି
ବଡ଼ ପ୍ରଶ୍ନ ଓ ବଡ଼ ଉତ୍ତର
ଆଉ କିଛି ନାହିଁ ।

(୩୧)
ମୋ ସମ୍ପର୍କରେ
ଅନ୍ୟମାନଙ୍କ ପ୍ରଶଂସା ଶୁଣି

ଲଜ୍ଜାରେ ମୁଁ ନତମୁଖ ହୁଏ,
କେତେ ବା ଜାଣନ୍ତି ସେମାନେ
ମୋ ସମ୍ପର୍କରେ ?

(୩୨)
ବିଷୟକୁ କେବେ କ'ଣ ସଜାଡ଼ି ହୁଏ ?
ତାକୁ ସଜାଡ଼ିବାକୁ ଗଲେ ହିଁ
ଅଧିକରୁ ଅଧିକ
ବିଶୃଙ୍ଖଳା ଉପୁଜେ ।

(୩୩)
ପ୍ରତିବେଶୀ ତମର ରୋଗରେ ଶଯ୍ୟାଶାୟୀ,
ଏତେ ବ୍ୟସ୍ତ ଲୋକ ତମେ ଯେ
ବେଳ ନାହିଁ ତମର
ତାଙ୍କ ପାଖେ ଦଣ୍ଡେ ବସିଯିବା ପାଇଁ !

(୩୪)
ଉତ୍ତେଜିତ ମୁହୂର୍ତ୍ତ
ଅତିକ୍ରାନ୍ତ ହୋଇଯିବା ପରେ
ଯେଉଁ ଅବସାଦ ଘୋଟିଯାଏ
ସେଥିରୁ ମୁକ୍ତି କାହିଁ ?

(୩୫)
ଶେଷଦିନ ଯେ
ନିକଟେଇ ଆସୁଛି,
ଏ ସତ୍ୟ ସ୍ୱୀକାର କରିବାକୁ
ଦ୍ୱିଧା କାହିଁକି ?

(୩୬)
ମୋ ଓଠରୁ ଈଶ୍ୱରଙ୍କ କଥା ଶୁଣି
ଶ୍ରୋତାମାନେ କ'ଣ ମନ୍ତ୍ରମୁଗ୍ଧ ?
ଇସ୍, ଅହଙ୍କାର ମୋର ବଢ଼ିଯାଇଛି !

(୩୭)
ଅନ୍ୟକୁ ଠକିବାକୁ ଯାଇ ଯେ
ପ୍ରତି ମୁହୂର୍ତ୍ତରେ ନିଜକୁ ଠକୁଛ,
ଦିନେ ବୁଝିବ ।

(୩୮)
"ସରିଗଲା କି"-
ଆସ୍ୱାଦନ କରୁଥିବା
ଶାଶ୍ୱତ ଆନନ୍ଦ ସମ୍ପର୍କରେ
ଏ ପ୍ରଶ୍ନ କେହି କରେ କି ?

(୩୯)
ଯୁଦ୍ଧ ପରେ ଶାନ୍ତି ଯେ କାମ୍ୟ,
ଯୁଦ୍ଧଖୋରମାନଙ୍କର
ଏ ସଚେତନତା
ଯୁଦ୍ଧ ପୂର୍ବରୁ ନ ଆସେ କାହିଁକି ?

(୪୦)
କେତେ ଅଶାନ୍ତ ତମେ,
ଅନୁନୟ,
ଶାନ୍ତ ପରିବେଶକୁ
ନଷ୍ଟ କରନି ।

(୪୧)
ସ୍ୱପ୍ନଟାକୁ ବିଦାୟ ଦେଇ
ମୁଁ ଆଜି କେତେ
ନିଃସ୍ୱ ହୋଇଯାଇଛି ।

(୪୨)
ନିଜ ମନର ଅଶାନ୍ତିକୁ
ଅନ୍ୟ ଉପରେ ଲଦି ଦେବାର
ଅପଚେଷ୍ଟା ନିନ୍ଦନୀୟ ।

(୪୩)
ବିଷୟ କଥା ଯେତେ
ଗପିଲେ ବି ଶାନ୍ତି କାହିଁ ?

(୪୪)
ଭଗବାନ୍‌ଙ୍କ ପାଖେ
ଆମେ କୃତଜ୍ଞ ନୋହୁଁ ବୋଲି
ଜୀବନରେ ଏତେ ଦୁଃଖ ।

(୪୫)
ମିଥ୍ୟା କହି ତିଷ୍ଠିଲାଣି କେହି ?
ସତ୍ୟବାଦୀ ହୁଅ ।

(୪୬)
ଯେତେ ଶୀଘ୍ର ପାର
ସବୁ ମନୋମାଳିନ୍ୟ ତୁଟାଇନିଅ,
ସାବଧାନ, ସେ ଭୁଲ୍‌ର
ଯେପରି ପୁନରାବୃତ୍ତି ନ ହୁଏ ।

(୪୭)
ତୁଳନାତ୍ମକ ଭାବେ
ଅନ୍ୟମାନଙ୍କର ପାପ
ମୋ ପାପ ସମୀପରେ କେତେ ତୁଚ୍ଛ !

(୪୮)
ଈଶ୍ୱରାଭିମୁଖୀ ହୋଇ ବି
ଅନାସକ୍ତ ନ ହେଲେ
ଦୁଃଖରୁ ପରିତ୍ରାଣ ନାହିଁ ।

(୪୯)
ସବୁ 'ତମେ'
ମୁଁ କେହି ନୁହେଁ ।

(୫୦)
ଯା' କଥାରେ ମିଠା ନାହିଁ,
ମୁହଁରେ ହସ ନାହିଁ ଯାହାର,
ସେପରି ଲୋକର ସାନ୍ନିଧ୍ୟ
ଅଚିରେ ତ୍ୟାଗକର ।

(୫୧)
କେଉଁ ଗୁରୁଠାରୁ ଦୀକ୍ଷା ନେବ-
ମନଠାରୁ ବଡ଼ ଗୁରୁ କିଏ ।

(୫୨)
କାହାରିକୁ ହଇରାଣ କରନି
ହରକତର ସୀମା
ରହିବ ନାହିଁ ତମର ।

(୫୩)
ମୁଁ ଏବେ ସଦା
ସମସ୍ତଙ୍କୁ ଡ଼ରୁଛି କାହିଁକି ?
ଆତ୍ମପ୍ରତ୍ୟୟର ଅଭାବ ହେତୁ !

(୫୪)
ମୃତ୍ୟୁ ପ୍ରତି ତମେ ସଦା
ନିର୍ଭୀକ ହୁଅ,
ଜୀବନର ପ୍ରତି କ୍ଷଣରେ
ସ୍ୱାଗତ କରିବି ତମକୁ ।

(୫୫)
ଆଖି ଅଛି,
ମାତ୍ର ବିଭୁପ୍ରେମାଶ୍ରୁ କାହିଁ ?

(୫୬)
ଅନ୍ୟ ପ୍ରତି ବିଦ୍ୱେଷ
ରହୁଛି ଯଦି
ନିଜକୁ ଘୃଣାକର ।

(୫୭)
ଆଗ ଆପଣାକୁ ଚିହ୍ନ,
ଅନ୍ୟର ପରିଚୟ ପାଇବାକୁ
ଏତେ ବ୍ୟଗ୍ର କାହିଁକି ?

(୫୮)
କାଳ୍ପନିକ ଦୁଃଖରେ ବୁଡ଼ି ରହି
ମୁଁ ମୋ ଜୀବନର
ସବୁ ସରସତା ହରାଇଛି ।

(୫୯)
ପ୍ରାୟତଃ ଲକ୍ଷ୍ୟକରାଯାଏ
ଦୁଇ ପ୍ରାଜ୍ଞ ଈଶ୍ୱର ସମ୍ବନ୍ଧୀୟ
ଆଲୋଚନାରେ ପ୍ରବୃତ୍ତ ହେଲେ
ତର୍କରେ ଦ୍ୱନ୍ଦ୍ୱ ଉପୁଜେ, କାହିଁକି ?

(୬୦)
ରିପୁ ଓ ଇନ୍ଦ୍ରିୟମାନଙ୍କର ବଶବର୍ତ୍ତୀ ରହି,
ଜ୍ଞାନର ଅହମିକାରେ
ପ୍ରବଚନର ବାଗାଡ଼ମ୍ବର
କେତେ ହାସ୍ୟାସ୍ପଦ !

(୬୧)
ସୁବୋଧ ମିଶ୍ର ଏକ ଦୀର୍ଘଶ୍ୱାସରେ
ସ୍ୱଗତୋକ୍ତି କରୁଥିଲେ, 'ବଡ଼ ଦି' ଝିଅ

ମନକୁ ମନ ତ ଭିନ୍ନ କାଷ୍ଠରେ
ବିବାହକଲେ,
ସାନଟି କ'ଣ କରୁଛି କେଜାଣି ?'

(୬୨)
ତରଳ ବସନ୍ତ ବୟସର
ଚପଳ ଭୁଲମାନ ଧର୍ତ୍ତବ୍ୟ କି ?

(୬୩)
ମୋ ସ୍ଖଳନ ଲାଗି ଦାୟୀ ତମେ
ନା,
ତମ ପତନର ହେତୁ ମୁଁ ?

(୬୪)
ତମେ ଲୁଚି ଲୁଚି ପାପ କର
ମାତ୍ର ପାପ ଲୁଚି ରହେନି ।

(୬୫)
ଭାଙ୍ଗିପଡ଼ନି,
ନିଜ ପାଖେ ନିଜେ ହାରିଯିବ ।

(୬୬)
ପ୍ରଭୋ !
ତମ ନିର୍ଦ୍ଦେଶରେ
ଉଚିତ୍ କାମଟି ନିର୍ଦ୍ଦିଷ୍ଟ କ୍ଷଣରେ
ନିର୍ଭୁଲଭାବେ ହେବ,
ଅଥଚ
ଅଯଥା ଉଦ୍‌ବିଗ୍ନ ମୁଁ ।

(୬୭)
ଆପଣାର ଦୁଷ୍ପ୍ରବୃତ୍ତିମାନଙ୍କ ଲାଗି
ନିଜକୁ କେବଳ ଧିକ୍କାର କରି ଲାଭ କ'ଣ
ଯଦି ଅନ୍ତରରେ
ସୂର୍ଯ୍ୟୋଦୟ ନ ହେଲା ?

(୬୮)
ଆପଣା ଘରର ପୂର୍ଣ୍ଣତାକୁ
ନ ବୁଝି ମନ ତଳର ଶୂନ୍ୟତାରୁ ମୁକ୍ତି ପାଇଁ
ଏ ଘର
ସେ ଘର ହେବାରେ କି ଲାଭ ?

(୬୯)
ଯେଉଁମାନେ କଥା କହି ଜାଣନ୍ତିନି,
ଜୀବନର ପ୍ରତି କ୍ଷେତ୍ରରେ
ଅପଦସ୍ଥ ହୁଅନ୍ତି ସେମାନେ ।

(୭୦)
କେତେ ବା ଜାଣ ତମେ
ମୋ ସମ୍ପର୍କରେ,
ଅଥଚ ଅଯଥା ମୋ
ପ୍ରଶଂସାରେ ପଞ୍ଚମୁଖ ।

(୭୧)
ବିଷୟ ଚିନ୍ତାରୁ ମୁକ୍ତ ନ ହେଲେ
ବିଷଣ୍ଣତାରୁ ମୁକ୍ତି ନାହିଁ,
ତେଣୁ ଅଖଣ୍ଡ ଆନନ୍ଦ ସଂଭବ କେବେ ?

(୭୨)
ସପ୍ତାହକ ତଳେ,
ଆମ ଘରକୁ ଦୁଇଦିନ ପାଇଁ
ବୁଲିଆସିଥିବା ଜଣେ ଆତ୍ମୀୟଙ୍କ

ଶିଶୁପୁତ୍ରର କାନ୍ଦିବା ହେତୁ
ପ୍ରତିବେଶୀ ମାନଗୋବିନ୍ଦ ବାବୁଙ୍କର
ସେ କି ବିରକ୍ତି ଓ ଭ୍ରୂକୁଟି !
ଅଥଚ ଏବେ ମାସେ ହେଲା
ସେ କୁକୁରଛୁଆଟେ ଆଣି
ଘରେ ରଖିଛନ୍ତି ଯେ,
ଦିନରାତି ଭୁକିଭୁକି
ଅତିଷ୍ଠ କଲାଣି ଆମକୁ,
ସେ ମହାଶୟ କିନ୍ତୁ ବେଶ୍ ନିର୍ବିକାର ।

(୭୩)
ପ୍ରଭୋ !
ତମ ପାଖେ ମୋ ପାପର
ଏକ ଦୀର୍ଘ ତାଲିକା ରହିଚି,
ମାତ୍ର ମୁଁ ସେଥିଲାଗି
ଆଦୌ ବିଚଳିତ ନୁହେଁ,
କାରଣ ତମେ ନିରପେକ୍ଷ ହେଲେ ବି
କରୁଣାମୟ ।

(୭୪)
ଅନ୍ୟର ଭୁଲ ଦେଖିବାରେ ତ
ବେଶ୍ ପାରଙ୍ଗମ,
ମାତ୍ର ନିଜ ଭୁଲ୍ ନିରୀକ୍ଷଣରେ
ସେତିକି ତତ୍ପର କି ?

(୭୫)
ଜୀବନର ଯେ କୌଣସି ଅଘଟଣ ପାଇଁ
ଆମର ମାନସିକ ପ୍ରସ୍ତୁତି ନ ଥିବାରୁ
'ଅସମୟ'ର ଉପସ୍ଥିତିରେ ଭାଙ୍ଗିପଡୁ ।

(୭୬)
ଶେଷ ନିଃଶ୍ୱାସ ଯିବା ଯାଏ,
ନିଜ ଟ୍ରେଜେରି ଚାବି ଧରିଥିବା
'ଯଦୁବାବୁ'ଙ୍କ ହାତମୁଠା
ଦୃଢ଼ ଥିଲା ।

(୭୭)
ଭାଙ୍ଗିପଡ଼ନି,
ଲାଗିରହ ।

(୭୮)
ଭଗବାନ୍‌ଙ୍କ ପାଖେ
ଚାଲାକି ଚଳିବନି ।

(୭୯)
ଭୌତିକ ପ୍ରୀତି ଲାଗି
ଯେତେ ବ୍ୟାକୁଳତା ଆମର,
ତା'ର କାଣିଚାଏ ହେଲେ ଥା'ନ୍ତା
ବିଭୁପ୍ରେମ ପାଇଁ !

(୮୦)
ପାଇବା, ହରେଇବା ନେଇ ତ
ଏ ଜୀବନ,
ସେଇ ମନ୍ଥନରୁ ଅମୃତ
ଆହରଣ କରୁ କି ?

(୮୧)
ଯେଉଁମାନେ ଆହାରରେ ସଦା ଅତୃପ୍ତ,
ପୂର୍ବଜନ୍ମରେ ଅନ୍ୟର କ୍ଷୁଧାକୁ
ସମ୍ମାନ ଦେଇନାହାନ୍ତି ସେମାନେ,
ତେଣୁ ତ ଅଭିଶପ୍ତ ।

(୮୨)
ଅନ୍ୟ ପ୍ରତି ଅସୂୟାର ଅର୍ଥ
ନିଜ ଶକ୍ତିର ଅପଚୟ ।

(୮୩)
ଉତ୍ତୀର୍ଣ୍ଣ ବୟସରେ ବି
ତମ ଚିନ୍ତାର ଉତ୍ତରଣ ନାହିଁ,
ସେମିତି ଅସ୍ଥିର, ଚପଳ ଓ ଚଞ୍ଚଳ,
ଛିଃ !

(୮୪)
ହଜିଥିଲା, ମିଳିଗଲା,
କେତେ ଖୁସି,
ମାତ୍ର ସେ ଖୁସି କେତେ କ୍ଷଣ ?

(୮୫)
ନିଜକୁ ବଡ଼ ମନେକଲେ ହିଁ
ଛୋଟ ହୋଇଯିବ ।

(୮୬)
ସୁତପା ଦେବୀଙ୍କ ଚିନ୍ତାରେ
'ସେ ସଦା ନିର୍ଭୁଲ',
କଣ୍ଠରେ ଅନ୍ୟର ସମାଲୋଚନା ଅନୁକ୍ଷଣ ।
ଆହା, ଦୟାର ପାତ୍ରୀ ସେ !

(୮୭)
ତମେ ଝୁଣ୍ଟିପଡ଼ିଲେ
କେତେ କଷ୍ଟ ନ ହୁଏ ତମକୁ,
ଅନ୍ୟମାନେ ହସିଦିଅନ୍ତି ଟିକିଏ ।

(୮୮)
ଭଲକଥାଟିଏ
ଉଚ୍ଚାରିତ ହେଲେ ବାରମ୍ବାର,
ମୂଲ୍ୟ ତା'ର
ଅମୂଲ୍ୟ ହୋଇଯାଏ ।

(୮୯)
ମୋତେ ଏବେ ସଦା
ବିଷଣ୍ଣ ଲକ୍ଷ୍ୟକରି
ମୋର ଜଣେ ବନ୍ଧୁ ମନ୍ତବ୍ୟ ଦେଲେ-
"ଜୀବନ ସମ୍ପର୍କରେ
ଅତି ସିରିୟସ୍ ହେବା ପରଠୁ
ନିଜ ମନର ସକଳ ସରସତା
ହଜିଯାଇଛି ଆପଣଙ୍କର ।
ଆଗେ ହାଲୁକା ମନ ନେଇ
ବେଶ୍ ଥିଲେ ।"

(୯୦)
ଶ୍ମଶାନରେ ପାଉଁଶ ହେବା ମୁଠେ,
ତଥାପି ଆମ ଅହମିକା ନ ତୁଟେ ।

(୯୧)
ପ୍ରତି ମୁହୂର୍ତ୍ତରେ ତ ଆମେମାନେ
ମୃତ୍ୟୁକୁ ସଙ୍ଗରେ ନେଇ ଘୂରୁଛେ ।

(୯୨)
କାହାରି ବର୍ତ୍ତମାନର ସ୍ୱଚ୍ଛତାକୁ ଉପେକ୍ଷା କରି
ତା' ଅତୀତର ତ୍ରୁଟିମାନ ଅଣ୍ଡାଳିବାର
ଅପଚେଷ୍ଟା କେବେ କରନି ।

(୯୩)
ଆଦ୍ୟ ସାକ୍ଷାତର ପ୍ରାଥମିକ ଉଦ୍ଦୀପନା
ପରେ ରହେ କି ?

(୯୪)
"ସାରା ରାତି ମୋତେ ନିଦ ନାହିଁ,"
ଜଣକର ଏ ଖେଦୋକ୍ତିର ବ୍ୟଥା
ତମେ ଅନୁଭବ କର କି ?

(୯୫)
ପ୍ରଭୋ !
ତମ ଭଳି ଏତେ ବେଶୀ
ଦାୟିତ୍ୱ ନେବାର
କ୍ଷମତା ଅଛି କାହାର ?

(୯୬)
ଅନ୍ୟର ଖୁସିରେ
ସବୁବେଳେ ଖୁସି ହୁଅ,
ଦେଖିବ, ତମର ଦୁଃଖ ବୋଲି
କିଛି ନାହିଁ ।

(୯୭)
ଅନ୍ୟ ସମ୍ପର୍କରେ ସଦା କୌତୂହଳ
ଜୀବନର ପାଥେୟ ନୁହେଁ,
ଅନ୍ତରାୟ ।

(୯୮)
ଟିକେ ଟିକେ କଥାରେ
ଯେ ବିଚଳିତ,
ସମସ୍ୟା ବହୁଳ ଜୀବନକୁ ନେଇ
କିପରି ବଞ୍ଚିବ ସେ ?

(୯୯)
'ମୋତେ କିଛି ଭଲଲାଗୁନି'-
ଯାହା କଣ୍ଠରେ ସତ୍ୟ ଏଇ କ୍ଷୋଭ,
କେହି କ'ଣ ଶାନ୍ତି ଦେଇପାରିବ ତାକୁ ?

(୧୦୦)
ବିଷୟଠୁ ବଳି
ବଡ଼ ବିଶ୍ୱାସଘାତକ
କେହି ଅଛି ଆଉ ?

(୧୦୧)
ଜୀବନରେ ପ୍ରତ୍ୟେକଙ୍କର
ପ୍ରତ୍ୟେକଙ୍କ ପାଇଁ
କିଛି ନା କିଛି ଅବଦାନ ରହିଛି ।

(୧୦୨)
ଅନ୍ୟମାନଙ୍କର
ମୋର ଚରିତ୍ର ଉପରେ କେତେ ଆସ୍ଥା,
ମାତ୍ର ମୁଁ ସେମାନଙ୍କ ବିଶ୍ୱାସକୁ
ସମ୍ମାନ ଦିଏ କି ?

(୧୦୩)
ଉଚ୍ଚଟ ବିଷୟୀ ଲୋକଙ୍କୁ ଚାହିଁଲେ,
ମୁଁ କାହିଁକି ସଙ୍କୁଚିତ ହୋଇଯାଏ ?

(୧୦୪)
ଈଶ୍ୱରଙ୍କ କଥା ଶୁଣିବାକୁ
ଓ କହିବାକୁ ଯେଉଁମାନେ କୁଣ୍ଠିତ
ସେମାନଙ୍କ ସଙ୍ଗ ତ୍ୟାଗ କର ।

(୧୦୫)
ଜୀବନର ସବୁ କିଛି କ'ଣ
ଶେଷ ହୋଇଯାଏ ମୃତ୍ୟୁରେ ?
ନା, ଜୀବନକୁ ଚିହ୍ନି ଶିଖ ।

(୧୦୬)
ସ୍ୱାର୍ଥ ଶେଷ ହୋଇଯିବା ସଙ୍ଗେ ସଙ୍ଗେ
ଯେଉଁମାନେ ଅତୀତର
ବନ୍ଧୁତ୍ୱର ସମ୍ପର୍କକୁ ବିସ୍ମୃତ ହୁଅନ୍ତି,
ସେମାନଙ୍କ ସମ୍ପର୍କରେ
କ'ଣ ଚିନ୍ତା କରାଯାଇପାରେ ?

(୧୦୭)
ଅନ୍ୟର ପିଲାଟିକୁ
ନିଜ ପିଲାଠାରୁ ଅଧିକ ଦେଖ ।

(୧୦୮)
ନିଜ ପ୍ରଶଂସା ଯେତେ ଶୁଣିଲେ ବି
ମନ ଭରୁନି,
ପୁନଶ୍ଚ ତା' ଶୁଣିବାର
ଉଦ୍‌ଗ୍ରୀବ ଅପେକ୍ଷାରେ ରହୁତ ।

(୧୦୯)
ବୟସର ଅଗ୍ରଗତି ସଙ୍ଗେ ସଙ୍ଗେ
ମୁଁ ମୋର ଭୁଲମାନଙ୍କୁ
ଅଧିକରୁ ଅଧିକ ଉପଲବ୍ଧି କରୁଛି ।

(୧୧୦)
ଜବରଦସ୍ତ ହସର
ନିଜର ବିକୃତ ମୁହଁ

ଥରେ ଦର୍ପଣରେ ନିରେଖିଲେ
ଲଜ୍ଜାରେ ସେଭଳି ପ୍ରୟାସ
ତମେ କରିବନି କେବେ ।

(୧୧୧)
ନିଜର ପ୍ରଶଂସା ଶୁଣୁ ଶୁଣୁ
ତମର ଯେବେ ମନେହେବ
ତମେ ଅତିଷ୍ଠ ହୋଇଉଠୁଛ,
ତେବେ ଜାଣିରଖ,
ଈଶ୍ୱରାଭିମୁଖୀ ଜୀବନ
ଆରମ୍ଭ ହୋଇଯାଇଛି
ତମର ।

(୧୧୨)
ଚୁପ୍ ହୋଇ ବସିଥିବା
ଶାନ୍ତ ସମାହିତ ଲୋକଟିକୁ
ସଦା ପ୍ରଗଲ୍‌ଭ, ଅଶାନ୍ତ, ଅସ୍ଥିର ବ୍ୟକ୍ତିଟି
କଦାପି ସହ୍ୟକରିପାରେନା ।

(୧୧୩)
ନିଜ ଲେଖା ନିଜେ ପଢ଼ି
ବେଳେ ବେଳେ ଅଭିଭୂତ ହୁଏ,
ଚରମ ଆବେଗେ ମୁହିଁ
ଅନ୍ଧ ହୁଏ ଉଚ୍ଛ୍ୱସିତ ଲୁହେ ।

(୧୧୪)
ଏତିକି ପ୍ରାର୍ଥନା ପ୍ରଭୋ !
ପ୍ରତି ମୁହୂର୍ତ୍ତରେ
ମୋର ସଜଳ ଶୂନ୍ୟତାକୁ ପୂର୍ଣ୍ଣକରି
ଅନ୍ତରେ ମୋ ଅଧିଷ୍ଠିତ ରୁହ ।

(୧୧୫)
ଅନ୍ୟମାନଙ୍କର ତ୍ରୁଟି ନିରୀକ୍ଷଣରେ
କେତେ ତୀକ୍ଷ୍ଣ ଦୃଷ୍ଟି ମୋର,
ଅଥଚ ନିଜର ତିମିର ସଂଦର୍ଶନରେ
ଏତେ ସଙ୍କୁଚିତ କାହିଁକି ମୁଁ ?

(୧୧୬)
ଅନ୍ୟର ସ୍ୱାଧୀନତା ଉପରେ
ହସ୍ତକ୍ଷେପ କରିବାଠୁ ବଳି ମହାପାପ
ଆଉ କିଛି ନାହିଁ ।

(୧୧୭)
ନିଜର ଭୁଲ୍ ଅକୁଣ୍ଠିତ ଭାବେ
ସ୍ୱୀକାର କରିବା ଭଳି
ସରଳ ହୃଦୟଟିଏ ଲୋଡ଼େ ପ୍ରଭୋ,
ତମର ଟିକେ ସାନ୍ନିଧ ଲାଭ ଲାଗି ।

(୧୧୮)
ପାପ ପ୍ରତି ଭ୍ରୂକ୍ଷେପ ନାହିଁ ତମର,
ନିୟତି ଭ୍ରୂକ୍ଷେପ କରିବ
କାହିଁକି ତମକୁ ?

(୧୧୯)
ବିଷୟ ଯେ ସଦା ଅସମ୍ପୂର୍ଣ୍ଣ
ତନ୍ମଧରୁ ପୂର୍ଣ୍ଣତା
ପ୍ରତ୍ୟାଶା କରିବା କାହିଁକି ?

(୧୨୦)
କାହା ନିକଟରେ କି କି
ସଦ୍‌ଗୁଣମାନ ଅଛି
ମୋତେ କେବଳ ତାହାହିଁ କହ ।

(୧୨୧)
ନିଜର ତ୍ରୁଟି
ଅନ୍ୟ ତୁଣ୍ଡରେ ଶୁଣି
ଯଦି ଖୁସି ହୁଅ,
ତେବେ ଜାଣିରଖ,
ଚିନ୍ତାର ଉତ୍ତରଣ ହୋଇଚି ତମର ।

(୧୨୨)
ନିଜ ବାର୍ଦ୍ଧକ୍ୟକୁ ଗୋପନ କରିବାକୁ
ଯେଉଁମାନେ ସଦା ପ୍ରୟାସୀ,
ପ୍ରତି ମୁହୂର୍ତ୍ତରେ ଉଦ୍‌ବେଗରେ
କେତେ ଦୁଃଖୀ ସେମାନେ ।
ଅଥଚ ନିଜ ଜରାକୁ
ସରଳ ଭାବେ
ଗ୍ରହଣ କରି ନିଅନ୍ତି ଯେଉଁମାନେ,
ସେମାନେ ନିରୁଦ୍‌ବିଗ୍ନ, ଶାନ୍ତ, ସମାହିତ ।

(୧୨୩)
ଭାବାବେଶ ଚେତନାକୁ
ସଂପ୍ରସାରିତ କରିଥାଏ,
ଆଜି ମୋର ସେଇ ଆବେଗର
ମୃତ୍ୟୁ ଘଟିଥିବାରୁ
ମୋର ଅମୃତମୟ ଚେତନା
ସଙ୍କୁଚିତ ହୋଇଯାଇଛି ।

(୧୨୪)
ସତ୍ୟଜିତ୍ ରାୟଙ୍କୁ ଶେଷନିଃଶ୍ୱାସ
ଯିବାବେଳେ ତାଙ୍କର
ଫିଲ୍ମ ଜଗତର ସର୍ବଶ୍ରେଷ୍ଠ ସମ୍ମାନ
ଯେ ପ୍ରଦାନ କରାଗଲା
ତା'ର ରସାସ୍ୱାଦନ କରିଥିବେ କି ସେ ?

(୧୨୫)
ନିଜ କୁକୁରଟିକୁ ତ
ପୋଷା କୁକୁରର ସ୍ନେହ ଦେଇ
କୋଳରେ ପୂରାଇ ରଖିଛ,
ହତଭାଗ୍ୟ ବୁଲାକୁକୁରମାନଙ୍କ
ସମ୍ପର୍କରେ କେବେ ଚିନ୍ତାକର ?

(୧୨୬)
ପ୍ରଭୋ ! ମୋ ଗୀତର ପୂର୍ଣ୍ଣତା କାହିଁ-
ତମ କଣ୍ଠ ସାମିଲ ନ ହେଲେ !

(୧୨୭)
ଜୀବନରେ ଏତେ ପାଇ ବି
କିଛି ପାଇଲେନି ବୋଲି
ଯେଉଁମାନଙ୍କର କ୍ଷୋଭ,
ପରମ ପ୍ରାପ୍ତିରୁ ସିନା
ବଞ୍ଚିତ ସେମାନେ !

(୧୨୮)
ବାହାରକୁ ଚାହିଁ ଚାହିଁ ତ ବେଳ ଯାଏ,
ନିଜ ଭିତରକୁ ଚାହିଁବାର ସମୟ କାହିଁ ?

(୧୨୯)
ପ୍ରଭୋ !
ତମ ସମ୍ପର୍କରେ କେତେ ଅଧ୍ୟୟନ
କେତେ ତର୍କ ଓ କେତେ ଆଲୋଚନା,
ତଥାପି ମନତଳେ ସେଇ ଶୂନ୍ୟତା ଓ ଶୂନ୍ୟତା,
ପୂର୍ଣ୍ଣତା କାହିଁ ?

(୧୩୦)
ବିଷୟ ଚିନ୍ତାରେ ସଦା ପ୍ରମତ୍ତ ହେଲେ,
ବିକୃତ ହୋଇଯିବ ତମ ଅମୃତ ସତ୍ତା ।

(୧୩୧)
ପ୍ରଭୋ !
ସୀମିତ ଦୃଷ୍ଟିର ଦିଗ୍‌ବଳୟରେ
ତମକୁ କ'ଣ ଦେଖିହୁଏ ?
ସୀମିତ ଚିନ୍ତାର ପରିସର ମଧ୍ୟରେ
ବୁଝିହୁଏ କି ତମକୁ ?
ଅଥଚ ତମକୁ ଦେଖିପାରିନି ଓ
ବୁଝିପାରିନି ବୋଲି ଯେଉଁ କ୍ଷୋଭ ମୋର
ତା' ନିର୍ବୋଧତା ସିନା !

(୧୩୨)
ପ୍ରଭୋ !
ସବୁ ସମସ୍ୟାର ସମାଧାନ ତ ତମେ ।

(୧୩୩)
ଅନୁଭୂତିମୟ ଜୀବନ ତ
ଏକ ଇତିହାସ ।

(୧୩୪)
ମୋ ପାପର ଇତି ନାହିଁ
ଓ ସେଇ ପାପରୁ ଅବ୍ୟାହତି
ପାଇବାର ପ୍ରୟାସ ବି ଅବ୍ୟାହତ,
ଅଥଚ ଏଇ ଦ୍ୱନ୍ଦ୍ୱ ମଧ୍ୟରେ
ମୁଁ କେତେ ନିରୁପାୟ ସତେ ।

(୧୩୫)
ଯା'ର ଉପସ୍ଥିତିରେ
ମଧୁର ପରିବେଶ ପଙ୍କିଳ ହୋଇଯାଏ,
ତାମସିକ ଲୋକ ସେ ।

(୧୩୬)
ମୋର ସକଳ ଶକ୍ତିର
ସଦୁପଯୋଗ ପରେ,
ମୁଁ ଯେତେବେଳେ ଆଉ ପାରେନା,
ତମ ଆଡ଼କୁ ହାତ ବଢ଼ାଇଥାଏ ।

(୧୩୭)
ସବୁ ସତ୍ୟ ତ ପ୍ରକାଶ୍ୟ ନୁହେଁ !

(୧୩୮)
ଶୁଦ୍ଧଚିତ୍ତ ଯେ
ସେ ସକଳ ଅପବିତ୍ରତାର ଅନ୍ତରାଳରେ
ପବିତ୍ରତାକୁ ହିଁ ଦେଖିଥାଏ ।

(୧୩୯)
ଜୀବନର ପ୍ରତି ମୁହୂର୍ତ୍ତରେ
ଯେ କୌଣସି ଆଘାତ ଲାଗି
ପ୍ରସ୍ତୁତ ରହ ।

(୧୪୦)
ଭୁଲ ପରେ ଭୁଲ୍ କରି
ପ୍ରତି ମୁହୂର୍ତ୍ତରେ ନିଜ ପାଖେ
ଆମେ ଧରାପଡୁନୁ କି ?

(୧୪୧)
ନିଜେ ଆଗ ନିଜକୁ ଚିହ୍ନ
ପରେ ଚିହ୍ନିବ ଅନ୍ୟକୁ ।

(୧୪୨)
ବହିର୍ମୁଖୀ ଉଲ୍ଲାସ ଆକାରରୁ ସମ୍ଭୂତ,
ଅନ୍ତର୍ମୁଖୀ ଆନନ୍ଦ କିନ୍ତୁ ନିରାକାର ସହ ସଂଶ୍ଳିଷ୍ଟ,
ତେଣୁ ଅକ୍ଷୟ, ଅବ୍ୟୟ ।

(୧୪୩)
ମୋ ପାପର ତ କଳନା ନାହିଁ,
ମାତ୍ର ତମ କୃପା ସମୀପରେ ସେ ସବୁ ଅତି ତୁଚ୍ଛ ।

(୧୪୪)
ମୁଁ ଅନ୍ୟର ଅନ୍ଧକାରକୁ ଦେଖୁ ଦେଖୁ
ତା'ର ପ୍ରଚ୍ଛନ୍ନ ଆଲୋକକୁ ଦେଖି
ଚମତ୍କୃତ ହୁଏ ଓ
କ୍ରମେ ଅନୁଭବ କରେ
ସେ ତ ଏକ ଦୀପ୍ତ ଆଲୋକବର୍ତ୍ତିକା ।

(୧୪୫)
ଜୀବନ ଓ ମୃତ୍ୟୁକୁ
ସମଦୃଷ୍ଟିରେ ଦେଖିପାରିଲେ
ପରମାନନ୍ଦରେ ଅକ୍ଷୁଣ୍ଣ ରହିପାରିବ ନିଜର ସ୍ଥିତି ।

(୧୪୬)
ବିପଦବେଳେ ହାତ  ଧରାଧରି ହୋଇ ରହ,
ଅତୀତର ସମସ୍ତ ବୈରଭାବ ବିସ୍ମୃତ ହୋଇ ।

(୧୪୭)
ପ୍ରଭୋ !
ତମ କୃପା ବିନୁ ତମକୁ ଭଜିବାର
ସାମର୍ଥ୍ୟ ଅଛି କାହାର ?

(୧୪୮)
ପ୍ରକୃତି ଓ ମଣିଷର ପ୍ରକୋପ
ନୀରବରେ ସହ୍ୟ କରନ୍ତି
ନିରୀହ ଧେନୁଗଣ,
ନେତ୍ରରୁ ନୀରବ ନୀରଧାର କେବଳ,
ସହିଷ୍ଣୁତାର ଅବତାର ସେମାନେ ।

(୧୪୯)
ପ୍ରଭୋ ! ତମେ ପଥଦିଅ,
ହାତ ଧରି ନେଇଯାଅ,
ତମେ ଆଗେ, ପଛେ ପଛେ ମୁଁ ।

(୧୫୦)
ଆରମ୍ଭରୁ ତ ଫଳ ନେଇ
ଉଦ୍‌ବିଗ୍ନ ଏତେ, କ'ଣ କରିବ ଆଗକୁ ?

(୧୫୧)
ଜୟ ବି ମୋର ନୁହେଁ,
ପରାଜୟ ବି ମୋର ନୁହେଁ, ଅଥଚ ସେ ସବୁକୁ ନେଇ
ଅଯଥା ଉଦ୍‌ବେଗ ଓ ମନୋବ୍ୟଥା ମୋର ।

(୧୫୨)
ଭୁଲ୍‌ମାନେ ତ ପ୍ରକୃତ ମିତ୍ର ଆମ୍ଭମାନଙ୍କର,
ସେଇମାନେ ତ ଆମ ଭବିଷ୍ୟତର
ନିର୍ଭୁଲ ପଥର ପ୍ରଦର୍ଶକ ।

(୧୫୩)
ତମ ଚିନ୍ତାରେ ଅନ୍ୟମାନଙ୍କର କେବଳ
ଆଲୋକର ଚିତ୍ର ରହୁ,
ଅଖଣ୍ଡ ଜ୍ୟୋତିଷ୍ମାନ ହେବ ତମେ ।

(୧୫୪)
କେବଳ ଉପରଟାକୁ ଦେଖି
ଚିହ୍ନି ହୁଏ କି କାହାକୁ ?

(୧୫୫)
କୌଣସି ଏକ ନୂତନ ସ୍ଥାନରେ
କ୍ଷଣକାଳର ରହଣି ପରେ
ବିଦାୟ ବେଳାରେ ଉକ୍ତ ସ୍ଥାନ
ପ୍ରତି ଆସକ୍ତି ଅନୁଭୂତ ହୋଇଥାଏ ।

(୧୫୬)
ମୃତ୍ୟୁ କ'ଣ ଏକ ଦୁର୍ଘଟଣା ?

(୧୫୭)
ଜୀବନ ଓ ମୃତ୍ୟୁକୁ
ସମଦୃଷ୍ଟିରେ ଦେଖନ୍ତି ଯେଉଁମାନେ
ସେଇମାନେ ହିଁ ସ୍ଥିତପ୍ରଜ୍ଞ ।

(୧୫୮)
ମୃତ୍ୟୁ ଅବଶ୍ୟମ୍ଭାବୀ ଏହା
ଜାଣି ବି ବଞ୍ଚିରହିବାର ମୋହ କେତେ ପ୍ରବଳ !

(୧୫୯)
ନିଜ କୃତ ଅପକର୍ମ ଲାଗି ନିଜକୁ ଘୃଣା କରନି,
ସତର୍କ ହୁଅ, ସେ ସବୁର ପୁନରାବୃତ୍ତି ଯେପରି ନ ଘଟେ ।

(୧୬୦)
ମୋ ଚିନ୍ତାର କ୍ଲେଦ ହେତୁ
ମୋର ନିରପରାଧ ଜୀବନସାଥୀକୁ
ଅଯଥା ସନ୍ଦେହ କରି
ସାରା ଜୀବନ ଦୁଃଖ ପାଇଛି ।

(୧୬୧)
କାହାରିକୁ କେବେ ସମାଲୋଚନା କରନାହିଁ,
ହୁଏ ତ ତମେ ବି ଦିନେ
ସେଇ ସମାଲେଚନାର ଶରବ୍ୟ ହେବ ।

(୧୬୨)
ତମ ସମଗ୍ର ଜୀବନର ପାପରାଶି
ବୀଭତ୍ସ ରୂପରେ ଆସି ଦେଖାଦେବେ
ଶେଷ ନିଶ୍ୱାସ ଯିବାବେଳେ ।

(୧୬୩)
ଜଣେ ରୋଗ ଯନ୍ତ୍ରଣାରେ କାତର ଓ
ଅନ୍ୟ ଜଣେ ମନର ଅଶାନ୍ତିରେ ପୀଡ଼ିତ,
ବେନିଙ୍କ ମଧ୍ୟରେ
ଅଧିକ ଦୁଃଖୀ କିଏ ?

(୧୬୪)
ହୋହଲ୍ଲାରେ ବଞ୍ଚିବା ଧର୍ମ ଯେଉଁମାନଙ୍କର,
ନୀରବତା ମଧ୍ୟରେ
ଅଣନିଃଶ୍ୱାସୀ ହୋଇଉଠିବେ ସେମାନେ ।

(୧୬୫)
ଅଭିମାନରେ ଦୁହେଁ କଥା ବନ୍ଦକରିଥିଲୁ,
ମୁଁ ଆଗ କଥା କହି କିନ୍ତୁ ଶାନ୍ତି ପାଇଛି ।
ପ୍ରଭୋ !
ପ୍ରବୃତ୍ତିରୁ ନିବୃତ୍ତି ନାହିଁ,
ଅଥଚ ତମ ଆଡ଼େ ହାତ ବଢ଼ାଇଛି
ହାତ ମୋର ଧରିବ ତ ?

(୧୬୬)
ଯା' ହଜିଯାଏ ତା'ମଙ୍ଗଳ ପାଇଁ,
ଯାହା ନ ମିଳେ ତା'ବି ମଙ୍ଗଳ ଲାଗି,
ଅକଲ୍ୟାଣ ବୋଲି କିଛି ନାହିଁ ।

(୧୬୭)
ଉପେକ୍ଷା କରିନି କୌଣସି ପ୍ରାପ୍ତିକୁ,
ଇଷ୍ଟଙ୍କୁ ହରାଇବା ଯେ ।

(୧୬୮)
ସଦା କଲ୍ୟାଣ ଚିନ୍ତାକର ସଭିଙ୍କର,
କଲ୍ୟାଣମୟ ହେବ ଜୀବନ ତା'ର ।

(୧୬୯)
ଯେତେ ଦିନ ମୁଁ ଶୂନ୍ୟ ନ ହୋଇଚି
ହେ ପୂର୍ଣ୍ଣ ! ତମକୁ ଲଭିବି କିପରି ?

(୧୭୦)
ଦିନେ ମୁଁ ଭାବୁଥିଲି
ଅନେକ କହିଜାଣିଛି, ତେଣୁ ପ୍ରଗଲ୍‌ଭ ଥିଲି,
ଏବେ କିନ୍ତୁ ମନେହୁଏ ଜାଣିନି ତ କିଛି,
ତେଣୁ ମୌନ ହୋଇଯାଇଛି ।

(୧୭୧)
ଜଗିରଖି କଥା କହିବାଟା,
ଚାଲାଖି ଯଦି, ସରଳ ଭାବେ କଥା କହିବାଟା,
କ'ଣ ବୋକାମି ?

(୧୭୨)
ପ୍ରତି ମୁହୂର୍ତ୍ତରେ ନିଜ ଭୁଲ
ସ୍ୱୀକାର କରିବାଠୁଁ ବଳି
ବଡ଼ ତପସ୍ୟା ଆଉ କିଛି ନାହିଁ !

(୧୭୩)
ଜୀବନରେ କିଛି ହଜିବନି, ସେ ହଜିବା ଦୁଃଖରେ
ତମେ ଆକ୍ରାନ୍ତ ହେବନି, ସେ ପୁଣି କି ଜୀବନ ?

(୧୭୪)
ବୁଦ୍ଧିମାନ ଲୋକଟି କେତେ ଦୂରର ମନେହୁଏ,
ଅଥଚ ପ୍ରେମାର୍ଦ୍ର ମଣିଷଟି ମନେହୁଏ କେତେ ଆପଣାର !

(୧୭୫)
ନିଜ ଭୁଲ ବୁଝିପାରିବାଠୁଁ ବଳି
ବଡ଼ ସୌଭାଗ୍ୟ ଆଉ କ'ଣ ଅଛି ?

(୧୭୬)
ସରଳ ଭାବେ କାନ୍ଦିପାରିବ ଯଦି,
ଅନୁଭବ କରିବ,
ସାରା ବିଶ୍ୱ କେତେ ଆନନ୍ଦମୟ ।

(୧୭୭)
ସେ ଏକ ସମୟ ଥିଲା,
ନାଚି କୁଦି ସମୟ ବେଶ୍ କଟିଯାଉଥିଲା,
ଏବେ ଜରାରେ ଜଡ଼ ହୋଇଯାଇଛନ୍ତି
ଦେହ ଓ ମନ ଉଭୟେ ।

(୧୭୮)
ଅନ୍ୟର ଚରିତ୍ର ସଂହାର କରିବାର
ଅପଚେଷ୍ଟାରୁ ସଦା ନିବୃତ୍ତ ରହ ।

(୧୭୯)
ଭଗବାନଙ୍କୁ ଡ଼ାକିଲା ଭଳି ଡ଼ାକ,
ସେ ନ ଶୁଣିବେ କାହିଁକି ?

(୧୮୦)
ପ୍ରକୃତ ପରିସ୍ଥିତି ବିଚାର ନ କରି
ବନ୍ଧନାରେ ଆଗେଇଗଲେ ଦୁଃଖ ପାଇବ ।

(୧୮୧)
ଛାଇରେ ବସିଥିବା ଲୋକଟି
ଖରାରେ ସିଝୁଥିବା ଲୋକଟିର
ଦୁଃଖ କେତେଦୂର ବୁଝେ ?
ହୁଏତ ପଦେ 'ଆହା' କେବଳ ।

(୧୮୨)
ନିଜ ସଦାଚରଣରେ ସଦା ସଭିଙ୍କର
ସଦିଚ୍ଛା ଆହରଣ କର ।

(୧୮୩)
ଯା' ଚିନ୍ତାରେ ସଦା ଅଳନ୍ଧୁ,
ତୁଣ୍ଡରେ ଯା'ର ସଦା ଗ୍ଲାନିରକଥା,
ଅଚିରେ ତା' ସଙ୍ଗ ତ୍ୟାଗକର ।

(୧୮୪)
ସ୍ୱପ୍ନରେ ସୁଦ୍ଧା କାହାରି
ଅକଲ୍ୟାଣ ଚିନ୍ତା କରନି,
ତମର ବିଭୁ ଚିନ୍ତନ ବ୍ୟାହତ ହେବ ।

(୧୮୫)
ଯେ କୌଣସି ପ୍ରତିକୂଳ ପରିସ୍ଥିତିରେ
ନିଜକୁ ପ୍ରକୃତିସ୍ଥ ରଖିବାହିଁ
ତପସ୍ୟା ।

(୧୮୬)
ସଂଶୟ ଓ ଅବିଶ୍ୱାସର ଊର୍ଦ୍ଧ୍ୱରେ ଯେଉଁ ପ୍ରେମର ସ୍ଥିତି,
ସେ ପ୍ରେମ କେବେ ମ୍ଳାନ ହୁଏନା ।

(୧୮୭)
ସ୍ୱତଃସ୍ଫୂର୍ତ୍ତ କବିତା ଓ ପ୍ରୟାସ ସଂଭୂତ କବିତା
ମଧ୍ୟରେ ଫରକ୍‌ଟା ଠିକ୍ ବାରିହୋଇଯାଏ ।

(୧୮୮)
ଆନନ୍ଦ କାହିଁ ? ନିରାନନ୍ଦ କ'ଣ ?
ମନ ତଳର ଏଇ ଆଲୋଡ଼ନରୁ ହିଁ
ସଚ୍ଚିଦାନନ୍ଦଙ୍କର ସାକ୍ଷାତ ମିଳେ ।

(୧୮୯)
କଷ୍ଟକୁ କଷ୍ଟ ନ ମଣି
କୃଷ୍ଣ ହିଁ ଭାବ ।

(୧୯୦)
ନିଜକୁ ଅଧିକରୁ ଅଧିକ
ବିଜ୍ଞାପିତ କରିବାର ଅନ୍ଧପ୍ରୟାସ ହେତୁ
ଅନୁଭବ କରିବ,
ତମେ କ୍ରମେ ନିଃଶେଷ ହୋଇଯାଉଛ ।

(୧୯୧)
କବି ମୃତ୍ୟୁ ସମ୍ପର୍କରେ ଅନେକ
ମନୋଜ୍ଞ କବିତା ରଚିଛନ୍ତି ।
ମାତ୍ର ଜୀବନର ଅନ୍ତିମ କ୍ଷଣରେ
ଗୋଟିଏ ହେଲେ ସ୍ମରିପାରିବେ କି ?

(୧୯୨)
ମୋର ସବୁ ଅବାନ୍ତର ଯୁକ୍ତିକୁ
ଆଡ଼େଇ ଦେଇ ନିର୍ଭୁଲ୍ ରାସ୍ତାଟି
ମୋତେ ଦେଖାଇଦିଅ ପ୍ରଭୋ !

(୧୯୩)
ହରିକୀର୍ତ୍ତନ ଯେ ଯେଉଁ ଭାବେ
କରୁଥାଉ ନା କାହିଁକି
'ନାମ' ଶ୍ରବଣର ସୌଭାଗ୍ୟ ତ ମିଳେ !

(୧୯୪)
ଏକା ଏକା ଲାଗୁଛି ?
ସଙ୍ଗ ମେଳରେ ନିଃସଙ୍ଗତାରୁ ମୁକ୍ତି ମିଳିବ କି ?

(୧୯୫)
ନିଜ ଅହଙ୍କାରକୁ ଉପଲବ୍ଧି କରି
ଅଚିରେ ଆପଣାକୁ
ସଂଶୋଧନ କରିବାରେ ହିଁ ପରମ ପ୍ରାପ୍ତି ସୁଗମ ହୁଏ ।

(୧୯୬)
ମିଛ ଆନନ୍ଦ କ୍ରମେ କ୍ଷୀଣ ହୋଇଯାଉଛି
ଏବଂ ମୁଁ କେତେ ନିଃସହାୟ ହୋଇପଡୁଛି ।

(୧୯୭)
ସବୁବେଳେ ଜୟ କାମନା କରୁଛ,
ପରାଜୟଜନିତ ଦୁଃଖର ସ୍ୱାଦରୁ
ବଞ୍ଚିତ ହେବ ସିନା !

(୧୯୮)
ମନକୁ ସୁନ୍ଦର ଚିନ୍ତାଟିଏ ଆସିବା ମାତ୍ରେ ଟିପିରଖେ,
ଅବହେଳାରୁ ଯା' ଟିପି ରଖିନପାରେ
ତମ ପାଖେ ତା' ସାଇତା ଥାଏ ପ୍ରଭୋ,
କେବେ କେବେ ସ୍ମରଣ କରାଇଦିଅ ।

(୧୯୯)
ଦେହଳୀ ପାଖେ ଅଟକିଗଲେ ତ ଚଳିବନି,
ଦେହଳୀ ଡ଼େଇଁ ଅଭ୍ୟନ୍ତରକୁ ଯିବାକୁ ପଡ଼ିବ ।

(୨୦୦)
ଜୟ ପରାଜୟ, ହସ କାନ୍ଦ ଏବଂ
ମାନ ଅପମାନର ଊର୍ଦ୍ଧ୍ୱରେ
ଯେଉଁ ଆଲୋକର ସାମ୍ରାଜ୍ୟଟି ଅଛି,
ତା'ର ସମ୍ରାଟ ହେବ କେବେ ?

(୨୦୧)
ଜ୍ଞାନର କଥା ଶୁଣି ଶୁଣି ମୁଁ କ୍ରମେ ନିର୍ବୋଧ ହୋଇଯାଉଛି,
କିଛି 'ଭାବ'ର କଥା କହି ମୋତେ ପ୍ରେମାର୍ଦ୍ର କର ।

(୨୦୨)
ପୁସ୍ତକକୀଟ ହୋଇ 'ଭାବ'ର ଅଭାବରେ
ପରମ-ପ୍ରିୟଙ୍କୁ ହରାଉଛି କ୍ରମେ,
ଦୂରରେ ଠିଆହୋଇ ସେ ମୃଦୁ ମୃଦୁ ହସୁଛନ୍ତି ।

(୨୦୩)
ତମେ ଯେତେ ଚାଲାକ ହେଲେ ବି
ଭଗବାନଙ୍କ ପାଖେ ଚାଲାକି ଚଳିବନି ।

(୨୦୪)
ଠିକ୍ ଅଭିମାନ କରି ପାରିବ ଯଦି
ଦେଖିବା, କେମିତି ସେ
ନ ଆସିବେ ତମ ପାଖକୁ !

(୨୦୫)
ବିବାହ ପୂର୍ବରୁ ପ୍ରେମାନୁରାଗ
ଓ ପରିଣୟ ପରର
ଦାମ୍ପତ୍ୟ ଜୀବନର
କଠୋର ବାସ୍ତବତା ମଧ୍ୟରେ
କେତେ ଫରକ ସତେ !

(୨୦୬)
ମୋ ମନର ଅଜସ୍ର ବିଶୃଙ୍ଖଳା ସତ୍ତ୍ୱେ
ତମେ କେବେ କେବେ
ମୋ ମନ ଭିତରକୁ ପଶି ଆସି
ମୋତେ ଶାନ୍ତ କରିଦିଅ,
କେତେ କୃପା ତମର ପ୍ରଭୋ !

(୨୦୭)
ଜୀବନ, ମରଣ କେତେ ପାଖାପାଖି,
କେତେ ସୌହାର୍ଦ୍ଦ୍ୟ ବେନିଙ୍କ ମଧ୍ୟରେ ।

(୨୦୮)
ଦାନର ପ୍ରତିଦାନ ଅପେକ୍ଷା
ରଖିଲେ ହିଁ ଦୁଃଖ ଅବଶ୍ୟମ୍ଭାବୀ ।

(୨୦୯)
'ଅସମ୍ପୂର୍ଣ୍ଣ' ପ୍ରତି ଆସକ୍ତିରୁ
ଈଶ୍ୱରାନୁରାଗର ସ୍ଫୁରଣ
ସମ୍ଭବ କେବେ ?

(୨୧୦)
ନିଜର ଭୁଲ ସ୍ୱୀକାର କରିବାରେ
ପରାଭବ ନାହିଁ,
ଏକ ବିଶୁଦ୍ଧ ଜୀବନର ଅଯମାରମ୍ଭ ।

(୨୧୧)
ମୋତେ କେହି ନମସ୍କାର କଲେ
ମୋର ମନେହୁଏ, ସେ ଈଶ୍ୱରଙ୍କୁ
ପ୍ରଣାମ କରୁଛନ୍ତି,
ମୁଁ ନିମିତ୍ତ ମାତ୍ର ।

(୨୧୨)
ତମ ସୁପାରିଶଠୁ ବଳି ବଡ଼ ସୁପାରିଶ
ଆଉ କ'ଣ ଅଛି ପ୍ରଭୋ !

(୨୧୩)
ଆମେ ନିଜ ପାପ ଲାଗି ରୋଗ ଭୋଗୁ,
ମାତ୍ର ମହାତ୍ମାମାନେ
ଜୀବ ଉଦ୍ଧାର ଲାଗି
ଅନ୍ୟର ପାପର ଫଳ
ନିଜ ଦେହରେ ଭୋଗନ୍ତି ।

(୨୧୪)
ଅଜସ୍ର ପ୍ରଯତ୍ନ ସତ୍ତ୍ୱେ
ବାର୍ଦ୍ଧକ୍ୟକୁ ଏଡ଼ାଇ ଦେଇ ହେବ କି ?

(୨୧୫)
ଆମେ ଦୁହେଁ ବୟସ ବେଳେ
କେତେ ରୋମାଣ୍ଟିକ୍ ନ ଥିଲୁ,
ଅଥଚ ଆଜି ଜୀବନ ସାୟାହ୍ନରେ
ପରସ୍ପରକୁ ନିଷ୍କ୍ରଭ ଦୃଷ୍ଟିରେ
ଅନାଇରହିଛୁ ।

(୨୧୬)
ମୁଁ ଅନ୍ୟକୁ ଦୋଷୀ କହିବା ଆଗରୁ,
ନିଜକୁ ନିରୀକ୍ଷଣ କରି
ଚୁପ୍ ହୋଇଯାଏ ।

(୨୧୭)
ହାର୍‌ଜିତ୍ ନେଇ ସଦା ଉଦ୍‌ବିଗ୍ନ ଯେ
ସେ ଆଗେଇବ କେମିତି ?

(୨୧୮)
ଉତ୍ତେଜିତ ମୁହୂର୍ତ୍ତମାନଙ୍କୁ
ଆମନ୍ତ୍ରଣ କରୁଛ,
ଦୁଃଖ ଅବଶ୍ୟମ୍ଭାବୀ ।

(୨୧୯)
ଅନ୍ୟର 'ଅସମୟ'କୁ
ନିଜର 'ଅସମୟ' ବୋଲି ମନେକର ।

(୨୨୦)
ନଗଣ୍ୟ କାହାକୁ ମଣନି,
ନ୍ୟୂନ ହୋଇଯିବ ନିଜେ ।

(୨୨୧)
ପ୍ରତିଷ୍ଠା ଆଶାୟୀ ଯେଉଁମାନେ,
ଈଶ୍ୱରଙ୍କ ପ୍ରତି ସେମାନଙ୍କର
ନିଷ୍ଠା ଆସିବ କିପରି ?

(୨୨୨)
ଯେଉଁ ଶିକ୍ଷା
ନିଃସଙ୍ଗତାବୋଧରୁ ମୁକ୍ତି ଦେଇ
ପରମାର୍ଥରେ ପହଞ୍ଚାଇଦିଏ,
ତାହା ହିଁ ବିଦ୍ୟା ।

(୨୨୩)
ସମସ୍ତଙ୍କ କଥା ଶୁଣ ଓ ମନେରଖ,
ତା'ର ନିର୍ଯ୍ୟାସ ତମର
ଅଗ୍ରଗତିରେ ସହାୟକ ହେବ ।

(୨୨୪)
ସକଳ ଐଶ୍ୱର୍ଯ୍ୟ, ଅଖଣ୍ଡ ସମ୍ମାନ
ଏବଂ ଚରମ ପ୍ରତିଷ୍ଠାର ପ୍ରାପ୍ତି ପରେ
ମିଳିବାକୁ ଯାହା ଆଉ ବାକି ରହିଯାଏ,
ତା' ହେଲା ନିଃସଙ୍ଗତାବୋଧ ଜନିତ
ଅଶେଷ ଶୂନ୍ୟତା ।

(୨୨୫)
ନିଜର ଦାରିଦ୍ର୍ୟ ମଧ୍ୟରେ
ମନରେ ସଦା ଧନୀ ହୋଇ ରହ ।

(୨୨୬)
ମିଛ ସୁଖକୁ ସ୍ଥାୟୀ ସୁଖ ମଣି
ମନକୁ ଭୁଲାଇବାକୁ
ଆମେ ଚେଷ୍ଟାକରିଥାଉ,
ମାତ୍ର ତା' କେତେ କ୍ଷଣ ?

(୨୨୭)
ବୟସର ଅଗ୍ରଗତି ସଙ୍ଗେ ସଙ୍ଗେ
ମୁଁ କ୍ରମେ ନିଷ୍ପ୍ରଭ ହୋଇଯାଉଛି,
ମୋ ଅତୀତର ଔଜ୍ଜ୍ୱଲ୍ୟ
ଏବେ ସ୍ମୃତି କେବଳ ।

(୨୨୮)
ଦେଖେଇହୁଅନି, ଦେଖାଇବାର
କ'ଣ ଅଛି ତମର ?

(୨୨୯)
ସମଦର୍ଶୀ ଯେ ସେ ସ୍ୱୟଂଭୂ ।

(୨୩୦)
ପୂର୍ବରୁ ସତର୍କ ନହେଲେ,
ସବୁ କିଛି ଥରେ ବିପର୍ଯ୍ୟସ୍ତ
ହୋଇଯିବା ପରେ,
ସଜାଡ଼ିବା କେତେ ଦୁରୂହ

(୨୩୧)
ପ୍ରଭୋ !
ଚିନ୍ତା ଜଗତରେ ପ୍ରତି ମୁହୂର୍ତ୍ତରେ
ତମ ସହ ନିଘଞ୍ଚ ହୋଇ ରହିଲେ ଦୁଃଖ କାହିଁ ?

(୨୩୨)
ଅବୋଧ ଶିଶୁ ଭଳି
ପ୍ରାଜ୍ଞମାନେ ଯଦି ଅବୁଝା ହୁଅନ୍ତି,
ସେମାନଙ୍କୁ ବୁଝାଇବ କିଏ ?

(୨୩୩)
କୌଣସି ସମସ୍ୟାରେ
ବିବ୍ରତ ହୋଇପଡ଼ନି,
କାରଣ ପ୍ରତି ସମସ୍ୟାର
ସମାଧାନ ଅଛି ।

(୨୩୪)
ଏପରି କେତେକ ଲୋକ ଅଛନ୍ତି,
ଯେଉଁମାନେ କଥା କହି ଜାଣନ୍ତିନି,
ସଂସ୍କାର ନାହିଁ ସେମାନଙ୍କର ।

(୨୩୫)
ଖୋଲା ଆଖିରେ ଯାହା ପାଏନା,
ଆଖି ମୁଦିଦେଲେ
ଅକ୍ଲେଶରେ ତାହା ମିଳିଯାଏ ।

(୨୩୬)
ଆବେଗରେ ହୃଦୟର
ଆର୍ଦ୍ରତା ହେତୁ,
ଦୃଷ୍ଟିର ଭ୍ରମ ନ ଉପୁଜୁଥିଲେ
'କଳା' ଏତେ କମନୀୟ ହେଉନଥା'ନ୍ତା ।

(୨୩୭)

ବିଷୟକୁ ଆମେ ଜାବୋଡ଼ି ଧରିଛୁ ?
ନା, ବିଷୟ ଜାବୋଡ଼ି ଧରିଛି ଆମକୁ ?

(୨୩୮)

ପ୍ରିୟତମ !
ପ୍ରଶଂସା ଓ ସମ୍ମାନରେ
ଦୃଷ୍ଟି ମୋର ଆଚ୍ଛନ୍ନ କରି
ମୋ'ଠୁ ଖସି ପଳାଇଯିବ ବୋଲି ବସିଛ,
ଏତେ ଚାଲାକ ତମେ,
ସବୁ ତୁଚ୍ଛକୁ ଅନାୟାସରେ ଫିଙ୍ଗିଦେଇ
ତମ ବାଟ ଓଗାଳି ଠିକ୍ ଠିଆହୋଇଯିବି ମୁଁ ।

(୨୩୯)

ନିଜ ସଙ୍ଗେ ଛଳନା କରିବାଠୁ ବଳି
ବଡ଼ ପାପ ଆଉ କିଛି ନାହିଁ ।

(୨୪୦)

ମୋ ଭୁଲ୍ ପ୍ରତି
କେହି ଯଦି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି
ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ନମସ୍କାର କରିଥାଏ ।

(୨୪୧)

ନିଜ ପରାଜୟକୁ ଖୁସିରେ
ମାନିନେବାଠୁ ବଳି
ବଡ଼ ବିଜୟ ଆଉ କ'ଣ ଅଛି ?

(୨୪୨)

ଏକ ସ୍ଥୁଳ ଜୀବନର ପଶୁତ୍ୱକୁ ନେଇ
କେତେ ଦିନ ବଞ୍ଚିବା ଆମେ
ସୂକ୍ଷ୍ମ ଜୀବନର
ଦେବତ୍ୱକୁ ବିସ୍ମୃତ ହୋଇ ?

(୨୪୩)
ଦୁଃଖଟା ଅଭ୍ୟାସ ହୋଇଗଲେ
ଆଉ ଦୁଃଖ କାହିଁ ?

(୨୪୪)
ଦୁର୍ଦ୍ଦିନର ସମ୍ମୁଖୀନ ହେବାର
ଧୈର୍ଯ୍ୟ ଯଦି ତମର ନାହିଁ,
ହୀନପ୍ରଭ ତମର ପୁରୁଷକାର ତେବେ ।

(୨୪୫)
ତାଙ୍କୁ ପାଇବା ପାଇଁ ବର୍ଷ ବର୍ଷ ଧରି
ତପସ୍ୟାର ପ୍ରୟୋଜନ କ'ଣ ?
ଗୋଟିଏ ମୁହୂର୍ତ୍ତର ଏକାଗ୍ରତା ହିଁ ଯଥେଷ୍ଟ ।

(୨୪୬)
ସାରା ଜୀବନ କ'ଣ
ଆମେ ଦୋଷ କରୁଥିବା,
କ୍ଷମା ମାଗୁଥିବା ?
ନିର୍ଦ୍ଦୋଷ ହେବା କେବେ ?

(୨୪୭)
ପ୍ରଭୋ !
ତମ ସଙ୍ଗେ ନିତ୍ୟ ସମ୍ପର୍କ ଯଦି ମୋର,
ସାଂସାରିକ ସମ୍ବନ୍ଧ ଶିଥିଳ ହେଲେ ଦୁଃଖ କାହିଁକି ?

(୨୪୮)
ଜୀବନର ଅନେକ କିଛି
ଅସମାପ୍ତ ରହିଯିବ, ଆମେ ଚାଲିଯିବା ।

(୨୪୯)
ଶାନ୍ତ ପରିବେଶକୁ ଯେ
ଅଶାନ୍ତ କରି ତୋଳେ,
ତା'ର ଉପସ୍ଥିତିକୁ ଉପେକ୍ଷା କର ।

(୨୫୦)
ଅହମିକାରେ ଅନ୍ଧ ହୋଇ
ଆପଣାର ଅକଲ୍ୟାଣକୁ ଆମନ୍ତ୍ରଣ କରନି ।

(୨୫୧)
ମୂର୍ଖ-ପଣ୍ଡିତ ଅପେକ୍ଷା ଗଣ୍ଡମୂର୍ଖ ଶ୍ରେୟ ।

(୨୫୨)
ସରଳ ଭାବେ କାନ୍ଦି ପାରିବ ଯଦି
ତମଠାରୁ ଅଧିକ ସୁଖୀ କିଏ ?

(୨୫୩)
ଶେଷ ଦିନ ଯେ କ୍ରମେ ପାଖେଇ ଆସୁଛି,
ସେ ସଂପର୍କରେ ତମେ ସଚେତନ କି ?

(୨୫୪)
ବୈଷୟିକ କୌତୂହଳରୁ
ନିବୃତ୍ତ ହୁଅ, ସୁଖୀହେବ ।

(୨୫୫)
ଈଶ୍ୱରଙ୍କୁ ଭୁଲି
ମଣିଷ ପ୍ରେମରେ ପ୍ରମତ୍ତ ହେଲେ ହିଁ
ପ୍ରବଞ୍ଚିତ ହେବ ।

(୨୫୬)
ଶବ ମୋର ଜଳିଯାଉଛି ଚିତାରେ,
ସମଗ୍ର ଜୀବନରେ ଅସରନ୍ତି ଅଭିଯୋଗ,
ମାତ୍ର ଏବେ ସବୁ ନିଶ୍ଚୁପ ।

(୨୫୭)
ଅନ୍ୟର ଦୁଃସମୟରେ
ଦୁଃଖ ଆସୁନି ଯଦି,
ତମ ଦୁର୍ଦ୍ଦିନରେ ସହାନୁଭୂତି
ଜଣାଇବ କିଏ କାହିଁକି ?

(୨୫୮)
ଦୁଃଖରେ ସଢ଼ିସଢ଼ି ସୁସମୟ ଆସୁଛି ଶୁଣିଲେ
ମୁଁ ଆତଙ୍କିତ ହୋଇଉଠେ ।

(୨୫୯)
ଅବାଗିଆ ଯେ, ସାନ୍ନିଧ ତା'ର କି ଦୁର୍ବିସହ !

(୨୬୦)
ତମର ବେନି ଆଖିରେ
ଏତେ ଅବସାଦ ଓ କ୍ଲାନ୍ତି କାହିଁକି ?
ଚିନ୍ତାର ଶୁଦ୍ଧତା ବ୍ୟାହତ ହୋଇଛି ।

(୨୬୧)
ଗୂଢ଼ ବଚନ ଯାହାର ମୂଢ଼ ସେ ।

(୨୬୨)
ପୁରସ୍କାର ପ୍ରାପ୍ତିରେ ପ୍ରମତ୍ତ ହୁଅନି, ନିଜର କୃତିତ୍ୱ ଯୋଗୁଁ
ଅନ୍ୟକୁ ଯେ ଆନନ୍ଦ ଦେଇପାରିଛ
ତାହା ହିଁ ତମ ସାଧନାର ସାର୍ଥକତା ।

(୨୬୩)
ସଦା ସତର୍କ ରହ,
କୌଣସି କ୍ଷୁଦ୍ରତା ଓ ସଙ୍କୀର୍ଣ୍ଣତାର
ଶିକାର ଯେପରି ନ ହୁଅ ।

(୨୬୪)
ଯେଉଁ କବି ନିଜ କବିତା
ନିଜେ ବୁଝନ୍ତିନି,
ତାଙ୍କୁ ତାଙ୍କ କବିତା
ବୁଝାଇବାକୁ କହି
କାହିଁକି ଅପଦସ୍ଥ କରିବ ?

(୨୬୫)
ଜୀବନରେ ପରମ ସତ୍ୟକୁ
ଉପଲବ୍ଧି ନ କରିବାରୁ
ପ୍ରତି ମୁହୂର୍ତ୍ତରେ ଆମେ ଜୀବନ୍ମୃତ ।

(୨୬୬)
ବିନା ଅଭିନୟରେ
ବଞ୍ଚି ହେବନି ଏ ବିଶ୍ୱରେ ।

(୨୬୭)
ଜୀବନରେ ବିବାଦ
ମୃତ୍ୟୁରେ ବି ବିବାଦ,
ବିବାଦମୁକ୍ତ ହେବା କେବେ ?

(୨୬୮)
ସୀମାବଦ୍ଧତା ଓ ସଙ୍କୀର୍ଣ୍ଣତାକୁ ଫିଙ୍ଗିଦେଇ
ଅଚିରେ ଉର୍ଦ୍ଧ୍ୱକୁ ଉଠିବାକୁ ଉଦ୍‌ଯୋଗୀ ହୁଅ ।

(୨୬୯)
ଏବେ ଉତ୍ତୀର୍ଣ୍ଣ ବୟସରେ
ଅନେକ ବିବେକର କଥା କହୁଛି,
ମାତ୍ର ମୋ ସବୁଜ ବୟସରେ
କେତେ ବେଶୀ ମନର
ଅଧୀନ ନ ଥିଲି !

(୨୭୦)
ବିଷୟ ଯେତିକି ପ୍ରସାରିତ ହେବ,
ଚେତନା ସଙ୍କୁଚିତ ହେବ ସେତିକି ।

(୨୭୧)
ମୁଁ କାହିଁକି କୌଣସି
ପରିବର୍ତ୍ତନକୁ ସହଜରେ
ଗ୍ରହଣ କରିପାରୁନି !

(୨୭୨)
ପ୍ରତି ମୁହୂର୍ତ୍ତରେ ସବୁ କିଛି ହଜିଯାଉଛି,
ଏହାହିଁ ତ ପରମ ସତ୍ୟ ।

(୨୭୩)
ନିଜ ମନର ସଂଦେହ
ନିଜକୁ ତ ଖାଏ,
ଅନ୍ୟର କିଛି କ୍ଷତି ହୁଏନି ।

(୨୭୪)
ମୁହଁମତ ନ ରଖି
ନିରପେକ୍ଷ ହୁଅ ।

(୨୭୫)
ମୁଁ ମୋର ତରଳ ବୟସରେ
ଯେଉଁ ଭୁଲମାନ କରିଥିଲି,
ସେଇ ଭୁଲ ମୋ ପିଲାମାନେ କଲେ
ମୁଁ ସହ୍ୟ କରିପାରୁନି କାହିଁକି ?

(୨୭୬)
ତମ ପରି ଏତେ ବେଶୀ ଅନାସକ୍ତ,
ପୁଣି ଅନୁରକ୍ତ କିଏ ପ୍ରଭୋ !

(୨୭୭)
ଆତ୍ମସମୀକ୍ଷା ବିନା
ଉଦ୍ଧାରର କି ଉପାୟ ଅଛି ଆଉ ?

(୨୭୮)
ଅର୍ଥ ଯଦି ଜୀବନର ସର୍ବସ୍ୱ,
ସବୁ ସ୍ୱାଚ୍ଛନ୍ଦ୍ୟ ଓ ପ୍ରାଚୁର୍ଯ୍ୟ ସତ୍ତ୍ୱେ
ଅନର୍ଥ ଅବ୍ୟାହତ ରହେ କାହିଁକି ?

(୨୭୯)
ଭ୍ରାନ୍ତି ନ ତୁଟିଲେ ଶାନ୍ତି କାହିଁ ?

(୨୮୦)
ଯାହାଙ୍କ ଉପସ୍ଥିତିରେ
ମନ ମୋର ପରମାନନ୍ଦରେ ଭରିଯାଏ,
ସାତ୍ତ୍ୱିକ ଭାବାପନ୍ନ ବ୍ୟକ୍ତି ସେ ।

(୨୮୧)
ଯେଉଁମାନେ ନିନ୍ଦୁକ
ସେମାନଙ୍କ ନିରାନନ୍ଦର
ଶେଷ କାହିଁ ?

(୨୮୨)
ଉତ୍ତେଜିତ ଯେ ସଦା,
ସ୍ଥୈର୍ଯ୍ୟ କେବେ ସଂଭବ ତା'ପକ୍ଷେ ?

(୨୮୩)
ମୋ ମନକୁ ଏପରି କରିଦିଅନ୍ତନି ପ୍ରଭୋ,
ରିପୁ ଓ ଇନ୍ଦ୍ରିୟମାନେ
ତୁଚ୍ଛ ହୋଇଯାଆନ୍ତେ ଓ
ମୋ ମନ ତଳେ ତମର ଐକାଧିପତ୍ୟ
ରାଜତ୍ୱ ରହନ୍ତା କେବଳ !

(୨୮୪)
ସଦା ମନମରା ହୋଇ
ରହୁଚି କାହିଁକି ?
ନିଜକୁ କର୍ତ୍ତା ଭାବି ?

(୨୮୫)
ବିଷୟକୁ ନେଇ ତ ସଦା ବ୍ୟସ୍ତ,
ସେ ବ୍ୟସ୍ତତାର ଅର୍ଥ କିଛି ହୁଏ ?

(୨୮୬)
ବେଳ ଥାଉ ଥାଉ
ନିଜକୁ ସଜାଡ଼ିନିଅ ।

(୨୮୭)

ନିଜ ଦୋଷ ପ୍ରତି ଆଖି ବୁଜିଦେଲେ
ଅସଂଶୋଧିତ ରହିଯିବ ସାରା ଜୀବନ ।

(୨୮୮)
ପ୍ରଭୋ !
ମୋର ଯେ କୌଣସି
କୃତିତ୍ୱର ଅନ୍ତରାଳରେ ତ ତମେ ।

(୨୮୯)
ନିଜ ଚିନ୍ତାକୁ ଯେ ସଦା ପରିଚ୍ଛନ୍ନ ରଖେ,
ପ୍ରତି ମୁହୂର୍ତ୍ତରେ ତା'ର ଈଶ୍ୱର ଦର୍ଶନ ହୁଏ ।

(୨୯୦)
ନିଜ ପ୍ରଶଂସା ଶୁଣିବାର ଆସ୍ପୃହାଠୁ ଦୂରେଇରହ,
ଅନୁଭବ କରିବ କେତେ ସୁଖୀ ତମେ ।

(୨୯୧)
ନିଜ ମନର ବିରକ୍ତିକୁ
ଅନ୍ୟ ଉପରେ ଚାପିଦେବାର
ଅପଚେଷ୍ଟା କେବେ କରନି ।

(୨୯୨)
ପ୍ରଭୋ !
ତମେ ଯେତେବେଳେ ଯା' କିଛି କର,
କେତେ ନିର୍ଭୁଲ ତା' ସତେ,
ମୁଁ ହତବାକ୍ ହୁଏ ।

(୨୯୩)
ମନରେ ମୋର କେତେ
ଉଚ୍ଚାଙ୍ଗ ଚିନ୍ତା, ଅଥଚ ସେ ମନ
ସଦା ଇନ୍ଦ୍ରିୟାଧୀନ ।

(୨୯୪)
ପ୍ରଭୋ !
ମୋ ଓଠରେ ସଦା ଉଚ୍ଚାରିତ ହେଉ
'ତୁ', 'ମୁଁ' ନୁହେଁ ।

(୨୯୫)
ଆମେମାନେ ପ୍ରତ୍ୟେକେ ଜଣେ ଜଣେ 'ପାପ'ର ଆକର,
'ସୁଧା'ର ଆକର ହେବୁ କେବେ ?

(୨୯୬)
ଯେ ସାଧୁ, ତା'ର ବିରକ୍ତିରେ ବି
ଅନୁରକ୍ତି ଥାଏ ।

(୨୯୭)
ପ୍ରଭୋ !
ତମେ ସବୁ ମନେପକାଇଦିଅ, ନଚେତ୍ ଏତେ କଥା
ମୋ ଲେଖନୀରୁ ସ୍ଫୁରନ୍ତା କିପରି ?

(୨୯୮)
ମନରେ 'ଭାବ' କାହିଁ ?
କେବଳ 'ଅଭାବ'ରେ ହିଁ କ'ଣ ଏ ଜୀବନ ବୃଥା ଯିବ ?

(୨୯୯)
ମନ ତ ବିରକ୍ତିରେ ତିକ୍ତ,
ଅନୁରକ୍ତିରେ ତା' ସ୍ନିଗ୍ଧ
ହେବ କିପରି ?

(୩୦୦)
ଅଶାନ୍ତ ମନକୁ ନେଇ
'ଉତ୍ତମ' କିଛି କରିବାର ପରିଣତି ବିପରୀତ ହୁଏ ।

(୩୦୧)
ଏ ପୃଥିବୀରୁ ବିଦାୟ ବେଳେ
ପାପ ପୁଣ୍ୟ ଛଡ଼ା ଆଉ କେହି ସାଥୀ ହେବେ କି ?

(୩୦୨)
ସୂର୍ଯ୍ୟର ଉଦୟ ଅସ୍ତ କିଛି ନାହିଁ,
ତା' ଆମର ସସୀମ ଦୃଷ୍ଟିର ଭ୍ରମ ମାତ୍ର
ଠିକ୍ ସେମିତି, ପର ଆପଣା ଭେଦ କିଛି ଅଛି କି ?
ତା' ଆମର ସଂକୀର୍ଣ୍ଣ ମନର ଭ୍ରାନ୍ତି କେବଳ ।

(୩୦୩)
ମୁଁ ଅନ୍ୟମାନଙ୍କୁ ବିଚିତ୍ର କହି ଉପହାସ କଲାବେଳେ;
ନିଜେ ଯେ କେତେ ବିଚିତ୍ର ତା' ଚିନ୍ତା କରେ କି ?

(୩୦୪)
ନିଜ ଇଚ୍ଛାକୁ କଦାପି
ଅନ୍ୟ ଉପରେ ଚାପିଦିଅନି ।

(୩୦୫)
ତମକୁ ଆଗକୁ ଆଗକୁ ଯିବାକୁ ହେବ,
ତେଣୁ ପଛରୁ କିଏ ଟାଣୁଛି
ଖାତିର କରନି ସେଥିପ୍ରତି ।

(୩୦୬)
ଜୀବନର ସବୁ କିଛି ହଜିଯିବା ପରେ
ଯେଉଁ ନିଃସ୍ୱତା ରହେ,
ତା'ର ଅନ୍ତରାଳରେ ତମକୁ ଦେଖିବାର
ସୌଭାଗ୍ୟ ମୋର ହେଉ ପ୍ରଭୋ !

(୩୦୭)
ପ୍ରଭୋ !
ମୁଁ ମୋର ଭୁଲମାନଙ୍କୁ
ଗୋପନ କରିବାର ପ୍ରୟାସ କରି
ପ୍ରତିମୁହୂର୍ତ୍ତରେ ତମ ପାଖେ ଧରାପଡୁନି କି ?

(୩୦୮)
ତମେ ତମର ନିନ୍ଦୁକମାନଙ୍କୁ
ଉପେକ୍ଷା ନ କରି ସେମାନଙ୍କର
ଅପେକ୍ଷା ରଖ, କଲ୍ୟାଣ ହେବ ତମର ।

(୩୦୯)
ପ୍ରତି ମୁହୂର୍ତ୍ତରେ ହଜୁନି ତ କିଛି
ସବୁ ମିଳୁଛି, ମାତ୍ର ଆହରଣର
ଅକ୍ଷମତା ହେତୁ ନିରର୍ଥକ ଦୈନ୍ୟ ଆମର ।

(୩୧୦)
ଜୀବନରେ ଏତେ ପାଇ ବି
ଓଠରେ ଯା'ର ସଦା ନାହିଁ ପଦ,
ଆହା, କେତେ ଦରିଦ୍ର ସେ ସତେ !

(୩୧୧)
ଏ ଯାଏଁ ତ ଗହଳି ଭିତରେ ଥିଲି,
ଗହଳିରୁ ବାହାରି ଆସି ଦେଖୁଛି
ତମେ ମୋତେ ଏକୁଟିଆ
ଦେଖାକରିବାକୁ ଅପେକ୍ଷା କରିଛ ।

(୩୧୨)
କୌତୂହଳର ଅବସାନ ପରେ,
ଯେଉଁ ପ୍ରେମର ପରିସମାପ୍ତି ଘଟେ,
କି ପ୍ରେମ ସେ ?

(୩୧୩)
ମାପ୍‌ଚୁପ୍ ଜୀବନ ଯାତ୍ରାରେ
ମୁଁ କ୍ରମେ ରୁଦ୍ଧଶ୍ୱାସ ହୋଇଉଠୁଛି ।

(୩୧୪)
ଭଲକଥାଟିଏ ମନକୁ ଆସିବା ମାତ୍ରେ
ତା' ବ୍ୟକ୍ତକରିଦିଅ,
ନିଜ ଆଚରଣରେ ତା' ସମ୍ଭବ ନହେଲେ ବି
ଅନ୍ୟ କେହି ଜଣେ ହୁଏତ
ସଫଳକାମ ହେବ ।

(୩୧୫)
ମୁଁ ମୋର ଭୁଲମାନଙ୍କୁ ସୁଧାରିବାକୁ ଯାଇ
ପୁନର୍ବାର ଭୁଲ କରି ବସେ ।

(୩୧୬)
ସତ କହୁ କହୁ
କିଛି ମିଛ ବି କହିପକାଏ
ସେଥିକି ଉପାୟ କ'ଣ ?

(୩୧୭)
ହୋହଲ୍ଲା ମଧରେ ବଞ୍ଚିବାର ଅଭ୍ୟାସ ଯେଉଁମାନଙ୍କର,
ନୀରବତାକୁ ସେମାନେ ସ୍ୱାଗତ କରିବେ କିପରି ?

(୩୧୮)
ସେ ହେଉଚି ପ୍ରକୃତ ଯୋଗୀ
ମୁହଁ ଉପରେ ଯା'ର
ଯେ କୌଣସି ବୟସରେ ବି
ଶିଶୁସୁଲଭ ସାରଲ୍ୟ
ଓ ସ୍ନିଗ୍ଧତା ସ୍ଥିରରହେ ।

(୩୧୯)
ତମର ଶତ୍ରୁ କିଏ, ତମର ମିତ୍ର କିଏ ?
ତମେ ନିଜେ ହିଁ ନିଜର
ପରମଶତ୍ରୁ ଓ ପରମମିତ୍ର ।

(୩୨୦)
ଅନ୍ୟକୁ ଅପଦସ୍ଥ କରିବାର
ଅପଚେଷ୍ଟା କରନି,
ନିଜେ ହିଁ ଅସ୍ତ ହୋଇଯିବ ।

(୩୨୧)
କାହାରି ମୁହଁ ଉପରେ
ତା'ର ସମାଲୋଚନା କରିବାର
ସତ୍ ସାହସ ନାହିଁ ଯଦି,
ଅନ୍ତରାଳରେ ତାହାର ନିନ୍ଦା କରିବା
ତମର ଅପୌରୁଷ ।

(୩୨୨)
ଓଠର ହସରୁ ନୁହେଁ,
ଆଖିର ହସରୁହିଁ
ଆନ୍ତରିକତା ବାରିହୋଇଯାଏ ।

(୩୨୩)
ବଚନରେ ଅସ୍ଥିରତା
ଦୃଷ୍ଟିରେ ଅସ୍ଥିରତା,
ଅସ୍ଥିରତା ଚିନ୍ତାରେ ବି,
ସୁସ୍ଥ ଜୀବନ କେବେ ସମ୍ଭବ ?

(୩୨୪)
ଯଦି ଜୟଗାନ କରିବ
କେବଳ ଭଗବାନଙ୍କର
ଜୟଗାନକର ।

(୩୨୫)
ଅଭିମାନକୁ ମନ ତଳେ ଧରିରଖିନି, ଭୁଲିଯାଅ,
ଏଇ ବିସ୍ମୃତି ତମକୁ ବିସ୍ମୃତ କରିବ ।

(୩୨୬)
ଜୀବନ ଓ ମରଣ
ପରସ୍ପରର ପରିପୂରକ ।

(୩୨୭)
ପ୍ରଭୋ !
ତମ ପାଖେ ପହଞ୍ଚିବାର
ପ୍ରତିଯୋଗିତାର ଭିଡ଼ରେ ସାମିଲ ନ ହୋଇ
'ଶେଷ ଲୋକ' ହୋଇ ରହିବି ଶାନ୍ତ ଓ ନିରୁଦ୍‌ବିଗ୍ନ ।

(୩୨୮)
ମୁଁ ଦିନେ ବୁଢ଼ୀ ହେବି
ଏଇ ଦୁଃଶ୍ଚିନ୍ତାରେ
ମିସେସ୍ ମହାପାତ୍ର
ଯୌବନରୁ ହିଁ ବୁଢ଼ୀ ହୋଇଗଲେ ।

(୩୨୯)
ମୃତ୍ୟୁକୁ କୈଫିୟତ
ମାଗି ହେବ କି ?

(୩୩୦)
ପ୍ରଭୋ !
ପ୍ରବୃତ୍ତିରୁ ନିବୃତ୍ତି ନାହିଁ,
ଅଥଚ ତମ ଆଡ଼େ ହାତ ବଢ଼େଇଛି,
ହାତ ମୋର ଧରିବ ତ ?

□□

(୧)
ଆଜି ମୋର ଜୀବନ ସାୟାହ୍ନରେ
ମୋ ସବୁଜ ବୟସର
କେତେକ ଦୋଷଦୁର୍ବଳତା ସଂପର୍କରେ
କେହି ଯଦି କଟାକ୍ଷ କରେ
ମୁଁ କ'ଣ କ୍ଷୁବ୍ଧ ହେବି ?

ନା, କ୍ଷୁବ୍ଧ ହେବା ପରିବର୍ତ୍ତେ
ନିଜକୁ ଅଧିକରୁ ଅଧିକ ବିଶ୍ଳେଷଣ କରି
ବୁଝିବାକୁ ଚେଷ୍ଟା କରିବି
ଅତୀତର ସେ ସବୁ ଗ୍ଲାନିରୁ
ମୁଁ ଏବେ ସଂପୂର୍ଣ୍ଣ ମୁକ୍ତ ତ ?

ଦର୍ପଣ ହେବାରୁ ଜଣେ
ନିଜର ଅନ୍ୟାନ୍ୟ ଅନେକ ଭୁଲ୍ ସମ୍ବନ୍ଧରେ ତ
ସଚେତନ ହେବି,
(ଯା' ଘୁଣାକ୍ଷରେ ମୋ ବ୍ୟତୀତ ଅନ୍ୟ ଜାଣନ୍ତିନି କେହି)
ତେଣୁ, ନିଜ ନିନ୍ଦା ଶୁଣିବାର
ଏମିତି ସୌଭାଗ୍ୟ ମୋର ଅବ୍ୟାହତ ରହୁ ।

(୨)
ମୁଁ ଏବେ ଶୁଣୁଛି ବନ୍ଧୁ
ତିରୋଧାନ ପ୍ରିୟଜନଙ୍କର
ଜଣେ ପରେ ଜଣେ,
ହତବାକ୍, ବିସ୍ମୟେ ବିମୂଢ଼ ।

ସେମାନଙ୍କ ସମ୍ପର୍କର ସ୍ମୃତି
ବିଚଳିତ କରେ ମୋତେ,
ସେମାନଙ୍କ ପ୍ରତି ମୋର ଆସକ୍ତି ଓ ଅନୁରକ୍ତି
ଯଦିଓ ବା ଦୁଃଖର କାରଣ,
ସେଇ ଦୁଃଖ ମୋର କିନ୍ତୁ ଖୁବ୍ ପ୍ରୟୋଜନ ।

ଅତୀତରେ ସେମାନଙ୍କ ସାମୀପ୍ୟ ସୁଖର
ଯେଉଁ ମୁଗ୍ଧ ଅନୁଭବ,
ମହାର୍ଘ ତା' ଅନିର୍ବଚନୀୟ
ତେଣୁ ସେମାନଙ୍କ ବିଚ୍ଛେଦ ବେଦନା ସତ୍ତ୍ୱେ
ଚାହେଁନା ମୁଁ ମୋହମୁକ୍ତ ହେବା ଲାଗି,
ଅଧିକନ୍ତୁ ଆକାଂକ୍ଷା ମୋ,
ସଂପର୍କ ମୁଁ ସୃଜି ନବନବ
ସେମାନଙ୍କ ସାଥେ ନିବିଡ଼ୁ ନିବିଡ଼ୁ ହେବି,
ବୁଝିଛି ମୁଁ ଯେଣୁ,
ଏଇ ସବୁ ଆସକ୍ତିର ଅନ୍ତରାଳେ ରହିଛି ପ୍ରଚ୍ଛନ୍ନ
ବୃହତ୍ତମ ଆନନ୍ଦର ଅକ୍ଷୟ ସ୍ୱରୂପ ।

ମୋହାନ୍ଧ ନ ହେଲେ, ପୁଣି
ସୀମିତ ସୁଖର ରସ ପ୍ରାଣଭରି
ନ କଲେ ସ୍ୱାଦନ,
କେବେ କି ସହଜ ସତେ ଅନାସକ୍ତି,
ସ୍ୱର୍ଗ ଆରୋହଣ ।

(୩)
ଅନ୍ୟର ଦୋଷ ଦୁର୍ବଳତାର କଥା ଶୁଣାଅନି ଆଉ,
ଶୁଣି ଶୁଣି କ୍ଲାନ୍ତ ଆଉ ଅବସନ୍ନ ମୁଁ ଯେ ।
ସେମାନଙ୍କ ସମ୍ପର୍କରେ କିଛି
ଆଲୋକର କଥା କହି
ଉଲ୍ଲସିତ କର ମୋତେ, ଆନନ୍ଦରେ ଅମୃହରା ହୁଏ ।
ହରିକଥା, କୃଷ୍ଣକଥା ଶ୍ରବଣରେ ଯେ ଅମୃତ ଥାଏ,
ଅନ୍ୟର ଖୁସିକୁ ଜଣେ କଲେ ଆପଣାର,
ଅନାୟାସେ ସେ ପୀୟୂଷ ପାଏ ।

(୪)
ଜୀବନରୁ ସ୍ୱପ୍ନମାନେ ବିଦାୟ ନେଇଛନ୍ତି,
ଶୟନରେ ଦୁଃସ୍ୱପ୍ନମାନେ ବି
ଅସ୍ଥିର କରୁଛନ୍ତି ମୋତେ ।

ଯନ୍ତ୍ରଣା ଜାଗରଣରେ ଓ ସେଇ
ଦୁଃସହ ଯାତନାର ପୁନରାବୃତ୍ତି ନିଦ୍ରାରେ ବି,
ଅତଏବ ମୋ ଆତ୍ମରକ୍ଷାର
ନିରାପଦ ତୃତୀୟ ସ୍ଥାନଟି
କେଉଁଠି ? କେଉଁଠି ?

(୫)
ସେଇ ନିରୀହ ଆଖି ଯୋଡ଼ିକ
ଓ ସରଳ ମଧୁର ହସ ଟିକକ,
ଅନ୍ଧୁଣୀ ଭିକାରୁଣୀ ମାଆର
ହାତ ଧରି ଯେଉଁ ଛୋଟ ଝିଅଟି
ଠିଆ ହୋଇଥିଲା ତା'ରି,
ମନ୍ତ୍ରମୁଗ୍ଧ କରିଥିଲା ମୋତେ ।
ଆଶ୍ଚର୍ଯ୍ୟ, ମନତଳେ ପୁଞ୍ଜିଭୂତ ଗ୍ଲାନି
ଓ ବିଷାଦ ମୋ ଅନେକ ଦିନର
ଯା' ଛଟପଟ କରୁଥିଲା ମୋତେ ପ୍ରତି ମୁହୂର୍ତ୍ତରେ
କିପରି ନିଶ୍ଚିହ୍ନ ହେଲା ପଲକ ମଧ୍ୟରେ ?
(ଯେ ନିର୍ମମ ଅକ୍ଟୋପାଶରୁ ମୋ ପୁରୁଷକାର,
ମିଳିତ ପ୍ରଜ୍ଞା ଓ ବୁଦ୍ଧି ମୁକ୍ତ କରି
ପାରିଲେନି ମୋତେ) ।

ଏହା ସତ୍ୟ, ସେଇ ଆଖି, ସେଇ ହସ,
ଯେତେ ଖୋଜିଲେ ବି ମିଳିବନି ଆଉ,
ଅସମୟ ବନ୍ଧୁ ଭାବେ ତେଣୁ
ସ୍ମୃତିର ସଙ୍ଖାଳି ହୋଇ, ସେହି ଦୃଶ୍ୟ
ମନତଳେ ଚିରକାଳ ଅନିର୍ବାଣ ଥାଉ ।

(୬)
ବୁଦ୍ଧିର କସରତ୍‌ରେ
ପ୍ରଜ୍ଞାକୁ ଆପଣାଇ ନେଇ,

ହୃଦୟର ଦ୍ୱାରକୁ
ଏମିତି ନିବୁଜ କରିଦେଇଛି ଯେ
ରୁଦ୍ଧଶ୍ୱାସ ହୋଇ ଯାଉଛି ।

ସୁଖୀ ହେବାଲାଗି ପ୍ରତ୍ୟୟ ପରିବର୍ତ୍ତେ
ତର୍କ ଏକ ବିଫଳ ପ୍ରୟାସ,
ଅନ୍ୟର ପରାଜୟରେ ନିଜେ ଜୟୀ ହେବାର
ଉଦ୍‌ବିଗ୍ନ ଆକାଂକ୍ଷା
କେତେ ଦୁଃଖଦ ଓ ମର୍ମନ୍ତୁଦ ସତେ ।

ଏପରି ଘୂର୍ଣ୍ଣାବର୍ତ୍ତରେ ଯେବେ
ଆକ୍‌ତା ମାକ୍‌ତା ମୁଁ,
ଅବୋଧ ଶିଶୁଟିଏ କାହୁଁ ଧାଇଁଆସି
ଲାଉ ହୋଇ ପଡ଼ନ୍ତା କି ପିଠିରେ ମୋର,
ଉଭାଇଯା'ନ୍ତା ଯେତେ ପୁଞ୍ଜିଭୂତ ନିରାନନ୍ଦ ପଲକ ମଧ୍ୟରେ !
କେତେ ଉଶ୍ୱାସ ହୋଇଯା'ନ୍ତି
ଏବଂ ପରକ୍ଷଣରେ
ଆକସ୍ମିକ ରୂପାନ୍ତର ହୁଅନ୍ତା ମୋର-
ମୁଁ ଗୁରୁଣ୍ଡି ଗୋପାଳଟିଏ ।

(୭)
ନିଃସଙ୍ଗ ମୁହୂର୍ତ୍ତେ ଯଦି ତୁମରି କବିତା
ସଂଗଦାନ କରି ମୋତେ
ପୂର୍ଣ୍ଣତାରେ ଭରିଦିଏ ଶୂନ୍ୟ ମୋ ହୃଦୟ,
ବିଷାଦକୁ ମୋର ଆହ୍ଲାଦରେ କରେ ପୁଲକିତ,
ଅନ୍ଧ ମୋ ନୟନେ ଯଦି ଜାଳିଦେଇ ଦୀପ
ମୋ ଚିନ୍ତାର ଉତ୍ତରଣେ ସହାୟକ ହୁଏ,
ସାର୍ଥକ ସେ ସୃଷ୍ଟି, ବନ୍ଦନୀୟ ଲେଖନୀ ତୁମର,
କବି ତୁମେ, ରବି ତୁମେ ତୁମେହିଁ ଈଶ୍ୱର ।

(୮)
ଆକାଂକ୍ଷିତ ପତ୍ରର ଅପେକ୍ଷା ରଖିଲେ
ସବୁବେଳେ କ'ଣ ମିଳେ ?
ମାତ୍ର ବେଳେବେଳେ ତା'
ଅପ୍ରତ୍ୟାଶିତ ଭାବେ ଆସି ଚମକାଇ ଦେଇ
ଉଦ୍‌ବେଳିତ କରିଦିଏ ଆମ ଆନନ୍ଦକୁ ।

(୯)
ତାଙ୍କୁ ମୋର ନିତ୍ୟ ନମସ୍କାର,
ଯେ କେବେ ଉଦ୍‌ବିଗ୍ନ କରନ୍ତିନି କାହାକୁ ।

(୧୦)
ଆମ୍ଭମାନଙ୍କର ଅବରୁଦ୍ଧ
ହୃଦୟର ଦ୍ୱାର ଯେ ଖୋଲିଦିଏ
ସେ କବି ।

(୧୧)
ବିରକ୍ତିକୁ ଉପେକ୍ଷା କରେ ଯେ ଯେତିକି,
ଅନୁରକ୍ତିରେ ହୃଦୟ ତା'ର ସେତିକି ଆର୍ଦ୍ର ହୁଏ ।

(୧୨)
ବସ୍ତୁ ବା ବିଷୟରେ ଦୁଃଖ ନ ଥାଏ,
ଦୁଃଖ ସେମାନଙ୍କ ପ୍ରତି ଆସକ୍ତିରୁ ହିଁ ଆସେ ।

(୧୩)
ବରଟିଏ ଦେବାକୁ
ଭଗବାନ କେବେ ଯଦି ସଦୟ ହୁଅନ୍ତି ମୋ ପ୍ରତି,
ତେବେ ମୋର ମାଗୁଣି ହେବ ତାଙ୍କୁ,
"ମୋତେ ଅନାସକ୍ତ କର" ।

(୧୪)
ପରିବେଶ ଯେତେ ଅଶାନ୍ତ ହେଉପଛେ
ତମେ କିନ୍ତୁ ଶାନ୍ତ ରହ,
ତାହା ହିଁ ତ ତମ ସାଧନାର ଉତ୍କର୍ଷ
ତଦ୍ଦ୍ୱାରା ତମର କଲ୍ୟାଣ ହେବ ।

(୧୫)
ପ୍ରଭୋ !
ତମ ପାଖେ ନିଜକୁ ସମର୍ପି ଦେଇ
କେତେ ନିଶ୍ଚିତ ଥିଲି ମୁଁ,
ଅଥଚ ଏବେ ନିଜେ ନିଜର ଦାୟିତ୍ୱ
ନେବାର ଅହଙ୍କାରରୁ,
ମୋର ଉଦ୍‌ବେଗର ଯେ ଶେଷ ନାହିଁ ।
ଅନୁଗତ ହେଲେ ତମର ଜୀବନର ସବୁ ଜଟିଳତାକୁ
କେତେ ସହଜ ଓ ସରଳ କରିଦିଅ,
ସମସ୍ୟା ବୋଲି କିଛି ରହେନି ଆଉ ।

(୧୬)
ଆବେଶ ଅବସ୍ଥାରେ ଯେଉଁ
କବିତା ଲେଖେ, ପ୍ରକୃତିସ୍ଥ ହେବାପରେ
ବିଶ୍ୱାସ କରି ପାରେନା
ସେସବୁର ସ୍ରଷ୍ଟା ସତେ କ'ଣ ମୁଁ ?

(୧୭)
ବିବାହ ଆଗରୁ ଏକାଧିକ ବୁକୁ ଉପରେ
ମଥା ରଖିବାର ଭୁଲ୍ ପରେ
ବାସର ଘରେ ସ୍ୱାମୀର ଆଲିଙ୍ଗନରେ
ନିଜର ଅପରାଧବୋଧ
ସଙ୍କୁଚିତ କରିଦେବନି କି ତମକୁ ?

(୧୮)
ନିଜର ଭୁଲ୍‌ମାନଙ୍କୁ ଗୋପନ କରି
କୃତ୍ରିମ ସାଧୁ ହେବା ଅପେକ୍ଷା,
ଆପଣାର ତ୍ରୁଟିମାନ ସ୍ୱୀକାର କରି
ଲାଞ୍ଛିତ ହେବା ବରଂ ଶ୍ରେୟସ୍କର,
ତଦ୍ୱାରା ଅବରୁଦ୍ଧ ଉତ୍ତରଣର
ପଥ ଉନ୍ମୁକ୍ତ ହୋଇଯାଏ ।

(୧୯)
ଈଶ୍ୱରଙ୍କ ସମ୍ପର୍କରେ
ମୋତେ କହିବାକୁ କହନି,
ଶୁଣିବାକୁ ଦିଅ ।
(୨୦)
ହରାଇବା ଭୟରେ
ମନ ଯା'ର ସଦା ଉତ୍ପୀଡ଼ିତ,
ଆତ୍ମୋପଲବ୍ଧି ଲାଗି ତା'ର ଅବସର କାହିଁ ?

(୨୧)
ଲକ୍ଷ୍ୟରେ ପହଞ୍ଚିବାକୁ
ନତନେତ୍ର ହୋଇ ଆଗେଇ ଚାଲ,
ଊର୍ଦ୍ଧ୍ୱଦୃଷ୍ଟି ହେଲେହିଁ
ଦୂରତ୍ୱ ଡ଼ରାଇବ ତମକୁ ।

(୨୨)
ସାବଧାନ,
ଯୌବନରେ ଏପରି ଭୁଲ୍ କିଛି କରନି,
ଯେଉଁ ଦୁଷ୍କୃତି
ବାର୍ଦ୍ଧକ୍ୟକୁ ତମର ଅଶ୍ରୁସିକ୍ତ କରିବ ।

(୨୩)
ଯେଉଁ ମୁହୂର୍ତ୍ତରେ ମନେହେବ
ତୃଣଠାରୁ ବି ତମେ ନ୍ୟୂନ
ଅଚିରେ ବ୍ରହ୍ମୋପଲବ୍ଧି ହେବ ।

(୨୪)
ମୃତ୍ୟୁ ପାଇଁକି ଆଗରୁ ନଥିଲା ଏତେ ମୋ ଡ଼ର,
ଏବେ କିଁପା ମୁହିଁ ମରଣ ଭୟରେ ଏତେ କାତର ?

(୨୫)
ଏକାକିନୀ ବସିଛି ମୁଁ କେହି ଜଣେ
ସାଥୀ ମୋର ଶୂନ୍ୟ ନାହିଁ
ଶୂନ୍ୟତାକୁ ମୋ ଶୂନ୍ୟ କରି
ପୂର୍ଣ୍ଣତାରେ ଭରିଦେବା ପାଇଁ ।

(୨୬)
ନିଜର ଗୀତ ନ ଗାଅ ଆଉ,
ଅନ୍ୟ ମୁଖେ ଶୋଭା ତା' ପାଉ ।

(୨୭)
ପ୍ରତିକ୍ଷଣେ ପ୍ରତିମୁହୂର୍ତ୍ତରେ
ନିଜକୁ ମୁଁ ନୂଆ ନୂଆ ରୂପେ ଆବିଷ୍କାର କରେ ।

(୨୮)
ପକ୍ଷପାତ ମନୋବୃତ୍ତି ନେଇ ଯଦି
ଦେଖୁଥିବ ଖେଳ,
କ୍ରୀଡ଼ାରୁ ଆମୋଦ କେବେ ଆହରଣ
ପାରିବନି କରି,
ଆତ୍ମପକ୍ଷ ସମର୍ଥନେ ଯେଣୁ
ନିଜ ଦଳ ବିଜୟର ଲାଗି
ମନଥିବ ଉଦ୍‌ବେଳିତ ଅସ୍ଥିର, ଚଞ୍ଚଳ ।
କ୍ରୀଡ଼ା ସଂଦର୍ଶନେ
ଆନନ୍ଦେ ଉତ୍‌ଫୁଲ୍ଲ ସିଏ,
ସତ୍ୟାଗ୍ରହୀ, ନିରପେକ୍ଷ ଯିଏ,
ଜେତା ଓ ବିଜିତେ ସଦା ସମଦୃଷ୍ଟି ଯା'ର ।

(୨୯)
ଅନ୍ୟର ଭୁଲ୍ ସମ୍ପର୍କରେ
ସଦା କୌତୂହଳୀ ଆମେ,
ମାତ୍ର ନିଜ ଭୁଲ୍ ସମ୍ବନ୍ଧରେ
କେବେ ସଚେତନ କି ?

(୩୦)
ଏ ସୁନ୍ଦର, ସ୍ନିଗ୍ଧ ପୃଥିବୀ ସମ୍ପର୍କରେ
ଯେଉଁମାନଙ୍କ ଓଠରେ ସଦା ବିରୂପ ମନ୍ତବ୍ୟ,
ଅଚିରେ ସେମାନଙ୍କ ସଙ୍ଗ ତ୍ୟାଗ କର ।

(୩୧)
ଅନନ୍ତ ନୀରବତାର ଅନ୍ତରାଳେ ହିଁ
ଅବିନଶ୍ୱର ଧ୍ୱନିର ସ୍ଥିତି ବର୍ତ୍ତମାନ ।

(୩୨)
ଅନିତ୍ୟରୁ ନିତ୍ୟ ଆନନ୍ଦ ପ୍ରାପ୍ତିର ପ୍ରୟାସ
କେତେ ହାସ୍ୟାସ୍ପଦ ସତେ ।

(୩୩)
ଭଗବାନଙ୍କଠୁ ଅଧିକ କପଟୀ ଓ
ଅଧିକ ସରଳ କିଏ ଅଛି ଆଉ ?

(୩୪)
ଚିନ୍ତାରେ, ଦୃଷ୍ଟିରେ ଏବଂ
ଆଚରଣରେ ଭଦ୍ର ହୁଅ ।

(୩୫)
ତମେ ଯଦି ଅନ୍ୟର ବିରକ୍ତିରେ ସଂକ୍ରମିତ ହେଲ,
ତେବେ ତୁମ ସାଧନାର ମୂଲ୍ୟ କ'ଣ ?

(୩୬)
ପ୍ରଭୋ !
ତୁମକୁ ଭଜିବାକୁ କ୍ଷମତା ମୋର ନାହିଁ ?
ତୁମ କୃପା ବିନା, କେବଳ ମୋର
ପୁରୁଷକାର ଦ୍ୱାରା କ'ଣ ତା' ସମ୍ଭବ ?

(୩୭)
ଇନ୍ଦ୍ରିୟମାନଙ୍କ ଉପରେ ବିଜୟ ବିନା
ଶାନ୍ତି କାହିଁ ?

(୩୮)
ଯେବେ ମିତ୍ରମାନେ ଶତ୍ରୁପରି
ଆଚରଣ କରନ୍ତି,
ବନ୍ଧୁମାନେ ବୈରୀ ସାଜନ୍ତି,
ତେବେ ଜାଣି ରଖ,
ଦୁଃସମୟ ଆସିଛି ତମର,
ଅଚିରେ ଈଶ୍ୱରଙ୍କର ଶରଣାପନ୍ନ ହୁଅ ।

(୩୯)
ସର୍ବଦା ଅନ୍ୟମାନଙ୍କର ଦୋଷ ଦେଖୁ ଦେଖୁ
ଦିନେ ତମେ ଏପରି ଦୋଷମୟ ହୋଇଯିବ ଯେ,
ନିଜ ସଂଶୋଧନର ଆଉ ଉପାୟ ନ ଥିବ ।

(୪୦)
ବିଷୟକୁ ଯେତେ ବନ୍ଧୁ ମନେ କଲେ ବି
ସେ ଚିରଦିନ ବୈରୀ ହୋଇ ରହେ ।

(୪୧)
ନାରୀ ପୁରୁଷର ଓ ପୁରୁଷ ନାରୀର
ଦେହ ଦେହଳୀ ଡେଇଁ
ଅନ୍ତର୍ଦୃଷ୍ଟିପରାୟଣ ହେଲେ ହିଁ
ଦିବ୍ୟ ଚେତାନାର ଉନ୍ମେଷ ହୁଏ ।

(୪୨)
ଜଣେ 'ହତାଶ'ର ଆଖିରେ ଏ ଜୀବନ ବିଫଳତାଜନିତ
ଯନ୍ତ୍ରଣାର ସମାହାର ବ୍ୟତୀତ ଅନ୍ୟ କିଛି ନୁହେଁ ।

(୪୩)
ମୋତେ ଏଠି କିଛି ଭଲ ଲାଗୁ ନାହିଁ,
ନେଇଯାଅ ଅନ୍ୟ ଏକ ସ୍ଥାନେ,
ଯେଉଁଠାରେ ବୁଝିବି ମୁଁ ଜୀବନର ମାନେ,
କ୍ଳାନ୍ତି ନାହିଁ, ନାହିଁ ଅବସାଦ,
ଅଥବା ବିଷାଦ,
ପରିପୂର୍ଣ୍ଣ ଆନନ୍ଦର ଉଲ୍ଲୋଳ, କଲ୍ଲୋଳ
ଅମୃତର ସ୍ୱାଦ ।
ସଂକ୍ଷିପ୍ତ ଉତ୍ତରଟିଏ ଝରିଗଲା,
"ବାହାରର ପୃଥିବୀରେ ନୁହେଁ ତାହା,
ସେ ସ୍ଥାନଟି ମଣିଷର ହୃଦୟ ଭିତରେ ।"

(୪୪)
ଯାହା କିଛି ଭାଙ୍ଗିବାର ଅଛି ଭାଙ୍ଗିଯିବ,
ଝରିବାର ଅଛି ଯାହା ଝରିଯିବ,
ପାରିବ କି ରୋକି ସେମାନଙ୍କୁ ?
ଅଧିକନ୍ତୁ, ସେମାନଙ୍କ ସଙ୍ଗେ
ସାମିଲ୍ ହୋଇ ଯଦି ଆତ୍ମବିସ୍ମୃତ ହେବ,
ତେବେ ଅନୁଭବ କରିବ
ସେମାନଙ୍କ ଭାଙ୍ଗିଯିବା ଓ ହଜିଯିବା ଭିତରେ
ତମେ କେତେ ବେଶୀ ବଞ୍ଚି ରହିଚ,
ବଞ୍ଚିବା ପରି ବଞ୍ଚି ରହିଚ ମୃତ୍ୟୁଞ୍ଜୟ ହୋଇ ।

(୪୫)
ମୁଁ ତମ ନିକଟରୁ
ଏକପତ୍ନୀବ୍ରତର ନିଷ୍ଠା ଦାବି କଲାବେଳେ,
ତୁମ ପ୍ରତି ମୋର ଐକାନ୍ତିକତା ସମ୍ପର୍କରେ
କେବେ ଭାବିଥାଏ କି ?
ଅନ୍ୟମାନଙ୍କର ଛୋଟ ଛୋଟ ଭୁଲ୍ ସବୁ
କେତେ ବିରାଟ ଆକାରରେ ନ
ଦେଖିଥାଏ ମୁଁ, ଯେପରିକି

ସେ ସବୁ ଭୁଲ୍‌ମାନଙ୍କରୁ ମନ ମୋର ମୁକ୍ତ,
ଅଥଚ ନିଜର ଭୁଲ୍‌ମାନଙ୍କୁ ନିଖାରି ଦେଖିଲେ
ନିଜ ପାଖେ ନିଜେ ଲଜ୍ଜିତ ହେବାକୁ ପଡ଼େ ।

(୪୬)
ଦୁହେଁ ଦୁହିଙ୍କଠାରୁ ପୃଥକ୍ ହୋଇଯିବା ପରେ,
ଯଦି କେବେ କେମିତି ଦେଖା ହୋଇଗଲେ
ତମ ସଙ୍ଗେ, ଛାତି ଭିତରଟା କେମିତି ହୋଇଯାଏ ।

(୪୭)
ଅନ୍ୟମାନଙ୍କର ଦୋଷ ଅପେକ୍ଷା
ସେମାନଙ୍କ ଗୁଣମାନ ଅଧିକ
ଉଜ୍ଜ୍ୱଳ ହୋଇ ଦିଶେ ମୋ ଦୃଷ୍ଟିରେ,
କାରଣ ମୋ ନିଜର ଦୋଷ ସମ୍ମୁଖରେ
ସେମାନଙ୍କ ଦୋଷ ସମୂହ କେତେ ନ୍ୟୁନ ସତେ ।

(୪୮)
ସ୍ୱପ୍ନମାନେ ଚାଲିଗଲେ
ଆଉ କ'ଣ ରହେ ଜୀବନରେ ?
ଜଳଶୂନ୍ୟ ଚଲା ବାଦଲ ସେମାନେ,
ତଥାପି ସେମାନଙ୍କୁ ଚାହିଁଦେଲେ
ଜୀବନଟା କାହିଁକି ବର୍ଷାମୟ ମନେହୁଏ ।

(୪୯)
ପ୍ରେମ ପୂର୍ବର ଏତେ ଆବେଗ, ଏତେ ସ୍ୱପ୍ନ
ବିବାହ ପରେ ହଜିଗଲା କିପରି ?
କିଛି ହଜିନି,
କଠୋର କର୍ତ୍ତବ୍ୟବୋଧ, ସହିଷ୍ଣୁତା ଏବଂ
ମନୁଷ୍ୟତ୍ୱକୁ ସଦା ସ୍ୱାଗତ କରୁଛନ୍ତି ।

(୫୦)

'ଏମିତି ଏକତ୍ର ଆମ ସ୍ଥିତି
ଏକ ତଳ୍ପପରେ କେତେଦିନ ଆଉ ?
ମଧ୍ୟାହ୍ନର ସୂର୍ଯ୍ୟ ବେଶ୍ ଢ଼ଳି ତ ଗଲେଣି,
ବଡ଼ ହୋଇଗଲେଣି ପିଲାମାନେ,
ତେଣୁ ଆଉ ନୁହେଁ, ତା' ସୁନ୍ଦର ବି ନୁହେଁ ।'
ସେଦିନ ମୋ କଥା ଶୁଣି
ବିବର୍ଣ୍ଣ ହୋଇଯାଇଥିଲ ତମେ,
ଯେମିତି କରୁଣ ଆଖିରେ ମୋତେ ଅନାଇଲ ନା,
ଭାବିଲି କହିଦେଇ ବଡ଼ ଭୁଲ୍ କରି ପକାଇଛି ।
ମାତ୍ର ଯା' ଅବଶ୍ୟମ୍ଭାବୀ
ସେଥିଲାଗି ପୂର୍ବରୁ ନିଜକୁ ପ୍ରସ୍ତୁତ
କରିନେବାରେ ଦ୍ୱିଧା କାହିଁକି ?

ମୋ କଥାରେ ମଥା ପୋତି ଗୁମ୍ ହୋଇ
ରହିଗଲ କିଛିକ୍ଷଣ, ତା'ପରେ
ତଳ୍ପରୁ ଉଠିଯାଇ ନୀରବରେ ଠିଆ ହେଲ
ଡ୍ରେସିଂ ଟେବୁଲ୍ ଆଇନା ସାମ୍ନାରେ,
ନିଜ ପ୍ରତିବିମ୍ବକୁ ମୁହୂର୍ତ୍ତେ କେତେକ
ନିରୀକ୍ଷଣ କଲା ଉତ୍ତାରେ
ମୋ ପାଖକୁ ଫେରି ଆସି
ମ୍ଳାନ ହସ ଟିକିଏ ହସି
ବାଷ୍ପରୁଦ୍ଧ କଣ୍ଠରେ କହିଲ,
କଲିକତାର ପ୍ରବଳ ପ୍ରତାପୀ ଜମିଦାର 'ଲାଲାବାବୁ'
ଦିନେ ଫେରୁଥା'ନ୍ତି ସବାରିରେ
ତାଙ୍କର 'ରସଲପୁର ଚାଷଘରୁ',
ସବାରିର ଦୁଇ ପାଖେ ବରକନ୍ଦାଜ ଦ୍ୱୟ
ଚାଲିଛନ୍ତି ଚୁପ୍‌ଚାପ୍ ।

ଆସନ୍ନ ସଂଧ୍ୟାର ସମୟ,
ହଠାତ୍ ବିଲ ମଝିରୁ କିଏ ଜଣେ

ଚିତ୍କାର କରିଉଠିଲା, "ଆରେ ରାମା,
ବେଳ ତ ବୁଡ଼ିଲା, ଘରକୁ
ଲେଉଟିବୁ କେବେ ?
ଶୁଣି ଦେଇ ଚମକି ପଡ଼ିଲେ
ଲାଲାବାବୁ "ଏଁ" ।
ଅସ୍ତାଚଳର ସୂର୍ଯ୍ୟଙ୍କୁ ଅନାଇ
ସ୍ତବ୍ଧ ହୋଇଯାଇଛନ୍ତି ସେ ।
"ସବାରି ରଖ", ସଙ୍ଗେ ସଙ୍ଗେ ହୁକୁମ୍ ଦୃଢ଼ କଣ୍ଠର ।
ସବାରି ରହିବା ମାତ୍ରେ ଓହ୍ଲାଇ ଆସିଥିଲେ ସେ ।

ପରକ୍ଷଣରେ ନିଜକୁ ସମ୍ପୂର୍ଣ୍ଣ
ନିରାବରଣ ଓ ନିରାଭରଣ କରି
ଏକବସ୍ତ୍ରରେ ଏକମୁହାଁ ହୋଇ
ଚାଲି ଯାଉଥିଲେ ଅମୃତର ସନ୍ଧାନରେ ।
ସେଇ ଚେତାବନୀ ଭଳି,
ଚେତାବନୀ ମୋ ନିମିତ୍ତ
ଉଚ୍ଚାରିତ ହୋଇନି କି ଓଠରେ ତମର
"ଏଣିକି ପୃଥକ୍ ହେବ ଆମ ଶଯ୍ୟା"
ଅଭିମାନେ ନେତ୍ର ତବ
ଅଶ୍ରୁ ଛଳଛଳ ।

(୫୧)
ତମ ସହ ଏ ପୃଥିବୀରେ ମୋର
ଆଉ କେତେଦିନ ?
ମୃତ୍ୟୁରେ ମୁଁ ହଜିଯିବା ପରେ
ତୁମ ସ୍ମୃତିରେ ମୋର ସ୍ଥିତି ବା
କେତେକାଳ ଆଉ ?
ତମ ବିସ୍ମୃତିରେ ମିଳାଇ ଯାଉଯାଉ
କେବେ କେମିତି ହୁଏତ
ମନେ ପଡ଼ି ଯାଉଥିବି ।

(୫୨)
ବିବାହ ପୂର୍ବରୁ ଏକାଧିକ ପ୍ରେମ
କରିଛି ସିନା,
ବିବାହ ପରେ ଦାମ୍ପତ୍ୟଜୀବନର
ସ୍ୱାଦ ଚାଖିବିନି ଟିକିଏ ?
ସେ ଜୀବନ ବିସ୍ୱାଦ ମନେହୁଏ ଯଦି
ପୁନଶ୍ଚ ଲେଉଟିଯିବି ଏକକ ଜୀବନକୁ
ସେ ଜୀବନର ଭବିଷ୍ୟତର ଚିତ୍ର
ଯା' ହେଉ ପଛେ ।

(୫୩)
ଜୀବନଟା ବହୁ ଭୁଲ୍‌ଭ୍ରାନ୍ତିର ସମାହାର,
ତା'ରି ମଧ୍ୟରେ ବଞ୍ଚିବାକୁ ହେବ ଆମ୍ଭମାନଙ୍କୁ ।
ତେଣୁ ପୂର୍ଣ୍ଣ ପବିତ୍ରତା ଓ ସ୍ୱାର୍ଥଶୂନ୍ୟ
ଆନୁଗତ୍ୟ ଇତ୍ୟାଦିଙ୍କୁ
ବାଦ୍ ଦେବାକୁ ହେବ ଚିନ୍ତାରୁ ।
ଖଣ୍ଡିତ ସ୍ନେହ, ଅସମ୍ପୂର୍ଣ୍ଣ ଶ୍ରଦ୍ଧା ଓ ପ୍ରେମ
ଯେତିକି ମିଳୁଛି ମିଳୁ,
ତାହାହିଁ ତ ଏ ଜୀବନର ସମ୍ବଳ ।

(୫୪)
ଭଲ ହେବା ପାଇଁ ପ୍ରୟାସ ମୋହର ସଦା
କାମନା, ବାସନା, ଦେଉଛନ୍ତି ବହୁ ବାଧା ।

(୫୫)
ନିଜର ପ୍ରଚ୍ଛନ୍ନ ଦୁଃଖ
ଅନ୍ୟ ପାଖେ ବ୍ୟକ୍ତ କରି
ତାକୁ ନିରର୍ଥକ ଦୁଃଖୀ କରନି ।

(୫୬)
ବହୁ ଭୁଲ୍‌କୁ
ଆଜିଯାଏ ଠିକ୍ ଭାବି
ମୁଁ ମୋ ଜୀବନକୁ ଦୁର୍ବିସହ କରି ତୋଳିଛି ।

(୫୭)
ବିରକ୍ତିକୁ ଯେ ଯେତେ ସଂଯତ କରିପାରେ,
ଅନୁରକ୍ତିରେ ତା' ହୃଦୟ ସେତେ ଆର୍ଦ୍ର ହୁଏ ।

(୫୮)
ପ୍ରଭୋ !
ମୁଁ ଜାଣେ, ତମ ଅଦାଲତରେ
ମୋ ଲାଗି ଚରମ ଶାସ୍ତିର ରାୟ
ପୂର୍ବରୁ ପ୍ରସ୍ତୁତ ହୋଇ ରହିଚି ।

(୫୯)
ଏ ଯୁଗର ପ୍ରତିଟି ମଣିଷର ମୃତ୍ୟୁ ପରେ
ତା' ମନକୁ ଚିପୁଡ଼ିଲେ
ସେଥିରୁ ଲାଲ୍ ରକ୍ତ ପରିବର୍ତ୍ତେ
ନୀଳ ରକ୍ତ ହିଁ ଝରିବ ।

(୬୦)
ନିଜର ସ୍ତୁତି ଶୁଣି ଶୁଣି ମୁଁ ଏତେ କ୍ଳାନ୍ତ ଓ ଅବସନ୍ନ ଯେ
ସେ ଅସହ୍ୟ ଯନ୍ତଣାରୁ ଏବେ ମୁକ୍ତି ଲୋଡୁଛି ।

(୬୧)
ଯେ ନିଜ ଉପରେ ସଦା ବିରକ୍ତ
ଅନ୍ୟକୁ ସେ ଅନୁରାଗ ଦେବ କିପରି ?

(୬୨)
ଅଭିଶପ୍ତ ହୋଇ
ପ୍ରବାସରେ ତ ଦୀର୍ଘଦିନ ବିତିଗଲା,

ଏଥର ପ୍ରୟାସ ହେଉ, ମୋହମୁକ୍ତ ହୋଇ
ନିତ୍ୟଧାମକୁ ପ୍ରତ୍ୟାବର୍ତ୍ତନର ।

(୬୩)
ପାପକୁ ଗୋପନ କରିବାର ପ୍ରୟାସ ହେତୁ
ତା' ଯେପରି ଅଧିକରୁ ଅଧିକ ହୋଇ ପ୍ରତିଭାତ ହେଉଚି ।

(୬୪)
ଭଲ କଥାଟିଏ ମନେ ପଡ଼ିଗଲେ
ସଙ୍ଗେ ସଙ୍ଗେ ବ୍ୟକ୍ତ କରିଦିଅ
ଗୋପନ ନ କରି,
ନିଜ ଆଚରଣରେ ତା' ସମ୍ଭବ ନ ହେଲେ
ଶୁଣି, ଅନ୍ୟ କେହି ଜଣେ ହେଲେ ତ
ଉପକୃତ ହେବ ନିଜ ନିଷ୍ଠାରେ ।

(୬୫)
ବଚନ ଯା'ର ମଧୁର ନୁହେଁ
ସେ କ'ଣ ମନୁଷ୍ୟ ପଦବାଚ୍ୟ ?

(୬୬)
ବହୁ ଦିନର ବର୍ଷା ପରେ
ପ୍ରଥମ ଖରା କିପରି ଲାଗେ ?
କିପରି ଲାଗେ ?

(୬୭)
କେତେ କିସମର ପାପ ମନ ମଧ୍ୟେ
ବାନ୍ଧିଛନ୍ତି ବସା,
ବ୍ୟକ୍ତ କଲେ ସେମାନଙ୍କୁ ଭଦ୍ର ମୁଁ ଯେ
ହେବି ଲୋକହସା ।

(୬୮)
ହେ ଜଗଦୀଶ୍ୱର !
ମୋ ମଧ୍ୟରେ ତମ ଲୀଳାର
ଜୟ, ପରାଜୟକୁ ସମଭାବେ
ପରମାନନ୍ଦରେ ତୁମେ ଆସ୍ୱାଦନ କର ।

(୬୯)
ବ୍ରହ୍ମ ନିରପେକ୍ଷ,
ମହାକାଳ ଅନାସକ୍ତ ।

(୭୦)
ନିତ୍ୟ ବିରହ ମାନେ ତ
ଅଖଣ୍ଡ ମିଳନ ।

(୭୧)
'ତମରି ଇଚ୍ଛା ପୂର୍ଣ୍ଣ ହେଉ'
ଆତ୍ମସମର୍ପଣର ଏ ଆନନ୍ଦଠୁ ବଳି
ଅଧିକ ଆନନ୍ଦ କ'ଣ ଅଛି ଆଉ ?

(୭୨)
ଆକାଶ ତଳେ, ଧରଣୀ ପରେ
ଲଭିଛି ଯେଣୁ ଥାନ,
ସ୍ରଷ୍ଟାର ମୁଁ ସେ ଲାଗି କରେ
ବିପୁଳ ଜୟଗାନ ।

(୭୩)
ସମୟ ତମକୁ ଡ଼ରୁ,
ସମୟକୁ ତମେ ଡ଼ରିବା ମାନେ
ନିଃଶେଷ ହୋଇଗଲ ଜାଣ ।

(୭୪)
ଯୌବନର ଏକାଧିକ ଉଚ୍ଛୃଙ୍ଖଳାତାକୁ ସ୍ମରଣ କଲେ,
ବାର୍ଦ୍ଧକ୍ୟର ଚିନ୍ତା ସଙ୍କୁଚିତ ହୋଇଯାଏନି କି ?

(୭୫)
ଭାବ ଜଗତରେ ନିଜର ସ୍ଥିତି ଅକ୍ଷୁଣ୍ଣ ରଖି ପାରିଲେ
ଜରା, ବ୍ୟାଧି ଏବଂ ମୃତ୍ୟୁକୁ ଜୟ କରିହୁଏ ।

(୭୬)
ସମସ୍ତଙ୍କ ଅଲକ୍ଷ୍ୟରେ
ନିଜର ଗୋପନ ପାପ ସମ୍ପର୍କରେ
ତମେ ଆଶ୍ୱସ୍ତ ସତ,
ହେଲେ, ନିଜେ ଜଣେ ଦ୍ରଷ୍ଟା ତ ।

(୭୭)
ନିର୍ଜନତା ତମର ପ୍ରକୃତ ଆଶ୍ରୟ,
କୋଳାହଳ ନୁହେଁ ।

(୭୮)
ମନର ଉତ୍ତରଣ ପାଇଁ
ଗୋଟିଏ ଶବ୍ଦ ହିଁ ଯଥେଷ୍ଟ ।

(୭୯)
ମନ ଯା'ର ପରିଚ୍ଛନ୍ନ, କୌଣସି ଅପରିଚ୍ଛନ୍ନତା
ତା' ଜୀବନକୁ କେବେ ଗ୍ରାସ କରେନି ।

(୮୦)
ସବୁ କିଛିକୁ 'ଛି-ଛି' କରି
ତମ ଜୀବନଟା 'ଛି-ଛି'ର
ସମାହାର ହୋଇଯାଇଛି ।

(୮୧)
ଜୀବନଟା ନାଟକ ସତ,
ମାତ୍ର ନାଟକକୁ ତ
ଜୀବନ କହି ହେବନି ।

(୮୨)
କେବଳ ଜଣେ ଅଶାନ୍ତ ପାଇଁ
ସମଗ୍ର ଶାନ୍ତ ପରିବେଶ
ବିକ୍ଷୁବ୍ଧ ହୋଇଯାଏ ।

(୮୩)
ପାପକୁ କେତେଦିନ ଗୋପନ ରଖିବ ?
ଦିନେ ଯେବେ ତା'ର ବିସ୍ଫୋରଣ ହେବ,
ତେବେ ତମେ କେତେ ନିରୁପାୟ ସତେ ।

(୮୪)
ନିଜ ଯଶ ଶୁଣି ଶୁଣି ମୁଁ ଅତ୍ୟନ୍ତ ଶ୍ରାନ୍ତ ଓ କ୍ଳାନ୍ତ,
ସେ ଯନ୍ତ୍ରଣାରୁ ଏବେ ମୋତେ ମୁକ୍ତି ଦିଅ ।

(୮୫)
ବ୍ରହ୍ମ ସଦା ପରିଛନ୍ନ, ସେଥିଲାଗି ପରିଛନ୍ନ ଚିନ୍ତାକୁ
ସେ ସଦା ଅଗ୍ରାହ୍ୟ କରେ ଓ ସେଥିଲାଗି ଶାସ୍ତି ଦିଏ ।

(୮୬)
ଚଞ୍ଚଳରୁ ଅଚଞ୍ଚଳ ଆନନ୍ଦ
ପାଇବାର ପ୍ରୟାସ ହେତୁ
ଦୁଃଖୀ ଆମେ ।

(୮୭)
ପ୍ରଭୋ !
ସବୁରି ଭିତରେ ତମକୁ ଦେଖେ ଯେ
ତା'ର ଅହମିକା କାହିଁ ?

(୮୮)
ଜୀବନରେ କା'ରେ ଦେଇନ ଆନନ୍ଦ,
ସେଥିଲାଗି ତମେ ସଦା ନିରାନନ୍ଦ ।

(୮୯)
ସରଳ ଭାବେ କାନ୍ଦି ପାରିବ ଯଦି
ତେବେ ପୃଥିବୀରେ ତମଠାରୁ
ଅଧିକ ସୁଖୀ କିଏ ଅଛି ଆଉ ?

(୯୦)
ପ୍ରଭୋ !
ତମେ ଯଦି ମୋ ହାତ ଧରି ନ ଲେଖାଅ,
ତେବେ କ'ଣ ଲେଖିବି ମୁଁ ?

(୯୧)
ଅନ୍ୟର ମଙ୍ଗଳ ଚିନ୍ତାରେ ନିମଗ୍ନ ରହ,
ଦେଖିବ ତମ ଜୀବନରେ ଦୁଃଖ ବୋଲି କିଛି ନାହିଁ ।

(୯୨)
ତମେ କେତେବେଳେ ଆସିବ ସଖା ହେ !
କେଉଁ ରୂପେ ମୁଁ ତା' ଜାଣେନା,
ନିର୍ଦ୍ଦୟ ହୋଇ ଆସ, ଅବା ଆସ କରୁଣାର ଗୀତି ଗାଇ
ନ ଆସିଲେ ମନ ମାନେନା ।

(୯୩)
ପୃଥିବୀର ଯେକୌଣସି ସୌନ୍ଦର୍ଯ୍ୟରେ
ସାତ୍ତ୍ୱିକ ଭାବ ଅନୁଭବ କରିବାରେ ହିଁ
ସାଧନାର ସାର୍ଥକତା ।

(୯୪)

ଜୀବନସାଥୀ ଆମେ, ଆମ ଦୁହିଁଙ୍କ ମଧ୍ୟରେ
ଚିନ୍ତା ଓ ଆଚରଣ କ୍ଲେଦାକ୍ତ କାହାର ବେଶୀ ?

(୯୫)

ଯୁଗ୍ମଜୀବନର ସାୟାହ୍ନରେ ଠିଆ ହୋଇ
ନିଃସହାୟ ଭାବେ ଭାବୁଛି
ଅବୋଧ ଶିଶୁ ଭଳି
ଆମ ମଧ୍ୟରେ ରାଗିବା, ରୁଷିବା ପ୍ରହସନ
କେତେ ଦିନ ଚାଲିବ ଆଉ ?

(୯୬)

ବୟସ ବେଳେ ତ ବେଶ୍ ନାଚିକୁଦି ଦିନ ବିତାଇ ଦେଲେ,
ଏବେ ଜୀବନ ସଂଧ୍ୟାରେ ଅକ୍ଷମ ଦେହକୁ ନେଇ
ସମୟ କାଟିବା କେତେ ଦୁର୍ବିଷହ ସତେ ।

(୯୭)

'କେହି ଜଣେ ହସନ୍ତିନି କେବେ,'
କୌଣସି ଚରିତ୍ରର ଏହା କ'ଣ ଏକ ଉଜ୍ଜ୍ୱଳ ଓ ମହତ ଦିଗ,
ଏଥିଲାଗି ବୃଥା ଗାରିମାର ଅର୍ଥ କିଛି ହୁଏ ?
ତେଣୁ ଜୀବନେ ତାଙ୍କର ସୂର୍ଯ୍ୟାଲୋକ ଚିରଦିନ
ମେଘାବୃତ ରହେ ।

(୯୮)

ସ୍ୱତଃସ୍ଫୂର୍ତ୍ତ କବିତାର ଭାବମୟତା
ପ୍ରୟାସ ସମ୍ଭୂତ କବିତାମାନଙ୍କରେ କାହିଁ ?

(୯୯)

ଅନ୍ୟର ସବୁ ଦୋଷ ଦୁର୍ବଳତା ସତ୍ତ୍ୱେ
ତାକୁ ଶ୍ରଦ୍ଧା କରି ଶିଖ,

କାରଣ,
ଦିନେ ନା ଦିନେ ତା'ର
ଦିବ୍ୟ ରୂପାନ୍ତର ହେବ ।

(୧୦୦)
ପ୍ରେମ ଯେ ଏକ ନିର୍ଦ୍ଦିଷ୍ଟ ବୟସର ପାଗଳାମି,
ଅତିକ୍ରାନ୍ତ ବୟସରେ ତା' ବେଶ୍ ଉପଲବ୍ଧି ହୁଏ ।

(୧୦୧)
ସୁଖ ବି ମିଥ୍ୟା, ଦୁଃଖ ବି ମିଥ୍ୟା,
ଏଇ ମିଥ୍ୟାମାନଙ୍କୁ ଠିକ୍ ଠିକ୍
ଉପଲବ୍ଧି କରି ପାରିଲେ
ସତ୍ୟରେ ପ୍ରତିଷ୍ଠା ସହଜ ହୁଏ ।

(୧୦୨)
ମଣିଷ ଦ୍ୱାରା ବାରମ୍ବାର
ପ୍ରତାରିତ ଓ ପ୍ରବଞ୍ଚିତ ହେବା ସତ୍ତ୍ୱେ
ଭଗବାନଙ୍କ ଉପରେ ଆସ୍ଥା ରଖି ପାରୁନ,
ଥରେ ରଖି ଦେଖ,
ଉପେକ୍ଷା ସେ କରିବେନି ତ କେବେ,
ଅଧିକନ୍ତୁ ଆପଣାଇ ନେବେ ।

(୧୦୩)
ମାନସିକ ଓ ଶାରୀରିକ ଯନ୍ତ୍ରଣା ଭୋଗୁଥିବା ଦୁଇ
ଦୁଃଖୀଙ୍କ ମଧ୍ୟରେ ଯାତନା କାହାର ଅଧିକ ?

(୧୦୪)
'ପ୍ରତିକ୍ଷଣରେ ମୁଁ ହରାଉଛି ସବୁକିଛି'
ଏଇ ଦୁଶ୍ଚିନ୍ତାରେ ସଦା ମ୍ରିୟମାଣ ଯେ,
ପରମ ପ୍ରାପ୍ତି ତା' ଜୀବନରେ ସମ୍ଭବ କେବେ ?

(୧୦୫)
ଅନ୍ୟର ସୌଭାଗ୍ୟକୁ ଈର୍ଷା କରି
ଯେ ନିଜ ଭାଗ୍ୟକୁ ନିନ୍ଦେ,
ସେ ଭଗବାନଙ୍କର ହିଁ ନିନ୍ଦା କରିଥାଏ ।

(୧୦୬)
ନିଃସଙ୍ଗଙ୍କୁ ସଂଗଦାନ କରିବାଠୁ ବଳି
ଅଧିକ ପୁଣ୍ୟ କିଛି ଅଛି ଆଉ ?

(୧୦୭)
ଅନ୍ୟର ଏତେ ଟିକେ ଦୋଷ ଦୁର୍ବଳତା
ଦେଖିବାରେ ସଦା ଉନ୍ମୁଖ ତମେ,
ଅଥଚ ନିଜର ଅକ୍ଷମଣୀୟ
ଅପରାଧମାନଙ୍କ ପ୍ରତି ଅନ୍ଧ କାହିଁକି ?

(୧୦୮)
ତମେ ଯେବେ ଉପଲବ୍ଧି କରିବ
ଆନନ୍ଦ ପାଇଁ କାହାରି ଦ୍ୱାରସ୍ଥ ନ ହୋଇ,
ସଦା ଭରପୁର ରହୁଚ ନିଜ ଭିତରେ,
ତାହାହିଁ ତ ବ୍ରହ୍ମୋପଲବ୍ଧି ।

(୧୦୯)
ତମେ ଯଦି ହାତ ନ ଧରିବ ମୋର
ଲେଖିବି କିପରି କୁହ ?
ତମ ଦେହେ ଲୋଟି ରହିଚି ଲତା ମୁଁ
ତମେ ମୋର ମହୀରୁହ ।

(୧୧୦)
ହେ ରାଜାଧିରାଜ !
ପାପ ଓ ପ୍ରବୃତ୍ତିର ଦୈନ୍ୟରେ

ଚିରକାଳ ତୃଣସମ ନ୍ୟୁନ ହୋଇ ରହେ
ଶ୍ରୀଚରଣେ ଏଇ ମୋ'ର ମିନତି ।

(୧୧୧)
ଅନ୍ୟର ଅନିଷ୍ଟ ଚିନ୍ତାରେ ଅଶାନ୍ତ ଓ କ୍ଲେଦାକ୍ତ ଯା'ର ମନ,
ସୁରଭିତ ସୁନ୍ଦର କୋମଳ ଫୁଲଟି ବି
ସ୍ପର୍ଶରେ ତା'ର ମ୍ଳାନ ହୋଇଯିବ ପଲକ ମଧ୍ୟରେ ।

(୧୧୨)
ପାପମାନଙ୍କୁ ବିଶ୍ଳେଷଣ କଲେ
ମୋ ପାପର ସ୍ୱରୂପ ଅନ୍ୟମାନଙ୍କ
ପାପଠାରୁ ଅଧିକ ବୀଭତ୍ସ ଦିଶେ ।

(୧୧୩)
ଯେକୌଣସି ପ୍ରତିକୂଳ ପରିସ୍ଥିତିରେ ବି
ଓଠରେ ହସ ଟିକକ ଯା'ର
ଅବ୍ୟାହତ ରହେ, ନମସ୍ୟ ସେ ।

(୧୧୪)
ମୁଁ ମୋର ଭୁଲ୍‌ମାନଙ୍କ ସମ୍ପର୍କରେ ଏତେ ସଂତ୍ରସ୍ତ ଯେ
ଅନ୍ୟମାନଙ୍କର ଭୁଲ୍ ଦେଖିବାରେ ସଦା ସଙ୍କୁଚିତ ।

(୧୧୫)
ଅନ୍ୟମାନଙ୍କ ଭୁଲ୍ ଅପେକ୍ଷା
ନିଜ ଭୁଲ୍ ଯେବେ ଅଧିକ ଭାବେ ପ୍ରତିଭାତ ହେବ,
ତେବେ ଜାଣି ରଖ,
ତମର ଉତ୍ତରଣର ସମୟ ଉପସ୍ଥିତ ।

(୧୧୬)
ମୋର ପ୍ରକାଶିତ ପାପମାନଙ୍କ ଅପେକ୍ଷା
ଅପ୍ରକାଶିତ ପାପମାନଙ୍କର ମାତ୍ରା ଅଧିକ ।

(୧୧୭)
ଛୋଟାଟିଏ ବାଡ଼ି ଖଣ୍ଡିଏ ଧରି
ଛୋଟେଇ ଛୋଟେଇ ଚାଲିଛି,
ହେଲେ, ସାରା ଜୀବନରେ ଅଜସ୍ର ଗ୍ଲାନିକୁ ନେଇ
ପଙ୍ଗୁ ହୋଇ ରହିଗଲ ତମେ,
ଭଗବତ୍ ପ୍ରେମର ଯଷ୍ଟିଟିଏ ସଂଗ୍ରହ କରି ପାରିଲିନି ।

(୧୧୮)
ସମସ୍ତଙ୍କ ସଙ୍ଗେ ସାଲିସ୍ କରିହେବ,
ମାତ୍ର ସାଲିସ୍ କରି ହେବ କି
ମୃତ୍ୟୁ ସଙ୍ଗେ ?

(୧୧୯)
ପାପ ପ୍ରତି ଯାର ଭୟ ନାହିଁ,
ତା'ର ଦୁଃଖର ଶେଷ କାହିଁ ?

(୧୨୦)
ମୁଁ କେହି ନୁହେଁ, ସବୁ ସେ,
ଏହାଠାରୁ ଅଧିକ ଈଶ୍ୱର ଉପଲବ୍ଧି
ଆଉ କ'ଣ ହୋଇପାରେ ?

(୧୨୧)
ଏ ବର୍ଷର ବିଶ୍ୱସୁନ୍ଦରୀ
ଆସନ୍ତା ବର୍ଷର ବିଶ୍ୱସୁନ୍ଦରୀକୁ
ମୁକୁଟ ପିନ୍ଧାଇବା ବେଳେ
ଈର୍ଷାରେ ଜଳିଯିବନି କି ?

(୧୨୨)
ବିଦାୟ ନିଶ୍ଚିତ ଜାଣି
ଯେଉଁମାନେ ମିଳନ ଉତ୍ସବରେ ମାତିଥା'ନ୍ତି,
କେତେ ନିର୍ବୋଧ ସେମାନେ ।
ଅଥଚ ସେମାନେ ନିରୁପାୟ ।

(୧୨୩)
ଟିକେ ଟିକେ କଥାରେ ରାଗିଲେ, ରୁଷିଲେ,
ସାରା ଜୀବନ ସଂସାର କରିବ କିପରି ?

(୧୨୪)
ମନ ଖୋଲି ଆଗ ପରି
ହସି ଆଉ ପାରୁନି କାହିଁକି
ତ୍ରୁଟି ମୋର କେଉଁଠି ? କେଉଁଠି ?

(୧୨୫)
ମୋ ଚିନ୍ତାରେ ଓ କର୍ମରେ ପାପର ଯେ କଳନା ନାହିଁ,
ମାତ୍ର ଏଇ ଉପଲବ୍ଧି ସତ୍ତ୍ୱେ ସଂଶୋଧନ କାହିଁ ?

(୧୨୬)
ବିଫଳତା ଓ ସଫଳତା ଉଭୟ କ୍ଷେତ୍ରରେ ଯେ ମନର
ସ୍ଥୈର୍ଯ୍ୟ ଅକ୍ଷୁଣ୍ଣ ରଖିପାରେ ସ୍ଥିତପ୍ରଜ୍ଞ ସେ ।

(୧୨୭)
ମୁଁ ଯଦି ତୋତେ ଆଲୋକ ଦିଏ
ଅନ୍ଧାର କେ କରିବ କୁହ ?
ଯଦି ମୁଁ ତୋତେ ହାସ୍ୟ ଦିଏ,
ସେ ହସପଛେ ବୋଲିକି କେହି
ପାରିବ ଲୁହ ?

(୧୨୮)
ମୃତା ବୃଦ୍ଧା ପତ୍ନୀ
ଯେ ଏବେ ଜଳୁଛନ୍ତି ଚିତାରେ,
ସ୍ୱାମୀ ପ୍ରତି ଥିବା ତାଙ୍କ ମନର ପୁଞ୍ଜିଭୂତ ବିତୃଷ୍ଣା,
ସନ୍ଦେହ ଏବଂ ଅବିଶ୍ୱାସ ସାରାଜୀବନର
ନିଶ୍ଚିହ୍ନ ହେବ କି ଏ ଚିତାଗ୍ନିରେ ?

(୧୨୯)

ବିକାରଗ୍ରସ୍ତ ମନ ନେଇ ଯେଣେ ଇଚ୍ଛା ତେଣେ ଯାଅ,
ଦୁଃଖ କିନ୍ତୁ ଅନିବାର୍ଯ୍ୟ ।

(୧୩୦)

ଦୋଷୀ ବିଚାରା ଧରାପଡ଼ିଯାଇ
ଲଜ୍ଜାରେ ନତମୁଖ,
କୌତୂହଳୀ ଦର୍ଶକଙ୍କର
ଦୃଷ୍ଟିର ଔଜ୍ଜ୍ୱଲ୍ୟ କିନ୍ତୁ
ଲକ୍ଷ୍ୟ କରିବାର କଥା ।

(୧୩୧)

ବିଲେଇଟି ଶୋଇଚି ମନମରା ହୋଇ,
ମୁଁ ବି ବସି ରହିଚି ମୋ ବିଷଣ୍ଣ ମନ ନେଇ,
ଉଭୟଙ୍କ ମଧ୍ୟରେ ତେବେ ତଫାତ୍‌ଟା କ'ଣ ?

(୧୩୨)

ନିଜକୁ ନିଜେ ଡ଼ର,
ପାପ ପ୍ରବୃତ୍ତି କ୍ରମେ ହ୍ରାସ ହେବ ।

(୧୩୩)

ଜୀବନରେ କିଛି ହରାଇବାର ନାହିଁ,
କି ପାଇବାର ବି ନାହିଁ,
ଏଇ ଅନୁଭବରେ ସ୍ଥିର ଯେ,
ସେ ସୁଖୀ ।

(୧୩୪)

ଯାହା ଭଙ୍ଗୁର
ତନ୍ମଧ୍ୟରୁ ସ୍ଥାୟୀ ସୁଖ ପାଇବାର
ଅଯଥା ପ୍ରୟାସ ହେତୁ
ସାରା ଜୀବନ ଆମେ ଦୁଃଖୀ ହୋଇ ରହୁ ।

(୧୩୫)
ନିଜ ପ୍ରଶଂସା ଶୁଣିବାଠୁ ବଳି ଅଧିକ ଦୁଃଖ ଆଉ କିଛି ନାହିଁ
ଏବଂ ସେ ଦୁଃଖ ଭବିଷ୍ୟତର ।

(୧୩୬)
ତମମାନଙ୍କର ମୋ ପ୍ରତି
କେତେ ଶ୍ରଦ୍ଧା ଓ ସମ୍ମାନ,
ମୋ ଅତୀତ ଜୀବନର
ବୀଭତ୍ସ ପୃଷ୍ଠାମାନ ଓଲଟାଇଲେ
ତା' ଅକ୍ଷୁଣ୍ଣ ରହିବ ତ ?

(୧୩୭)
ସଂସାରର ଲାଭକ୍ଷତି ନେଇ
ସଦା ବିବ୍ରତ ଯେ, ତା' ଜୀବନରେ
ଆଧାତ୍ମିକ ଅଗ୍ରଗତି
କ'ଣ କେବେ ସମ୍ଭବ ?

(୧୩୮)
ଅନ୍ୟକୁ ସଂଶୋଧନ କରିବା ଆଗରୁ
ପ୍ରଥମେ ନିଜେ ସଂଶୋଧିତ ହୁଅ ।

(୧୩୯)
ତମ ମନରେ ଅନେକ ଅଶାନ୍ତି,
ସେଥିଲାଗି ମୋ ଉପରେ ତମେ ବିରକ୍ତ,
ଯଦିଓ ତମ ଅଶାନ୍ତିର କାରଣ ମୁଁ ନୁହେଁ ।
ଅକାରଣରେ ତମର ବିରକ୍ତି ମୋ ଉପରେ,
ଶାନ୍ତି ଦେଇ ପାରିବି କି ତୁମକୁ ?
ତମେ ଠିକ୍ ଜାଣ,
ମୋ ଉପରେ ତମେ ଯେତେ ରାଗିଲେ ବି
ମୁଁ ପ୍ରତିବାଦ କରିବିନି,

ମୁଁ ପ୍ରତିବାଦ କରେନି
ତମ ଭିତରର ଅଶାନ୍ତିକୁ ଉପଲବ୍ଧି କରୁଛି ବୋଲି ଓ
ଅଧିକ ଦୁଃଖ ତମକୁ ନ ଦେବାକୁ ।
ମୁଁ ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବାକୁ ଚେଷ୍ଟା କରେନି କେବେ,
କାରଣ ତଦ୍ଦ୍ୱାରା ଅଶାନ୍ତି ଅଧିକ ସମ୍ପ୍ରସାରିତ ହୋଇଯିବ ତମର,
ତା'ଠୁ ବରଂ ଭଲ
ସବୁ କିଛି ଚୁପ୍‌ଚାପ୍ ସହିଯିବା ।

(୧୪୦)

ତମେ ମୋତେ ଏତେ ଭଲ ବୋଲି କହନି,
ଶୁଣି ମୁଁ ମନେମନେ ଲଜ୍ଜିତ ହୁଏ,
ତମେ ମୋତେ କେତେଟା ଜାଣ ?
ଅବଶ୍ୟ ମୁଁ ଖୁବ୍ ଭଲ ଏଇ ବିଶ୍ୱାସରେ
ଆନନ୍ଦ ପାଉଥାଅ ଯଦି,
ସେ ଆନନ୍ଦରୁ ତମକୁ ବଞ୍ଚିତ କରିବି କାହିଁକି ?
ମୋ ସମ୍ପର୍କରେ ତମର ବିଶ୍ୱାସ ଅକ୍ଷୁଣ୍ଣ ରହୁ ।

(୧୪୧)

ଅତୀତର ଯେଉଁ ଚମତ୍କାର ଚିନ୍ତାମାନେ
ମୋର ଆଳସ୍ୟ, ଅବହେଳା ଏବଂ
ଅମନୋଯୋଗିତାରୁ ହଜି ଯାଇଛନ୍ତି,
ସତର୍କତାର ସହ ଲିପିବଦ୍ଧ କରାଯାଇଥିଲେ
ସେମାନଙ୍କୁ, କେତୋଟି ସୁନ୍ଦର
କବିତା ସୃଷ୍ଟି ହୋଇ ପାରିଥା'ନ୍ତା,
ସେମାନେ ହଜିଯାଇ ଆତ୍ମଗୋପନ
କରିଛନ୍ତି କେଉଁଠି ? କେଉଁ ଅନ୍ତରାଳରେ ?
ଯେତେ ଖୋଜିଲେ ବି ମିଳୁନାହାନ୍ତି ଆଉ ।
ଯନ୍ତ୍ରଣାକୁ ମୋର ଉପଲବ୍ଧି କରି
ସେମାନେ ହାତ ଧରାଧରି ହୋଇ
ଆସି ପହଞ୍ଚିଯା'ନ୍ତେ କି ମୋ ପାଖେ

ଏବଂ ମୋ କାନରେ ଚୁପ୍ ଚୁପ୍ କହନ୍ତେ
'ଏଥର ଡ଼େରି ନ କରି ଶୀଘ୍ର
ଟିପି ରଖ ଆମ୍ଭମାନଙ୍କୁ ।'

(୧୪୨)
ଆଜି ଯୁଗ୍ମଜୀବନର ଶେଷ ପର୍ଯ୍ୟାୟରେ ପହଞ୍ଚି
ସିଂହାବଲୋକନ କଲେ କ'ଣ ମନେହୁଏ
ଯୌବନରେ କାୟମନୋବାକ୍ୟରେ
ଆମେ ପରସ୍ପର ପ୍ରତି ବିଶ୍ୱସ୍ତ ଥିଲେ କି ?
ପ୍ରାକ୍ ଦାମ୍ପତ୍ୟ ଜୀବନ
ନିଷ୍କଳୁଷ ଥିଲା କି ଆମର ?
ଏ ପରିଣତ ବୟସରେ ଇନ୍ଦ୍ରିୟମାନେ କ'ଣ
ଅଦ୍ୟାବଧି ବହୁତେ ସକ୍ରିୟ ନୁହନ୍ତି ?

ସାରା ଜୀବନର ପ୍ରତି ମୁହୂର୍ତ୍ତକୁ ବିଶ୍ଳେଷଣ କଲେ
ମନେହୁଏ ସତ୍ୟ ଅପେକ୍ଷା ଅସତ୍ୟକୁ
ଆଶ୍ରୟ କରିଛେ ବେଶୀ,
ନିଜର ବହୁ କର୍ତ୍ତବ୍ୟ ଓ ନିଷ୍ଠାରେ
ଯଥେଷ୍ଟ ଅବହେଳା ବି କରିଛେ,
ନିଜର ଦୁର୍ବଳତା ଗୋପନ କରିବାକୁ
ବହୁ ମିଥ୍ୟାର ଆଶ୍ରୟ ନେଇଛେ ।

ମାତ୍ର ଏସବୁ ସତ୍ତ୍ୱେ ଉଜ୍ଜ୍ୱଳ ହେବାର
ପ୍ରୟାସ ଆମର ଅବ୍ୟାହତ ନାହିଁ କି ?
ଉର୍ଦ୍ଧ୍ୱକୁ ଉଠିବାର ଆମର ଚେଷ୍ଟା ଆଦୌ ଅଭିନୟ ନୁହେଁ,
ତେଣୁ ନିଜକୁ ବିଶ୍ଳେଷଣ କରି
ଅନ୍ୟମାନଙ୍କର ତ୍ରୁଟି ଲକ୍ଷ୍ୟ କଲେ
ସେମାନେ ନ୍ୟୂନ ମନେ ହୁଅନ୍ତିନି,
କାରଣ ଦିନେ ନା ଦିନେ ଦିବ୍ୟ ରୂପାନ୍ତର ତ ହେବ ସେମାନଙ୍କର ।
ତେଣୁ ତୃଣର ଦୈନ୍ୟ ନେଇ ନମସ୍କାର କରିବା ସଭିଙ୍କୁ ।

(୧୪୩)
ଯୌବନ ପ୍ରାୟ ଅତିକ୍ରାନ୍ତ,
ଅଥଚ ଏଯାଏ ଖୋଜି ପାଇ ପାରିଲିନି ଜୀବନସାଥୀଟିଏ,
ମାତ୍ର କାହିଁକି ? କାହିଁକି ?

ମୋ ଖୋଜିବାରେ ଭୁଲ୍ ରହିଗଲା କେଉଁଠି ?
ମୁଁ କ'ଣ ଏତେ ସ୍ୱୟଂସମ୍ପୂର୍ଣ୍ଣ ଯେ
ମୋ ସମାସ୍କନ୍ଧ ଜୀବନସଙ୍ଗୀଟିଏ ଦୁର୍ଲଭ ମୋ ପାଇଁ ?
ଅହମିକାଗ୍ରସ୍ତ ମୋ ମନ ତଳର
ପ୍ରତି ମୁହୂର୍ତ୍ତର ସଂଶୟରେ
ମୋ ନିର୍ବାଚନ ଯେ ସଦା ଆନ୍ଦୋଳିତ ।
ତେଣୁ ହତାଶ ମୁଁ, ଆଉ ପାରୁନି ।

କ୍ଳାନ୍ତ ଦୃଷ୍ଟିରେ ତେଣୁ
ମଧ୍ୟାହ୍ନରୁ ଢଳି ଯାଇଥିବା ସୂର୍ଯ୍ୟକୁ ଚାହିଁ
ଏବେ ଭାବୁଛି, କେହି ଜଣେ ହୃଦୟବାନ
ଆଗେଇ ଆସି ହାତ ମୋର ଚାପି ଧରନ୍ତା କି,
ନତନେତ୍ରରେ ଚୁପ୍ ରହନ୍ତି ମୁଁ ।

(୧୪୪)
କେହି ଜଣେ ହେଲେ ଆସୁ କଥା କହିବାକୁ,
ଦ୍ୱିତଳରେ ମୁଁ ଯେ ଏକା, ଖୁବ୍ ଫାଙ୍କା
ଭୀଷଣ ଶୂନ୍ୟତା ।
ଏଁ, ପାହାଚରେ କା'ର ଏ ପାଦଶବ୍ଦ,
ଉଠିଆସେ କେହି ଉପରକୁ ?
ମାତ୍ର ହାୟ, ବୃଥା ମୋର ଉତ୍କର୍ଣ୍ଣ ଅପେକ୍ଷା,
କାହିଁ, ନାହାନ୍ତି ତ କେହି,
ସବୁ ତେବେ ମୋ ମନର ଭୁଲ୍ ?

ଅଥଚ ସେ ଭୁଲ୍‌ରେ କି ଆନନ୍ଦ ନ ଥିଲା ?
ପଲକ ପାଇଁକି ପଛେ ହେଉ,
ଶୂନ୍ୟ ମୋର ମନକୁ ତ ପୂର୍ଣ୍ଣ କରିଥିଲା ।

ତେଣୁ କ୍ଷଣକର ସେଇ ଭୁଲ୍
ଓ ତଜ୍ଜନିତ ପୁଲକର ଉଦ୍‌ବେଳନ
କେତେ ନ ମହାର୍ଘ ସତେ,
ଅନିର୍ବଚନୀୟ ।

(୧୪୫)
ମୁଁ ଛୁଆ ଥିବା ବେଳେ
ଦିନେ ବୋଉ ମୋତେ ପଚାରିଥିଲା,
"ମୁଁ ମରିଗଲେ ତୁ କାନ୍ଦିବୁ ନା ?"
ଶୁଣି ଦେଇ କେତେ କାନ୍ଦିଥିଲି ସେଦିନ,
ମୋତେ ବୁଝାଇ ବୁଝାଇ ବୋଉ ଥକି ଯାଇଥିଲା,
ସ୍ୱାମୀ ଓ ସନ୍ତାନମାନଙ୍କୁ ନେଇ
ଆଜି ମୋର ପୃଥକ୍ ଓ ପରିପୂର୍ଣ୍ଣ ସଂସାର ଯେତେବେଳେ,
ବୋଉର ଦେହାନ୍ତ ଖବର ପାଇ କାନ୍ଦି ପକାଇଥିଲି,
ହେଲେ ଏ କାନ୍ଦ, ସେ କାନ୍ଦର ସରି କି ?

(୧୪୬)
ମୁଁ ଆଜି ତମ ବାର୍ଦ୍ଧକ୍ୟରେ
ତମ ଅତୀତର ଉତ୍‌ଫୁଲ୍ଲ, ଉଦ୍ଦାମ ଯୌବନକୁ ଖୋଜୁଛି ।
ଖୋଜୁଛି ସେଦିନର ତମର ସ୍ୱପ୍ନକୁ,
ଭାବବିହ୍ୱଳତାକୁ ଏବଂ ଟିକେ ଟିକେ
କଥାରେ ରାଗିବା, ଶୁଣିବା ଏବଂ ଅବାଧତାକୁ ।
ତମେ ଆଜି କେତେ ଶାନ୍ତ ସମାହିତ,
କେତେ ବାଧ କେତେ ନିରଭିମାନ, କେତେ ବିଚାରବନ୍ତ ।

ତମେ ମୋ ପରି ଚେଷ୍ଟା କରୁଛ କି
ଦେଖିବା ଲାଗି, ମୋ ଜରାର ଅନ୍ତରାଳରେ

ନିଶ୍ଚିହ୍ନ ହୋଇଯାଇଥିବା ମୋର ସ୍ନିଗ୍ଧ
ତାରୁଣ୍ୟକୁ ଓ ଉଦ୍ଦାମ ଯୌବନକୁ ?
ମୋର ଆଜିର ନିଷ୍ପ୍ରଭ ଆଖିର ଅନ୍ତରାଳରେ
ଦେଖିପାରୁଛ କି ସେଦିନର ମୋ ଦୃଷ୍ଟିର ଚମକକୁ ?
ଦେଖିପାରୁଛ କି ଆଜିର ମୋ ବିବର୍ଣ୍ଣ ହସରେ
ସେଦିନର ମୋ ହସର ବିଦ୍ୟୁତ ଝଲକକୁ ?

ମୁଁ ଜାଣେନା ଆଜି ମୋର ବାର୍ଦ୍ଧକ୍ୟରେ
ମୋର ରଙ୍ଗିନ୍ ଅତୀତ ଅୟସକୁ ନେଇ
ତମେ ସ୍ୱପ୍ନ ଦେଖୁଛ କି ନାହିଁ,
ମାତ୍ର ମୁଁ ତୁମର ଜରାର ଅନ୍ତରାଳରେ
ତମର ଦୃପ୍ତ ତାରୁଣ୍ୟକୁ ଠିକ୍ ଦେଖି ପାରୁଛି
ଓ ଭାବବିହ୍ୱଳ ହେଉଚି ଯେ
ମୋର ସେ ବସନ୍ତ ବୟସର ସ୍ୱପ୍ନକୁ
ତମେ ସାକାର କରିଥିଲ ।

ସେଇ ତମେ ଆଜି ସ୍ଥବିର ହେବ କିପରି ?
କାରଣ, ବାର୍ଦ୍ଧକ୍ୟ ଦେହର ତ ନୁହେଁ, ମନର ।

(୧୪୭)
ଗତ ରାତ୍ରିରେ ନିର୍ମମ ଭାବେ ତଣ୍ଟି ଚିପି
ହତ୍ୟା କରାଯାଇଥିବା ଶିଶୁଟିକୁ
ନାଳରେ ଫିଙ୍ଗି ଦିଆ ହୋଇଚି ।
କିଏ ତା'ର ପିତା ? କିଏ ତା'ର ମାତା ?
କାହାନ୍ତି ସେମାନେ ?
ସମବେତ ଦର୍ଶକଙ୍କ ମନରେ ଅନେକ କୌତୂହଳ,
ଅନେକଙ୍କ ବୁକୁ ବ୍ୟଥାରେ ଭାରାକ୍ରାନ୍ତ,
ଆଲୋଚନା ଓ ସମାଲୋଚନାରେ ବାୟୁମଣ୍ଡଳ ଉତ୍ତପ୍ତ ।
ନିଶ୍ଚିନ୍ତ ଥିବେ କି ଏ ଶିଶୁର କ୍ରୁର ବାପାମାଆ ?
ଯେଉଁଠି ଥା'ନ୍ତୁ, ଯେପରି ଥା'ନ୍ତୁ ନା କାହିଁକି,

ଅନ୍ତର୍ଦାହରେ ଜଳୁ ନଥିବେ କି ସେମାନେ ?
ଜାରଜ ଶିଶୁଟି ଉଠିପଡ଼ି, କହି ଦିଅନ୍ତାନି କିଏ ତା'ର
ଦୁର୍ବୃତ୍ତ ଜନକ, ଜନନୀ ।
କାକଟିଏ ସମୀପସ୍ଥ ବୃକ୍ଷର ଶାଖାରେ
ଦୃଶ୍ୟ ପ୍ରତି ନତନେତ୍ର ହୋଇ ରହିଚି ।

(୧୪୮)
ଜଣେ ଉତ୍କଟ ବିଷୟୀର
ଚକ୍ଷୁଥାଇ କି ଲାଭ ?
ଆଶୀର୍ବାଦ କର ପ୍ରଭୋ !
ତମ ଦିବ୍ୟ ଜ୍ୟୋତିରେ ମୁଁ
ଚିରକାଳ ଅନ୍ଧ ହୋଇ ରହେ ।

(୧୪୯)
ଆତ୍ମାହୀନ ଦେହ ଓ ଆବେଗହୀନ ଶରୀର
ଉଭୟେ ସମ ପର୍ଯ୍ୟାୟର ଜଡ଼ ଓ ଅର୍ଥହୀନ ।

(୧୫୦)
ସବୁରି ସହ ହାତ ମିଳାଅ,
ଛୋଟ ବଡ଼ ସଭିଙ୍କ ସହ,
କିଏ ଜାଣେ, କେଉଁ ସ୍ପର୍ଶରେ
ତମର ଦିବ୍ୟ ରୂପାନ୍ତର ହେବ ।

(୧୫୧)
ନିରାନନ୍ଦ ନାହିଁ କିଛି
ସବୁ କିଛି ଆନନ୍ଦ ଆନନ୍ଦ,
ମୋ କଣ୍ଠରେ ସଦା ତେଣୁ
ହରିନାମ ଗୋବିନ୍ଦ, ଗୋବିନ୍ଦ ।

(୧୫୨)
ବାହାରେ ମେଘମେଦୁର ଆକାଶ,
ଚମତ୍କାର ବର୍ଷା,
ମୋ ମୁଗ୍ଧଦୃଷ୍ଟିରେ ତେଣୁ ଅନେକ
ଜାଗତିକ ପ୍ରେମର ସ୍ନିଗ୍ଧ ସ୍ୱପ୍ନ ।
ହେଲେ, ମୋ ଅନ୍ତର ଆକାଶ
କୃଷ୍ଣପ୍ରେମର ମେଘରେ ମେଦୁରିତ ନୁହେଁ ତ,
ଝରିପଡ଼େନା ମୋ ନେତ୍ରରୁ ପ୍ରେମାଶ୍ରୁ
ପୁଲକିତ ହୁଏନା ମୁଁ ଶ୍ୟାମ ବିରହରେ ।

ତେଣୁ ବାହାର ଆକାଶର
ଏଇ ଘନ ନୀଳମେଘ, ଝରଝର ବର୍ଷା
ମୋ ପାଇଁ ନିରର୍ଥକ ।

(୧୫୩)
What is this life if
full of care,
We have no time
to stand and stare ?

-Leisure
(William Henry Davies)

ଜଗି ରଖି ଚଲୁ ଚଲୁ ବୃଥା ବେଳ ଯାଏ,
ସତର୍କିତ, ଉଦ୍‌ବେଗ ସଦା ।
ଆଗ ପଛ ଚାହିଁ ଚାହିଁ, ବାଟ ଚାଲୁଚାଲୁ
ଅନ୍ୟମନ ରଖି, ମାପିଚୁପି କଥା କହୁକହୁ
ନିଜେହିଁ ନିଜକୁ ଠକୁ ।
'ଖୁବ୍ ସିଏ ସାବଧାନ,
ହାତେ ମାପି ଚାଖଣ୍ଡେ ଚାଲନ୍ତି'
ଏ ପ୍ରଶସ୍ତି ଶୁଣିବାରେ

ଶୂନ୍ୟତା ଓ ନିରାନନ୍ଦୁ ମୁକ୍ତି କ'ଣ ମିଳେ ?
ଅଧିକନ୍ତୁ ମନତଳେ ନିର୍ଜନତା ବଢ଼ି ବଢ଼ି ଯାଏ ।
କେବେ ତ ପାରେନା ହସି ମନ ଖୋଲି,
ପ୍ରାଣଖୋଲି କାନ୍ଦି ବି ପାରେନା, ହିସାବୀ ବୁଦ୍ଧିରେ,
ନିକିତିରେ ସବୁ କିଛି ତଉଲୁ ତଉଲୁ ଅସ୍ତଯାଏ ସୂର୍ଯ୍ୟ ।
ସରଳ ମୋ ବିଶ୍ୱାସକୁ ଜଳାଞ୍ଜଳି ଦେଇ,
ସନ୍ଦିଗ୍ଧ ଦୃଷ୍ଟି ମୋ ମେଲି ଦେଖୁ ଦେଖୁ ପୃଥିବୀକୁ
କ୍ରମେ ନିଃସ୍ୱ ହୁଏ ।

ନିଜର ନିଃସ୍ୱତା ଓ ନିଃସଙ୍ଗତା ଦୁଃଖ
ଅନ୍ତରରେ ଚାପି ରଖି କିନ୍ତୁ
ନିଖୁଣ ମୁଁ ଅଭିନୟ କରେ
'ଚମତ୍କାର ଅଛି' ବୋଲି,
ଅଥଚ ଭୁଲାଉଥାଏ
କ୍ଲାନ୍ତି ଆଉ ଅବସାଦେ
ବିମର୍ଷ ମନକୁ ନେଇ, ଅନ୍ୟର ଦୃଷ୍ଟିକୁ ଫାଙ୍କି,
ଫାଙ୍କି ଦେଇ ନିଜ ଚେତନାକୁ ।

ତେଣୁ ଝରଣାର ଗୀତ,
ବର୍ଷାର ସଙ୍ଗୀତ,
ମଧୁର କାକଳୀ, ପ୍ରକୃତିର ଅମାପ ଆନନ୍ଦ,
ସବୁ କିଛି ରହିଯାଏ ବାହାରରେ,
ଅନ୍ତର ତା' ଅବରୁଦ୍ଧ ଦ୍ୱାର
ଖୋଲେ ନାହିଁ କେବେ
ସ୍ୱାଗତ କରିବା ଲାଗି ସେମାନଙ୍କୁ
ଆପଣା ଚତ୍ୱରେ ।

□□

